


ଡକ୍ଟର ନିତ୍ୟାନନ୍ଦ ଶତପଥୀ

# ହେ ସାଥି! ହେ ସାରଥି!

ଲେଖକ :

ଡକ୍ଟର ନିତ୍ୟାନନ୍ଦ ଶତପଥୀ

ପ୍ରଫେସର, ଓଡ଼ିଆ ବିଭାଗ

ଉତ୍କଳ ବିଶ୍ୱବିଦ୍ୟାଳୟ

ଗ୍ରନ୍ଥମନ୍ଦିର

ପ୍ରକାଶକ : ଅଭିରାମ ମହାପାତ୍ର

ଗ୍ରନ୍ଥମନ୍ଦିର

ବିନୋଦବିହାରୀ, କଟକ-୨

ମୁଦ୍ରକ : ଜୟରାମ ମହାପାତ୍ର

ଗ୍ରନ୍ଥପ୍ରକାଶିନୀ

ସୁତାହାଟ, କଟକ-୧

ପ୍ରଥମ ସଂସ୍କରଣ : ୧୯୬୯

ସଂଶୋଧିତ ଦ୍ୱିତୀୟ ସଂସ୍କରଣ : ୧୯୬୭

ତୃତୀୟ ସଂସ୍କରଣ : ୧୯୮୯

ମୂଲ୍ୟ : ଟ ୬୦·୦୦

ସାଦାବନ୍ଧେଇ ଟ ୫୫·୦୦

ଏ ଯୁଗର ଋଷିପ୍ରତିମ ପରମ ସାଧକ

ସ୍ୱର୍ଗତ ଆଚାର୍ଯ୍ୟ ମହାଶୟଙ୍କ ପୁଣ୍ୟ ସ୍ମୃତିରେ···

ବିନୀତ

ଲେଖକ

# ପ୍ରଥମ ସଂସ୍କରଣର ମୁଖବନ୍ଧ

ଗୋପବନ୍ଧୁ ଏ ଜାତିର ଇତିହାସରେ ଏକ ଦିବ୍ୟ ମହିମାମୟ ଅଧ୍ୟାୟ । ସେ ଅଧ୍ୟାୟ ହୁଏତ ଏବେ ଜୀବନ୍ତ ରୂପେ ପ୍ରତିଭାତ ହେଉନାହିଁ । ମାତ୍ର ସେ ଅଧ୍ୟାୟ ଏ ଜାତିକୁ ଦେଇଯାଇଛି ଏକ ଦୀପକ ମନ୍ତ୍ର, ରଖିଯାଇଛି ଏକ ନୂତନ ମୂଲ୍ୟବୋଧ । ଗୋପବନ୍ଧୁଙ୍କ ଜୀବନୀ ଏକ ଜୀବନ୍ତ ଇତିହାସ ।

ଜନ୍ମଭୂମିର ସଂସ୍କୃତିରେ ଗୋପବନ୍ଧୁ ମୁଗ୍ଧ ହୋଇଥିଲେ । ଏ ପ୍ରେରଣା ତାଙ୍କୁ ଉଦ୍‌ବୁଦ୍ଧ କରିଥିଲା । ଜନ୍ମଭୂମିର ଦୁର୍ଦ୍ଦଶାରେ ସେ କ୍ଷୁବ୍ଧ ହୋଇଥିଲେ । ଏ ବେଦନା ତାଙ୍କୁ ଅଭିଭୂତ କରିଥିଲା । ଏ ସଂସ୍କୃତି ଉଦ୍ଧାର କରିବାକୁ ହେବ, ଏ ଦୁର୍ଦ୍ଦଶା ମୋଚନ କରିବାକୁ ହେବ—ଏହା ହିଁ ଥିଲା ତାଙ୍କ ଜୀବନର ପୁଣ୍ୟବ୍ରତ । ସେ ଦେଖିଥିଲେ, "ଭାରତ ସରସେ ଉତ୍କଳ କମଳ, ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।" ଜଗନ୍ନାଥ ଦାସଙ୍କ ଭାଗବତ ଥିଲା ତାଙ୍କର ପରମ ଉପାସ୍ୟ । ତାହାରି ଭିତରେ ସେ ପାଇଥିଲେ ମାର୍ଗର ସନ୍ଧାନ, ଜୀବନର ଦର୍ଶନ । ତାଙ୍କର ସକଳ ଚିନ୍ତା, କର୍ମ, ସାଧନା ସେଇ ଦୀକ୍ଷାରେ ଦୀପ୍ତ ହୋଇଥିଲା । ତାଙ୍କର ଲିଖନ, ଭାଷଣ, ସବୁଥିରେ ସେଇ ଦୀକ୍ଷା ପରିସ୍ଫୁଟ । ଏଇ ଭାଗବତରୁ ସେ ଆହରଣ କରିଥିଲେ ଏ ଦେଶ ସଂସ୍କୃତିର ନିର୍ଯ୍ୟାସ ।

ଗୋପବନ୍ଧୁ ଥିଲେ ଏକାନ୍ତ ଧର୍ମପ୍ରାଣ । ସେ ଧର୍ମର ସ୍ୱରୂପ ଥିଲା ସେବା, ନିଷ୍ଠା । ଲୋକସେବା ହିଁ ଥିଲା ତାଙ୍କର ଧର୍ମ । ସେଇ ଥିଲା ତାଙ୍କର ଦେବସେବା । ଯେଉଁଠାରେ ଝଡ଼, ବଢ଼ି, ମଡ଼କ, ମହାମାରୀ, ସେଇଠାରେ ଉଭା ଗୋପବନ୍ଧୁ । ଅନାହାର ଘୋଟି ଯାଇଛି; ଘରଆଡ଼େ ହାହାକାର; ମହାମାରୀ ବ୍ୟାପି ଯାଇଛି, ଲୋକେ ଝଡ଼ିପଡ଼ୁଛନ୍ତି । ଛାତ୍ର ଏବଂ ସହକର୍ମୀମାନଙ୍କୁ ସାଙ୍ଗରେ ଧରି ପହଞ୍ଚିବେ ଗୋପବନ୍ଧୁ । ଝଡ଼ ବର୍ଷା ହେଲା; ତାଙ୍କ ଆଖିରୁ ଝରେ ଲୋତକ । ଗାଁ ଗହଳରେ ଲୋକେ କି କଲବଲ ହେଉଥିବେ । ସ୍ତ୍ରୀ ଲୋକଟିଏ ରାଜପଥରେ ବୁଲୁଛି । ପିନ୍ଧିଛି ଖଣ୍ଡିଏ ଅତି ଛିଣ୍ଡା ଲୁଗା । ଚଦର ଖଣ୍ଡିକ ପିନ୍ଧି, ଧୋତିଟିକୁ ତା'ଉପରକୁ ପକାଇ ବାହାରିସିବେ । ଲଜ୍ଜା ନିବାରଣ ସମାଜର ଦାୟିତ୍ୱ । ଗୋଳିଆ ବଢ଼ିପାଣି । ଜୀବଜନ୍ତୁ ମଣିଷଙ୍କର ଶବ ଭାସୁଛି । ଅକୁଣ୍ଠିତ ଚିତ୍ତରେ ସେଇ ଦୂଷିତ ପାଣି ପିଇଦେବେ । ସମସ୍ତେ ଯେ ଏଇ ପାଣିରେ ବଞ୍ଚି ରହିଛନ୍ତି । ଏ ପ୍ରକୃତି-ମାତା । ସକଳ ଦୁଃଖ ଦୁର୍ଦ୍ଦଶା ଭିତରୁ ଯେପରି ଗୋପବନ୍ଧୁଙ୍କର ଜନ୍ମ ।

ତାଙ୍କର ମୃତ୍ୟୁରେ ଆଣ୍ଡ୍ରୁଜ୍ ସାହେବ ଲେଖିଥିଲେ—"ପଲ୍ଲୀବାସୀଙ୍କ ପ୍ରତି ଗୋପବନ୍ଧୁଙ୍କର କରୁଣା ଏକ ଅତି ରମଣୀୟ ପଦାର୍ଥ ।"

ଏହି ସମ୍ପ୍ରତିର ଉଦ୍ଧାର କରିବା ପାଇଁ, ଏ ଦୁର୍ଦ୍ଦଶାରୁ ଉଦ୍ଧାର ପାଇବା ପାଇଁ ଏକାନ୍ତ ଆବଶ୍ୟକ ଶିକ୍ଷାର ପ୍ରସାର । ତାହାଠାରୁ ଅଧିକ ଆବଶ୍ୟକ—ଶିକ୍ଷାର ଆଭିମୁଖ୍ୟ ପରିବର୍ତ୍ତନ କରିବା । ବନ୍ୟାବିପତ୍ତି ବେଳେ କଲେଜ ଛାତ୍ରମାନେ ଥିଏଟର କରୁଥିବାରୁ ସେ ମନ୍ତବ୍ୟ ପ୍ରକାଶ କରିଥିଲେ—'କୂଳ ବୁଡ଼ିଲା ବେଳକୁ ଘୋଡ଼ାମୁହାଁ ପୁଅ ଜନ୍ମ ।' ତାଙ୍କର ଆଦର୍ଶ ଅନୁଯାୟୀ ସ୍କୁଲଟିଏ ଗଢ଼ିବା ପାଇଁ ସେ ଛାତ୍ରାବସ୍ଥାରୁ କଳ୍ପନା କରିଥିଲେ । ସେଇ କଳ୍ପନାରୁ ପ୍ରସୂତ ସତ୍ୟବାଦୀ ସ୍କୁଲ୍ । ଗୋପବନ୍ଧୁଙ୍କର କଳ୍ପନା ଓ ଯୋଜନାର ଶରୀର ଧରି ଜନ୍ମଲାଭ କଲା ସତ୍ୟବାଦୀ ବିଦ୍ୟାଳୟ ୧୯୦୯ ମସିହାରେ । ସେଥିରେ ଖଞ୍ଜାଗଲା ଗୁରୁକୁଳର ଶୃଙ୍ଖଳା । ସେ ହେଲା ସାମ୍ପ୍ରତିକ ଜାଗରଣର ପୀଠ । ଲକ୍ଷ୍ୟ ହେଲା, "ପ୍ରାଚୀ ଗଗନ ଶିରେ, ଭାସି କନକ ନୀରେ, ଆସୁ ତପନ ଉଇଁ ଏ ଉତ୍କଳ ଭୁବନେ" ଆବର୍ତ୍ତିତ ହେବ । ଶିକ୍ଷାର ସକଳ ସ୍ତରରେ ଏ ଦୀକ୍ଷାର ପ୍ରବର୍ତ୍ତନ ହେଲା । ଦ୍ୱିତୀୟ ଅସ୍ତ୍ର—ସମାଜସେବା । ଦୁର୍ଭିକ୍ଷ ମହାମାରୀରେ ଶିକ୍ଷକ ଛାତ୍ର ଦଳବାନ୍ଧି ସ୍ୱେଚ୍ଛାସେବକ ଭାବରେ ବାହାରିପଡ଼ିବେ । ଏ ହେଲା ଶିକ୍ଷାର ଅଙ୍ଗ । ଏ ବିଦ୍ୟାଳୟ ଖାଲି ଛାତ୍ର ଗଢ଼ିବାପାଇଁ ହୋଇନଥିଲା—ଏଥିରେ ଗଢ଼ା ହେଲେ ଛାତ୍ର ଆଉ ଶିକ୍ଷକ । ଅତି ଅଳ୍ପକାଳ ମଧ୍ୟରେ ଏ ସ୍କୁଲର ଖ୍ୟାତି ସାରା ଓଡ଼ିଶାରେ ବ୍ୟାପିଗଲା । ଓଡ଼ିଶା ବାହାରୁ ବହୁ ଲୋକ ଆସିଲେ । ଏ ସ୍କୁଲର ବିଧିବିଧାନ ଦେଖି ମୁଗ୍ଧ ହେଲେ । ଭୂୟସୀ ପ୍ରଶଂସା କଲେ ।

ଗୋପବନ୍ଧୁଙ୍କର ବିରାଟ ବ୍ୟକ୍ତିତ୍ୱରେ ଥିଲା ଚୁମ୍ବକଭଳି ଆକର୍ଷଣୀୟ ଶକ୍ତି । ସେଇ ଶକ୍ତିରେ ମନ୍ତ୍ରମୁଗ୍ଧ ହେଲେ ନୀଳକଣ୍ଠ, ହରିହର, ଗୋଦାବରୀଶ, କୃପାସିନ୍ଧୁ । ତା'ପରେ ପୁଣି ଆସିଲେ ଆହୁରି ଅନେକ । ଏତେ ପଣ୍ଡିତ, ମନସ୍ୱୀ, ନିଷ୍ଠାପର କୃତବିଦ୍ୟ ଯୁବକଙ୍କର ସମାବେଶରେ ସତ୍ୟବାଦୀ ସ୍କୁଲ ଏକ ମହନୀୟ ଅନୁଷ୍ଠାନ ରୂପେ ଉଭାହେଲା । ଗୋପବନ୍ଧୁ ଥିଲେ ଏ ମନ୍ଦିରର ଦଧି-ନଉତି । ସେ ସତ୍ୟବାଦୀ ସ୍କୁଲର ଅବସାନ ହୋଇଯାଇଛି । ନୀଳକଣ୍ଠଙ୍କ ଭାଷାରେ ତାହାର ଶ୍ମଶାନ ଉପରେ ଗଢ଼ାଯାଇଛି ସତ୍ୟବାଦୀରେ ଗୋଟିଏ ହାଇସ୍କୁଲ; ମାତ୍ର ସତ୍ୟବାଦୀ ସ୍କୁଲ ରଖିଯାଇଛି ଶିକ୍ଷାରାଜ୍ୟରେ ଏକ ମହନୀୟ କୃତି । ବାରବାଟୀ ବିଷୟରେ କବି ଲେଖିଛନ୍ତି, 'ଭାଙ୍ଗିଛି ସେ ବାରବାଟୀ, ସେ ଶିଳ୍ପ ଯାଇଛି ଛୁଟି, ରହିଛି ସେ ଯଶ ମିଶି ଜଳେ ସ୍ଥଳେ ପବନେ ।' ସତ୍ୟବାଦୀ ସ୍କୁଲ ପ୍ରତି ଏ ଉକ୍ତି ସର୍ବତୋଭାବେ ପ୍ରଯୁଜ୍ୟ । ପଣ୍ଡିତ ନୀଳକଣ୍ଠ ଜୀବନର ସାୟାହ୍ନରେ ଲେଖିଛନ୍ତି—'ସତ୍ୟବାଦୀ ସ୍କୁଲ ମୋ ପ୍ରତି ଏବେ ବି ଇତିହାସ ନୁହେଁ ।'

ଏହି ସତ୍ୟବାଦୀ ପୀଠରୁ ପ୍ରସୂତ ହେଲା ଏକ ନବ ସାହିତ୍ୟ । ଏ ସାହିତ୍ୟର ଆଧାର ହେଲା ଜାତୀୟ ସମ୍ପ୍ରତିର ଅଭିବ୍ୟକ୍ତି । ଯେଉଁ ଦୀକ୍ଷାରେ ଗୋପବନ୍ଧୁ ପ୍ରଣୋଦିତ ହୋଇଥିଲେ,

ଯେଉଁ ମନ୍ତ୍ରରେ ତାଙ୍କର ସହକର୍ମୀମାନେ ଅନୁପ୍ରାଣିତ ହୋଇଥିଲେ, ପାଣିର ପ୍ରତିଷ୍ଠିତ ସେହି ଭାବରେ ମୁକୁଳିତ ହେଲା ଏ ସାହିତ୍ୟ । ସାହିତ୍ୟିକମାନେ ଏହାକୁ ସତ୍ୟବାଦୀ ଯୁଗ ନାମରେ ଅଭିହିତ କରିଛନ୍ତି । ଗୋପବନ୍ଧୁଙ୍କର କବିତାର ପରିମାଣ ଅଳ୍ପ । ମାତ୍ର ତାହାର ଭିତରେ ଏ ଉଦ୍‌ବୋଧନ ପରିସ୍ଫୁଟ । ଲୋକଙ୍କର ଦୁଃଖ ଦୁର୍ଦ୍ଦଶାର କାହାଣୀ ଉପସ୍ଥାପିତ କରିବା ପାଇଁ, ଅନ୍ୟାୟ ଅତ୍ୟାଚାରର ବିରୁଦ୍ଧରେ ଅଭିଯାନ କରିବାପାଇଁ 'ସମାଜ' ପତ୍ରର ସୃଷ୍ଟି । ସେଥିରେ ଗୋପବନ୍ଧୁ ଯେଉଁ ରଚନାଭଙ୍ଗୀ ପ୍ରବର୍ତ୍ତନ କଲେ, ସେ ଥିଲା ଓଡ଼ିଆ ଗଦ୍ୟ ସାହିତ୍ୟରେ ଏକ ଅଭିନବ ଶୈଳୀ । ଗୋପବନ୍ଧୁ ଥିଲେ ସୁବକ୍ତା । ବିରାଟ ଜନତାକୁ ସେ ହସାଇ ପାରୁଥିଲେ, କନ୍ଦାଇ ପାରୁଥିଲେ, ମନ୍ତ୍ରମୁଗ୍ଧ କରିପାରୁଥିଲେ । ବିହାର-ଓଡ଼ିଶା ବିଧାନସଭାରେ ସେ ସରକାରଙ୍କର କଟୁ ସମାଲୋଚନା କରୁଥିଲେ ; ମାତ୍ର ସେ ଉପସ୍ଥିତ ନ ଥିଲେ ସଭାର ସଭାପତି ଲାଟସାହେବଙ୍କୁ ଆଲୋଚନା ସୁଖ ଲାଗୁ ନଥିଲା । ଏ ସକଳ ବିଭବ, କୃତିତ୍ୱର ମୂଳରେ ଥିଲା ଜାତୀୟ ସଂସ୍କୃତି ପ୍ରତି ଗଭୀର ଅନୁରାଗ ଏବଂ ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତି ଗଭୀର ସମବେଦନା ।

ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ୧୯୨୧ ମସିହାରେ କଂଗ୍ରେସ ଅଧିବେଶନରେ ଯୋଗ ଦେଇ ଗୋପବନ୍ଧୁ ଫେରିଲେ । ତାଙ୍କର ସେଇ ଦୁଇ ମହନୀୟ ଆଦର୍ଶର ସାଧନ ପାଇଁ ଏଇ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବାକୁ ସ୍ଥିର କଲେ । ତା'ପରେ ତାଙ୍କର ପ୍ରାଣର ପ୍ରତିଷ୍ଠାନ ସତ୍ୟବାଦୀ ସ୍କୁଲ । ଗଭୀର ଚିନ୍ତା କରି ନିଷ୍ପତ୍ତି କଲେ ଯେ ସ୍କୁଲକୁ ଜାତୀୟ ବିଦ୍ୟାଳୟରେ ପରିଣତ କରିବାକୁ ହେବ । ମଦନ ମୋହନ ମାଳବ୍ୟ ବନାରସ ବିଶ୍ୱ-ବିଦ୍ୟାଳୟକୁ ନିଖୁଣ ରଖିଲେ । ମାତ୍ର ଗୋପବନ୍ଧୁ ସତ୍ୟବାଦୀ ବିଦ୍ୟାଳୟକୁ ଏହି ଅସହଯୋଗ ଭିତରକୁ ଟାଣିଆଣିଲେ । ଏ ନିର୍ଦ୍ଧାରଣର ଯଥାର୍ଥତା ବିଷୟରେ ସେତେବେଳେ ବିରୁଦ୍ଧ ମତ ପ୍ରକାଶ ପାଇଥିଲା । ଏବେ ମଧ୍ୟ ଅନେକେ କହନ୍ତି, ସ୍ୱାଧୀନତା ଆନ୍ଦୋଳନରେ ଗୋପବନ୍ଧୁ ସତ୍ୟବାଦୀ ସ୍କୁଲଟିକୁ ଜଳାଞ୍ଜଳି ଦେଇଦେଲେ । ମତାମତ ଯାହାହେଉ, ଗୋପବନ୍ଧୁଙ୍କର ହୃଦ୍‌ବୋଧ ହୋଇଥିଲା ଯେ, ତାଙ୍କର ସେହି ଦୁଇଗୋଟି ଆଦର୍ଶର ସାଧନଲାଗି ଆବଶ୍ୟକ ଦେଶର ସ୍ୱାଧୀନତା ଏବଂ ସତ୍ୟବାଦୀ ସ୍କୁଲକୁ ଜାତୀୟ ସ୍କୁଲରେ ପରିଣତ କରିବା ସେଇ ସମରର ଅଙ୍ଗୀଭୂତ ହେବା ହିଁ ଯଥାର୍ଥ ।

ଗୋପବନ୍ଧୁ ଓଡ଼ିଶାରେ କଂଗ୍ରେସର କର୍ଣ୍ଣଧାର ହେଲେ । ଜଣେ ନିଷ୍ଠାପର ସେନାପତି ଭାବରେ ସ୍ୱାଧୀନତା ପଥରେ ଅଗ୍ରସର ହେଲେ । ଭାରତର ଜନନାୟକମାନଙ୍କ ପରି ଦୁଃଖ ଭୋଗିଲେ, ଯାତନା ପାଇଲେ, କାରାଦଣ୍ଡରେ ଦଣ୍ଡିତ ହେଲେ । ତାଙ୍କର କର୍ମକ୍ଷେତ୍ରର କେନ୍ଦ୍ର ସତ୍ୟବାଦୀରୁ ପୁରୀ, ପୁରୀରୁ କଟକ । ସେଠାରୁ ସାରା ଉତ୍କଳ ଏବଂ ଭାରତର ବିଭିନ୍ନ ସ୍ଥାନରେ ବ୍ୟାପ୍ତ ହେଲା । ମାତ୍ର ୧୯୨୮ ମସିହାରେ ସେ ସୁଦୂର ସ୍ଥାନରୁ ଫେରି ଆସିଲେ ଦେହତ୍ୟାଗ କରିବା ପାଇଁ ତାଙ୍କର ସେଇ ଅତି ପ୍ରିୟ ସତ୍ୟବାଦୀ ସ୍କୁଲକୁ । ସେହିଠାରେ ମାତ୍ର ବାଉନ ବର୍ଷ ବୟସରେ ଏହି ବିରାଟ ମହିମାମୟ ଜୀବନର ଅବସାନ ଘଟିଲା ।

ଗୋପବନ୍ଧୁ ବରପୁତ୍ର । ସେ ଏ ଜାତିର ନମସ୍ୟ । ତାଙ୍କର ଜୀବନୀ ଜୀବନ୍ତ ଇତିହାସ । ସେ ଜୀବନୀରେ ଅଛି ଅଫୁରନ୍ତ ଉପାଦାନ । ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ଶତପଥୀ ଏ ମହାପୁରୁଷଙ୍କର ଏକ ପୂର୍ଣ୍ଣାଙ୍ଗ ଜୀବନୀ ପ୍ରଣୟନ କରିବାର ଉଦ୍ୟମ କରିଛନ୍ତି । ବହୁ ଉପାଦାନ ସେ ପ୍ରଥମ କରି ପାଠକମାନଙ୍କ ସମକ୍ଷରେ ଉପସ୍ଥାପିତ କରିଛନ୍ତି । ଜୀବନୀ ପ୍ରଣୟନରେ ସେ ପୂର୍ବରୁ ସୁନାମ ଅର୍ଜନ କରିଛନ୍ତି । ମୁଁ ତାଙ୍କୁ ମୋର ଶୁଭେଚ୍ଛା ଜ୍ଞାପନ କରୁଛି । ତାଙ୍କର ବହୁ ଶ୍ରମରେ ସମ୍ପାଦିତ ଏହି ପୁସ୍ତକ—'ହେ ସାଥି ! ହେ ସାରଥି' ନିଶ୍ଚୟ ବିଶେଷ ଭାବରେ ଆଦୃତ ହେବ ।

ବାଣୀବିହାର
ଜୁନ୍, ୧୯୬୯

ସଦାଶିବ ମିଶ୍ର
କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

# ପ୍ରଥମ ସଂସ୍କରଣରେ ମୋର ବକ୍ତବ୍ୟ

ତାଙ୍କର ପ୍ରତ୍ୟେକ ମୁହୂର୍ତ୍ତ, ପ୍ରତିଟି କଥା, ଆଳାପ ଆଲୋଚନାସବୁ ମୋ' ପାଇଁ ମହାନ୍ କାବ୍ୟିକ ସତ୍ୟରୂପେ ଠିଆହୋଇଛୁ । ତେଣୁ କେଉଁ ଅଂଶକୁ ବାଦ୍‌ଦେବ, କାହାକୁ ଲେଖିବ, କଏ ଶ୍ରେଷ୍ଠ ମାମୁଲି କଥା ଆଉ ତାଙ୍କ ଜୀବନର କେଉଁଟି ବିଶିଷ୍ଟ ବଡ଼ କଥା—ଏ ବାଛ ବିଚାର କମେ ମୋ ପକ୍ଷେ ସାଧାତୀତ ବ୍ୟାପାର ହୋଇପଡ଼ୁଛୁ । ତେଣୁ ଅନେକ ଘଟଣାର ପ୍ରଲୋଭନକୁ ଏଡ଼ାଇ ନପାରି ମୁଁ ଏ ଜୀବନୀ ପୁସ୍ତକରେ ସଂଯୋଜିତ କରୁଛି । ସେଇ ମହାନ୍ ମଣୀଷର ବହୁ ମୂଲ୍ୟବାନ୍ ମୁହୂର୍ତ୍ତ ଓ କୃତ ତଥାପି ଯେ ଅଲେଖା ନ ରହୁଛି ଏହା କହିବାର ଦୁଃସାହସ ମୋର ନାହିଁ । ମୋ ଆଖିରେ ଗୋପବନ୍ଧୁ ଏକ ମହାନ୍ କାବ୍ୟଗ୍ରନ୍ଥ, ଓଡ଼ିଶାର ଏକ ବିପୁଳ ପୌରାଣିକ ସମ୍ପତ୍ତି । ପୁରାଣପରି ତାହା ସତ୍ୟ ଓ ସନାତନ; ପ୍ରାଣର ସାର୍ବଜନୀନ ଆବେଗରେ ଓ ଜୀବନର ଶାଶ୍ୱତ ଅର୍ଘ୍ୟରେ ଏ ଜୀବନ ଓଡ଼ିଆ ଜାତିର ଖଣ୍ଡିତ ଇତିହାସରେ ଏକ ଦୃପ୍ତ ଆଗ୍ନେୟ ବିଶ୍ୱାସ । ସମୟର ବିସ୍ମୃତି ଏ ଜୀବନର ମହାନତାକୁ ଅନ୍ତକ୍ଷେପ ଦେଇପାରିବନାହିଁ, ଅପହ୍ରାସ କରିପାରିବ ନାହିଁ ।

ମୁଁ ଗୋପବନ୍ଧୁଙ୍କ ସମସାମୟିକ ନୁହେଁ; ତେଣୁ ତାଙ୍କ ସଖ୍ୟରେ ଆସିବାର ସୁଯୋଗ ମୋର ନ ଘଟିଥିବା ସ୍ୱାଭାବିକ । ତାଙ୍କ ସମ୍ପର୍କରେ ଆସିଥିବା ବହୁ ବ୍ୟକ୍ତି, ତାଙ୍କ ବନ୍ଧୁ, ସମସାମୟିକ ସମାଜସେବୀ ବହୁ ଲୋକଙ୍କ ଖଣ୍ଡିତ ସ୍ମୃତି ଉପରେ ମୋତେ ବେଶି ଭରସା କରିବାକୁ ହୋଇଛି । ତନ୍ମଧ୍ୟରୁ ପରମ ପୂଜନୀୟ ଋଷିପ୍ରତିମ ଆଚାର୍ଯ୍ୟ ହରିହର ମୋର ଚିର ନମସ୍ୟ । ସାଧନାର ନୀରବତାରେ ଓ ନିଷ୍ଠାର ମହାନତାରେ ଚିର ଦେଦୀପ୍ୟମାନ ତାଙ୍କ ଜୀବନ । ସେ ତ୍ରିଶ ବର୍ଷ ତଳେ ଏକ ପୂଜାବକାଶରେ ଅତି ଆନନ୍ଦରେ ତାଙ୍କ ଆଶ୍ରମ (ପୁରୀ ଗୋପବନ୍ଧୁ ଭବନ)ରେ ମୋତେ ସ୍ଥାନଦେଇ ଯେତେବେଳେ ଯାହା ତାଙ୍କ ମନେ ପଡ଼ିଲା, ତା' ଲେଖିବାର ସୁଯୋଗ ଦେଲେ । ଗୁଲୁ ଗୁଲୁ ଗପ କରୁ କରୁ, ମୁଢ଼ି ଓ ଚୂଡ଼ା ଭଜା ଖାଉ ଖାଉ ସେ ବହୁ ଘଟଣା ମନେପକାଇ ମୋତେ ଡାକୁଥିଲେ । ସେ ସବୁ ଏ ପୁସ୍ତକ ଲେଖାରେ ମୋର ପ୍ରଥମ ପୁଞ୍ଜି ଓ ସମ୍ବଳ ହୋଇଛି । ମୁଁ ତାଙ୍କ ପାଖରେ ଅତିମାତ୍ରାରେ ଋଣୀ ଓ କୃତଜ୍ଞ ।

ଏହା ମଧ୍ୟରେ ଶ୍ରୀଯୁକ୍ତ ରାମ ବାରିକଙ୍କ ସ୍ମୃତିର ବିଚ୍ଛିନ୍ନାଂଶକୁ ନେଇ କୃତୀ ସାହିତ୍ୟିକ ଶ୍ରୀ ଗୋପୀନାଥ ମହାନ୍ତିଙ୍କ 'ଉତ୍କଳମଣି' ପୁସ୍ତକଟି ପ୍ରକାଶିତ ହୋଇଛି । ସେଥିରେ ଘଟଣାର କେତେକ କ୍ରମ ଓ କାଳର ଐତିହାସିକ ଭ୍ରମକୁ ବାଦ୍‌ଦେଲେ ଜଣେ ସେବକର ପ୍ରାଣଭରା

ଖୁବ ବେଶ୍ ପ୍ରକଟିତ । ମୁଁ ଏ ବହିରୁ ଅନେକ ସାହାଯ୍ୟ ପାଇଛି । ସଂଗ୍ରାହକ ଓ ଲେଖକ ଶ୍ରୀଯୁକ୍ତ ମହାନ୍ତିଙ୍କ ପାଖରେ ମୁଁ ବେଶ୍ କୃତଜ୍ଞ ।

ସ୍ୱର୍ଗତ ପଣ୍ଡିତ ନୀଳକଣ୍ଠଙ୍କ 'ଆତ୍ମଜୀବନୀ' ଲେଖିବାରେ ମୁଁ ୮ ମାସ ୨୦ ଦିନ ସଂପୃକ୍ତ ଥିଲି । ସତ୍ୟବାଦୀର ଜମାବଲୁପ୍ତ ଆଲେକପିଣ୍ଡ, ନିଷ୍ପ୍ରଭ, ମ୍ରିୟମାଣ, ରୋଗାକ୍ରାନ୍ତ ପୂଜ୍ୟ ପଣ୍ଡିତଜୀଙ୍କ ପାଖରେ ବସି ତାଙ୍କର ଅସୁସ୍ଥତାଜନିତ ଗାଳି ତାଡ଼ନା ସହି ୧୯୬୨ ମସିହାରେ ଏ ଯେଉଁ ପାଣ୍ଡୁଲିପିଟି ତାଙ୍କ 'ଆତ୍ମଜୀବନୀ' ନାମରେ ଗଢ଼ି ଥୋଇଲି, ତାହା ମୋର ସ୍ମୃତି ଓ ସଜ୍ଞାନ ସଚେତନତାକୁ ଉତ୍କଳମଣି ଗୋପବନ୍ଧୁଙ୍କ ପୂର୍ଣ୍ଣାଙ୍ଗ ଓ ପରିପୂର୍ଣ୍ଣ ଜୀବନୀ ଲେଖିବାକୁ ବହୁବାର ଅନୁପ୍ରେରିତ କରିଛି । ଏ ଜୀବନୀ ପ୍ରକାଶ ପାଇବା ପୂର୍ବରୁ ପଣ୍ଡିତ ନୀଳକଣ୍ଠ ଇହଜଗତରୁ ବିଦାୟ ନେଇଛନ୍ତି । ମୁଁ ତାଙ୍କ ପାଖରେ ଅତିମାତ୍ରାରେ ଋଣୀ ।

ସ୍ୱର୍ଗତ ପଣ୍ଡିତ ଗୋଦାବରୀଶଙ୍କ ଆତ୍ମଜୀବନୀ—'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ' ମୋତେ ବହୁ ଉପାଦେୟ ତଥ୍ୟ ଯୋଗାଇ ଦେବାରେ ସାହାଯ୍ୟ କରିଛି । କାହାନ୍ତି ସେ ମହାତ୍ମା—ଆହା, ଥରେ ସୀମା ଆନ୍ଦୋଳନ ବେଳେ ୧୯୫୬ରେ ତାଙ୍କୁ ଦେଖିଥିଲି । ପୁଣି ସେଇ ବର୍ଷ ତାଙ୍କ ଶବାଧାର ସହିତ ଅଶ୍ରୁ ଆକୁଳିତ ଜନତା ଗଲାବେଳେ ତାଙ୍କ 'ଗାରେ ଧଳା ନିଶ' ଓ କବିତା 'କାଳିଜାଈ' ମୋର ସ୍ମୃତିକୁ ଉଜ୍ଜ୍ୱଳ କରୁଥିଲା । ସେ ଜଳପୋଡ଼ି ପାଉଁଶ ହୋଇଗଲେ । ନିଃଶେଷିତ ସ୍ମୃତିର ଅବଶିଷ୍ଟାଂଶ ଆମ ପରି ତରୁଣମାନଙ୍କ ସ୍ମୃତିର ସରହଦରେ ବାରମ୍ବାର ପହଁରିବ ମାରିଲା ।

ଆଉ ଜଣେ ସତ୍ୟବାଦୀର ସ୍ତମ୍ଭ—ତାଙ୍କୁ ଦେଖିନି, କିନ୍ତୁ ତାଙ୍କ ପ୍ରତି ଅତି ଆସକ୍ତ ହୋଇପଡ଼ିଛି—ଶ୍ରୀଯୁକ୍ତ ଚନ୍ଦ୍ରଶେଖର ମିଶ୍ର—ତାଙ୍କର 'ସତ୍ୟବାଦୀରେ ସାତ ବର୍ଷ' ପୁସ୍ତକରୁ ବହୁତଥ୍ୟ ନୀଳକଣ୍ଠଙ୍କ ଆତ୍ମଜୀବନୀ ପାଇଁ ସେତେବେଳେ ସାଉଁଟିଥିଲି । ଏବେ ଗୋପବନ୍ଧୁଙ୍କ ଜୀବନୀ 'ହେ ସାଥି ! ହେ ସାରଥି !' ପାଇଁ ଏଥିରୁ ମଧ୍ୟ ବହୁ ତଥ୍ୟ ନେଇଛି । ତାଙ୍କ ପାଖରେ ମୋର ଭକ୍ତିବିନୀତ ଶ୍ରଦ୍ଧାଞ୍ଜଳି ଜ୍ଞାପିତହେଲା ।

ପୁଣି ସୁଯୋଗ୍ୟ ସମାଲୋଚକ ଶ୍ରୀ ଚିନ୍ତାମଣି ଦାସ—ପୁରୀର ଶ୍ରୀରାମଚନ୍ଦ୍ରପୁର ଶାସନ ଏକ ନିଃସର୍ଗ ଆଶୀର୍ବାଦର ପୀଠ । ସେଠାରେ ଓଡ଼ିଶାର ବହୁ ଦେଶସେବୀ, ରଥୀ ଓ ସାରଥି ଜନ୍ମ ନେଇଛନ୍ତି । ସେମାନଙ୍କ ବିପୁଳ କୃତିକୁ ଉଖାରି ନିଖାରି ଆଖିରେ ପ୍ରକଟିତ କରିଛନ୍ତି ଅଧ୍ୟାପକ ଶ୍ରୀଯୁକ୍ତ ଦାସ । ତାଙ୍କ 'କବି ଗୋପବନ୍ଧୁ' ପୁସ୍ତକ ଓଡ଼ିଆ ସାହିତ୍ୟର ସମାଲୋଚନା ଇତିହାସରେ ଏକ ମୂଲ୍ୟବାନ୍ ସୂଚୀପତ୍ର । ମୁଁ କେତେକ ତଥ୍ୟ ସେଥିରୁ ପାଇଛି—ତାଙ୍କୁ ଅଶେଷ ଧନ୍ୟବାଦ ।

ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି—ଆଗ୍ରହୀ ମହାଶୟଙ୍କ ପାଖରେ ତ୍ୟାଗର ସଳିତା ଜାଳି ପଡ଼ିରହିଛନ୍ତି । ତାଙ୍କ ନିଷ୍ଠା ଓ କର୍ତ୍ତବ୍ୟପରାୟଣତା ମୋତେ ବିସ୍ମିତ କରିଛି । ତାଙ୍କ ସଦସ୍ୟ

ସହଯୋଗ ମୋ ପାଇଁ ଏକ ଚିରସ୍ମରଣୀୟ ବ୍ୟାପାର । ଋଷି ସଚ୍ଚିଦାନନ୍ଦଙ୍କୁ ମୁଁ କି ଭାଷାରେ ମୋର ଆନ୍ତରିକତା ଜଣାଇବି, ଜାଣେନାହିଁ ।

ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ ଇଂରାଜୀ ପୁସ୍ତକ 'Pandit Gopabandhu' ମୋତେ ବହୁ ତଥ୍ୟ ଯୋଗାଇବାରେ ସାହାଯ୍ୟ କରିଛି । ବିଶେଷତଃ ମୋ ପୁସ୍ତକର ଘଟଣାବଳୀକୁ କାଳର କ୍ରମ ଅନୁସାରେ ସଜାଇବା ପାଇଁ ଏ ବହି ଅତି ଉପାଦେୟ ଭାବରେ ଠିଆ ହୋଇଛି । ମୋର ଯେପରି ମନେହୁଏ, ଗୋପବନ୍ଧୁଙ୍କୁ ଓଡ଼ିଶା ବାହାରେ ପରିଚିତ କରାଇବାରେ ଡକ୍ଟର ଦାଶଙ୍କର ଏ ପ୍ରଚେଷ୍ଟା ଏଣିକି ଏହିପରି ବହୁ ଉଦ୍ୟମର ପଥିକୃତ୍ ହେବ । ତାଙ୍କୁ ମୋର ସଶ୍ରଦ୍ଧ କୃତଜ୍ଞତା ଜଣାଉଛି ।

ପୁଣି ଶ୍ରୀଯୁକ୍ତ ଭଗୀରଥି ମହାପାତ୍ର—ଏକଦା ଗୋପବନ୍ଧୁଙ୍କ ରାଜନୈତିକ ଜୀବନର ସାଥୀ ଓ ଭାଗୀଦାର, ଓଡ଼ିଶା କଂଗ୍ରେସ କମିଟିର ପ୍ରଥମ ସମ୍ପାଦକ, ତାଙ୍କର ସମସ୍ତ ଜଞ୍ଜାଳ ସତ୍ତ୍ୱେ ମୋତେ ଗୋପବନ୍ଧୁଙ୍କ ଜେଲ୍ ଜୀବନ ସମ୍ବନ୍ଧରେ ବହୁ ତଥ୍ୟ ଯୋଗାଇ ଦେଇଅଛନ୍ତି । ତାଙ୍କ ପ୍ରତି ଗୋପବନ୍ଧୁଙ୍କ ଅନ୍ତରରେ ଅତୁଟ ସ୍ନେହ ଓ ଶ୍ରଦ୍ଧା ଭରିରହିଥିଲା । ସେ ତାଙ୍କ କର୍ତ୍ତବ୍ୟ କରିଛନ୍ତି ଓ ମୋତେ ତାଙ୍କ ଆତ୍ମ-ଶ୍ଳାଘାହୀନ ବ୍ୟକ୍ତିତ୍ୱରେ ଆସକ୍ତ କରିଛନ୍ତି—ମୁଁ ତାଙ୍କ ପାଖରେ ଋଣୀ ରହିବି ।

'ସମାଜ'ର ସମ୍ପାଦକ, ଗୋପବନ୍ଧୁଙ୍କ ପରବର୍ତ୍ତୀ କର୍ମୀ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ପାଖକୁ ବହୁବାର ଯାଇ ତାଙ୍କଠାରୁ କିଛି ସାହାଯ୍ୟ ପାଇଲି ନାହିଁ । ଅନ୍ତତଃ ୧୯୧୯ ଠାରୁ ଗୋପବନ୍ଧୁଙ୍କ ବିୟୋଗ ପର୍ଯ୍ୟନ୍ତ ତାଙ୍କର ବହୁ ମୂଳ ହାତଲେଖା ଓ ଭାଷଣ ତାଙ୍କ ପାଖରେ ସଞ୍ଚିତ ରହିଛି ବୋଲି ଲୋକେ କହନ୍ତି । ସେ ମୋତେ ନିରାଶ କରିବାରେ ମୁଁ ଆଚାର୍ଯ୍ୟ ମହାଶୟଙ୍କୁ ଏ କଥା ପ୍ରସଙ୍ଗକ୍ରମେ ଜଣାଇବାରୁ ଋଷି ସାଧକ ଆଚାର୍ଯ୍ୟ ମହାଶୟ ଅତ୍ୟନ୍ତ ଦୁଃଖିତ ହେଲେ ।

ଆଉ ଯେଉଁମାନଙ୍କ ଖଣ୍ଡିତ ସ୍ମୃତି ଓ ଅନୁଭୂତି ଏ ଜୀବନୀ ସଙ୍କଳନରେ ସହାୟତା କରିଛି; ମୁଁ ସେସବୁ ଯେତେଦୂର ସମ୍ଭବ ସ୍ଥାନାନ୍ତରରେ ସ୍ୱୀକାର କରିଛି । ସେ ସମସ୍ତଙ୍କୁ ମୋର ଆନ୍ତରିକତା ଜଣାଉଛି ।

ପୁନଶ୍ଚ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର ସଦାଶିବ ମିଶ୍ର ବହୁ ଧୈର୍ଯ୍ୟର ସହିତ ପୁସ୍ତକଟିକୁ ଅଧ୍ୟୟନ କରି ମୁଖବନ୍ଧ ଲେଖିଦେଇଛନ୍ତି । ସତ୍ୟବାଦୀ ବକୁଳ କୁଞ୍ଜଅନା ବଣର ସ୍ମୃତି ତାଙ୍କ ଚିନ୍ତାରେ ଅତି ଜୀବନ୍ତ, ସେ ସେହି ପୁଣ୍ୟପୀଠର ଜଣେ ଅନ୍ତେବାସୀ । ଏ ଦୃଷ୍ଟିରୁ ତାଙ୍କ କର୍ତ୍ତବ୍ୟ ସେ ତୁଲାଇଛନ୍ତି । ମୁଁ କେଉଁ ଭାଷାରେ ବା ମୋର ଆନ୍ତରିକତା ଜଣାଇପାରିବି ?

ଶେଷରେ ମୋର ପରମପୂଜ୍ୟ ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାଶ ଏ ପୁସ୍ତକଟିକୁ ତୁରନ୍ତ ଲେଖି ପ୍ରକାଶ କରିବା ପାଇଁ ମୋତେ ସବୁବେଳେ ଉଦ୍‌ବେଳିତ କରିଛନ୍ତି । ତାଙ୍କ ପ୍ରେରଣା ବିନା ଏ ପରମ ଜାତୀୟ କର୍ତ୍ତବ୍ୟ ସମାପ୍ତ ହୋଇପାରି ନଥାନ୍ତା । ସେ

ପାଣ୍ଡୁଲିପିଟିକୁ ଦେଖିଛନ୍ତି ଓ ସ୍ଥଳବିଶେଷରେ ସଂଶୋଧନ ମଧ୍ୟ କରିଦେଇଛନ୍ତି । ଏ ପୁସ୍ତକ ଆଜ ପ୍ରକାଶ ପାଉଛି—ସେ ସବୁଠାରୁ ବେଶୀ ଆନନ୍ଦିତ ହେବେ । ସେହି ଆନନ୍ଦ ଓ ଶ୍ରଦ୍ଧାହିଁ ମୋର ସମ୍ବଳ ।

ମୋ ଜୀବନର ସୁଦିନ ଓ ଦୁର୍ଦ୍ଦିନର ସାଥୀ, ବନ୍ଧୁ ସମସ୍ତ ଓ ଅସମୟର ପରାମର୍ଶଦାତା ଶ୍ରୀମତୀ ପ୍ରଭାବତୀ ଶତପଥୀ—ଏ ପୁସ୍ତକ ଲେଖାରେ ମୋତେ ଅକୁଣ୍ଠିତ ସାହାଯ୍ୟ ସବୁବେଳେ ଦେଇଛନ୍ତି । ଘରକରଣା ଓ ଅଧ୍ୟାପନାର ଜଞ୍ଜାଳ ଭିତରେ ସେ ଏ ପୁସ୍ତକକୁ ଲେଖିବାରେ ଓ ସଜାଡ଼ିବାରେ ମୋତେ ଦୀର୍ଘଦିନ ଧରି ସାହାଯ୍ୟ କରିଛନ୍ତି ।

କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍‌ର ସଞ୍ଚାଳକ ଶ୍ରୀଯୁକ୍ତ ଅନନ୍ତ ମିଶ୍ର ଏ ପୁସ୍ତକର ପ୍ରକାଶନ ଓ ମୁଦ୍ରଣ ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ । ଓଡ଼ିଆ ପୁସ୍ତକ ପ୍ରକାଶନ ଦିଗରେ ସେ ବହୁ ନୂତନ ପରୀକ୍ଷା ଓ ପ୍ରୟୋଗ ଚଳାଇଛନ୍ତି ।

୧୯୬୫ ମସିହା ସାକ୍ଷୀଗୋପାଳଠାରେ ପୁଣ୍ୟାତ୍ମା ଉତ୍କଳମଣି ଗୋପବନ୍ଧୁଙ୍କ ଶ୍ରାଦ୍ଧ ଦିବସରେ ଉପସ୍ଥିତ ଜନତା ଗୋପବନ୍ଧୁଙ୍କର ଗୋଟିଏ ପୂର୍ଣ୍ଣାଙ୍ଗ ଜୀବନୀ ପ୍ରକାଶନ ପାଇଁ ଦାବୀ କରିଥିଲେ । ମୁଁ ଆସକ୍ତି ଓ ଭାବପ୍ରବଣତାରେ ପ୍ରତିଶ୍ରୁତି ଦେଇଥିଲି—"ଦୁଇ ବର୍ଷ ମଧ୍ୟରେ ଏଇ ନେହୋତ୍ସବ ପୁଣ୍ୟଦିନ ମୁଁ ଏ ଜୀବନୀ ଆପଣମାନଙ୍କ ହାତରେ ଦେଇ ପାରିବି ।" ଦୁଇ ବର୍ଷ ଦ୍ୱିଗୁଣିତ ହୋଇ ଚାରି ବର୍ଷ ହୋଇଗଲା । ମୋର କର୍ତ୍ତବ୍ୟ ତୁଲାଇବାରେ ମୁଁ କେତେଦୂର ସଫଳ ହୋଇଛି ସେମାନେ ଓ ଦେଶବାସୀ ବିଚାର କରିବେ । ମୋର କହିବାର ଏତିକି ।

ଜୁନ୍ ୧୫ ତାରିଖ, ୧୯୬୯ ମସିହା

ଶ୍ରୀ ନିତ୍ୟାନନ୍ଦ ଶତପଥୀ

# ସଂଶୋଧିତ ଦ୍ୱିତୀୟ ସଂସ୍କରଣର ବକ୍ତବ୍ୟ

ଦୀର୍ଘଦିନର ବ୍ୟବଧାନ ପରେ ଉତ୍କଳମଣି ଗୋପବନ୍ଧୁଙ୍କ ଶତବାର୍ଷିକ ଜୟନ୍ତୀ ଉତ୍ସବର ପ୍ରାକ୍-କାଳରେ ପୁନଶ୍ଚ 'ହେ ସାଥି ! ହେ ସାରଥି !'ର ସଂଶୋଧିତ ଦ୍ୱିତୀୟ ସଂସ୍କରଣ ପ୍ରକାଶପାଉଛି । ଏହା ମୋ ପାଇଁ ଅତ୍ୟନ୍ତ ଆନନ୍ଦର ବିଷୟ । ପ୍ରାୟ ୧୯୬୧ ମସିହାରୁ ଏହି ପୁସ୍ତକଟି ଆଉ ବଜାରରେ ମିଳୁନଥିଲା । ଓଡ଼ିଶାର ପୁରପଲ୍ଲୀର ବହୁ ଶିକ୍ଷକ ବନ୍ଧୁ ଓ ମୋର ଶୁଭାନୁଧ୍ୟାୟୀ ଗୁରୁଜନମାନେ ଏହାର ପୁନଃ ପ୍ରକାଶନ ପାଇଁ ବାରମ୍ବାର ଦାବୀ କରିଛନ୍ତି । ମୁଁ କିନ୍ତୁ ନିଜେ ଏହାର ପୁନର୍ଜନ୍ମ ତାରିଖ ସମ୍ପର୍କରେ ସମ୍ପୂର୍ଣ୍ଣ ସନ୍ଦିଗ୍ଧ ଥିଲି । କାରଣ ବ୍ୟୟବହୁଳ ପୁସ୍ତକ ପ୍ରକାଶନ ଶିଳ୍ପ ଅନେକ କାରଣରୁ ଗତ କେତେବର୍ଷ ଧରି ଖୁବ୍ ବଡ଼ ସଙ୍କଟର ଯେ ସମ୍ମୁଖୀନ ହୋଇଛି ଏକଥା ପ୍ରତ୍ୟେକ ପ୍ରକାଶକ ଓ ଲେଖକ ଅଙ୍ଗେ ନିଭାଉଛନ୍ତି । ବୋଧହୁଏ ଏହି କାରଣରୁ ଏହାର ପୁନଃପ୍ରକାଶନ ବିଳମ୍ବିତ ହେଲା । କିନ୍ତୁ ଏ ସମ୍ପର୍କରେ ଲେଖକ ବିଚରାର ଅସହାୟତା ପ୍ରକାଶ ବ୍ୟତୀତ ଆଉ କ'ଣ କୈଫିୟତ ଥାଇପାରେ ? ଏଇ ଅସହାୟତା କ୍ରମେ ତୀବ୍ର ଉଦାସୀନତାରେ ପରିଣତ ହେଉଥିବାବେଳେ କେ ମହାପାତ୍ର ଏଣ୍ଡ୍ କୋ: ପ୍ରକାଶନ ସଂସ୍ଥାର ଉତ୍ସାହୀ ସଞ୍ଚାଳକ ବନ୍ଧୁ ଶ୍ରୀ ନବକିଶୋର ମହାପାତ୍ର ଅତି ଆଗ୍ରହର ସହିତ ଏହାର ପ୍ରକାଶନ ଦାୟିତ୍ୱ ବହନକରିନେଲେ । ତାଙ୍କ ମତରେ ଏହା ଏକ ପରମ ଜାତୀୟ କର୍ତ୍ତବ୍ୟ । ଏ ଜାତୀୟ କର୍ତ୍ତବ୍ୟ ଅତୀତରେ ଏହାର ୧ମ ସଂସ୍କରଣର ପ୍ରକାଶନ ଭାର ବହନକରି କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ସଂସ୍ଥା ତୁଲାଇଥିଲେ । ଏବେ ଏହି ସଂଶୋଧିତ ସଂସ୍କରଣର ପ୍ରକାଶନ ଓ ମୁଦ୍ରଣ ଦାୟିତ୍ୱ ବହନ କଲେ କେ. ମହାପାତ୍ର ଏଣ୍ଡ୍ କୋ· ପ୍ରକାଶନ ସଂସ୍ଥା । ଏ ଉଭୟେ ତେଣୁ ମୋର ଆନ୍ତରିକ କୃତଜ୍ଞତାଭାଜନ ହୋଇ ରହିବେ ।

୧୯୭୬ ଅକ୍ଟୋବର ଠାରୁ ୧୯୭୭ ଅକ୍ଟୋବର ଏକବର୍ଷ ବ୍ୟାପୀ ଓଡ଼ିଶାର ପୁରପଲ୍ଲୀ ନଗର ଜନପଦ, ସହର ଓ ଶିଳ୍ପାଞ୍ଚଳ, ସର୍ବତ୍ର ଉତ୍କଳମଣି ଗୋପବନ୍ଧୁଙ୍କ ଜୟନ୍ତୀଶତକ ପାଳିତ ହେବାର ଉଦ୍ୟମ ହେଉଛି । ଏହା ଆମ ଜାତୀୟ ଜୀବନରେ ନିଶ୍ଚିତଭାବେ ଏକ କମ୍ପନ (commotion) ସୃଷ୍ଟି କରିବ । ଏହାକୁ ଯେତେ ନିଷ୍ଠା ଓ ଯଥାର୍ଥତାର ସହିତ ଏ ଜାତି ପାଳନ କରିପାରିବ ତାହାହିଁ ଏ ଜାତିର ଗର୍ବ ଓ ଗୌରବର ସ୍ମାରକୀ ହେବ । ସେଥିପାଇଁ ସରକାରୀ ଓ ସ୍ୱେଚ୍ଛାସେବୀ ସଂସ୍ଥାମାନେ ଖୁବ୍ ତତ୍ପର ହୋଇ ଉଠିଛନ୍ତି । ସେମାନଙ୍କୁ ଏହି ଉଦ୍ୟମ ପାଇଁ ଆନ୍ତରିକ ସାଧୁବାଦ ଜଣାଉଛି । ପ୍ରଥମ ସଂସ୍କରଣର ସମୀକ୍ଷକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ନିକଟରେ ଉତ୍କଳମଣିଙ୍କ ଜୀବନୀ (ଅର୍ଦ୍ଧାଂଶ) ପ୍ରକାଶ କରିଛନ୍ତି । ମୁଁ ତାଙ୍କ ସାଧୁ ଉଦ୍ୟମ ପାଇଁ ଧନ୍ୟବାଦ ଜଣାଉଛି । ଉତ୍କଳମଣିଙ୍କ ସମ୍ପର୍କରେ ଆହୁରି

ଅନେକ ଅଜ୍ଞାତ ତଥ୍ୟ ତଥାପି ଏଯାବତ୍ ଉନ୍ମୋଚିତ ହୋଇପାରିନାହିଁ । ଆଶା କରାଯାଏ ରାଜ୍ୟ ସରକାରଙ୍କ ଶତବାର୍ଷିକୀ କମିଟୀ ତରଫରୁ ଏଥିପାଇଁ ଏକ ସଫଳ ଉଦ୍ୟମ ହେବ ।

ଏ ପୁସ୍ତକ ପୁନଃମୁଦ୍ରିତ ହୋଇ ଲୋକଲୋଚନକୁ ଆସିଲାବେଳକୁ ପୁଣ୍ୟାତ୍ମା ଆଚାର୍ଯ୍ୟ ମହାଶୟ ଆଉ ଇହଜଗତରେ ନାହାନ୍ତି । ତାଙ୍କର ସ୍ମୃତିରେ ଏହି ଦ୍ୱିତୀୟ ସଂଶୋଧିତ ସଂସ୍କରଣ ପୁନର୍ବାର ସମର୍ପିତ ହେଲା ।

ଅକ୍ଟୋବର, ୧୯୭୬ — ଶ୍ରୀ ନତ୍ୟାନନ୍ଦ ଶତପଥୀ

# ତୃତୀୟ ସଂସ୍କରଣର ମୁଖବନ୍ଧ

ପ୍ରାୟ ଆଠବର୍ଷଧରି ଦୁଷ୍ପ୍ରାପ୍ୟ 'ହେ ସାଥି, ହେ ସାରଥି !' ଗ୍ରନ୍ଥଟିର ତୃତୀୟ ସଂସ୍କରଣ ଚଳିତବର୍ଷ ଶେଷ ଭାଗରେ ପ୍ରକାଶ ପାଇବାକୁ ଯାଉଛି । ମୋ ପାଇଁ ଓ ଅନୁରାଗୀ ପାଠକବର୍ଗଙ୍କ ପାଇଁ ଏହା ଏକାନ୍ତ ଆନନ୍ଦର ବିଷୟ । ଦ୍ୱିତୀୟ ସଂସ୍କରଣର ପ୍ରକାଶକ ପୁସ୍ତକଟିର ପୁନଃ ପ୍ରକାଶନ ପାଇଁ ଆଗ୍ରହ ପ୍ରକାଶ ନକରିବାର କାରଣ ହେଲା ଶଂସିତ ସଂସ୍ଥା ପୁସ୍ତକ ପ୍ରକାଶନ ପ୍ରାୟ ବନ୍ଦ କରିଦେଇ କେବଳ ପତ୍ରପତ୍ରିକା ପ୍ରକାଶନରେ ମନୋନିବେଶ କରିଛନ୍ତି । ଏପରି ସ୍ଥଳେ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଜୀବନୀପାଠରୁ ଓଡ଼ିଶାର ଆଗ୍ରହୀ ପାଠକମାନେ ବଞ୍ଚିତ ହୋଇଥିବା ମୋ ପାଇଁ ଏକ ଦୁଃସମ୍ବାଦ ନିଶ୍ଚୟ । ଏହି ପୁସ୍ତକଟିର ଭବିଷ୍ୟତ ପାଇଁ ମୁଁ ପୂର୍ଣ୍ଣତଃ ସନ୍ଦିହାନ ହୋଇ ପଡ଼ିଥିବାବେଳେ ପ୍ରକାଶକ ବନ୍ଧୁ ଶ୍ରୀ ଅଭିରାମ ମହାପାତ୍ର ସ୍ୱେଚ୍ଛାକୃତଭାବେ ଏହାର ପ୍ରକାଶନ ଦାୟିତ୍ୱ ବହନ କରି ମୋତେ ଋଣଗ୍ରସ୍ତ କରିଛନ୍ତି, ଏହା କହିବାରେ ମୋର ଦ୍ୱିଧା ନାହିଁ । ସେ ନରହିଁଥିଲେ ଏପରି ମହତ୍ କାର୍ଯ୍ୟଟିଏ ଆହୁରି ବିଳମ୍ବିତ ହୋଇଥାନ୍ତା ।

ଗ୍ରନ୍ଥମନ୍ଦିର ଏ ଯାବତ୍ ବହୁ ମୂଲ୍ୟବାନ୍ ପୁସ୍ତକର ପ୍ରକାଶନରେ ସାହସିକ ପଦକ୍ଷେପ ନେଇଆସିଛନ୍ତି । ସମ୍ପ୍ରତି ପୁସ୍ତକ ପ୍ରକାଶନରେ ବ୍ୟୟଭାର ମଧ୍ୟ ଅଧିକ ବଢ଼ି ବଢ଼ି ଚାଲିଛି— ତା' ସହିତ ପାଠକୀୟ ଉଦାସୀନତା । ଏପରି ସମୟରେ ଓଡ଼ିଆ ସାହିତ୍ୟର ଅବସ୍ଥା କିଣ ହେବ କଳନା କରି ହେଉନାହିଁ । ପ୍ରକାଶକମାନଙ୍କ ସଦିଚ୍ଛା ଉପରେହିଁ ନିର୍ଭର କରୁଛି ଏହାର ଭବିଷ୍ୟତ ।

ଏହି ସଂସ୍କରଣରେ ଗୋପବନ୍ଧୁଙ୍କ ସମ୍ପର୍କରେ କିଛି ନୂତନ ତଥ୍ୟ ପରିବେଷଣ କରାଯାଇ ପାରିନାହିଁ, ସେଥିପାଇଁ ମୁଁ ଦୁଃଖିତ । ମୋତେ ସମୟ ଥିଲେ ହୁଏତ ଏ ବିଷୟରେ ଅଧିକ କିଛି ଗବେଷଣା କରାଯାଇପାରିଥାନ୍ତା । ମୋର ବିଦଗ୍ଧ ପ୍ରକାଶକ ତାହାହିଁ ଚାହୁଁଥିଲେ । କିନ୍ତୁ ଏବେ ଏତେ କାମରେ ବ୍ୟସ୍ତ ରହିବାକୁ ହେଉଛି ଯେ ନିଜ ପୁସ୍ତକର ଦୋଷତ୍ରୁଟିକୁ ବି ସୁଧାରିବାକୁ ବେଳ ମିଳୁନାହିଁ । ତେବେ ପରବର୍ତ୍ତୀ ସଂସ୍କରଣରେ ନିଶ୍ଚିତ ଭାବେ ଅନେକ ନୂଆ କଥା ପରିବେଷଣ କରାଯିବ, ଏ ପ୍ରତିଶ୍ରୁତି ଦେଉଛି । ଅନୁରାଗୀ ପାଠକ ଓ ହୃଦୟଗ୍ରାହୀ ପ୍ରକାଶକ ଥିଲେ ଲେଖକଟିଏ ନିଜ ଦାୟିତ୍ୱବୋଧରୁ ଖସିଯାଇ ପାରିବ ନାହିଁ । ସେଥିପାଇଁ ଗ୍ରନ୍ଥମନ୍ଦିର ପରିଚାଳକ ଶ୍ରୀଯୁକ୍ତ ଅଭିରାମ ମହାପାତ୍ରଙ୍କୁ ମୁଁ ଅଜସ୍ର ଆନ୍ତରିକ ଧନ୍ୟବାଦ ଦେଉଛି ।

ବାଣୀବିହାର
ତା ୧୬ । ୯ । ୮୯

ନିତ୍ୟାନନ୍ଦ ଶତପଥୀ
ପ୍ରଫେସର,
ସତ୍ୟବାଦୀ ଚେୟାର, ଉତ୍କଳ ବିଶ୍ୱବିଦ୍ୟାଳୟ

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
| --- | --- |

| ବିଷୟ | ପୃଷ୍ଠା |
| --- | --- |
| ବୁଭୁକ୍ଷିତଃ କିଂ ନ କରୋତି ପାପଂ | ୧୩୫ |
| ଆସନ୍ନ ଅସ୍ତମିତ ସତ୍ୟବାଦୀ | ୧୩୬ |
| ଗୋଦାବରୀଶଙ୍କ ସ୍ମୃତିରୁ | ୧୩୭ |
| ସତ୍ୟବାଦୀ ପତ୍ରିକା (୧୯୧୫—୧୯୨୦) | ୧୪୦ |
| 'ସମାଜ' ଏକ କ୍ରାନ୍ତି, ଏକ ଚେତନା | ୧୪୫ |
| ବ୍ୟବସ୍ଥାପକ ସଭା ସଦସ୍ୟ | ୧୪୭ |
| ବିଚ୍ଛିନ୍ନାଞ୍ଚଳ ସମସ୍ୟା | ୧୫୫ |
| କାଳିଆ ଶ୍ରୀମୁଖ ଦେଖିବା | ୧୫୯ |
| କଲିକତା କଂଗ୍ରେସ ସମ୍ମିଳନୀ (୧୯୨୦) | ୧୬୪ |
| ମହାଜନୋ ଯେନ ଗତଃ ସଃ ପନ୍ଥା | ୧୬୫ |
| ପୁରୀରେ ଭୋଟ ପ୍ରଚାର—୧୯୨୦ (ମଧୁବାବୁ ଓ ଗୋପବନ୍ଧୁ) | ୧୬୯ |
| ଅସହଯୋଗ ଦୀକ୍ଷା | ୧୭୦ |
| ଚକ୍ରଧରପୁର ଉତ୍କଳ ସମ୍ମିଳନୀ | ୧୭୧ |
| ସତ୍ୟବାଦୀ ଜାତୀୟ ସ୍କୁଲ (ଜାନୁୟାରୀ ୧୯୨୧) | ୧୭୨ |
| ବିଚ୍ଛିନ୍ନାଞ୍ଚଳରେ କଂଗ୍ରେସ କାର୍ଯ୍ୟ | ୧୭୩ |
| ଅସହଯୋଗର ଆହ୍ୱାନ | ୧୭୭ |
| ବେଗଚରା ନା ଚରବେଗା | ୧୭୯ |
| କଂଗ୍ରେସ ଆନ୍ଦୋଳନର ବାର୍ତ୍ତା | ୧୮୦ |
| ଗାନ୍ଧିଜୀଙ୍କ ଆଗମନ | ୧୮୧ |
| ପୁରୀରେ ମହାତ୍ମାଜୀ | ୧୮୪ |
| ବ୍ରହ୍ମପୁରରେ ମହାତ୍ମାଜୀ | ୧୮୭ |
| ଅରଟ ଓ ସ୍ୱାବଲମ୍ବନଶୀଳତା | ୧୮୮ |
| ଅସହଯୋଗ ଓ ମଧୁବାବୁ | ୧୯୦ |
| ସତ୍ୟାଗ୍ରହ ସପ୍ତାହ | ୧୯୨ |
| ସଭା ଓ ସରକାରୀ ପ୍ରତିଦ୍ୱନ୍ଦ୍ୱିତା | ୧୯୪ |
| ସ୍ୱୟଂସେବକ ସଂଗ୍ରହ | ୧୯୬ |
| ବିଦେଶୀ ବସ୍ତ୍ରଦାହ | ୧୯୮ |
| କଲିକତାରେ ଶ୍ରମିକ ଆନ୍ଦୋଳନ | ୧୯୯ |
| ମୁକୁଟହୀନ ସମ୍ରାଟ | ୨୦୦ |
| ଶ୍ରମିକ ସଭାରେ ମହାତ୍ମାଜୀ | ୨୦୨ |

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
|---|---|




# ବାଲ୍ୟଜୀବନ

ବାଲ୍ୟକାଳରେ ପୁରୀର ଲଙ୍ଗଳା ଛୁଆଙ୍କପରି ସେ ବି ଲଙ୍ଗଳାହୋଇ ଧୂଳିରେ ଗଡ଼ୁଥିଲେ । ପରିଧେୟ ଭିତରେ ଖଣ୍ଡେ କୌପୀନ । ବୋଧହୁଏ କୌଣସି କୌପୀନଧାରୀ (କୁଁପେଟିଆ ବା କୁମ୍ଭୀପଟୁଆ) ବାବାଜୀଙ୍କୁ ଦେଖି ତାଙ୍କ ସ୍ମୃତିରେ ଏକ ଆକର୍ଷଣ ଲାଗି ରହିଥାଏ । ସେ କୌପୀନ ପିନ୍ଧି ଦେହରେ ବାଲି ବୋଳିହୋଇ ନାଚିବାକୁ ଖୁବ ଭଲପା'ନ୍ତି ।

ପିତା ଦୈତ୍ୟାରି ଦାଶ ଅତି ଆଦରରେ କହନ୍ତି—"ସାଧୁଚରଣ, ବାବା ସାଧୁଚରଣ ଦାଶ, କ'ଣ କରିବ ? କୌପୁନି କାହିଁକି ପିନ୍ଧିଛ ?"

ଗୋପବନ୍ଧୁ ବାଲି ବୋଳିହୋଇ ନାଚି ନାଚି କହନ୍ତି—"ମୁଁ ବାଆଜି ହେବି । ଘରେ ରହିବିନି ।"

ପିଲାବେଳର ଏ ମନୋବୃତ୍ତି ପରବର୍ତ୍ତୀ ଜୀବନରେ ପ୍ରତିଫଳିତ ହେଲା । ସେ ସହଜ ଅର୍ଥରେ ବାବାଜି ନ ହେଲେ ମଧ୍ୟ ତାଙ୍କୁ ତାଙ୍କ ପରିବାରର କୌଣସି ଆକର୍ଷଣ ବାନ୍ଧି ରଖିପାରି ନ ଥିଲା । ଦେଶର ଦୁର୍ଦ୍ଦଶା, ଅସଂଖ୍ୟ ଲୋକଙ୍କ ଆର୍ତ୍ତିନାଦ, ହା'ଅନ୍ନ ଚିତ୍କାର ଶୁଣି ସେ ପ୍ରକୃତରେ ବାହାରକୁ ବାଆଜି ହୋଇ ବାହାରିପଡ଼ିଲେ । ତାଙ୍କ ମନରେ ଏକ ସଂସାର ବିରାଗୀ ବୈରାଗୀର ନାହିଁନାହିଁଭାବ; ଦେହରେ ସନ୍ନ୍ୟାସର ଅଗ୍ନି ପରୀକ୍ଷା—ସହଜ ପ୍ରଲୋଭନ ପ୍ରତି ଆସକ୍ତିହୀନତା ଓ ତ୍ୟାଗଶୀଳତା ତାଙ୍କ ଜୀବନର ଇତିକଥା ହୋଇ ରହିଗଲା । ଅଶିର ଲୁହରେ ଭରିରହିଲା ସମଗ୍ର ପାଇଁ ବ୍ୟାକୁଳ ଅନୁଯୋଗ । ସୌମ୍ୟକାନ୍ତ ବପୁରେ ନିଖିଳ ପାଇଁ ପ୍ରାଣଭରା ଆବେଦନ ଆଉ ଘନକୃଷ୍ଣ ଶ୍ମଶ୍ରୁରେ କେତେ ଦୁଃଖୀ ରଙ୍କୀପାଇଁ ବିପୁଳ ଆଶ୍ୱାସନା, ତୃପ୍ତିର ସ୍ୱପ୍ନ୍ୟୟନ । ଦେଶପାଇଁ ସେ ବାବାଜିହେଲେ, ସନ୍ନ୍ୟାସ ଗ୍ରହଣ କଲେ ।

ତଥାପି ସେ ବୈରାଗୀ ନୁହନ୍ତି । ସମସ୍ତ ବନ୍ଧନ ମଝିରେ ସେ ମୁକ୍ତିର ସ୍ୱରଣ । ନିଖିଳ ସଂସାର ଥିଲା ତାଙ୍କର ବିରାଟ ବନ୍ଧନ । ଓଡ଼ିଶା ଥିଲା ତାଙ୍କର ପରିବାର । ଏଇ ଦେଶର ଲୋକେ ସମସ୍ତେ ତାଙ୍କ ସନ୍ତାନ । ବିଶ୍ୱକବି ରବୀନ୍ଦ୍ରନାଥ ଯେଉଁ ଅର୍ଥରେ ଲେଖିଥିଲେ—

"ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ
ସକଲ୍ ବନ୍ଧନ ମାଝେ ମହାନନ୍ଦମୟ
ଲଭିବ ମୁକ୍ତିର ସ୍ୱାଦ ତାଇ ତ ଆମାର ।"

ସେହି ଅର୍ଥରେ ଗୋପବନ୍ଧୁ ଥିଲେ ସନ୍ନ୍ୟାସୀ । ଏ ଦେଶର ଅଭାବ, ଅବସାଦ, ପୀଡ଼ା ଓ ପଶ୍ଚାତାପ, ବା । ଓ ବିଷାଦ, ଦୁଃଖ ଓ ନିଷ୍ପୀଡ଼ନକୁ କେନ୍ଦ୍ରକରି ସେ ନିଜର କର୍ମକାଣ୍ଡ ଆରମ୍ଭ କରି ଦେଇଥିଲେ । ତାଙ୍କ ସଞ୍ଚାର ପଥରେ ସେ ଦେଖିଥିଲେ ଦରିଦ୍ର ନିରନ୍ନର ହାହୁତାଶ, ଶୁଣିଥିଲେ ଆକୁଳ ଆର୍ତ୍ତ ଚିତ୍କାର । ତେଣୁ ସଂସାର ଛାଡ଼ି, ଦେଶ ଛାଡ଼ି ହିମାଳୟରେ ସେ ସନ୍ନ୍ୟାସୀ ପରି ତପସ୍ୟା କରିବାକୁ ଚାଲିଯାଇ ନ ଥିଲେ ; ବରଂ ଏଇ ଲୋକଙ୍କ ଗହଣରେ, ପରିଚିତ ମଣିଷମାନଙ୍କ ଅଶ୍ରୁ, ଗ୍ଲାନି ଭିତରେ ସେ ସଂଗ୍ରାମ ଓ ଜୀବନ ଯୁଦ୍ଧର ତପସ୍ୟା ଅତି ନିଷ୍ଠାର ସହିତ ଆରମ୍ଭ କରିଦେଇଥିଲେ । ଏଠି ଲାଞ୍ଛିତଲୁଣ୍ଠିତ ହେଲେ । ଖାଲ ଖମାରେ, କ୍ଲେଦ କ୍ଲେଶରେ କ୍ଷତାକ୍ତ ହେଲେ—ଏଥିପାଇଁ ତାଙ୍କର ଅବଶୋଷ ନ ଥିଲା, ଗ୍ଲାନି ନ ଥିଲା । ଦେଶସେବାର ଦୀକ୍ଷା ନେଇ ସେ ଅନ୍ୟ ଆଉ ନେତାଙ୍କପରି କେବେ ଦେଓ୍ୱାଣୀ ପାଉଣାର ହିସାବ କଷି ନ ଥିଲେ । ନିଝୁମ ନିଗଡ଼ ଭିତରେ ସୁସ୍ଥ ଜୀବନ ଯାପନର ସ୍ୱପ୍ନ ଦେଖି ନଥିଲେ ।

ଲୋକେ କହନ୍ତି—ତୁଳସୀ ଦୁଇପତ୍ରରୁ ବାସେ । କିନ୍ତୁ ବିଛୁଆତି ବଣରେ ତୁଳସୀ ତୋଳିବାକୁ ଯାଇ କେହି ବିଛୁଆତିର ପୀଡ଼ା ପାଇଲେ ତୁଳସୀର ସ୍ଥିତିକୁ ଅବିଶ୍ୱାସ କରିବା ସ୍ୱାଭାବିକ । ପିଲାବେଳେ ବହୁ ମହାତ୍ମା ନିହାତି ସାଧାରଣ ଥା'ନ୍ତି । ଅତି ମାମୁଲି ଭାବରେ ଆତ୍ମପ୍ରକାଶ କରିଥାନ୍ତି । ଦୁଷ୍ଟାମୀ କରନ୍ତି । ତାହାହିଁ ବାଳଚପଳତାର ପ୍ରକୃତ ପରିଚୟ । ସାଧାରଣ ମଣିଷର ଦୃଷ୍ଟିର ଦିଗନ୍ତ ଭିତରେ ସବୁ ସହଜ ସତ୍ୟର ପରୀକ୍ଷା ମହାମାନବ ଓ ଅସାଧାରଣ ପୁରୁଷମାନଙ୍କ ଆଚରଣରେ ଘଟିଥାଏ । ଉଦାହରଣ ଦେବା ଦରକାର ନାହିଁ, ମହାତ୍ମାଗାନ୍ଧୀ ସାଧାରଣ ଚପଳ ସାଥୀମାନଙ୍କ ସଙ୍ଗରେ ବାଲ୍ୟକାଳରେ ମାଂସ ଖାଇବା, ଯୌବନରେ ନବାଗତା ସ୍ତ୍ରୀର ପ୍ରଣୟରେ ରୋଗପାଣ୍ଡୁର ପିତାଙ୍କ ଆସନ୍ନ ମୃତ୍ୟୁଶଯ୍ୟାରେ ଅବହେଳା କରିବା, ଜବାହରଲାଲ ବାପାଙ୍କ କଲମ ଚୋରି କରିଥିବା କଥା ସମସ୍ତେ ଜାଣନ୍ତି । ଏସବୁ ପିଲାକାଳର ସ୍ୱାଭାବିକତାରୁ ଗୋପବନ୍ଧୁ ମଧ୍ୟ ନିସ୍ତାର ପାଇ ନ ଥିଲେ । ଗ୍ରାମ ଚଟଶାଳୀରେ ଅବଧାନଙ୍କ ପାଖରେ ପଢ଼ିଲାବେଳେ ବୈଠକ (ଭୋଜି ଅର୍ଥରେ) କରିବା ପାଇଁ ଛାତ୍ରସାଥୀଙ୍କ ସାଙ୍ଗରେ ଯାଇ ନଡ଼ିଆ ଓ ପଣସ ଚୋରି କରି ଆଣୁଥିଲେ । ସେ କିନ୍ତୁ ସବୁବେଳେ ଅନ୍ୟ ସହପାଠୀମାନଙ୍କ ସହିତ ଅନୁଗମନ ମାତ୍ର କରୁଥିଲେ । ଅସଲ କାର୍ଯ୍ୟରେ ସେତେ ପଟୁତା ନ ଥିଲା ।

ଥରେ ଅବଧାନ କେଉଁଠୁ ଏ ଖବର ପାଇ ଏହାର ତଦନ୍ତ କରି ବସିଲେ । "କିଏ ନଡ଼ିଆ ଚୋରି କରିଛ ?"—ଅବଧାନଙ୍କର ଏ ବଜ୍ରଗମ୍ଭୀର ପ୍ରଶ୍ନରେ କେହି ନୀରବ ରହିଲେ, କେହି ବା ସମ୍ପୂର୍ଣ୍ଣ ଫାଙ୍କିଦେଲେ । ଗୋପବନ୍ଧୁଙ୍କ ପାଳି ପଡ଼ିଲା । ଆପଣେ ଆହୁରି ଗମ୍ଭୀର ଅଥଚ ଜୋର୍‌ଦେଇ ପଚାରିଲେ—"ଗୋପ, କିଏ ସବୁ ଯାଇ ଗଛରେ ଚଢ଼ିଛନ୍ତି, କିଏ ସେ ସାଙ୍ଗରେ ଯାଇଥିଲେ ?"

ଏଥର ଗୋପବନ୍ଧୁ ବଡ଼ ଉଦ୍‌ବେଗିତ ହୋଇପଡ଼ିଲେ । ସତ୍ୟକୁ ଗୋପନ କଲ୍ଲଭଲ୍ଲ

ଦୁଃସାହସ ତାଙ୍କର ନ ଥିଲା । ପୁଣି ସେ ଧାରଣା କଲେ ଯେ ଯାହା ବାଡ଼ରୁ ନଡ଼ିଆ ଚୋରି ହୋଇଛି ସେ ଲୋକ ଜଣ ଜଣ କରି ସମସ୍ତଙ୍କୁ ଦେଖିଛି ଓ ଅବଧାନଙ୍କ ପାଖରେ ଗୁହାରି କରିଛି । ସେ ସବୁକଥା ସ୍ପଷ୍ଟ ଭାବରେ କହିଗଲେ ।

ଏଥିରେ ପରେ ତାଙ୍କ ସହପାଠୀମାନେ ତାଙ୍କ ଉପରେ ଅତି ମାତ୍ରାରେ ରୁଷ୍ଟ ହୋଇ ତାଙ୍କୁ ଧମକ ଦେଲେ । ତାଙ୍କୁ ସାଙ୍ଗରେ ନ ମିଶେଇବା ପାଇଁ ନାନାପ୍ରକାର ମସୁଧା କଲେ । କେହି କେହି କଥା ବି କହୁନଲେ । ହେଲେ ଗୋପବନ୍ଧୁ ବିଚଳିତ ହେଲେ ନାହିଁ ; ବରଂ ସତ୍ୟ ପ୍ରକାଶ କରି ଶାସ୍ତି ଭୋଗ କରିଥିବାରୁ ତାଙ୍କ ମନରେ ଉତ୍‌ଫୁଲ୍ଲତା ଆସିଥାଏ ।

ଏହାପୂର୍ବରୁ ଆଉ ଦିନେ ପଡ଼ିଶା ଦାଶରଥି ଦାଶଙ୍କ ବାଡ଼ିକୁ ପାଳଛତୁ ଚୋରି କରିବାକୁ ଯାଇ ବାଡ଼ ଡେଇଁପଡ଼ିବାବେଳେ ସେ ମୁହଁମାଡ଼ି ପଡ଼ିଗଲେ । ହାତ ଦୁଇଟା ଅସ୍ୱଭାବିକ ଭାବରେ ରହି ଭାଙ୍ଗିଗଲା । ସେତେବେଳେ ସେ ଛ'ସାତ ବର୍ଷର ବାଳକ । ଶେଷ ପର୍ଯ୍ୟନ୍ତ ତାଙ୍କର ଦୁଇହାତ ସାମାନ୍ୟ ବଙ୍କା ଥିଲା, କିନ୍ତୁ ସହଜରେ ଜଣାପଡ଼ୁ ନଥିଲା ।

ଦୁଷ୍ଟାମୀ ଓ ଦୁଃସାହସିକତା ଏକାର୍ଥବାଚକ ଶବ୍ଦ ନୁହେଁ । ଅନେକ ଦୁଷ୍ଟ ପିଲା ଖୁବ୍ ଦୁଃସାହସୀ—ଭଲ ଓ ମନ୍ଦ ଦିଗରେ । ଗୋପବନ୍ଧୁ କିନ୍ତୁ ଭଲଦିଗରେ ଦରୁବେଳେ ସାହସୀ ଓ ନିର୍ଭୀକ ଥିଲେ । ଗ୍ରାମ ଚାଟଶାଳୀରେ ପଢ଼ୁଥିବା ବେଳେ ଦିନେ ହଠାତ୍ ନାଗସାପଟାଏ ଅବଧାନଙ୍କ ଶୋଇବା ଘରକୁ ପଶିଗଲା । ଭାର୍ଗବୀ ନଦୀକୂଳରେ ସୁଆଣ୍ଡୋ ଗ୍ରାମର ଅବସ୍ଥିତି । ତେଣୁ କେବେ କେବେ ନଈରେ ଏହିପରି ସାପ ଭାସିଆସି କୂଳ ଗଛମାନଙ୍କରେ ରହିଯାଆନ୍ତି । ଅବଧାନେ ସେ ପର୍ଯ୍ୟନ୍ତ ମଧ୍ୟାହ୍ନ ଶୟନରେ ଥା'ନ୍ତି । ସବୁପିଲା ହାଉହାଉ ହେଲେ । କେହି ସାହସ କରି ନାଗସାପକୁ ବାଡ଼େଇବା ପାଇଁ ଆଗେଇ ଗଲେ ନାହିଁ । ନାଗ ସାପଟା କ୍ରମେ ଯାଇ ଅବଧାନଙ୍କ ଶେଯ ପାଖରେ ସେତେବେଳକୁ ପହଞ୍ଚିଲାଣି । ଗୋପବନ୍ଧୁ ଖୁବ୍ ସାହସରେ ଗୋଟିଏ ମୋଟା ବାଡ଼ି ଧରି ଘର ଭିତରକୁ ପଶିଗଲେ ଓ ନାଗସାପକୁ ପିଟିପିଟି ଦରମରା କରିଦେଲେ ।

କୋଳାହଳରେ ଅବଧାନଙ୍କ ନିଦ ଭାଙ୍ଗିଗଲା । ସେ ଅତି କୃତଜ୍ଞତା ତଥା ଆବେଗରେ ଆଶିଷ ଦେଲେ—"ଗୋପ, ତୁ ଦିନେ ଖୁବ୍ ବଡ଼ଲୋକ ହେବୁ ।" ତାହାହିଁ ହେଲା, ଧନଧାନ୍ୟ, କୋଠାବାଡ଼ି, ବ୍ୟାଙ୍କ୍ ବାଲାନ୍‌ସ, ମଟର ଗାଡ଼ି ଆଦି ଅର୍ଥରେ ସେ ବଡ଼ଲୋକ ହେଲେନାହିଁ ସତ, ଦେଶପାଇଁ ଦାୟିତ୍ୱ ନେଇ କାମ କରିଥିବା ହେତୁ ଆଜିର ନେତାମାନଙ୍କ ପରି ବହୁ ଗୁଣରେ ସେ ଅର୍ଥ ଓ ସମ୍ପତ୍ତି ଆକାରରେ ଦେଶଠାରୁ ନିଜ ପାଉଣା ଆଦାୟ କଲେନାହିଁ ସତ ; କିନ୍ତୁ ଏ ଦେଶର ଇତିହାସରେ ଅତି ପ୍ରିୟ ସ୍ମୃତି ଭାବରେ ତାଙ୍କର ସ୍ମାରକୀ ଉଦାତ୍ତ ହୋଇଉଠିଲା । ଏ କାଳ ତାଙ୍କୁ ଦେଇପାରିଲା ନାହିଁ ବୋଲି ତାଙ୍କ ପବିତ୍ର ସ୍ମୃତିରେ ଆଖିରୁ ଲୁହ

ନଗାଡ଼, କୃତାଞ୍ଜଳିପୂର୍ବରେ ତାଙ୍କ ପ୍ରତିକୃତିକୁ ପୂଜାକଲା । ତାହାହିଁ ତାଙ୍କ ପାଇଁ ଏ ଜାତିର ସବୁଠାରୁ ବଳି ବଡ଼ ପ୍ରତିଦାନ । ଏ ସୌଭାଗ୍ୟ ଓଡ଼ିଶାରେ ମଧୁବାବୁଙ୍କ ବ୍ୟତୀତ ଅନ୍ୟ କେଉଁ ନେତାଙ୍କ ଭାଗ୍ୟରେ ଘଟିଛି କି ? ସର୍ବଙ୍କସ ମହାକାଳ ଆଖିରେ ମଣିଷପଣିଆର ଜୟକାର କରି ସେ ଝଡ଼ିଗଲେ । କବି କଣ୍ଠରେ ତାଙ୍କ ସ୍ମୃତିର ଅଶ୍ରୁଳ ପ୍ରତିଲିପି ଉନ୍ମୁଖ ହୋଇ ଉଠିଲା—

"ସ୍ୱଗୁଣ ବଖାଣି ନମିଷେ ମରିବା ଶ୍ରେୟ
ଅର୍ଥହୀନ ଏ ଦୀର୍ଘଜୀବନ ବିଶ୍ୱରେ ଅତି ହେୟ ।"

## ସ୍ମୃତିର ସରହଦରୁ

ପୂର୍ବରୁ ଯେଉଁ ବୈଠକ ବା ଭୋଜି କଥା କୁହାଯାଇଛି ସେଥିରେ ପ୍ରତ୍ୟେକ ଅଂଶୀଦାରକୁ ପାଳି କରି ଖେଷେଇ କରିବାକୁ ହେଉଥିଲା । ଏଥିରେ କେହି ବାଦ୍ ଯାଏନା । ସମସ୍ତଙ୍କ ପାଇଁ ସମାନ ବନ୍ଦୋବସ୍ତ । ନିଜ ନିଜ ଘରୁ ଚାଉଳ, ମୁଗ ଡେଡା କରି ଅଣାଯାଏ । ପରିବା ତ ଲୁଚେଇ ଚୋରେଇ ଯାହା ତାହା ବାଡ଼ିରୁ ଆଣିବା କଥା । ନିହାତି ନ ମିଳିଲେ କିଛି କିଛି ପଇସା ଚାନ୍ଦାକରି ପରିବା କିଣାଯାଏ । ସେଦିନ ଗୋପବନ୍ଧୁଙ୍କ ରୋଷେଇ ପାଳି । ସେ ତର୍କାରି ବସାଇଥାନ୍ତି; କିନ୍ତୁ ହାଣ୍ଡିରେ ପୂରାପୂରି ହାଣ୍ଡିଏ ପାଣି ଦେଇଥାନ୍ତି । ସେଥିରେ କଦଳୀ ଓ ବାଇଗଣ ଗୁଡ଼ିକ ଉପରେ ଭାସୁଥାଏ । ଏଣେ କାଠ ଓଦା ଥିବାରୁ ଚୂଲି ଭଲ ଜଳୁ ନଥାଏ । ସେ ଫୁଙ୍କି ଫୁଙ୍କି ବେଦମ୍ ହେଉଥାନ୍ତି । ଦୀର୍ଘ ଦୁଇଘଣ୍ଟା ପରେ ମଧ୍ୟ ତର୍କାରି ହେବାର କିଛି ସମ୍ଭାବନା ଦେଖାଯାଉ ନଥାଏ । ସାଙ୍ଗସାଥୀମାନେ କେହି ଢୁଲାଉଥାନ୍ତି, କେହି ବା ଭୋକରେ ଆଣ୍ଠୁପାଣ୍ଟୁ ହୋଇ ନଘୋଡ଼ ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଥା'ନ୍ତି ।

ଗୋପବନ୍ଧୁଙ୍କ ବାପା ଓ ପିଉସୀ (କମଳାନାନୀ) ପ୍ରାୟ ରାତି ୧୨ଟାରେ ଡେରି ହେବାରୁ ଆସି ପହଞ୍ଚିଲେ । ସେତେବେଳକୁ ଚୂଲି ଫୁଙ୍କି ଫୁଙ୍କି ଉକ୍‌ଦାର ହୋଇ ଚୂଲିକୁ ଚାହିଁ ଗୋପବନ୍ଧୁ କାନ୍ଦୁଥାନ୍ତି । ନନା ଓ ନାନୀଙ୍କୁ ଦେଖି ତାଙ୍କର କୋହ ଦ୍ୱିଗୁଣିତ ହେଲା । ସେ ବାପାଙ୍କୁ କଣ୍ଠରେ କାନ୍ଦି କାନ୍ଦି କହିଲେ, "ଏ କଟା କଦଳୀଗୁଡ଼ାକ ପାଣିରେ ବୁଡ଼ୁନାହିଁ କି ତର୍କାରି ହେଉନାହିଁ ।" ତାଙ୍କର ବୋଧହୁଏ ଧାରଣା ଉପୁଜିଥାଏ ଯେ ପାଣିରେ କଦଳୀ ବୁଡ଼ିଲେ ତର୍କାରି ହୋଇଯିବ, କିନ୍ତୁ ହାଣ୍ଡିଏ ପାଣି ତଳକୁ କଦଳୀ ଯିବ ବା କିପରି ?

ନାନୀ ଓ ନନା (ଗୋପବନ୍ଧୁଙ୍କ ବାପା) ହସି ହସି ବେଦମ୍ ହେଲେ । ଭୋକ

ସେଇଠି ରହିଲା । ସେମାନେ ଗୋପବନ୍ଧୁଙ୍କୁ ସାଙ୍ଗରେ ଘରକୁ ନେଲେ । ନିଜ ମନ ମନ ହୋଇ ସବୁ ପିଲା ବି ନିଜ ନିଜ ଘରକୁ ପଳାଇଲେ । ଏ କଥା ଅନେକ ଦିନ ଯାଏ ଗୋପବନ୍ଧୁଙ୍କ ପିଉସୀ କମଳାନାନୀ କହୁଥିଲେ । ଗୋପବନ୍ଧୁଙ୍କ ଝିଅ ଦୁର୍ଗେ କମଳାନାନୀଙ୍କଠାରୁ ଏ ସବୁ କଥା ଶୁଣି ଖୁବ୍ ଉପଭୋଗ କରୁଥିଲେ ।

## କମଳାନାନୀ

ଅତି ବାଲ୍ୟକାଳରୁ ଗୋପବନ୍ଧୁଙ୍କ ବୋଉ ମରିଗଲେ । କମଳାନାନୀଙ୍କ ଉପରେ ତାଙ୍କ ଲାଳନପାଳନର ଦାୟିତ୍ୱ ପଡ଼ିଲା । କୋଇଲି କୁଆବସାରେ ଡିମ୍ବ ପାରିଯାଏ । ଛୁଆ ଫୁଟେଇ ତାକୁ ଖଣ୍ଡିଉଡ଼ା ଶିଖେଇବା ଦାୟିତ୍ୱ କୁଆର । ଉଡ଼ିଶିଖିଲେ କୋଇଲି ତା ମାଆ ପାଖକୁ ପଳାଇଯାଏ । କୁଆର ସ୍ନେହ ତା ପାଇଁ ଏକ ବଚ୍ଛିନ୍ନ ଇତିକଥା ଭାବରେ ଅବହେଳିତ ହୋଇଉଠେ ; କିନ୍ତୁ କମଳାନାନୀ—ଚିରଦିନ ଅବିଳା ବିଧବା, କମଳାନାନୀ ନିଜ ଗର୍ଭରୁ ସନ୍ତାନ ଜାତ କରି ସ୍ତନ୍ୟଦେବା ସୁଯୋଗରୁ ଚିରବଞ୍ଚିତା । ବ୍ରାହ୍ମଣକୁଳର କଠୋର ଅନୁଶାସନ ନିକଟରେ ସୀମନ୍ତରୁ ସିନ୍ଦୂର ନିଭେଇ ସ୍ୱାମୀ ସ୍ମୃତିକୁ ସମ୍ପୂର୍ଣ୍ଣ ପୋଛି ଦେଇଥିଲେ । ସେତେବେଳେ ଓଡ଼ିଶାର ବ୍ରାହ୍ମଣଶାସନମାନଙ୍କରେ ଏହିପରି ବାଲ୍ୟବିଧବାମାନଙ୍କ ସଂଖ୍ୟା ବିରଳ ନଥିଲା । ସେମାନେ ଧର୍ମର ଦ୍ୱାହିରେ ଦେହର ଓ ମନର ସମସ୍ତ ସ୍ୱାଭାବିକତାକୁ ଅବଦମିତ କରି ଭାଗ୍ୟର ଅସହାୟ ଶିକାର ଭାବରେ ଜୀବନ କଟାଉଥିଲେ ।

ଗୋପବନ୍ଧୁଙ୍କ ଲାଳନ ଦାୟିତ୍ୱ କମଳା ଦେବୀଙ୍କ ପ୍ରାଣର ଅବଦମିତ ମାତୃତ୍ୱ ଆପେଇ ଆବୋରି ନେଇଥିଲା । ମା'ର ହୃଦୟରେ ମାତୃହରା ସନ୍ତାନ ପାଇଁ ସୃଷ୍ଟି ହୋଇଥିଲା ଅସରନ୍ତି ସ୍ନେହର ଅବାରିତ ଫଲ୍‌ଗୁ । ସେ କେଉଁ କପୋତୀ—ଉପରେ ନିଜ ସନ୍ତାନର ମୁଣ୍ଡ ଛେଚି ମାରି ପାରିବା ପରେ ଯେତେବେଳେ ବୁଝି ପାରିଲା ଯେ ସ୍ୱଭାବରୁ କୁଣ୍ଡା ବାଦଦେଇ କେବଳ ସ୍ୱଭାବ ଆର୍ଦ୍ର ଶାବକ ଆସିଛି—ଟିକିଏ ମାଣ ପୂରିନାହିଁ, ସେ କାନ୍ଦି କାନ୍ଦି ଗଛ ଡାଳରେ କେତେ ମୁଣ୍ଡ ବାଡ଼େଇ ହୋଇଥିବ । ପ୍ରାଣର ସନ୍ତାନ ବିୟୋଗରେ ଆଖିରୁ ତାର ଧାର ଧାର ଲୋତକର ବନ୍ୟା ଛୁଟି ଗଣ୍ଡ ପ୍ଲାବନ କରିଦେଇଥିବ ।

କେବେକେବେ ହୁଏତ କମଳାନାନୀ ରାଗରେ, ବିରକ୍ତିରେ ଗୋପବନ୍ଧୁଙ୍କୁ ଆକଟ କରି ମାରିଥିବେ । ପୁଣି ମା-ଛେଉଣ୍ଡ ପିଲାର ବ୍ୟାକୁଳ କ୍ରନ୍ଦନରେ ତାଙ୍କ ଆଖି ଓଦା ହୋଇଯାଇଥିବ । ଆଜିପରି ସେତେବେଳେ ଗୁଣ୍ଡଦୁଧ ବା ଫିଡ଼ିଂ ବଟଲ୍ ନଥିଲା । ତେଣୁ କମଳାନାନୀ ଗାଈ କ୍ଷୀର ଆଣି ଧୀରେ ଧୀରେ ନିଜ ସ୍ତନ

ଉପରେ ଢାଳିଦେଉଥିଲେ । ସ୍ତନର ଚୂଚୁକବାଟେ ସେଇ କ୍ଷୀର ଧାର ଧାର ହୋଇ ବୋହିଯାଏ । ଗୋପବନ୍ଧୁ ଅତି ଆଗ୍ରହରେ ଓ ଭ୍ରମରେ କ୍ଷୀର ପାନ କରନ୍ତି । ଏକଥା ଅନେକ ଦିନ ଯାଏ କମଳାନାନୀ କରୁଥିଲେ । ଦେହରେ ସନ୍ତାନ ପ୍ରସବର ପୀଡ଼ା ନ ଦହିଲେ ବି, ନିଜ ସ୍ତନରୁ କ୍ଷୀରର ସ୍ରାବ ନ ହେଲେ ବି, ଅବୋଧ ନିର୍ବିକାର ଶିଶୁକୁ ଭୁଲାଇବା ପାଇଁ ତାଙ୍କର ଏ କୌଶଳ ପରେ ଗୋପବନ୍ଧୁଙ୍କୁ ଗଭୀର ତୃପ୍ତିରେ ଅବାକ୍ କରିଦେଉଥିଲା । ତାଙ୍କର କୋଳରେ ବସି ଖେଳି ଶୈଶବର ଅଳ୍ପ ଅଂଶ ଭିତରେ ମଣିଷହୋଇ ଏଇ ପ୍ରାଣଭରା ମାତୃସ୍ନେହର ସ୍ମୃତି ତାଙ୍କୁ ଜୀବନର ଶେଷଭାଗ ପର୍ଯ୍ୟନ୍ତ ଉଚ୍ଛଳ କରିଥିଲା । କମଳାନାନୀ ତାଙ୍କପାଇଁ ଭଗବାନଙ୍କ ଅମୀୟ ଆଶୀର୍ବାଦ । ଗୋପବନ୍ଧୁ ବଞ୍ଚିବାର ତାଙ୍କୁ ମନେ ପକାଇ ତାଙ୍କରି ଭିତରେ ନିଜ ଜନନୀର ସ୍ମୃତିକୁ ଅବଲମ୍ବନ କରିଛନ୍ତି । କେତେ କବିତା ଲେଖିଛନ୍ତି । କେତେ ଲୁହ ଢାଳିଛନ୍ତି—

ଆବାଲ୍ୟ ବିଧବା ଆହା, କେବେ ମାତ୍ର ବାରେ
ଭୋଗିନାହିଁ ଦିବ୍ୟ ଶୁଦ୍ଧ ଦାମ୍ପତ୍ୟ ପ୍ରଣୟ,
ପର ସେବା ବ୍ରତେ ନିଜ ଜୀବନ ସମସ୍ତ
ବ୍ୟସ୍ତ କରିବାକୁ ତବ ଜନ୍ମ ଏ ସଂସାରେ ।

ପରଲାଗି ଆଲୋଡ଼ିତ ସତତ ହୃଦୟ,
ଆଜୀବନ ତେଜି ନିଜ ସୁଖ ସମୁଦୟ ।
ସୁଧାସମ ମାତୃଭାବ ମିଳେ ତୁମ୍ଭଠାରେ,
ସଦା ସମଭାବ ତବ ଭିତରେ ବାହାରେ ।
ସଦାଶୟା ସ୍ନେହମୟୀ ପରମ ପାବନୀ,
ଜୀବନ ମହତ ଲକ୍ଷ୍ୟ ସାଧିଛ ଗୁପତେ ।
ତୁମ୍ଭ ରୀତି ଆଚରିଲେ ସକଳ କାମିନୀ,
ଓହ୍ଲାଇ ଆସନ୍ତା ସ୍ୱର୍ଗ ଏ ମର୍ତ୍ତ୍ୟ ଜଗତେ ।
ତୁମ୍ଭର ନିଷ୍କାମ ସ୍ନେହ ସଦା ଥିବ ମନେ,
ଯହିଁ ଥିଲେ ସ୍ମରୁଥିବ ନିତି "ନାନୀ, ନାନୀ" ।

('ମୋ ନାନୀ'—ଅବକାଶ ଚିନ୍ତା)

## କୈଶୋର

ଗୋପବନ୍ଧୁଙ୍କ ପିତା ମୁକ୍ତିଆର ଥିଲେ । ସେତେବେଳେ 'ତୁ ହେଲୁ ମୁକ୍ତିଆର' କଥାଟା ଓଡ଼ିଶାରେ ବେଶ୍ ପ୍ରଚଳିତ ହେଉଥିଲା । ତାଙ୍କ ବଡ଼ଭାଇ ଶ୍ରୀ ଦୀନବନ୍ଧୁ

ଦାଶ ବୈଷ୍ଣବ ଥିଲେ ଓ ସାର୍ଦ୍ଧଦନ ଧରି ବୃନ୍ଦାବନରେ ରହିଥିଲେ । ସେ ଅବିବାହିତ ଥିଲେ ଓ ବୈଷ୍ଣବ ଧର୍ମର ଗାଢ଼ ଅନୁଯାୟୀ ମାଛ ମାଂସ ଆଦି ଆମିଷ ତ୍ୟାଗ କରିଥିଲେ ; କିନ୍ତୁ ଶେଷଦିନକୁ ସେ ମାଛ ଖାଇବା ପାଇଁ ଅତି ବ୍ୟାକୁଳ ହୋଇ ପଡ଼ିଲେ ଓ ସେଥିରେ ତାଙ୍କର ମୃତ୍ୟୁ ହେଲା । ଗୋପବନ୍ଧୁଙ୍କ କୋମଳ କିଶୋର ହୃଦୟକୁ ତାଙ୍କ ବଡ଼ ଭକ୍ତ ଦଦେଇ ଖୁବ୍ ପ୍ରଭାବିତ କରିଥିଲେ । ତାଙ୍କର ଜୀବଦଶାର ଇତିକଥା ଗୋପବନ୍ଧୁଙ୍କୁ ଏପରି ଭାବରେ ପ୍ରଭାବିତ କରିଥିଲା ଯେ ସେ ବରାବର ସମସ୍ତେ ସମସ୍ତେ ଆମିଷ ଖାଇବାକୁ ବନ୍ଧୁ ନିରାମିଷାଶୀ ନୈଷ୍ଠିକ ବ୍ୟକ୍ତିଙ୍କୁ ପରାମର୍ଶ ଦେଉଥିଲେ । ଏପରିକି ନିଜେ ସେ ବର୍ଷକେ ମାତ୍ର ଥରେ ଦୁର୍ଗାଷ୍ଟମୀ ଦିନ ମାଛ ଖାଉଥିଲେ ।

ଗୋପବନ୍ଧୁଙ୍କ ଦଦେଇ ଗୀନବନ୍ଧୁ ଦାଶ ବୃନ୍ଦାବନରୁ ରାସବିହାରୀ ମୂର୍ତ୍ତିଟିଏ ଆଣିଥିଲେ । ତାହା ତାଙ୍କ ଦାଣ୍ଡ ଦୁଆର ପାଖ ଗ୍ରେଟ ଘରଟିରେ ପ୍ରତିଷ୍ଠିତ ହୋଇ ପୂଜା ପାଉଥିଲେ । ଏହି ଠାକୁର ଗୋପବନ୍ଧୁଙ୍କ ଜୀବନକୁ ପରେ ବହୁ ଭାବରେ ପ୍ରଭାବିତ କରିଥିବା କଥା ନିଜେ ଗୋପବନ୍ଧୁ ବହୁ ସ୍ଥାନରେ ଉଲ୍ଲେଖିତ ଭାବରେ କହିଥିଲେ । ତାଙ୍କ ଦଦେଇ ବରାବର ଭାଗବତ ପାରାୟଣ କରୁଥିଲେ ଓ ଅରୁଆ ଅନ୍ନ ଭୋଜନ କରୁଥିଲେ । ଗୋପବନ୍ଧୁ କିଶୋର ବୟସରେ ଅତି ତଦ୍‌ଗତ ଭାବରେ ଏହି ଭାଗବତ ଶୁଣୁଥିଲେ । ସେତେବେଳେ ତାଳପତ୍ର ଉପରେ ଲେଖନୀ ସାହାଯ୍ୟରେ ହସ୍ତାକ୍ଷର ଲେଖା ହେଉଥିଲା । ଦଦେଇଙ୍କଠାରୁ ଭାଗବତ ଶୁଣିଶୁଣି ଆଠ ନ' ବର୍ଷର ବାଳକ ଗୋପବନ୍ଧୁ ତାଳପତ୍ରରେ ଭାଗବତର କେତେପଦ ହସ୍ତାକ୍ଷର ଆକାରରେ ଲେଖି ବସୁଥିଲେ ଏବଂ ବେଳେବେଳେ ଭାଗବତ ବୃତ୍ତରେ ମନରୁ ପଦ ଯୋଡ଼ି ଗୀତ ମଧ୍ୟ ଲେଖିଦେଉଥିଲେ । ପରେ ଏହି ଧର୍ମପରାୟଣ ହୃଦୟର ଅଭିବ୍ୟକ୍ତି ଦେଖା ଦେଲା ନବାକ୍ଷରୀ ଗୁରୁଭକ୍ତି ଭାବରେ ରଚିତ 'ଗୋ-ମହାତ୍ମ୍ୟ' । ସମଗ୍ର ହୃଦୟ ଯେପରି ଭାଗବତ ପ୍ରୀତିରେ ଉଜ୍ଜ୍ୱଳ ଓ ଭାଗବତମୟ । ଏ କଥା ପରେ ଆଲୋଚନା ହେବ ।

ଚାଟଶାଳୀରେ ପଢ଼ା ଶେଷପରେ ତାଙ୍କ ବାପା ଜଣେ ପାଇମେରୀ ଶିକ୍ଷକ ରଖି ଘରୋଇଭାବରେ ତାଙ୍କୁ ପଢ଼ାଉଥିଲେ । ସେଠାରୁ ତାଙ୍କ ଗ୍ରାମର ୧ମାଇଲ ଦୂର ରୂପଦେଇପୁର ଭର୍ଣ୍ଣାକୁଲର ସ୍କୁଲରେ ତାଙ୍କ ନାମ ଲେଖାଇଦେଲେ । ସେତେବେଳେ ଶ୍ରୀ ସଦାଶିବ ମିଶ୍ର ରୂପଦେଇପୁର ଭର୍ଣ୍ଣାକୁଲର ସ୍କୁଲର ଶିକ୍ଷକ ଥାନ୍ତି । ଭର୍ଣ୍ଣାକୁଲର ସ୍କୁଲ କହିଲେ ଆଜିର ମଧ୍ୟଇଂରେଜୀ ବିଦ୍ୟାଳୟ । ସେଥିରେ କେବଳ ଇଂରେଜୀ ଶିକ୍ଷା ଦିଆଯାଏ ନାହିଁ—ସମସ୍ତ ବିଷୟ ମାତୃଭାଷାରେ ଅଧ୍ୟୟନ କରିବାକୁ ହୁଏ ଓ ଉତ୍ତର ଦେବାକୁ ହୁଏ । ଏହି ସମୟରେ ମଧ୍ୟଇଂରେଜୀ ବିଦ୍ୟାଳୟ ଗୁଡ଼ିକରେ ଇଂରେଜୀ ଶିକ୍ଷା ଦିଆଯାଉଥିଲା । ଇଂରେଜୀକୁ ବାଧ୍ୟତାମୂଳକ ଭାବରେ ଅନୁପ୍ରବେଶ କରାଇଲେ କାଳେ ପ୍ରତିକ୍ରିୟା ସୃଷ୍ଟି ହେବ, ବୋଧହୁଏ ସେଥିପାଇଁ ଅତି ସାବଧାନତାର

ସହିତ ବିକଳ୍ପ ବ୍ୟବସ୍ଥାରୂପେ କେବଳ ଭଣ୍ଡାରିକୁଲରରେ ମଧ୍ୟଇଂରାଜୀ ସ୍ତରରେ ଇକ୍ୟୁଭାଲେଣ୍ଟ ସାର୍ଟିଫିକେଟ ଦିଆଯାଉଥିଲା । ସେତେବେଳେ ଇଂରେଜୀ ପଢ଼ୁଆ ଲୋକଙ୍କର ଏକାନ୍ତ ଅଭାବ ଥିଲା । ପୁଣି ନିପଟ ମଫସଲ ଅଞ୍ଚଳର ସ୍କୁଲରେ ଇଂରେଜୀ ଶିକ୍ଷକ ମିଳିବା ଦୁଷ୍କର ।

ଗୋପବନ୍ଧୁ ଏହି ଭଣ୍ଡାରିକୁଲର ସ୍କୁଲରେ ବିଧିବଦ୍ଧ ଭାବରେ ପଢ଼ା ଆରମ୍ଭ କଲେ । ପିଲାବେଳୁ ତାଙ୍କର ପ୍ରଶ୍ନେଚ୍ଛୁ ମନ ବହୁ ବିଷୟ ଜାଣିବା ପାଇଁ ଓ ବୁଝିବା ପାଇଁ ଖୁବ୍ ଆଗ୍ରହ ପ୍ରକାଶ କରୁଥିଲା ।

ଗୋପବନ୍ଧୁ ତାଙ୍କର ଶିକ୍ଷକଙ୍କୁ ପଚାରନ୍ତି—"ଆପଣେ, ଯୁଦ୍ଧ ବୋଇଲେ କଣ ?" ମିଶ୍ର ଆପଣେ ଉତ୍ତର ଦିଅନ୍ତି—"ଆରେ ପିଲାଏ ଏ ଯୁଦ୍ଧ କଥା ଜାଣିନା—ଏଣ୍ଡୁ ଶବର କାଣ୍ଡ ମାରେ, ଡେଣ୍ଡୁ ଶବର କାଣ୍ଡ ମାରେ ।" ଗୋପବନ୍ଧୁ ପରେ ଅନେକ ସମୟରେ ତାଙ୍କ ପିଲାଦିନର ଗୁରୁଙ୍କର ଏହି ନିରୀହ ଉକ୍ତିଟି ଉଲ୍ଲେଖ କରୁଥିଲେ ।

ସେ ଭଣ୍ଡାରିକୁଲର ସ୍କୁଲରୁ ବୃତ୍ତି ପାଇ ପୁରୀ ଜିଲ୍ଲା ସ୍କୁଲର ୭ମ 'ବି' ଶ୍ରେଣୀରେ ନାମ ଲେଖାଇଲେ । ଇଂରେଜୀ ଜ୍ଞାନ ନ ଥିବାରୁ ତାଙ୍କୁ ତଳ ଶ୍ରେଣୀରେ ଇଂରେଜୀ ପଢ଼ିବାକୁ ହେଲା । ଛ'ମାସ ପରେ ୭ମ 'ଏ' ଶ୍ରେଣୀକୁ ଓ ସେଠାରୁ ଡବଲ ପ୍ରମୋସନ ପାଇ ୫ମ ଶ୍ରେଣୀ (ବର୍ତ୍ତମାନର ୭ମ ଶ୍ରେଣୀ) କୁ ଉଠିଥିଲେ । ଏନ୍‌ଟ୍ରାନସ୍‌ର ୪ର୍ଥ ଶ୍ରେଣୀ (ବର୍ତ୍ତମାନର ୮ମ ଶ୍ରେଣୀ) ରେ ପଢ଼ିଲା ବେଳକୁ ତାଙ୍କର ବୟସ ହୋଇଥିଲା ଷୋହଳ ବର୍ଷ । ଇଂରେଜୀ ଜ୍ଞାନ ଯଥେଷ୍ଟ ନ ଥିବାରୁ ଏକପ୍ରକାର ନ୍ୟୂନ ଭାବ ତାଙ୍କ ମନରେ ଆସୁଥିଲା ଓ ସହାଧ୍ୟାୟୀମାନଙ୍କ ସମକକ୍ଷ ହେବାପାଇଁ ସେ ବହୁ ଶ୍ରମ କରୁଥିଲେ ।

ବୋଧହୁଏ ତାଙ୍କର ୯ମ ଶ୍ରେଣୀରେ ଅଧ୍ୟୟନ ସମୟ—୧୮୯୪ ମସିହା । ଏହି ସମୟରେ ରାଧାନାଥ ଓଡ଼ିଶାର ଶିକ୍ଷାବିଭାଗର ପଦସ୍ଥ କର୍ମଚାରୀ (ଇନସ୍‌ପେକ୍‌ଟର) ଥାଆନ୍ତି । ଅନେକଗୁଡ଼ିଏ ନୂଆ ସାହିତ୍ୟ କାବ୍ୟ କବିତା ଆକାରରେ ଲେଖି ସେ ଏକ ରକ୍ଷଣଶୀଳ ଗୋଷ୍ଠୀଦ୍ୱାରା ଅତି ମାତ୍ରାରେ ସମାଲୋଚିତ ହେଉଥା'ନ୍ତି । ତାଙ୍କ ସାହିତ୍ୟ ବିରୁଦ୍ଧରେ ଅସାମାଜିକତା, ବିଜାତୀୟତା ଓ ଅପାରମ୍ପରିକତା ଆଦି ବହୁ ଅପରାଧ ଯୋଡ଼ି ଭକ୍ତସାହିତ୍ୟର ଦଳେ ପ୍ରାବକ ଖୁବ୍ ଗାଳିଗୁଲଜ କରୁଥାନ୍ତି । ସେଥିପାଇଁ 'ଇନ୍ଦ୍ରଧନୁ' ନାମକ ଏକ ପତ୍ରିକା ୧୮୯୩ ମସିହାର ଶେଷ ଆଡ଼କୁ ପ୍ରକାଶ ପାଇଥାଏ । ଏଥିରେ 'ଗୋଲକଧନ୍ଦା' ନାମକ ଛଦ୍ମନାମରେ ଲାଲ ରାମନାରାୟଣ ରାୟ ରାଧାନାଥ ସାହିତ୍ୟ ବିରୁଦ୍ଧରେ ଆକ୍ରମଣ ଚଳାଇଥାନ୍ତି । ତାଙ୍କୁ ସହଯୋଗ କରୁଥାନ୍ତି 'ଗ୍ରାମାଭୂୟାଁ'ର ଲେଖକ ଉତ୍କଳ ଗୌରବ ମଧୁସୂଦନଙ୍କ ସାନଭାଇ ଶ୍ରୀ ଗୋପାଳବଲ୍ଲଭ ଦାସ । ଗୌରୀଶଙ୍କର, ରାମଶଙ୍କର, ବନମାଳୀ ସିଂ ଆଦି ଲେଖକମାନେ 'ଇନ୍ଦ୍ରଧନୁ' ବା ପ୍ରାଚୀନ ସାହିତ୍ୟର ସମର୍ଥନ କରୁଥା'ନ୍ତି । କବି ନନ୍ଦକିଶୋର, କବି ଫକୀରମୋହନ, କବି ଗଙ୍ଗାଧର ମୌନ

ପ୍ରତିବାଦକ ଭାବରେ ନୀରବ ବିକ୍ଷୋଭ ପ୍ରକାଶ କରୁଥାନ୍ତି । 'ଇନ୍ଦ୍ରଧନୁ' ପ୍ରକାଶ ପାଇବାର ମାସକପରେ ରାଧାନାଥୀ ସାହିତ୍ୟଙ୍କୁ ସମର୍ଥନ କଣେଇ 'ବିଜୁଳି' ନାମକ ଏକ ମାସିକ ପତ୍ରିକା ପ୍ରକାଶ ପାଇଲା । ଏଥିରେ ଭଞ୍ଜସାହିତ୍ୟ ଅଶ୍ଳୀଳ, ଉଲଗ୍ନ ବୋଲି ଦୋଷାରୋପ କରାଗଲା ଓ ରାଧାନାଥ ସାହିତ୍ୟର ନୂତନ ମୂଲ୍ୟବୋଧ, ରମ୍ୟବୋଧ ତଥା ଚରିତ୍ରଚିତ୍ରଣର ଅନନ୍ୟ ସ୍ୱଳଭତା ଉପରେ ସାଧୁବାଦ ଜଣାଇ ଦିଆଯାଇଥିଲା । ବିଶେଷତଃ 'ଇନ୍ଦ୍ରଧନୁ', 'ପାର୍ବତୀ' ଓ 'ଚନ୍ଦ୍ରଭାଗା' କାବ୍ୟ ବିରୁଦ୍ଧରେ ଯେଉଁ ସ୍ୱର ଉତ୍ତୋଳନ କରିଥିଲା, ଅନ୍ୟପକ୍ଷ ସମର୍ଥନ କରି ବିଜୁଳି ପ୍ରତିଷ୍ପର୍ଦ୍ଧାର ଡାକରାଦେଲା ।

ଜିଲ୍ଲାସ୍କୁଲମାନଙ୍କରେ ଏ ସାହିତ୍ୟ ବାର୍ତ୍ତା ପହଞ୍ଚୁଥିଲା । ବିଶେଷତଃ ବିଦ୍ୟୋତ୍ସାହୀ ଶିକ୍ଷକମାନେ ଏସବୁ ବାରମ୍ବାର ନିଜ ଭିତରେ ଆଲୋଚନା କରୁଥିଲେ । ଛାତ୍ରମାନଙ୍କ ମନରେ ଏସବୁ ଆଲୋଚନା ଓ ସାହିତ୍ୟିକ ଆଲୋଡ଼ନ ରେଖାପାତ କରିବା ସ୍ୱାଭାବିକ । ପୁଣି ଗୋପବନ୍ଧୁ ଏଠାରେ ନିଜକୁ ପରିବ୍ୟାପ୍ତ କରିବାର ବାଟ ଖୋଜୁଥା'ନ୍ତି । ସଭାସମିତି କରିବାରେ ଓ ଛୋଟ ଛୋଟ ସଂସଦ ଗଢ଼ିବାରେ ମନ ବଳାଉଥାନ୍ତି । ଗୋପବନ୍ଧୁ ରାଧାନାଥ ସାହିତ୍ୟ ଓ ତଥାକଥିତ ଆଧୁନିକତାର ଚରମ ସମାଲୋଚନା କରି ପଦ୍ୟ ଆକାରରେ ଗୋଟିଏ ଲେଖା ଛଦ୍ମନାମରେ 'ଇନ୍ଦ୍ରଧନୁ'କୁ ପଠାଇଥିଲେ ଓ ତାହା 'ଇନ୍ଦ୍ରଧନୁ'ରେ (୧୮୯୪) ପ୍ରକାଶ ପାଇଥିଲା । ସେହି କବିତାର ଗୋଟିଏ ଅଂଶରେ ରାଧାନାଥଙ୍କ ବ୍ୟକ୍ତିତ୍ୱ ପ୍ରତି ଆକ୍ଷେପ କରି ଲେଖାଥିଲା—

"କିଛି ଦୂରେ ଛ'ନ୍ତି ଧଡ଼ିଆ, ପଣ୍ଡିତଂମନ୍ୟ
ବାଉଁଶ ସାହିରେ ଶୃଗାଳକେଶରୀ ପରି, ହେଉଥାନ୍ତି ଗଣ୍ୟ ।"

ବୋଧହୁଏ, ଗୋପବନ୍ଧୁ 'ପାର୍ବତୀ' କାବ୍ୟରେ ପିତା-କନ୍ୟାର ଅବୈଧ ପ୍ରଣୟ ଚିତ୍ର, ଉଷାରେ ଏକ ପରମ୍ପରାବିରୋଧୀ ସ୍ୱୟମ୍ବରର ଚିତ୍ର ଆଦିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ପରେ ତାଙ୍କର ସମଗ୍ର ସାହିତ୍ୟ ଏହି ରାଧାନାଥୀ ସାହିତ୍ୟର ମୌନ ପ୍ରତିବାଦ ଭାବରେ ଆପଣା ରାସ୍ତାରେ ଗତିକରିଥିଲା । ଜୀବନକୁ ଲୋଭନୀୟ ଭାବରେ ଗ୍ରହଣ ନକରି ସତ୍ୟର ଅନୁସନ୍ଧାନରେ ତାଙ୍କର ସମଗ୍ର ସାହିତ୍ୟିକ ଜୀବନର ନିଷ୍ଠୁର ବାସ୍ତବତାକୁ ଖୋଜି ବସିଥିଲା । କର୍ମ ଜଞ୍ଜାଳରେ ନୀତି ଓ ନୈତିକତା ଆଗରେ ରୂପ ଓ ରମଣୀୟତା ଅପାଂକ୍ତେୟ ହୋଇପଡ଼ିଲା । ସେ କଥା ସ୍ୱତନ୍ତ୍ର ଭାବେ ଆଲୋଚିତ ହେବ ।

ରାଧାନାଥ ଗୋପବନ୍ଧୁଙ୍କର ଏ କବିତାଟି ପଢ଼ି ଖୁବ୍ ପ୍ରତିହିଂସାଶୀଳ ହୋଇ ପଡ଼ିଥିଲେ । ପୁଣି ଜିଲ୍ଲା ସ୍କୁଲର ଜଣେ ଛାତ୍ରର ଏ ଔଦ୍ଧତ୍ୟ—ଶିକ୍ଷାବିଭାଗର ଅଧିକର୍ତ୍ତା କିପରି ବା ସହିପାରନ୍ତେ ? ରାଧାନାଥ ସ୍କୁଲ୍ ପରିଦର୍ଶନ କରିବାକୁ ଆସି (୨୫ ଜାନୁଆରୀରୁ ୨ ଫେବୃୟାରୀ ୧୮୯୯) ପ୍ରଧାନ ଶିକ୍ଷକ ଗୋପାଳ ଦାସ ସରକାରଙ୍କୁ ଏ କଥା ପଚାରିଲେ । ସେତେବେଳେ ଶ୍ରୀ ମାଗୁଣି ଦାସ ଏନ୍‌ଟ୍ରାନସ ପାଶ୍ କରି ପୁରୀଜିଲ୍ଲା ସ୍କୁଲରେ ଶିକ୍ଷକ ଥା'ନ୍ତି । ସେ ଗୋପବନ୍ଧୁଙ୍କ ନାମ କହିଦେଲେ । ଏଥିରେ ପ୍ରଧାନ ଶିକ୍ଷକ ମହୋଦୟ

ଟିକେ ଦୁଃଖିତ ହେଲେ । କାରଣ ସେ ଜଣେ ମେଧାବୀ ଛାତ୍ର ହିସାବରେ ଗୋପବନ୍ଧୁଙ୍କୁ ଖୁବ୍ ସୁଖ ପାଉଥିଲେ ।

ଗୋପବନ୍ଧୁଙ୍କ ଦଣ୍ଡ ହେଲା—ସେ ବେଞ୍ଚ ଉପରେ ଦିନେ ଠିଆହୋଇ ରହିବେ ଓ ସେ ପାଉଥିବା ବୃତ୍ତି କଟିଯିବ । ଏଥିରେ ଗୋପବନ୍ଧୁ କ୍ଷୁବ୍ଧ ହୋଇ ପୁରୀ ଛାଡ଼ି ଲୁଚିକରି କଟକ ଚାଲିଆସୁଥିଲେ । ପରେ ତାଙ୍କ ବଡ଼ଭାଇ ତାଙ୍କୁ ଖୋଜି ବାଟରୁ ଗ୍ରାମକୁ ଆଣିଲେ । ସେ ପୁଣି ଯେତେବେଳେ ପୁରୀ ଜିଲ୍ଲା ସ୍କୁଲକୁ ଆସିଲେ ସେତେବେଳେ ତାଙ୍କ ଉପରୁ ଶାସ୍ତିଟିକ ଦଣ୍ଡ ବାତିଲ ହୋଇଯାଇଥିଲା; କିନ୍ତୁ ବୃତ୍ତି ଟଙ୍କା ଆଉ ମିଳିଲାନାହିଁ ।

ବୀରପ୍ରତାପପୁରର ଶ୍ରୀ ବୈଦ୍ୟନାଥ ମିଶ୍ର ଶ୍ରେଣୀରେ ସବୁବେଳେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ଶ୍ରୀ ଗୋପୀନାଥ ଦାସ ଓ ଶ୍ରୀ ବାଳକୃଷ୍ଣ ମହାନ୍ତି ଯଥାକ୍ରମେ ୨ୟ ଓ ୩ୟ ସ୍ଥାନ ଅଧିକାର କରୁଥିଲେ । ଅବଶ୍ୟ ଅତି ପିଲାକାଳରୁ ଗୋପବନ୍ଧୁ ବିବାହ କରିଥିବାରୁ ଓ ଏ ସମୟକୁ ତାଙ୍କର ପ୍ରଥମ ପୁତ୍ର ସନ୍ତାନ ଜନ୍ମ ହୋଇଥିବାରୁ ତାଙ୍କ ପଢ଼ାରେ ବହୁତ ସ୍ୱାଭାବିକ ବ୍ୟାଘାତ ଉପୁଜିଥିଲା । ଶ୍ରେଣୀରେ ପ୍ରଧାନଶିକ୍ଷକ ଓ ଅନ୍ୟ ଶିକ୍ଷକମାନେ ଯେତେବେଳେ ଭବିଷ୍ୟତର ଉଦ୍ଦେଶ୍ୟ ଓ ଅଭିପ୍ସା ସମ୍ପର୍କରେ ପ୍ରଶ୍ନ କରନ୍ତି ସମସ୍ତେ ମାଜିଷ୍ଟ୍ରେଟ ବା ଅନ୍ୟ କିଛି ବଡ଼ ଚାକିରି ଆଶା କରୁଥିବା କଥା କହୁଥିଲେ; କିନ୍ତୁ ଗୋପବନ୍ଧୁ କେବେ ଚାକିରି ଆଶା କରୁଥିବା କଥା କହୁନଥିଲେ । ପିଲାଦିନରୁ ଦେଶସେବା ଆଡ଼କୁ ତାଙ୍କର ପ୍ରବଳ ଝୁଙ୍କ ଥିଲା ।

ସ୍କୁଲଜୀବନରୁ ସେ ଖଦୀ ପିନ୍ଧୁଥିଲେ । କାରଣ ତାଙ୍କ ଗ୍ରାମ ନିକଟରେ ବହୁତ ତନ୍ତୁବାୟ ପରିବାର ବସବାସ କରୁଥିଲେ ଓ ସତ୍ୟବାଦୀ ଅଞ୍ଚଳରେ ସେତେବେଳେ କଳାପାହାଡ଼ୀ ଖଦୀର ବେଶ୍ ଆଦର ଥିଲା । ୧୮୮୫ ମସିହାରେ ବମ୍ବେରେ କଂଗ୍ରେସ ଅନୁଷ୍ଠାନ ସ୍ଥାପିତ ହେଲା । ଏହାର କିଛିକାଳ ପୂର୍ବରୁ ଭାରତର ସ୍ୱାଧୀନତା ପାଇଁ ପ୍ରାୟ ପ୍ରତ୍ୟେକ ପ୍ରାନ୍ତରେ ନୀରବ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ଏହି ଆନ୍ଦୋଳନକୁ ଏକ ସଙ୍ଘବଦ୍ଧ ରୂପ ଦେବାପାଇଁ ବମ୍ବେଠାରେ ଜାତୀୟ କଂଗ୍ରେସ ପରି ଏକ ମହାନ୍ ସମାଜସେବୀ ରାଜନୈତିକ ଦଳର ଗଠନ ଦଶବର୍ଷ ପରେ ଗୋପବନ୍ଧୁଙ୍କ ସ୍ୱାଧୀନ ପ୍ରତ୍ୟେକ ଚିନ୍ତାକୁ ଖୁବ୍ ପ୍ରଭାବିତ କରିବା ସ୍ୱାଭାବିକ । ସ୍କୁଲ ଜୀବନରୁ ବିଦେଶୀସରକାରକୁ ସେ ବଡ଼ ଘୃଣା କରୁଥିଲେ । ତେଣୁ ତାଙ୍କ ଚାଲିଚଳନ, ଆଚାର ବିଚାରରେ ତୀବ୍ର ଜାତୀୟତା ଓ ଦେଶୀଭାବ ଫୁଟିଉଠୁଥିଲା ।

ସେତେବେଳେ ରାମଚନ୍ଦ୍ର ଦାସ ମୁକ୍ତିଆର ବଡ଼ ଦେଶପ୍ରେମୀ ଲୋକ ଥିଲେ । ସେ ପୁରୀରେ ଅଧିକାଂଶ ସମୟ ରହୁଥିଲେ ଓ ଗୋପବନ୍ଧୁ ବରାବର ଆସି ତାଙ୍କ ପାଖରେ ବସୁଥିଲେ । ସେଠାରେ ଦେଶ ବିଦେଶର ବହୁ କଥା ଆଲୋଚନା ହେଉଥିଲା । ପ୍ରତ୍ୟେକ କଥାରେ ରାମଚନ୍ଦ୍ର ଦାସଙ୍କର ଉତ୍କଟ ଜାତିପ୍ରୀତି ଫୁଟିଉଠୁଥିଲା ଓ ଗୋପବନ୍ଧୁଙ୍କ ଯୁବ ପ୍ରାଣକୁ ଏହା ସ୍ପର୍ଶ କରୁଥିଲା । ଏଠାରେ 'ପୁରୀ ସେବାସମିତି' ନାମକ ଏକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗୋପବନ୍ଧୁ ଗଢ଼ିଥିଲେ । ରଥଯାତ୍ରା କାଳରେ ଏହି ସମୟରେ ପ୍ରବଳ ହଇଜା

ବ୍ୟାପିଗଲା । ବହୁ ସଂଖ୍ୟାରେ ଲୋକ ମରି ରାସ୍ତାଘାଟରେ ଶୋଇଲେ । ପଚିସଢ଼ା ଶବ ଗନ୍ଧ ଯୋଗୁ ରାସ୍ତାରେ ଚାଲିବା ଅସମ୍ଭବ ହେଲାନାହିଁ । ପୁରୀ ମ୍ୟୁନିସିପାଲିଟି ବା ସରକାରଙ୍କ ସ୍ୱାସ୍ଥ୍ୟ ବିଭାଗ ତରଫରୁ କୌଣସି ପ୍ରତିଷେଧକ ବ୍ୟବସ୍ଥା ହୋଇନଥିଲା । ଗୋପବନ୍ଧୁଙ୍କ ନେତୃତ୍ୱରେ ଗଢ଼ାହୋଇଥିବା 'ପୁରୀ ସେବାସମିତି' ରାସ୍ତାଘାଟର ଶବ ଉଠାଇ ପୋଡ଼ିବା କାର୍ଯ୍ୟ ତୁଲାଉଥିଲା । ହରିହର ଦାସ (ପରେ ଆଚାର୍ଯ୍ୟ) ସେତେବେଳେ ଗୋପବନ୍ଧୁଙ୍କ ତଳଶ୍ରେଣୀର ଛାତ୍ର । ସେ ଗୋପବନ୍ଧୁଙ୍କ 'ସମିତି' କାର୍ଯ୍ୟରେ ପ୍ରଥମ ସହକର୍ମୀ ହୋଇଥିଲେ । ସ୍ୱାସ୍ଥ୍ୟ ବିଭାଗର ଏହି ଉଦାସୀନତା ବିଷୟରେ ପୁରୀର ଗୋରା ସିଭିଲ ସର୍ଜନ ଟର୍ନିସବେକ୍‌ଙ୍କ ବିରୁଦ୍ଧରେ 'ଷ୍ଟେଟ୍‌ସମ୍ୟାନ' ସମ୍ବାଦପତ୍ରରେ ଗୋଟିଏ ସଂକ୍ଷିପ୍ତ ସମ୍ବାଦ ପ୍ରକାଶ ପାଇଥିଲା । ସେଥିପାଇଁ ସିଭିଲସର୍ଜନ ଉତ୍ତ୍ୟକ୍ତ ହୋଇ ସମ୍ବାଦ ପରିବେଷକ ଶ୍ରୀ ଦିବାକର ଦାସଙ୍କୁ ସାଧାରଣ ରାସ୍ତା ଉପରେ ଅପମାନ ଦେଲେ ଓ ପ୍ରହାରକଲେ । ଏହା ଜାଣି ମୁକ୍ତାର ରାମଚନ୍ଦ୍ର ଦାସ ଓ ଗୋପବନ୍ଧୁ ଏପରି ପରିସ୍ଥିତି ସୃଷ୍ଟି କଲେ ଯାହା ଫଳରେ ସିଭିଲ ସର୍ଜନ ପରେ ବାଧହୋଇ ଆସି ସେହି ସ୍ଥାନରେ ଦିବାକର ଦାସଙ୍କ ପାଖରେ କ୍ଷମା ପ୍ରାର୍ଥନା କରିଥିଲେ । ସେ ସମୟରେ ସାହେବଙ୍କ କ୍ଷମାପ୍ରାର୍ଥନା ପୁରୀ ଲୋକଙ୍କ ଉପରେ ଗୋଟାଏ ବଡ଼ ପ୍ରଭାବ ପକାଇଥିଲା । ଅନ୍ୟ ଅଫିସର୍‌ମାନେ କୌଣସି ଅନ୍ୟାୟ କାର୍ଯ୍ୟ କରିବାକୁ ଭୟ ପାଇଗଲେ ।

ଗୋପବନ୍ଧୁ ଛାତ୍ରଜୀବନରୁ ବହୁ ପୁସ୍ତକ ଅଧ୍ୟୟନ କରୁଥିଲେ । "On British Rule in India" "Famine", ଓ Edmond Burk ଆଦିଙ୍କ କେତେକ ଉପାଦେୟ ପୁସ୍ତକ ଅଧ୍ୟୟନ କରି ସେ ଅନେକ ଚିନ୍ତା କରୁଥିଲେ । Edmond Burkଙ୍କ "Impeachment of Warren Hestings" ସେତେବେଳେ ସ୍କୁଲ କଲେଜର ପାଠ୍ୟ ଥିଲା । ସ୍କୁଲରେ ସାପ୍ତାହିକ ଆଲୋଚନା ସଭା କରାଯାଉଥିଲା । ଏହି ସଭାମାନଙ୍କରେ ଗୋପବନ୍ଧୁ ପ୍ରଥମ ବକ୍ତା ଥିଲେ । ପିଲାଦିନେ ସେ ଖନା ଥିଲେ । କଥା ସ୍ପଷ୍ଟ ହେଉ ନଥିଲା ; କିନ୍ତୁ ବଡ଼ ସାବଧାନତା ସହକାରେ ସେ ଅଭ୍ୟାସ କରି ନିଜକୁ ଏହି ଦୋଷରୁ ମୁକ୍ତ କରିଥିଲେ । ସ୍କୁଲର ଏହିପରି ଆଲୋଚନା ସଭାଗୁଡ଼ିକରେ ସେ ବକ୍ତୃତା ଅଭ୍ୟାସ କରି ଭବିଷ୍ୟତ ପାଇଁ ନିଜକୁ ପ୍ରସ୍ତୁତ କରୁଥିଲେ । ତେଣୁ ଭାଷଣ ଦେବାରେ ତାଙ୍କର ସଙ୍କୋଚ ପ୍ରକାଶ ପାଉନଥିଲା । ଏପରିକି ଚିନ୍ତା ଓ ଆଚରଣରେ ତାଙ୍କର ମୌଳିକତା ସ୍ପଷ୍ଟ ବାରିହୋଇପଡ଼ୁଥିଲା । ସେତେବେଳେ ନିବ୍ ଓ ପେନ୍ ବାହାରିଥିଲେ ମଧ୍ୟ ସେ ପକ୍ଷୀ କଲମରେ ହିଁ ଲେଖିବାକୁ ଅଧିକ ପସନ୍ଦ କରୁଥିଲେ । ନିଜ ମୁଣ୍ଡରେ ଗୋଛାଏ ଚୁଟି ରଖୁଥିଲେ । ପୁରୁଷ ଲୋକମାନେ ଏହିପରି ଚୁଟି ରଖିବା, କାନରେ କୁଣ୍ଡଳ ଆଦି ସୁନାର ଅଲଙ୍କାର ପିନ୍ଧିବା ବହୁଦିନଯାଏ ଓଡ଼ିଶାର ନିପଟ ମଫସଲ ଅଞ୍ଚଳରେ ପ୍ରଚଳିତ ଥିଲା । ଗୋପବନ୍ଧୁ କଲିକତାରେ '...' ପଢ଼ିବାବେଳେ ତାଙ୍କ ସହାଧ୍ୟାୟୀ ଶ୍ରୀ ଉମାଚରଣ ଦାସ ଲୁଚେଇ କରି ଏ ଚୁଟି ପରେ କାଟିଦେଲେ । ଏହି କଲିକତାରେ

ଗୋପବନ୍ଧୁ ପ୍ରଥମ କରି ପଞ୍ଜାବି ପିନ୍ଧିଲେ । ନଚେତ୍ ପୁରୀ ଜିଲ୍ଲାସ୍କୁଲ ଓ କଟକ କଲେଜରେ କଲାପାହାଡ଼ ପଖାଳିକରିଆ ତାଙ୍କର ପ୍ରଧାନ ପରିଧେୟ ଥିଲା । ନିଜ ଦେଶୀୟତ୍ୱକୁ ଧରି ରଖିବାର ଗମ୍ଭୀର ନିଷ୍ଠା ପାଖରେ ଯେ କୌଣସି ଉପହାସ ଓ ସମାଲୋଚନା ଗୋପବନ୍ଧୁଙ୍କୁ ବିବ୍ରତ କରି ପାରୁ ନ ଥିଲା । ଏପରିକି ସ୍କୁଲଠାରୁ କଲେଜ ପର୍ଯ୍ୟନ୍ତ ଜଣେ ନିଷ୍ଠାପର ହିନ୍ଦୁ ଭାବରେ ସେ ଚଳିଲାବେଳେ କେବେ କେବେ ନବାଗତ ପଶ୍ଚିମୀ ସଭ୍ୟତାର ଧକ୍କା ତାଙ୍କଠାରେ ବାଜୁଥିଲା । ଇଂରେଜୀ ପଢ଼ୁଆ ଲୋକେ ତଥା ନୂଆ ଆଦବ୍‌କାଇଦାକୁ ଆଦରି ନେଉଥିବା ବହୁ ପଢ଼ାସାଥୀ ତାଙ୍କୁ 'ଆବ୍‌ନରମାଲ୍' ବୋଲି ଭାବିବାକୁ ଆରମ୍ଭ କରିଦେଇଥିଲେ ।

## ବିବାହ ଓ ପିତୃତ୍ୱ

ଊନବିଂଶ ଶତାବ୍ଦୀର ଓଡ଼ିଆ ବ୍ରାହ୍ମଣ ପରିବାରର ବିବାହ ପ୍ରଥା ବଡ଼ ଜଟିଳ ଥିଲା । ବିବାହର ପ୍ରକୃତ ଅର୍ଥ ବୁଝିବା ପୂର୍ବରୁ ପାଞ୍ଚ ସାତ ବର୍ଷଠାରୁ ଦଶ ବର୍ଷ ମଧ୍ୟରେ ଝିଅକୁ ବିବାହ ଦେଇ ବାପ ମାଆମାନେ ନିଶ୍ଚିନ୍ତ ହେଉଥିଲେ । ଓଡ଼ିଶାସାରା ଏହି ବାଲ୍ୟବିବାହ ପ୍ରଥା ସେତେବେଳେ ବଳବତ୍ତର ଥିଲା । ପୁରୀ ଓ ଗଞ୍ଜାମ ଜିଲ୍ଲାରେ ଏ ବିବାହ ସର୍ବୀ କୁଣ୍ଢେଇ ବିବାହପରି ବୋଧହେଉଥିଲା । କାରଣ ଝିଅ ଓ ପୁଅ ଉଭୟେ ସାତ ଆଠ ବର୍ଷ ମଧ୍ୟରେ ବେଦିରେ ଦୁଇଟି କୁଣ୍ଢେଇ ପରି ବସି ଖେଳିଲା ପରି ହୋମ ଓ ମନ୍ତ୍ରପାଠ ଭିତରେ ବନ୍ଧାହେଉଥିଲେ । ଝିଅ ପୌଢ଼ା ହେଲେ ବିବାହ ନିଷିଦ୍ଧ ଥିଲା ଓ ସାମାଜିକ ଅପରାଧ ରୂପେ ପରିଗଣିତ ହେଉଥିଲା ।

ଗୋପବନ୍ଧୁ ଭଣ୍ଡାରିକୁଳର ସ୍କୁଲରେ ପଢ଼ିଲାବେଳେ ବିବାହ କରିଥିଲେ । ବୟସ ହେବ ବାର ମଧ୍ୟରେ । ବ୍ରତ ହେବାର ମାତ୍ର ଛ'ମାସ ପରେ ତାଙ୍କର ବିବାହ ଉତ୍ସବ ହୋଇଗଲା । ବିବାହ କର୍ମର ବୈଦିକ ନିୟମାନୁସାରେ ହସ୍ତଗ୍ରନ୍ଥି ନ ପଡ଼ିବା ପର୍ଯ୍ୟନ୍ତ ପୁଅ ଓ ଝିଅ କିଛି ଖାଇବା ନିଷେଧ । ଶ୍ରେଷ୍ଠ ପିଲାମାନଙ୍କୁ ଏହା ବଡ଼ ବାଧୁଥିଲା । ସେମାନେ ଭୋକରେ ଢୁଳେଇପଡ଼ୁଥିଲେ । ଲୁଗା ପିନ୍ଧିବାର ଅଭ୍ୟାସ ନ ଥିବାରୁ କନ୍ୟା ଖୁବ୍ ବଡ଼ ଶାଢ଼ି ଖୋସିଖାସି ହୋଇ ପିନ୍ଧି ବଡ଼ ବିଚିତ୍ର ଦେଖାଯାଉଥିଲା । ହୋମ ନିଆଁ ପାଖରେ ବଡ଼ ଲୁଗା ପିନ୍ଧି ବସିବାରେ ଝିଅ ପିଲାଙ୍କୁ ବଡ଼ କଷ୍ଟ ହେଉଥିଲା । ବେଳେବେଳେ ଲୁଗାପଟା କାଢ଼ି ଫୋପାଡ଼ିଦେବାକୁ ସେ ଅଝଟ କରୁଥିଲା । ଗୋପବନ୍ଧୁଙ୍କୁ ବରବେଶରେ ଓ ବାଙ୍କୁରବା ଶାସନର ଝିଅ ମୋତି ଦେବୀଙ୍କୁ କନ୍ୟାବେଶରେ ଏହିପରି ଯନ୍ତ୍ରଣା ଭିତରେ ବିବାହ କର୍ମ ସମାପନ କରିବାକୁ ହୋଇଥିଲା ।

ପନ୍ଦର ବର୍ଷରେ ପୁରୀ ଜିଲ୍ଲା ସ୍କୁଲରେ ପଢ଼ୁଥିବାବେଳେ ନବବଧୂ ମୋଧ ଦେବୀ ତାଙ୍କ ଘରକୁ ପଦ୍ମଲପାଳ ଆସିଲେ । ବର ମାଗଣରେ କନ୍ୟା ଆସିବା ପ୍ରଥା ସେତେବେଳେ ବ୍ରାହ୍ମଣ ସମାଜରେ ପ୍ରଚଳିତ ନଥିଲା । ଦୀର୍ଘ ଓଢ଼ଣୀ ଭିତରେ ସୁଆସିରୁ ନବବଧୂ ପାଦ ଗଣି ଗଣି ନଇଁ ନଇଁ ଆସିଲାବେଳେ ଏକ ବିଚିତ୍ର ଦୃଶ୍ୟ ସୃଷ୍ଟି ହେଉଥିଲା । ବାପଘର ବିଦାୟ ନେଲାବେଳେ କାନ୍ଦିକାନ୍ଦି ଆଖି ଲାଲ ହୋଇଯାଏ । ପୁଣି ସେତେବେଳର ପ୍ରଚଳିତ ପ୍ରଥା ଅନୁସାରେ ବଡ଼ମାନଙ୍କଠାରୁ କାନ୍ଦଣା ଶିଖିବାକୁ ହେଉଥିଲା । ଯେ ଯେତେ ବଡ଼ପାଟିରେ ପଦଯୋଡ଼ି, ସ୍ୱର ଓ ମୂର୍ଚ୍ଛନା ସୃଷ୍ଟିକରି କାନ୍ଦିପାରେ ତାକୁ ଗ୍ରାମଲୋକେ ସେତିକି ତାରିଫ୍ କରନ୍ତି । ଯେ କାନ୍ଦିପାରୁନଥିଲା ଓ ନୀରବରେ ନିଜର ଦୁଃଖ ପ୍ରକାଶ କରୁଥିଲା ତାକୁ 'ଅଣ୍ଡିରିଚଣ୍ଡୀ','ଅଭିଲା' ଆଦି ବହୁ ଭାବରେ ସମାଲୋଚନା କରାଯାଉଥିଲା । ଝିଅର ଦୁଃଖର ଗମ୍ଭୀରତାକୁ କଳନା କରିବାର ମାପକାଠି ଥିଲା ଏକମାତ୍ର ଉଚ୍ଚରୋଳରେ କ୍ରନ୍ଦନ ।

ଏହି ପଦ୍ଧତି ଓ ପରମ୍ପରା ଭିତରେ ମୋଧ ଦେବୀ ସୁଆସ୍ରୋ ଆସିଲେ । ଗୋପବନ୍ଧୁଙ୍କୁ ଏ ସବୁ ବଡ଼ କୌତୁକପୂର୍ଣ୍ଣ ବୋଧହେଉଥାଏ । ନବବଧୂକୁ ଦେଖିବାର ଦୁରନ୍ତ ଆକାଙ୍କ୍ଷା ପାଖରେ ତାର ଦୀର୍ଘ ଓଢ଼ଣା ଅନ୍ତରାୟ ହେଉଥାଏ । ପୁଣି ତା' ପାଟିରୁ କଥା ଶୁଣିବା ସମ୍ପୂର୍ଣ୍ଣ ଅସମ୍ଭବ । ଅନେକଦିନ ଯାଏ ସେ କେବଳ ଠାରରେ ବା 'ହୁଁ' ମାତ୍ର କଥା କହୁଥିଲେ । ଆଉ ଆଉ ଗୁରୁଜନମାନଙ୍କୁ ଲୁଚାଇ ପରି ସେ କାଳର ପ୍ରଥାନୁସାରେ ଦିନବେଳେ ନିଜ ସ୍ୱାମୀଙ୍କୁ ଦେଖା ଦେଉ ନ ଥିଲେ । ଗୋପବନ୍ଧୁଙ୍କଠାରୁ ସେ ମାତ୍ର ଛ'ମାସ ସାନ ଥିଲେ ।

ତାଙ୍କୁ ଷୋଳବର୍ଷ ବେଳେ ପ୍ରଥମ ସନ୍ତାନ ଏକ ମୃତପୁତ୍ର ଜାତ ହେଲା । ମୋଧ ଦେବୀଙ୍କ ଗର୍ଭପାତ ଫଳରେ ଅସମୟରେ ଏ ମୃତପିଲା ଜନ୍ମ ହୋଇଥିଲା । ସେଦିନ ଏକ ଭୟଙ୍କର ଘଟଣା ଘଟିଗଲା । ଗୋପବନ୍ଧୁଙ୍କ ବଡ଼ଭାଇ ନାରାୟଣ ଦାଶ କୌଣସି କାରଣରୁ ନିଜ ପଡ଼ଶା ବାନାମ୍ବର ଦାଶଙ୍କୁ ଏଡ଼େ ଜୋର୍‌ରେ ଏକ ବ୍ରହ୍ମଚାପୁଡ଼ା ଲଗାଇଲେ ଯେ, ସେଇ ଚାପୁଡ଼ାକରେ ବାନାମ୍ବର ଦାଶଙ୍କର ଅପମୃତ୍ୟୁ ହେଲା । ଗ୍ରାମଗୁଡ଼ି ନାରାୟଣ ଦାଶ ବାଲିପୁଟ ମକଦମୀକୁ ପଳାଇଲେ । ପୋଲିସ ଆସି ପହଞ୍ଚିଲା । ଗୋପବନ୍ଧୁବାବୁଙ୍କ ସ୍ତ୍ରୀକୁ ପୋଲିସ ଜେରା କଲାବେଳେ ସେ ବଡ଼ ଭୟଭୀତ ଓ ବିଚଳିତ ହୋଇ ପଡ଼ୁଥାନ୍ତି । ସମସ୍ତଙ୍କୁ ଶିଖେଇ ଦିଆଯାଇଥିଲା — କହିବାକୁ ହେବ ଯେ "ବାନାମ୍ବର ଦାଶଙ୍କୁ ବାତ ମାରେ — ସେଇଥିରେ ସେ ମରିଛନ୍ତି ।" ମୋଧ ଦେବୀ ଏତେବଡ଼ ମିଛ କଥାଟାକୁ ଅନ୍ୟମାନଙ୍କ ପରି ସହଜରେ କହିପାରୁନଥାନ୍ତି । ତଥାପି ଭୟରେ ଥରି ଥରି କହିଲେ — "ବାତ ମାରିଲା — ସେ ମରିଗଲେ । ଦେଢ଼ଶୁର ଘରେ ନାହାନ୍ତି ।"

ସେତେବେଳେ ପୋଲିସ (ବରକନ୍ଦାଜ) ଘୋଡ଼ାରେ ଚଢ଼ି ଆସୁଥିଲେ । ପୋଲିସର ଚେହେରା ଓ ପୋଷାକ ଦେଖିଲେ ଲୋକେ ଥରୁଥିଲେ । ପାଟିରୁ କଥା ବାହାରୁ ନ ଥିଲା । ଇଂରେଜ ସରକାରଙ୍କ ପରି ତାଙ୍କ ପୋଲିସ ମଧ୍ୟ ପ୍ରବଳ ପରାକ୍ରମୀ ଥିଲେ । କାରଣ

ଅକାରଣରେ ଲୋକଙ୍କୁ ବାନ୍ଧ ବାଡ଼େଇଲେ ବି ତା' ପାଇଁ ଅାହା ପଦେ କାହା ତୁଣ୍ଡରୁ ପ୍ରତ୍ୟକ୍ଷରେ ବାହାରୁ ନ ଥିଲା । ପୋଲିସ ଦାଣ୍ଡରେ ଘୋଡ଼ାରେ ବସି ଯିବାର ଦେଖି ଓ ଏସବୁ ଘଟଣା ପରେ ସେଦିନ ରାତ୍ରରେ ଗର୍ଭପାତ ଫଳରେ ମୋତି ଦେବୀଙ୍କର ପ୍ରଥମ ସନ୍ତାନ ନଷ୍ଟହୋଇଗଲା ।

ପୁନଶ୍ଚ ଗୋପବନ୍ଧୁଙ୍କ ଅଠରବର୍ଷବେଳେ ମୋତି ଦେବୀଙ୍କର ଦ୍ୱିତୀୟ ପୁତ୍ର ସନ୍ତାନ ଜାତହେଲା । କୋଡ଼ିଏ ଓ ବାଇଶି ବର୍ଷରେ ଦୁଇଟି ଝିଅ ମଧ୍ୟ ଜନ୍ମହେଲେ ।

୧୯୦୧ ମସିହାରେ ପୁରୀ ଜିଲ୍ଲାରେ ଉତ୍କଟ ବସନ୍ତ ସଂକ୍ରାମକ ବ୍ୟାଧି ବ୍ୟାପିଯାଇଥିଲା । ସେତେବେଳେ ବସନ୍ତ ହେଲେ ଗ୍ରାମରୁ ଅଧେ ଲୋକ ଶାଗପଟାଳି ପରି ପଡ଼ିଯାଉଥିଲେ । ବସନ୍ତ ପ୍ରତିଷେଧକ ଉଦ୍ଭାବିତ ହୋଇ ନ ଥିଲା । ତେଣୁ ସଙ୍କୀର୍ତ୍ତନ କରି, ସପ୍ତା ବସେଇ, ଠାକୁରାଣୀଙ୍କୁ ଧୂପଦୀପ ଦେଇ ସନ୍ତୁଷ୍ଟ କରିବାରେ ଅନାହାନ୍ତ ଲୋକମାନେ ବ୍ୟସ୍ତ ରହୁଥିଲେ । ଏପରିକି ବସନ୍ତରୋଗୀକୁ ପ୍ରକୃତ ଚିକିତ୍ସା ଦେବା ମଧ୍ୟ ଅସମ୍ଭବ ଥିଲା । ଗୋଟିଏ ଗୋଟିଏ ପରିବାର ସମ୍ପୂର୍ଣ୍ଣ ସଫା ହୋଇ ଯାଉଥିଲା । ଯେ ବା ବଞ୍ଚିଥିଲେ ସେମାନେ ଆଖି ହରାଇ, ଦେହସାରା ବସନ୍ତ ଦାଗ ଦେଖାଇ, ଅତି ଦୟନୀୟ ଭାବରେ ବଞ୍ଚି ରହୁଥିଲେ । ବସନ୍ତ ପରି ଆଉ ଏକ ଭୟଙ୍କର ଦୁର୍ବିନୀତ ବେମାରି ଥିଲା ଝାଡ଼ାବାନ୍ତି ବା କଲେରା—ବସନ୍ତ ଅପେକ୍ଷା ବରଂ ଅଧିକ ଭୟଙ୍କର ।

ଛ'ବର୍ଷ ବେଳେ ଗୋପବନ୍ଧୁଙ୍କ ପୁଅ ଏଇ ବସନ୍ତ ରୋଗରେ ଆକ୍ରାନ୍ତ ହେଲା । ଗ୍ରାମରେ ଥାଏ, ତେଣୁ ଗ୍ରାମ୍ୟ ବୈଦ୍ୟ ସାଧାରଣ ଟୁଣୁକାଟୁଣୁକି ଚିକିତ୍ସା କରୁଥାନ୍ତି । ବସନ୍ତ ଭଲ ହୋଇଗଲା, କିନ୍ତୁ ନାଲିରକ୍ତ ଝାଡ଼ା(Blood dysentery)ଲାଗି ରହିଲା । ସେତେବେଳେ ଗୋପବନ୍ଧୁ କଟକ ରେଭେନ୍ସା କଲେଜରେ ବି. ଏ. ପଢ଼ୁଥାନ୍ତି । ସେ ବର୍ଷ ପରୀକ୍ଷାରେ ଫେଲ୍ ହୋଇଥାନ୍ତି ଓ ପୁଣି ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାନ୍ତି । ସେ ବର୍ଷ ପୁରୀ ଜିଲ୍ଲାରେ ଦୟା ଓ ଭାର୍ଗବୀ ନଦୀ କ୍ଷୁଭିତ ହୋଇ ବହୁ ଅଞ୍ଚଳ ପ୍ଳାବିତ କରିଥାଏ । ଅନେକ ଘରଦ୍ୱାର ଭାସିଯାଇଥାଏ । ବହୁଲୋକେ ଅନାହାରରେ ମରୁଥାନ୍ତି । ଗୋପବନ୍ଧୁ ପଢ଼ାପଢ଼ି ଗୁଡ଼ି ବୁଲି ବୁଲି ଚୂଡ଼ା ଗୁଡ଼ଲ ବାଣ୍ଟୁଥାନ୍ତି ।

୧୯୦୪ ମସିହା କଥା, ଖବର ପାଇ ଅସୁସ୍ଥ ପୁଅକୁ ନେଇ ଗୋପବନ୍ଧୁ ପୁରୀ ଆସିଲେ । ରୋଗଶଯ୍ୟା ପାଖରେ ବରାବର ବସମର୍ଷ ହୋଇ ବସିଥାନ୍ତି । ମାଗୁଣୀ ବ୍ରହ୍ମା ଚିକିତ୍ସକଙ୍କ ବହୁ ଯତ୍ନ ସତ୍ତ୍ୱେ ନାଲିରକ୍ତ ଝାଡ଼ା ବନ୍ଦ ହେଉ ନ ଥାଏ । ବ୍ରହ୍ମା ବଡ଼ ଉଦ୍‌ବିଗ୍ନ ହୋଇ ପଡ଼ୁଥାନ୍ତି । ଗୋପବନ୍ଧୁ କିନ୍ତୁ ଧୀରସ୍ଥିର ଓ ନିର୍ବିକାର ଭାବରେ ଏ ଦୁର୍ଦ୍ଦଶାକୁ ସହି ନେଉଥାନ୍ତି । ଶେଷରେ ପୁଅର ମୃତ୍ୟୁ ହେଲା । ଗୋପବନ୍ଧୁ ଏ ଦୁଃଖରେ ମ୍ରିୟମାଣ ହୋଇ ପଡ଼ିଲେ । ତାଙ୍କର ଯୁବ ତରଳ ହୃଦୟରୁ ଅସରନ୍ତି କୋହ ଓ ଆଖିରୁ ଅନବରତ ଲୁହଧାର ଛୁଟୁଥାଏ । ଶେଷରେ ମୃତ ସନ୍ତାନକୁ ଶ୍ମଶାନକୁ ନିଆଗଲା । ଆଚାର୍ଯ୍ୟ ମହାଶୟ, ପଣ୍ଡିତ ନୀଳକଣ୍ଠ ପ୍ରଭୃତି ସେତେବେଳେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର । ଗୋପବନ୍ଧୁଙ୍କ ସହ ଆଗରୁ

ଏମାନଙ୍କର ପରିଚୟ ହୋଇଥାଏ । ମୁକ୍ତାର ରାମଚନ୍ଦ୍ର ଦାସ, ଉମାପଡ଼ାର ଶ୍ରୀ ବାସୁଦେବ କର, ଡାକ୍ତର ବ୍ରହ୍ମା, ନୀଳକଣ୍ଠ, ହରିହର ପ୍ରଭୃତି ସମସ୍ତେ ଶ୍ମଶାନକୁ ଶବାଧାର ସହିତ ଅନୁଗମନ କଲେ । ଶବ ମୁହଁରେ ଅଗ୍ନି ସଂଯୋଗ କରୁ କରୁ ଗୋପବନ୍ଧୁ ଅତି ବିବ୍ରତ ଓ ଅଧୀର ହୋଇ ପଡ଼ୁଥିଲେ । ଯେଉଁ କୁଳପ୍ରଦୀପ ଭବିଷ୍ୟତରେ ତାଙ୍କ ଶବାଧାର ସହିତ ଯାଇ ମୁଖାଗ୍ନି ସଂଯୋଗ କରିଥାନ୍ତା ବିଧିର ବିଡ଼ମ୍ବନାରେ ତା'ପାଇଁ ବିପରୀତ ଘଟିଛି । ଗୋପବନ୍ଧୁ ଏହାହିଁ ବାରମ୍ବାର କହୁଥାନ୍ତି । ସମସ୍ତ ଓଡ଼ିଶା ଯାହାର ପ୍ରାଣପିଣ୍ଡ, ଓଡ଼ିଆମାନେ ଯାହାର ସନ୍ତାନ ତାଙ୍କପାଇଁ ଗୋଟିଏ ପୁଅ ନୁହେଁ କୋଟିଏ ପୁଅ ମୁଖାଗ୍ନି ଦେବାକୁ ଅଛନ୍ତି—ବୋଧହୁଏ ଏକଥା ଗୋପବନ୍ଧୁ ସେତେବେଳେ ଚିନ୍ତାକରିପାରୁନଥାନ୍ତି ।

କିନ୍ତୁ ପ୍ରତ୍ୟକ୍ଷଦର୍ଶୀ ରଘୁନାଥ ରଥ ଏ ଘଟଣାର ସାକ୍ଷ୍ୟ ବହନ କରି ଅନ୍ୟସ୍ଥଳରେ କହିଅଛନ୍ତି—"ଏପରି ରୋଗାକ୍ରାନ୍ତ ଶିଶୁପୁତ୍ରକୁ ଛାଡ଼ି ବନ୍ୟାଗ୍ରସ୍ତ ଅଞ୍ଚଳକୁ ଯିବାକୁ ଆମେ ଗୋପବନ୍ଧୁଙ୍କୁ ବାରମ୍ବାର ନିଷେଧ କଲୁ । ସେ କିନ୍ତୁ ଅବିଚଳିତ କଣ୍ଠରେ ଆମକୁ ଉତ୍ତର ଦେଲେ", ଜନ୍ମମୃତ୍ୟୁ ଈଶ୍ୱରଙ୍କର ଇଚ୍ଛାଧୀନ । ଈଶ୍ୱରଙ୍କ କୃପା ହେଲେ ପୁଅ ବଞ୍ଚିବ, ନୋହିଲେ ନାହିଁ । ତୁମେ ସବୁ ତ ଅଛ, ମୁଁ ରହି ଅଧିକ ବା କଣଟା କରିପାରିବି ? ବନ୍ୟାପୀଡ଼ିତ ଅଞ୍ଚଳରେ ଯେ କେତେ ପିତା ତାଙ୍କର ଏକମାତ୍ର ପୁତ୍ରକୁ ହରାଇ ଦୁଃଖରେ ହା' ହା'କାର କରୁଛନ୍ତି—ସେମାନଙ୍କୁ ଏ ଦାରୁଣ ଦୁର୍ବିପାକରେ ସାନ୍ତ୍ୱନା ଦେବ କିଏ ?"

ଏଥିରୁ ଅନୁମିତ ହୁଏ ଯେ ଗୋପବନ୍ଧୁ ରୋଗଶଯ୍ୟାରେ ପୁଅକୁ ଛାଡ଼ି ବନ୍ୟାଦୁର୍ଗତ ଅଞ୍ଚଳକୁ ଯାଇଥିଲେ । ପରେ ଫେରିଆସି ପୁଅର ମୃତ୍ୟୁଶଯ୍ୟା ପାଖରେ ଜଗିରହିଥିଲେ । ପୁରୀସହରଠାରୁ ପୁରୀର ଉକ୍ତ ବନ୍ୟାଗ୍ରସ୍ତ ଅଞ୍ଚଳ ବିଶେଷ ଦୂରବର୍ତ୍ତୀ ନ ଥିଲା । କର୍ତ୍ତବ୍ୟକୁ ଜୀବନଠାରୁ ଯେ ବଡ଼ଭାବରେ ଦେଖୁଥିଲେ, କୋଟିଏ ସନ୍ତାନର କ୍ରନ୍ଦନ ଯାହାକୁ ଅହରହ ଅସ୍ଥିର କରୁଥିଲା—ତାଙ୍କ ପାଇଁ ନିଜ ପରିବାରର ଆକର୍ଷଣ ନିଷ୍ପ୍ରଭ ହୋଇପଡ଼ିବା ସ୍ୱାଭାବିକ ।

ବିଶେଷ ସଂଖ୍ୟା } ୧୯୭୮
"ସମାଜ" } ପୃ ୫୮

ଅଧ୍ୟାପକ ଚିନ୍ତାମଣି ଦାଶଙ୍କ ଲେଖା—
"ଉଦ୍ଧରିବା ପାଇଁ କଲେ ତନୁକ୍ଷୟ"

## ରେଭେନ୍‌ସା କଲେଜରେ ଅଧ୍ୟୟନ

( ୧୮୯୮-୧୯୦୩ )

ପୁରୀ ଜିଲ୍ଲା ସ୍କୁଲରୁ ୧୮୯୮ ମସିହାରେ ଏନ୍‌ଟ୍ରାନ୍‌ସ ପ୍ରଥମ ଶ୍ରେଣୀରେ ପାସ୍ କରି ଜିଲ୍ଲାବୃତ୍ତି ମାସିକ ଦଶ ଟଙ୍କା ମାତ୍ର ପାଇ ଗୋପବନ୍ଧୁ କଟକ ରେଭେନ୍‌ସା କଲେଜକୁ ଏଫ୍. ଏ. ପଢ଼ିବାକୁ ଆସିଲେ । ସେତେବେଳେ ରେଭେନ୍‌ସା କଲେଜ ଓଡ଼ିଶାର ଏକମାତ୍ର କଲେଜ ଥାଏ ଓ ଆଜିର କଲେଜିଏଟ୍ ସ୍କୁଲରେ କ୍ଲାସ୍ ହେଉଥାଏ । ଆଜି ବି କଲେଜିଏଟ୍ ସ୍କୁଲର ଯେଉଁ ହଷ୍ଟେଲ ଘର ଅଛି ସେହି ହଷ୍ଟେଲ ଘରେ ଗୋପବନ୍ଧୁ ରହୁଥାନ୍ତି । ଏନ୍‌ଟ୍ରାନ୍‌ସ ପରୀକ୍ଷାରେ ମାତ୍ର ଚଉଦ ପନ୍ଦର ଜଣ ଉତ୍ତୀର୍ଣ୍ଣ ହେଉଥିଲେ । ଏମାନଙ୍କୁ "Fortunate Fourteen" ବୋଲି କୁହାଯାଉଥିଲା । ଗୋପବନ୍ଧୁ ହଷ୍ଟେଲରେ ରହିବା ସମୟରେ ବଡ଼ମ୍ବାର ଶ୍ରୀ ଲୋକନାଥ ପଟ୍ଟନାୟକ (କବି ବୈକୁଣ୍ଠ ପଟ୍ଟନାୟକଙ୍କ ପିତୃବ୍ୟ) ଏବଂ ସମ୍ବଲପୁରର ଅବସରପ୍ରାପ୍ତ ଡେପୁଟୀ କଲେକ୍ଟର ଶ୍ରୀ ଭରତ ନାୟକ ମଧ୍ୟ ଏକତ୍ର ରହୁଥିଲେ ।

ଗୋପବନ୍ଧୁ ବାବୁ ସବୁଦିନେ ରାତିରେ ପୋଲଙ୍ଗ ତେଲର ଦୀପ ଜାଳି ପାଠ ପଢ଼ନ୍ତି । ଲୁଖାଟିଏ ଥାଏ । ଇଟା ଦୁଇଖଣ୍ଡ ତକିଆ ଭାବରେ ବ୍ୟବହୃତ ହୁଏ । ତା' ବ୍ୟତୀତ ସପ ମସିଣାଟିରେ ଶୁଅନ୍ତି । ପୋଷାକ ମଧ୍ୟରେ ଧୋତି (କଳାପାହାଡ଼ୀ ହାତବୁଣା) ଓ ଚଦର ତାଙ୍କର ମୁଖ୍ୟ ପରିଧାନ ଥାଏ । ତେଣୁ ବନ୍ଧୁ ଗ୍ରୁପଙ୍କ ମଧ୍ୟରେ ସେ ସବୁବେଳେ ବାରହୋଇପଡ଼ୁଥିଲେ ।

ସେ ସନ୍ଧ୍ୟାବେଳେ କାଠଯୋଡ଼ି କୂଳକୁ ବରାବର ବୁଲିଯାଆନ୍ତି । ପ୍ରକୃତିର ଶୋଭା, ଅସ୍ତ ସୂର୍ଯ୍ୟର ଆରକ୍ତ ଆଭା ଦେଖି ବିମୁଗ୍ଧ ହୁଅନ୍ତି । ଆସି ବରାବର କବିତା ଲେଖନ୍ତି । ଏହିପରି ଏକ ଉଚ୍ଚକୋଟୀର କବିତା 'କାଠଯୋଡ଼ିରେ ସାୟଂକାଳ' ସେ ଏହି ସମୟରେ ଲେଖିଥିଲେ ।

"ପ୍ରେମ ଭାବେ ଯାର ଅନ୍ତର ପୂରିତ,
ସର୍ବ ପ୍ରାଣୀ ହୃଦ ତା' ହୃଦେ ଅଙ୍କିତ ।
ସର୍ବ ଅନୁଭୂତ ସର୍ବଭୂତେ ତାର,
ତା' ଦୃଷ୍ଟିରେ ବିଶ୍ୱ, ଏକ ପରିବାର

ସେହି ନିଜେ ବିଶ୍ୱ, ବିଶ୍ୱ ମଧ୍ୟେ ସେହି
ଅନ୍ୟ ହୋଇ ତାର ନାହିଁ ଆଉ କେହି ।
ଧନ୍ୟ ପ୍ରେମମୟୀ, ପ୍ରିୟ କଲ୍ଲୋଳିନୀ,
ଶତ ଶତ ପ୍ରାଣୀ ଆହ୍ଲାଦଦାୟିନୀ ।

ଧନେ ସନ୍ଧ୍ୟାବେଳେ ସେ କାଠଯୋଡ଼ି କୂଳରେ ବୁଲୁଥାନ୍ତି । ନୀଳ ଆକାଶ, ନଦୀ ଓ ନଦୀ ପରପାରର ଶ୍ୟାମଳ ଶୋଭା ଅତ୍ୟନ୍ତ ଦୃଷ୍ଟି ନନ୍ଦନ ହୋଇଥାଏ । ଏହି ସମୟରେ ଶ୍ରୀ ସାରଦାକିଶୋର ଦାସ ନାମକ ଜଣେ ସ୍କୁଲ ଛାତ୍ର ତାଙ୍କୁ ପଚାରିଲେ— "ହେ ପୂଜାରୀ, ଆମ ଘରେ ରୋଷେଇଆ ରହିବ ?" ବୋଧହୁଏ ଜଣେ ପୂଜାରୀ ସ୍ୱକର ପାଇଁ ଶ୍ରୀ ଦାସ ଅନୁସନ୍ଧାନ କରୁଥା'ନ୍ତି ।

ଗୋପବନ୍ଧୁ ଅତି ସ୍ୱାଭାବିକ ଭାବରେ ଉତ୍ତର ଦେଲେ—"ହଁ, ହଁ, ରହିବା ।" ଏହା କହି ଧୀରେ ଧୀରେ ସେ ରାସ୍ତାରେ ଆଗେଇଲେ । ପ୍ରଶ୍ନକର୍ତ୍ତାଙ୍କ ମନରେ ସନ୍ଦେହ ସୃଷ୍ଟି କରିବା ବା ତାଙ୍କୁ ନିରାଶ କରିବା ତାଙ୍କର ଇଚ୍ଛା ନଥିଲା । ଏକଥା ସେ ଆସି ଛାତ୍ରାବାସରେ ହରିହର ପ୍ରମୁଖଙ୍କୁ କହି ବହୁତ ହସେଇଲେ ।

ସନ୍ଧ୍ୟାରେ ବୁଲି ବୁଲି ଆସି ବହି ଧରିବା ମାତ୍ରେ ଗୋପବନ୍ଧୁ ଡୋଲେଇବାକୁ ଆରମ୍ଭ କରନ୍ତି । ଆଗ୍ରୁଙ୍ଘ ହରିହର ସେତେବେଳେ ତଳଶ୍ରେଣୀର ଛାତ୍ର । ତେବେ ସତ୍ୟବାଦୀ ଅଞ୍ଚଳର ଲୋକ ହିସାବରେ ଗୋପବନ୍ଧୁଙ୍କ ସହିତ ତାଙ୍କର ଭଲ ବୁଝାମଣା ଥାଏ । ଗୋପବନ୍ଧୁ ଡୋଳେଇ ଡୋଳେଇ ହରିହରଙ୍କୁ ବୁଝନ୍ତି—"ଦେଖିଲ ଦେଖିଲ, ରୋଷେଇ ସରିଲାଣି କି ?" ବାଙ୍କୀର ଜଣେ ଶତପଥୀ ବ୍ରାହ୍ମଣ ପୂଜାରୀ ଥାନ୍ତି । ସେ ରୋଷେଇ କରିବାରେ ପ୍ରାୟ ଡେରି କରନ୍ତି ।

ଗୋପବନ୍ଧୁ ବ୍ୟସ୍ତ ହୋଇ ପୁଣି ପଚାରନ୍ତି—"ହରିହର ଦେଖ ହେ, କେତେ ଡେରି ହେଉଛି ।"

"ଭାତ ତ ବସିଛି, ଡାଲି ବି ବସିଛି—"ହରିହର ଉତ୍ତର ଦିଅନ୍ତି ।

ଗୋପବନ୍ଧୁ ବାବୁ କହନ୍ତି—"ତା ହେଲେ ଚାଲ, ଭାତ ତ ଗାଳି କରି ଦେଇଦେବ । ଡାଲି ଛୁଙ୍କ ହେଲେ ଦେବ । ତର୍କାରି ତ ହେଉଥିବ, ପରେ ଦେଇଦେବ । ଚାଲ, ଉଠ ।"

ହରିହର ବାଧ୍ୟ ହୋଇ ଉଠନ୍ତି । ସମସ୍ତଙ୍କଠାରୁ ଆଗ ଏମାନେ ଖାଇବାକୁ ଯା'ନ୍ତି । ତା'ପରେ ଜଣ ଜଣ ହୋଇ ଅନ୍ୟମାନେ ଆସି ଜୁଟନ୍ତି । ଗୋପବନ୍ଧୁ ଧୀରେ ମଜାକଥା ବୁଝନ୍ତି । ସମସ୍ତେ ହସି ହସି ବେଦମ୍ ହୁଅନ୍ତି । ସମସ୍ତେ ଖାଇସାରି ଆସିବା ପରେ ଗୋପବନ୍ଧୁ ଆସନ୍ତି ।

ଥରେ ଗୋପବନ୍ଧୁ ସହାଧ୍ୟାୟୀ ଗୋପୀନାଥଙ୍କୁ କହିଲେ, "ହଇହେ ଗୋପୀନାଥ, ଦେଖିଲ, ଏ ଡାଲିଗୁଡ଼ା କପରି ହଇଜା ରୋଗୀର ଝାଡ଼ାପରି ଦେଖାଯାଉଛି ।"

ଅବଶ୍ୟ ଗୋପବନ୍ଧୁ ହରିହର ଆଦି "ଶସ୍ତା ସୁବିଧା ମେସ୍" (cheap mess)ରେ ଖାଉଥିଲେ । ଅନ୍ୟ ମେସ୍‌ର କେତେକ ଛାତ୍ର ଖାଇସାରି ଏ ଚିପ୍ ମେସ୍‌କୁ ମଜାକଥା ଶୁଣିବାକୁ ବରାବର ଆସନ୍ତି । ସେତେବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ନଥାଏ । ବଙ୍ଗ-ବିହାର ସହିତ ମିଶି ରହିଥାଏ । ବୋର୍ଡିଂରେ ସବୁବେଳେ ଏକଥା ପଡ଼େ । ଗୋପବନ୍ଧୁ ଓ ବ୍ରଜସୁନ୍ଦର ଦାସ ବରାବର ବୁଝନ୍ତି ଯେ, "ଓଡ଼ିଶାକୁ

ବଙ୍ଗଳା ସହିତ ସାମିଲ କରି ରଖିବା ନାହିଁ, ବରଂ ମଧ୍ୟପ୍ରଦେଶ ସହିତ ମିଶି ରହିବା ।"
ସେକାଳ କଟକର ଓକିଲ ଶ୍ରୀ ଗୋକୁଳାନନ୍ଦ ଚୌଧୁରୀ ଏହି ମତର ପକ୍ଷପାତୀ ଥାନ୍ତି ।

ମଧୁବାବୁ ଓ 'ଉତ୍କଳ ସାହିତ୍ୟ' ପତ୍ରିକାର ସମ୍ପାଦକ ବିଶ୍ୱନାଥ କର 'ଉତ୍କଳ ସାହିତ୍ୟ' ଜରିଆରେ ଓ ବିଭିନ୍ନ ସଭାସମିତିରେ ବକ୍ତୃତା ଦେଇ ବଙ୍ଗରେ ରହିବା ପାଇଁ ମତ ଦେଉଥାନ୍ତି । ବୋର୍ଡିଂରେ ଏହି ମତ ନେଇ ଖୁବ ସରଗରମ ଆଲୋଚନା ହୁଏ । ବରଗଡ଼ର ସ୍ୱର୍ଗତ ଓକିଲ ଶ୍ରୀ ବାଳୁକେଶ୍ୱର ମିଶ୍ର ସେତେବେଳେ ହଷ୍ଟେଲରେ ରହି ବି. ଏଲ୍. ପଢୁଥାନ୍ତି । ତାଙ୍କ ସମେତ ସମ୍ବଲପୁର ଅଞ୍ଚଳର ସମସ୍ତ ଛାତ୍ର ଗୋପବନ୍ଧୁଙ୍କୁ ସମର୍ଥନ କରିଗଲେ । ବାଳୁକେଶ୍ୱରବାବୁ ଆଗତପ୍ରାୟ ଉତ୍କଳ ସମ୍ମିଳନୀରେ ପ୍ରଚାର କରିବା ପାଇଁ ଗୋଟିଏ ପୁସ୍ତିକା ଲେଖିଲେ ଓ ଗୋପବନ୍ଧୁଙ୍କୁ ଦେଖାଇଲେ । ଗୋପବନ୍ଧୁ ଥରେ ଦୁଇଥର ସଂଶୋଧନ କଲେ । ତା'ପରେ ଘଟିଲା ଅଦ୍ଭୁତ ଏକ ବ୍ୟାପାର । ଯୁବକ ଗୋପବନ୍ଧୁ ଖଟ ଉପରେ ମୁହଁମାଡ଼ି ଶୋଇ ପଡ଼ିଥାନ୍ତି, କିଛି ନଥାଏ, କାହା ସହିତ ଆଳାପ କରୁନଥାନ୍ତି । ଡାକିଲେ ଶୁଣୁନାହାନ୍ତି ଅନ୍ୟମନସ୍କ ଭାବରେ, ଆଖି ଲାଲ ଦିଶୁଥାଏ । ତିନିଦିନ ପରେ ଉଠିଲେ । ମଧୁବାବୁ ଓ ବିଶ୍ୱନାଥ କରଙ୍କ ମତର ବିରୋଧ କରି ସେ 'ପ୍ରାର୍ଥନା' ନାମରେ ଏକ ନିବେଦନପତ୍ର ଲେଖି ଛାପିଲେ ଓ ଏହା ଦ୍ୱିତୀୟ ବାର୍ଷିକ ଉତ୍କଳ ସମ୍ମିଳନୀ କ୍ୟାମ୍ପରେ ବଣ୍ଟାଗଲା (୧୯୦୪) । ସେ ପୁସ୍ତିକାର ଯୁକ୍ତି ଏପରି ଅକାଟ୍ୟ ଥିଲା ଯେ, ସେଥିରେ ଗଞ୍ଜାମ ସମେତ ସମସ୍ତ ପ୍ରତିନିଧି ତନ୍ମୟ ହୋଇ ଯାଇଥିଲେ । ଏଥିରେ କିନ୍ତୁ ବିଶ୍ୱନାଥ କର ଉତ୍କ୍ଷିପ୍ତ ହୋଇ ତାଙ୍କ କାଗଜରେ ଲେଖିଲେ "ଅଜାତଶ୍ମଶ୍ରୁମାନେ କିଛି ନ ବୁଝି ଦେଶ ବିଷୟରେ ମତ ଦେଉଛନ୍ତି ।" 'ଉତ୍କଳ ସାହିତ୍ୟ'ରେ 'ଜ୍ଞାନାଞ୍ଜନ ଶଳାକା' ନାମକ ଶୀର୍ଷକରେ ଏହା ପ୍ରକାଶପାଇଥିଲା ।

ଗୋପବନ୍ଧୁ ବାବୁ ତହିଁ କହିଲେ—"ସେମାନେ ଅଜାତଶ୍ମଶ୍ରୁ ନୁହନ୍ତି – ବରଂ କଷ୍ଟଜାତ ଶ୍ମଶ୍ରୁ । ଏ ପିଲାମାନେ ବରଂ ଶୀଘ୍ର ଦାଢ଼ି ଉଠିବାପାଇଁ ଅଳକାଳ ଟାଉଟାଉ ଷିଅର ହୋଇ ପଡ଼ୁଛନ୍ତି । ତେଣୁ ସେମାନେ କଷ୍ଟଜାତ ଶ୍ମଶ୍ରୁ ।" 'ଜ୍ଞାନାଞ୍ଜନଶଳାକା'ର ପ୍ରତିବାଦ କରି 'ସତ୍ୟ ମୁଦ୍‌ଗର' ନାମରେ ଆଉ ଏକ ପୁସ୍ତିକା ଛାପି ଗୋପବନ୍ଧୁ ବାଣ୍ଟିଲେ ।

ସେତେବେଳେ ହାଓ୍ୱେଲସ ନାମରେ ଜଣେ ପାଦ୍ରୀ ଥା'ନ୍ତି । ସେ ଘଟଣାକ୍ରମେ ଗୋପବନ୍ଧୁଙ୍କୁ ସମର୍ଥନ କରି ମିଷ୍ଟର ଦାସଙ୍କ ଏହି ସମ୍ପର୍କୀୟ ଇଂରେଜୀ ଲେଖାର ପ୍ରତିବାଦ କରି ଇଂଲିସ୍‌ରେ ଲେଖି ଛାପିଲେ । ଏହିପରି କିଛିଦିନ ବାଦାନୁବାଦ ଚାଲିଥିଲା ।

ଗୋଟିଏ କୋଠରୀରେ ଗୋପବନ୍ଧୁ, ହରିହର ଓ ଉମାଚରଣ ଦାସ ରହୁଥିଲେ । ପାଖ କୋଠରୀରେ ବଡ଼ମ୍ବାର ଲୋକନାଥ ପଟ୍ଟନାୟକ ରହୁଥିଲେ । ସେ ଅତି ମେଳାପୀ ଓ ହାସ୍ୟରସିକ ଥିଲେ । ଗୋପବନ୍ଧୁ ବାବୁ ଓ ଲୋକନାଥ ବାବୁ ଏକାଠି ଜୁଟିଲେ ହସର ଫୁଆର ଛୁଟୁଥିଲା ।

ଅନେକ ସମୟରେ ମେସ୍‌ରେ ଖାଇବା ଚର୍ଚ୍ଚା ହୁଏ । ଖାଇବା ମଜ୍ଜି ମେସ୍ ଦୁଆର

ମୁହଁରେ ପକାଇଦିଆଯାଏ । କ୍ରମେ ସେଥିରୁ ଗଛଟିଏ ହେଲା । ଦିନକର ଗୋପବନ୍ଧୁ ବାବୁ ବୁଲିବୁଲି ଆସି ଏହି ଗଛଟିକୁ ଦେଖି ଭାବବିହ୍ୱଳ ହୋଇପଡ଼ିଲେ । ନିତ୍ୟାନନ୍ଦ ପୂଜାରୀ ଗୋପବନ୍ଧୁବାବୁଙ୍କ କ୍ଲାସମେଟ୍ । ସେ ସାଇନ୍ସ ପଢୁଥାନ୍ତି ଓ ବୋଟାନି ବିଷୟ ତାଙ୍କର ଅଧ୍ୟୟନ ଥାଏ । ସେ ଓ ଗୋପବନ୍ଧୁ ବାବୁ ଏହି କାଙ୍କଣ ଗଛଟିରେ ରଙ୍ଗାଟିଏ ଦେଇଦେଲେ ।

କିନ୍ତୁ ଗଛଟି ତା' ପରଦିନ ଝାଉଁଳି ପଡ଼ିଲା । ଗୋପବନ୍ଧୁ ବଡ଼ ଚିନ୍ତିତ ହୋଇ ପଡ଼ିଲେ । "ଗୋଟିଏ କାଙ୍କଣ ଗଛ" ନାମରେ କବିତାଟିଏ ଲେଖିଦେଲେ । ତାଙ୍କର ମତ ହେଲା—ସ୍ୱାଧୀନତା ଯାହାର କାମ୍ୟ ତାକୁ ଅନ୍ୟମାନେ ନିଗଡ଼ ଭିତରେ ରଖିବାରୁ ତାର ମୃତ୍ୟୁ ହେଲା । ସ୍ୱାଧୀନତାପ୍ରିୟ ଭାରତ ଜାତିର ଆଜି ସେଇ ମୃତ୍ୟୁ ହୋଇଛି । ତାଙ୍କର ଭଣିତା—

"ସ୍ୱାଧୀନତା ପ୍ରିୟେ ! ଲଭି ଅପର ଚରଣ,
ଭାଗ୍ୟ ଅରଜିନୁ ଶ୍ରେୟ ମଣିଲୁ ମରଣ ।"

ଗୋପବନ୍ଧୁ ବାବୁ ହଷ୍ଟେଲରେ ଗୋଟିଏ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିଥିଲେ— "Young Utkal Association" । ଏହି ଅନୁଷ୍ଠାନ ତରଫରୁ ବିଭିନ୍ନ ସମୟରେ ସଭାସମିତି ହୁଏ ଓ ଆଲୋଚନା ହୁଏ । ବେଳେବେଳେ କବିତା ଆବୃତ୍ତି ମଧ୍ୟ ହୁଏ । ଏହି ସମିତିର ବାର୍ଷିକ ଉତ୍ସବ ପାଳିତ ହେଉଥିଲା । ଏଥିରେ ଅଧ୍ୟାପକ ଓ ଛାତ୍ରମାନେ ବେଳେବେଳେ ନିମନ୍ତ୍ରିତ ହୋଇ ଯୋଗଦେଉଥିଲେ । ଏହି ସମିତିରେ ବିଶେଷ ଭାବରେ ସମାଜସେବାମୂଳକ ଓ ଦେଶମିଶ୍ରଣ ପାଇଁ ଖୁବ୍ ଆଲୋଚନା ହୁଏ ।

୧୯୦୬ ରେ ଗୋପବନ୍ଧୁ ବି. ଏ. ପଢୁଥିବାବେଳେ 'କବିକଳ୍ପଲତା' ନାମକ ଖଣ୍ଡିଏ ବଡ଼ କାବ୍ୟ ରଚନା କରିଥିଲେ । ପାଣ୍ଡୁଲିପିଟିକୁ କବିବର ରାଧାନାଥ ରାୟଙ୍କୁ ସେ ପଢ଼ିବାକୁ ଦେଇଥିଲେ । ରାଧାନାଥ ତାହା ପଢ଼ିସାରି ନିଜେ ପାଣ୍ଡୁଲିପିଟିକୁ ଧରି ଗୋପବନ୍ଧୁଙ୍କ ପାଖକୁ ଆସିଲେ ଏବଂ ଗୋପବନ୍ଧୁଙ୍କୁ ପ୍ରତ୍ୟକ୍ଷରେ ଆନ୍ତରିକ ପ୍ରଶଂସା କରିଥିଲେ । ଏହି ପାଣ୍ଡୁଲିପିଟିକୁ ଓ ଗୋଟିଏ ଅସମାପ୍ତ ଉପନ୍ୟାସର ପାଣ୍ଡୁଲିପିକୁ ସେ ରେଳଯାତ୍ରା ସମୟରେ ତାଙ୍କ ପେଟରା ସହିତ କେଉଁଠି ଛାଡ଼ିଦେଲେ । ତାହାପରେ ବଡ଼ ବ୍ୟସ୍ତ ହୋଇ ଥରେ କହିପକାଇଲେ—"ବୋଧହୁଏ ମୁଁ କବିତା ଲେଖେଁ—ଏହା ବିଧାତାଙ୍କର ଇଚ୍ଛା ନୁହେଁ । ମୁଁ ଆଉ ଲେଖାଲେଖି କରିବି ନାହିଁ ।"

'ଅବକାଶ ଚିନ୍ତା'ର ବହୁ କବିତା ଏହି ସମୟର ରଚନା । ଏହି କବିତାଗୁଡ଼ିକରେ କବି ପ୍ରାଣର ଉଚ୍ଛ୍ୱସିତ ଅନୁଭୂତିର ସ୍ପର୍ଶ ସର୍ବତ୍ର ସ୍ପଷ୍ଟ । ପାହାଡ଼ର ଝରଣା ପରି କୁଳୁକୁଳୁ ନାଦରେ ଏ କବିତାଗୁଡ଼ିକ ସତେ ଯେପରି ଗୋପବନ୍ଧୁଙ୍କ ମର୍ମତଳର କେଉଁ ଅନିରୂପିତ ଉତ୍ସରୁ ପ୍ରସରିତ ।

ଗୋପବନ୍ଧୁ ବାବୁ ବି. ଏ. ପଢ଼ିଲା ବେଳେ ଓଡ଼ିଶାର ଛାତ୍ରମାନଙ୍କୁ କଲିକତା

ବିଶ୍ୱବିଦ୍ୟାଳୟ ଅଧୀନରେ ପରୀକ୍ଷା ଦେବାକୁ ହେଉଥିଲା । ବର୍ଷକର ବି. ଏ. ପରୀକ୍ଷାରେ ଓଡ଼ିଆ ପ୍ରବନ୍ଧ ପ୍ରଶ୍ନଟି ଉଠାଇ ଦିଆଗଲା । ବଙ୍ଗଳା ଲିପିରେ ଓଡ଼ିଆ ପ୍ରଶ୍ନ ଦିଆଯିବ ହେବାର ସିଦ୍ଧାନ୍ତ ବିଶ୍ୱବିଦ୍ୟାଳୟ ପକ୍ଷରୁ ନିଆଗଲା । ଏହି ସିଦ୍ଧାନ୍ତ ବିରୁଦ୍ଧରେ ଗୋପବନ୍ଧୁ ବାବୁ ତାଙ୍କର ସହାଧ୍ୟାୟୀ ବ୍ରଜସୁନ୍ଦର ଦାସ ଓ ଲୋକନାଥ ପଟ୍ଟନାୟକଙ୍କୁ ନେଇ 'କର୍ତ୍ତବ୍ୟ ବୋଧିନୀ' ନାମରେ ଏକ ସମିତି ଗଠନ କଲେ । ଏହି ସମାଜ ତରଫରୁ ବହୁ ଓଡ଼ିଆ ଭାଷାଭାଷୀଙ୍କ ସ୍ୱାକ୍ଷର କ୍ରମେ କଲିକତା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ନିକଟରେ ଏକ ଆବେଦନ ଦାଖଲ କରାଯାଇଥିଲା ; କିନ୍ତୁ ସେତେବେଳେ ବିଶ୍ୱବିଦ୍ୟାଳୟ ମୁଖ୍ୟମାନଙ୍କର ଉତ୍କଟ ପ୍ରାଦେଶିକ ଭାବ ପ୍ରକାଶ ପାଉଥାଏ । ସେମାନେ ସମସ୍ତେ ବଙ୍ଗାଳୀ । ତେଣୁ ଏମାନଙ୍କ ଆବେଦନ ପ୍ରତି ସେମାନେ କାନ ନ ଦେବା ସ୍ୱାଭାବିକ । ସେତେବେଳେ ସାର୍ ଜନ୍ ଉଡ୍‌ବର୍ଣ୍ଣ ବଙ୍ଗଳାର ଲେଫ୍‌ଟେନାଣ୍ଟ ଓ କଲିକତା ବିଶ୍ୱବିଦ୍ୟାଳୟର ରେକ୍ଟର ଥା'ନ୍ତି । ସେ ଏ କଥାକୁ ସାକ୍ଷାତ ଭାବରେ ହାତକୁ ନେଇ ଓଡ଼ିଆରେ ପ୍ରଶ୍ନ କରିବା ପାଇଁ ସିଦ୍ଧାନ୍ତ କରିଦେଲେ ।

ରେଭେନ୍‌ସା କଲେଜରେ ପଢୁଥିବା ବେଳେ ନିଜ ସହାଧ୍ୟାୟୀ ଶ୍ରୀ ଗୋପୀନାଥ ଦାସ, ଉମାଚରଣ ଦାସ, ନିତ୍ୟାନନ୍ଦ ପୂଜାରୀ, ସୂର୍ଯ୍ୟମଣି ଦାସ ଓ ଜଗବନ୍ଧୁ ସିଂହଙ୍କ ସହିତ ଗୋପବନ୍ଧୁଙ୍କର ଅଧିକ ସଖ୍ୟ ଘଟିଥିଲା । ଏମାନେ ବସି ବହୁ ସମସ୍ୟା ଉପରେ ଆଲୋଚନା କରୁଥିଲେ । ଏହି ଆଲୋଚନାରେ ତଳ ଶ୍ରେଣୀର ଛାତ୍ର ଶ୍ରୀ ହରିହର ଦାଶ ଓ ସ୍କୁଲଛାତ୍ର ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର (କାନ୍ତକବି) ଯୋଗ ଦେଉଥିଲେ । ଗୋପବନ୍ଧୁ ଲେଖିଥିବା ଖଣ୍ଡକବିତା ଓ ଲକ୍ଷ୍ମୀକାନ୍ତଙ୍କ କବିତା ଆଲୋଚିତ ହେଉଥିଲା । ଲକ୍ଷ୍ମୀକାନ୍ତଙ୍କୁ କବିତା ଲେଖିବାକୁ ଗୋପବନ୍ଧୁ ବରାବର ପ୍ରେରଣା ଦେଉଥିଲେ ।

ସେତେବେଳେ ଓଡ଼ିଶାର ସ୍କୁଲ କଲେଜ କଲିକତା ବିଶ୍ୱବିଦ୍ୟାଳୟ ସହିତ ସାମିଲ ହୋଇଥିଲା । ଏଠାରେ ଏମ୍. ଏ ଶ୍ରେଣୀ ନଥିଲା । ମାତ୍ର ୩ ଜଣ ଓଡ଼ିଆ ଛାତ୍ର ଶ୍ରୀ ମଧୁସୂଦନ ଦାସ, ଶ୍ରୀ ଗୋପାଳବଲ୍ଲଭ ଦାସ ଓ ଶ୍ରୀ ଅଭିରାମ ଭଞ୍ଜ ଏମ୍. ଏ. ପାସ୍ କରିଥିଲେ । ଏଥିପାଇଁ 'କର୍ତ୍ତବ୍ୟବୋଧିନୀ'ର ଏକ ବୈଠକରେ ଗୋପବନ୍ଧୁ ଦୁଃଖ ପ୍ରକାଶ କରି ଅଧିକ ଛାତ୍ର ଏମ୍.ଏ. ପଢ଼ିବାରେ ସରକାର ସୁବିଧା କରିବା ପାଇଁ ଦାବୀ କରିଥିଲେ । ନିମ୍ନ ଶ୍ରେଣୀରେ ପଢ଼ି ମଧ୍ୟ ସେ ଉଚ୍ଚଶିକ୍ଷା କଥା ଅତି ଗମ୍ଭୀର ଭାବରେ ଚିନ୍ତା କରୁଥିଲେ । ଏହି ସମୟରେ 'ଡେକାନ୍ ଏଜୁକେସନ ସୋସାଇଟି' ନାମରେ ଏକ ଶିକ୍ଷା ପ୍ରତିଷ୍ଠାନ ଗଢ଼ାଗଲା । ଗୋପବନ୍ଧୁ ଏହିପରି ଏକ ଶିକ୍ଷାନୁଷ୍ଠାନ ଓଡ଼ିଶାରେ ଗଢ଼ିବାର ପରିକଳ୍ପନା କରିଥିଲେ; କିନ୍ତୁ ଛାତ୍ର ଜୀବନରେ ଏହା କାର୍ଯ୍ୟକାରୀ କରିବା ଦୁରତିସାଧ୍ୟ ବ୍ୟାପାର ଥିଲା । ତେଣୁ ବନ୍ଧୁମାନଙ୍କ ସହିତ ଏହି ବିଷୟରେ ତାଙ୍କର ଆଲୋଚନା ଫଳପ୍ରସୂ ହୋଇପାରିନଥିଲା ।

ଥରେ ଗୋପବନ୍ଧୁଙ୍କ ସହାଧ୍ୟାୟୀ ଉମାଚରଣ ଶକ୍ତ ବେମାରରେ ପଡ଼ିଲେ । ବାଲେଶ୍ୱରରୁ ଆଉ କୌଣସି ବନ୍ଧୁ ତାଙ୍କର କଟକ କଲେଜରେ ନ ଥିଲେ । ଘରକୁ ଖବର

ଦେବାମଧ୍ୟ ସମ୍ଭବ ନ ଥିଲା । ଫଳେ ଗୋପବନ୍ଧୁ ଦିନରାତି ତାଙ୍କର ଶଯ୍ୟା ପାର୍ଶ୍ୱରେ ଜଗିରହି ତାଙ୍କର ସେବା କଲେ ଓ ଉମାଚରଣ ସେଥିରୁ ଆରୋଗ୍ୟ ଲାଭ କଲେ ।

ବଢ଼ିଅଞ୍ଚଳ ପାଇଁ କଟକ ସହରରେ ଖୋଲା 'କର୍ତ୍ତବ୍ୟବୋଧିନୀ' ମାଧ୍ୟମରେ ପାଣ୍ଠି ସଂଗ୍ରହ ହେଲା । ଗୋପବନ୍ଧୁ ଓ ତାଙ୍କର ସହାଧ୍ୟାୟୀମାନେ ବଢ଼ିଅଞ୍ଚଳରେ ସାହସ ଓ ନିଷ୍ଠାର ସହିତ ଦୁଃସ୍ଥ ଲୋକମାନଙ୍କୁ ସାହାଯ୍ୟ ବିତରଣ କଲେ ।

କଲେଜରେ ପଢ଼ୁଥିବାବେଳେ ଗୋପବନ୍ଧୁଙ୍କର କେତେକ କବିତା ପଢ଼ି ରାଧାନାଥ ମୁଗ୍ଧ ହୋଇଥିଲେ । ଏହିପରି ଗୋଟିଏ କବିତା 'ମୁକୁର'ରେ ପ୍ରକାଶ ପାଇଥିଲା । ସେଥିର ଗୋଟିଏ ପଦ ହେଉଛି—

"ଅବନ୍ଧୁ ଜୀବନ ଅପୂର୍ଣ୍ଣ ମହୀ
ଦେହ ଧରି କିଏ ପାରିବ ସହି !"

କବିବର ରାଧାନାଥ ମୁକୁର ଖଣ୍ଡି ହାତରେ ଧରି ଦିନେ ସନ୍ଧ୍ୟା ସମୟରେ ଗୋପବନ୍ଧୁଙ୍କ ବସାରେ ଆସି ପହଞ୍ଚିଲେ ଏବଂ କାଠଯୋଡ଼ି କୂଳରେ ତାଙ୍କୁ ବୁଲିବାକୁ ଡାକିନେଲେ । ବାଟରେ ଗୋପବନ୍ଧୁଙ୍କୁ କୁଣ୍ଢେଇ ପକାଇ କହିଲେ—"ମୁଁ ଏତେଦିନେ କବିତା ପରି କବିତାଟିଏ ପଢ଼ିଲି" । ପରେ ସେ ଏପରି ମୁଗ୍ଧ ହୋଇ ପଡ଼ିଲେ ଯେ ଗୋପବନ୍ଧୁଙ୍କୁ ପ୍ରାୟ ପ୍ରତ୍ୟେକ ଦିନ ବୁଲିବାକୁ ସାଙ୍ଗରେ ଡାକନ୍ତି । ଅଧିକାଂଶ ସମୟ କାଠଯୋଡ଼ି ନଦୀ ବନ୍ଧରେ ସେମାନେ ବୁଲନ୍ତି । ରାଧାନାଥ ଓଡ଼ିଶା ଓ ଓଡ଼ିଶାର ଜାତୀୟତା ସମ୍ପର୍କରେ ବହୁକଥା ଆବେଗଭରା ହୃଦୟରେ ଗୋପବନ୍ଧୁଙ୍କୁ କହନ୍ତି । କେବେକେବେ ଆଧୁନିକ ଓ ପୁରାତନ କବିତାର ମଧ୍ୟ ଆଲୋଚନା ହୁଏ । ଉଭୟଙ୍କ ମଧ୍ୟରେ ଏହିପରି ଆଳାପରେ ସଖ୍ୟ ବୃଦ୍ଧି ପାଇଥିଲା । ରାଧାନାଥ ସେତେବେଳକୁ 'ମହାଯାତ୍ରା' ଲେଖିସାରି ପ୍ରାୟ ମହାଯାତ୍ରା ପାଇଁ ପ୍ରସ୍ତୁତ ହେଉଥାନ୍ତି । ସତ୍ୟବାଦୀର ବକୁଳ କୁଞ୍ଜରୁ ତଥାପି ଦେଶପ୍ରାଣତାର ମନ୍ତ୍ର ସଙ୍ଗୀତ ଶୁଣାଯାଇ ନ ଥାଏ । ରାଧାନାଥଙ୍କ କବିତାର ବିରୋଧ ଅନେକ ସମୟରେ ଗୋପବନ୍ଧୁ କରିଥିଲେ ମଧ୍ୟ, ରାଧାନାଥଙ୍କ ସ୍ୱଦେଶ ପ୍ରେମରେ ମୁଗ୍ଧ ହୋଇପଡ଼ିଥିଲେ । ବାର୍ଦ୍ଧକ୍ୟ ଓ ତାରୁଣ୍ୟର ମିଳନରେ ଏ ଜାତିପାଇଁ ଏକ ଉଗ୍ର ଜାତୀୟତାର ଭାବ ଓ ଚେତନା ସତେ ଯେପରି ସଂସାପ୍ତ ହୋଇ ଉଠୁଥିଲା । ଲକ୍ଷ୍ୟ କରିବାର କଥା ଯେ, ଗୋପବନ୍ଧୁ ରାଧାନାଥଙ୍କୁ ଚିନ୍ତା ଓ ଲେଖାରେ ବିରୋଧ କରିଥିଲେ ମଧ୍ୟ ପରେ ରାଧାନାଥ ଏହି ତରୁଣ ବ୍ୟକ୍ତିଙ୍କଠାରେ ବନ୍ଧୁତା ଲୋଡ଼ିଥିଲେ । ସମ୍ଭବତଃ ଆଜିର ସଙ୍କୀର୍ଣ୍ଣତାଠାରୁ ସେମାନେ ଦୂରରେ ଥିଲେ ଓ ଲେଖକର ସମାଲୋଚନା ପ୍ରତି ଅଧିକ ସହନଶୀଳତା ପ୍ରକାଶ ପାଉଥିଲା ।

# ଉତ୍କଳ ସମ୍ମିଳନୀ ଓ ଗୋପବନ୍ଧୁ

୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଭାଷାସୂତ୍ରରେ ଏକତ୍ର କରିବା ଉଦ୍ଦେଶ୍ୟରେ ତତ୍କାଳୀନ ଖଲ୍ଲିକୋଟର ମହାରାଜା ହରିହର ମର୍ଦ୍ଦରାଜ, ପୁରୀର ମୁକ୍ତ୍ୟାର ଶ୍ରୀ ରାମଚନ୍ଦ୍ର ଦାସ, ମୟୂରଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ, ସିଂହଭୂମିର ବେରାର ଜମିଦାର, ଇଚ୍ଛାପୁରର ପୀଢ଼ପତ୍ର, ସୋଣ୍ଡୁଆର ଜମିଦାର, ପାରଳାଖେମୁଣ୍ଡି ମହାରାଜା, ବାମଣ୍ଡା ରାଜା ଓ ସର୍ବୋପରି ଉତ୍କଳଗୌରବ ମଧୁସୂଦନଙ୍କ ନେତୃତ୍ୱରେ ଆହୂତ ହୋଇଥିଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ, ସିଂହଭୂମିର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ସମ୍ବଲପୁରର ଚନ୍ଦ୍ରଶେଖର ବେହେରା ଆଦି ପରେ ସକ୍ରିୟ ଭାବରେ ଏହି ସମ୍ମିଳନୀରେ ସହଯୋଗ କରିଥିଲେ । ସେତେବେଳେ ଓଡ଼ିଶା କହିଲେ—କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁର ଏହି ୪ଟି ଜିଲ୍ଲାକୁ ବୁଝାଉଥିଲା । ଏହା ଓଡ଼ିଶା ଡିଭିଜନ ନାମରେ କଥିତ ଥିଲା ଓ ଏହି ଡିଭିଜନ କମିସନରଙ୍କ ଅଧୀନରେ ଥିବା ଗଡ଼ଜାତଗୁଡ଼ିକୁ ଅଠର ଗଡ଼ଜାତ କୁହାଯାଉଥିଲା । କଳାହାଣ୍ଡି, ପାଟଣା, ଗାଙ୍ଗପୁର, ରେଢ଼ାଖୋଲ, ସୋନପୁର, ବଣାଇ, ବାମଣ୍ଡା—ସାତୋଟିଯାକ ଗଡ଼ଜାତ ପୂର୍ବରୁ ସମ୍ବଲପୁର ସହିତ ହିନ୍ଦୀଭାଷୀ ମଧ୍ୟପ୍ରଦେଶର ଛତିଶଗଡ ଡିଭିଜନ ଅଧୀନରେ ଥିଲା । ୧୮୯୬ରୁ ସମ୍ବଲପୁରର ଓଡ଼ିଆଙ୍କ ପ୍ରବଳ ଆନ୍ଦୋଳନ ଏବଂ ୧୯୦୩ରେ ପ୍ରଥମ 'ଉତ୍କଳ ସମ୍ମିଳନୀ'ର ଆହ୍ୱାନରେ ମଧୁସୂଦନ ଓ ଖଲ୍ଲିକୋଟର ରାଜାବାହାଦୁର ଶ୍ରୀ ହରିହର ମର୍ଦ୍ଦରାଜ ଓ ଗଞ୍ଜାମର ବିଭିନ୍ନ ରାଜା ମହାରାଜା, ବିଶିଷ୍ଟ ଜମିଦାର ଓ ନେତାମାନେ ସଂଗଠିତ ହେବାରେ ଦେଶ ମିଶ୍ରଣ ଆନ୍ଦୋଳନ ଏକ ଜୀବନ୍ତ ରୂପ ଧାରଣ କଲା । ଏହି ଆନ୍ଦୋଳନର ବ୍ୟାପକତା ମଧ୍ୟପ୍ରଦେଶ ଓ ବେରାରର ଲେଫ୍ଟେନାଣ୍ଟ ସାର୍ ଆଣ୍ଡ୍ରୁ ଫ୍ରେଜରଙ୍କୁ ବିଶେଷ ପ୍ରଭାବିତ କରିଥିଲା ଓ ସେ ଓଡ଼ିଶାର ଦାବୀର ଯଥାର୍ଥତା ହୃଦ୍‌ବୋଧ କରିଥିଲେ । ସେ ସମ୍ବଲପୁର, କଳାହାଣ୍ଡି ଓ ପାଟଣା ପ୍ରଭୃତି ଗଡ଼ଜାତଗୁଡ଼ିକ ପରିଭ୍ରମଣ କରି ଦେଖିଲେ ଯେ ଓଡ଼ିଆମାନେ ଛତିଶଗଡ଼ ଅଞ୍ଚଳରେ ଅନ୍ତର୍ଭୁକ୍ତ ରହି ଏବଂ କୋର୍ଟ, କଚେରୀ ଓ ସ୍କୁଲମାନଙ୍କରେ ଓଡ଼ିଆଭାଷାରୁ ବଞ୍ଚିତ ହୋଇ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଛନ୍ତି । ସେମାନଙ୍କ ଆତ୍ମାକୁ ଏହା ବାଧୁଛି । ଆଉ ଅଧିକକାଳ ମଧ୍ୟପ୍ରଦେଶ ଅଧୀନରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ରଖିବା ମହାପାପ ହେବ । ସେତେବେଳେ ବଙ୍ଗଳାରେ ଯେଉଁ ସନ୍ତ୍ରାସବାଦୀ ବିପ୍ଳବୀମାନେ ବଙ୍ଗ ବ୍ୟବଚ୍ଛେଦ ନାମରେ ଆନ୍ଦୋଳନ ଆରମ୍ଭ କରିଥିଲେ ତାହା ଫଳରେ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳର ଦୁଃଖ, କ୍ଷୋଭ, ଅସନ୍ତୋଷ ଓ ରୁଦ୍ଧବେଦନା ଏକ ପ୍ରଚ୍ଛନ୍ନ ବିଦ୍ରୋହ ରୂପେ ମୁଣ୍ଡ ଟେକୁଥିବା କଥା ବଡ଼ଲାଟ ଲର୍ଡ କର୍ଜନଙ୍କୁ ସାର୍ ଆଣ୍ଡ୍ରୁ ଜ୍ ଫ୍ରେଜର୍ ବୁଝାଇ ଦେଇଥିଲେ । ସମ୍ବଲପୁର ଓଡ଼ିଆ ଭାଷାଭାଷୀମାନଙ୍କ ଆନ୍ଦୋଳନ ଓ ନବଗଠିତ ଉତ୍କଳସମ୍ମିଳନୀର ପ୍ରଭାବ

ସରକାରୀ ଶାସନକୁ କିପରି ସେତେବେଳେ ବୋହଲାଇ ଦେଇଥିଲା ଓ କେଉଁ ଅବସ୍ଥାରେ ସମ୍ବଲପୁର, କଳାହାଣ୍ଡି, ପାଟଣା ସମେତ ପାଞ୍ଚୋଟି ଗଡ଼ଜାତ ସହିତ ଯଥାକ୍ରମେ ମିଶିଲେ ଏବଂ ବଙ୍ଗଭଙ୍ଗ ଆନ୍ଦୋଳନ ସହିତ ଏହାର ସମ୍ପର୍କ ଆଦି ବିଷୟରେ ପରେ ସାର ଆଣ୍ଡ୍ରୁ ଫ୍ରେଜର "With the Rajahs and Ryots" ନାମକ ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ପଶ୍ଚିମ ଓଡ଼ିଶାର ଏହି ଅଞ୍ଚଳଗୁଡ଼ିକ ହିନ୍ଦୀଭାଷୀ ମଧ୍ୟପ୍ରଦେଶ ଶାସନାଧୀନ ଥାଇ କିପରି ଅତ୍ୟାଚାରିତ ହୋଇଥିଲା ଏବଂ ଓଡ଼ିଆ ଭାଷା, ସଂସ୍କୃତି ଓ ସଭ୍ୟତାରୁ ଓଡ଼ିଆମାନଙ୍କୁ କିପରି ବଞ୍ଚିତ କରାଯାଉଥିଲା ତାହାର ଏକ କରୁଣ ଚିତ୍ର ଏହି ପୁସ୍ତକରେ ପ୍ରଦତ୍ତ ହୋଇଅଛି । ଆଗରୁ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବିଭିନ୍ନ ପଦସ୍ଥ ଚାକିରିରେ ବଙ୍ଗୀୟମାନେ ଅଧିକ ଭାବରେ ନିଯୁକ୍ତ ହୋଇଥିଲେ । ସେମାନେ ଓଡ଼ିଆମାନଙ୍କୁ ଯେଉଁ ଦୃଷ୍ଟିରେ ଦେଖୁଥିଲେ ତାହା ୧୮୬୯ ମସିହା କାଳର ଓଡ଼ିଆ ଭାଷା ବିରୋଧୀ ହାନି ଚକ୍ରାନ୍ତରୁ ସ୍ପଷ୍ଟ ହୋଇଥିଲା ।

ଏଇସବୁ ପରିସ୍ଥିତି ଓ ଅଭିଯୋଗର ପୃଷ୍ଠଭୂମିରେ ୧୯୦୩ରେ ମୁକ୍ତ୍ୟାର ଶ୍ରୀ ରାମଚନ୍ଦ୍ର ଦାସ ଓ ଉତ୍କଳ ଗୌରବ ମଧୁସୂଦନଙ୍କ ନେତୃତ୍ୱରେ 'ଉତ୍କଳ ସମ୍ମିଳନୀ' ପ୍ରତିଷ୍ଠିତ ହେଲା । ମଧୁବାବୁ ଓଡ଼ିଆଭାଷୀଙ୍କୁ ଆବେଗଭରା ଭାଷାରେ ଆହ୍ୱାନ ଦେଇ 'ଉତ୍କଳ ସମ୍ମିଳନୀ'ର ଉଦ୍ଦେଶ୍ୟ ଓ ଆଭିମୁଖ୍ୟକୁ ଲକ୍ଷ୍ୟ ରଖି ଲେଖିଥିଲେ···

"ଏହି ସମ୍ମିଳନୀ ଜାତି ପ୍ରାଣସିନ୍ଧୁ
କୋଟି ପ୍ରାଣ ବିନ୍ଦୁ ଧରେ
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।"

ବସ୍ତୁତଃ ଏହା ଓଡ଼ିଆମାନଙ୍କ ମନ ଓ ପ୍ରାଣରେ, ଚିନ୍ତା ଓ ଚେତନାରେ ଭୂମୂଳ ଝଡ଼ ସୃଷ୍ଟିର ଆଦ୍ୟ ସଙ୍କେତ ଆଣିଦେଇଥିଲା; ମୟୂରଭଞ୍ଜର ମହାରାଜା ରାମଚନ୍ଦ୍ର ଭଞ୍ଜଦେଓ ଏହି ସମ୍ମିଳନୀରେ ସଭାପତି ହୋଇଥିଲେ । କୁଳବୃଦ୍ଧ ମଧୁସୂଦନ ଏହାପରେ ଏକାଧିକବାର ଏହି ସମ୍ମିଳନୀର ସଭାପତି ମନୋନୀତ ହୋଇଛନ୍ତି । ଉତ୍କଳମଣି ଗୋପବନ୍ଧୁ ୧୯୧୯ ମସିହାର ସମ୍ମିଳନୀରେ ସଭାପତିତ୍ୱ କରିଥିଲେ; କିନ୍ତୁ ପ୍ରଥମ ସମ୍ମିଳନୀ (୧୯୦୩) ବେଳେ ସେ ଥିଲେ କଲେଜ ଛାତ୍ର । ସେ କେତେକ ଛାତ୍ରବନ୍ଧୁଙ୍କ ସହିତ ସ୍ୱେଚ୍ଛାସେବକ ଭାବରେ ପ୍ରଥମ ସମ୍ମିଳନୀରେ ଯୋଗଦେଇଥିଲେ ।

୧୯୦୪ ମସିହାରେ 'ଉତ୍କଳ ସମ୍ମିଳନୀ' କଟକରେ ଆହୂତ ହୋଇଥିଲା । ଗୋପବନ୍ଧୁ ସେତେବେଳେ କଲିକତାରେ ଆଇନ ଅଧ୍ୟୟନ କରୁଥାନ୍ତି । ସେ ଉତ୍କଳ ସମ୍ମିଳନୀ ଦେଖିବାକୁ ତାଙ୍କର କେତେକ ବଙ୍ଗାଳୀ ଛାତ୍ରବନ୍ଧୁଙ୍କୁ ଆଣି ଆସିଥା'ନ୍ତି । ରାୟବାହାଦୁର ରାଜକିଶୋର ଦାସ ସେକ୍ରେଟାରୀ ଥାନ୍ତି । ତାଙ୍କଠାରୁ ସମ୍ମିଳନୀ ଦେଖିବାକୁ ଗୋପବନ୍ଧୁ ନିଜପାଇଁ ଓ ବନ୍ଧୁମାନଙ୍କ ପାଇଁ ଟିକେଟ୍ ସଂଗ୍ରହ କରିନେଲେ । ଭିତରକୁ ଗଲାବେଳକୁ

ଗେଟ୍ ପାଖରେ ମିଷ୍ଟର ଦାସ ଠିଆହୋଇଥା'ନ୍ତି । ଗୋପବନ୍ଧୁଙ୍କୁ ତାଙ୍କ ବଙ୍ଗାଳୀ ସାଙ୍ଗମାନଙ୍କ ସହିତ ଆସିବାର ଦେଖି ମି. ଦାସ ପଚାରିଲେ—"ଏମାନେ କିଏସେ ?" ତାଙ୍କ କଣ୍ଠରେ ରୁକ୍ଷତା ଥିଲା, କାରଣ ବଙ୍ଗାଳୀମାନଙ୍କ ପ୍ରତି ମି. ଦାସଙ୍କର ଅସୀମ ଘୃଣା କ୍ରମେ କ୍ରମେ ବଢ଼ିଉଠୁଥିଲା । ତାଙ୍କର ସ୍ପଷ୍ଟ ଧାରଣା ହୋଇଗଲା ଯେ—ଏମାନେ ଓଡ଼ିଆ ଓ ଓଡ଼ିଶାର ଜାତୀୟସ୍ୱାର୍ଥ ବିରୋଧୀ ।

ମି. ଦାସ ସେମାନଙ୍କୁ ପ୍ରବେଶ ଅନୁମତି ଦେଲେ ନାହିଁ । ଗୋପବନ୍ଧୁଙ୍କ ଅନ୍ତରରେ ଆଘାତ ହେଲା । ସେ କହିଲେ—"ତା'ହେଲେ ମୁଁ କିପରି ଏକାକିଆ ସମ୍ମିଳନୀ ଦେଖିବି ? ଗୋପବନ୍ଧୁ ଫେରିଯିବା ପୂର୍ବରୁ ଖଣ୍ଡେ ଚିଠି ମିଃ ଦାସଙ୍କ ପାଖକୁ ଲେଖିଦେଇଗଲେ ଏବଂ ସମ୍ମିଳନୀ ଟିକଟି ମଧ୍ୟ ଫେରାଇ ଦେଇଗଲେ । ସେ ଚିଠିରେ ମଧୁବାବୁଙ୍କର ସଙ୍କୀର୍ଣ୍ଣ ପ୍ରାଦେଶିକତା ପାଇଁ ନିଜର ଦୁଃଖ ଓ ଘୃଣା ପ୍ରକାଶ କରିଥିଲେ । 'ଉତ୍କଳ ସମ୍ମିଳନୀ' ଏକ ଜାତୀୟ ସମ୍ମିଳନୀ ଓ ସମସ୍ତ ଭାରତବାସୀଙ୍କର ଏହି ସମ୍ମିଳନୀ ପ୍ରତି ଦୃଷ୍ଟି ଆକର୍ଷଣ ହେବା ଉଚିତ ବୋଲି ଗୋପବନ୍ଧୁ ଦୃଢ଼ ମତ ପ୍ରକାଶ କରିଥିଲେ । ଓଡ଼ିଶା ବଙ୍ଗଳାଠାରୁ ବିଚ୍ଛିନ୍ନ ହୋଇ ମଧ୍ୟପ୍ରଦେଶ ବେରାର ସହିତ ମିଶି ରହିବା ଉଚିତ ବୋଲି ସେ ଏହି ସଭରେ କେତେକ ପ୍ରସ୍ତାବପତ୍ର ବାଣ୍ଟିଥିବା କଥା ଆଗରୁ କୁହାଯାଇଛି । ହରିହର ଦାସ ସେ ଚିଠିର ବାହକ ଥିଲେ । ଗୋପବନ୍ଧୁ କଟକ ଆସିଲେ ବରାବର ବ୍ରଜସୁନ୍ଦର ଦାସଙ୍କ ଘରେ ରହୁଥିଲେ । ସମ୍ମିଳନୀ ଶେଷରେ ମଧୁବାବୁ ଆସି ଗୋପବନ୍ଧୁଙ୍କୁ ବ୍ରଜବାବୁଙ୍କ ଘରେ ଭେଟିଲେ ଓ ମିଳାମିଶା ହୋଇଗଲା । ବଙ୍ଗାଳୀ ଛାତ୍ରମାନେ ପରଦିନ ସଭାସ୍ଥଳୀରେ ପ୍ରବେଶ ଅନୁମତି ପାଇଲେ । ତା' ପରଠାରୁ ମିଃ ଦାସଙ୍କ ସହିତ ଗୋପବନ୍ଧୁଙ୍କର ପରିଚୟ ଘନିଷ୍ଠ ହେବାକୁ ଲାଗିଲା; କିନ୍ତୁ ଏହାପୂର୍ବରୁ ୧୯୦୩ ଏପ୍ରିଲ ୧୧ ତାରିଖ ଓ ୧୨ ତାରିଖରେ ଗଞ୍ଜାମର ବ୍ରହ୍ମପୁରଠାରେ ଅନୁଷ୍ଠିତ ଗଞ୍ଜାମ ଜାତୀୟ ସମ୍ମିଳନୀ ଯଥାର୍ଥତଃ 'ଉତ୍କଳ ସମ୍ମିଳନୀ'ର ଅଗ୍ରଦୂତ ଭାବେ ସମସ୍ତ ଓଡ଼ିଆ ଭାଷାଭାଷୀଙ୍କ ମନରେ ଅଭୂତପୂର୍ବ ଉତ୍ସାହ ଆଣି ଦେଇଥିଲା । ଏଥିରେ ଯୋଗଦେବାକୁ ଉତ୍କଳ ଗୌରବ ମଧୁସୂଦନ, ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ, ଫକୀର ମୋହନ ସେନାପତି, ନନ୍ଦକିଶୋର ବଳ, ଶ୍ରୀ ରାମଚନ୍ଦ୍ର ଦାସ ଆଦି ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଯୁବକ ଓ ତତ୍କାଳୀନ କଲେଜ ଛାତ୍ର ଗୋପବନ୍ଧୁ ମଧ୍ୟ ବ୍ରହ୍ମପୁର ଯାତ୍ରାକରିଥିଲେ । ଏହାପରେ ପ୍ରଥମ 'ଉତ୍କଳ ସମ୍ମିଳନୀ' କଟକରେ ୧୯୦୩ ଡିସେମ୍ବର ୩୦ ତାରିଖ ଓ ୩୧ ତାରିଖରେ ଅନୁଷ୍ଠିତ ହୋଇଥିଲା ।

## କଲେଜଛାତ୍ର ଭାବରେ

ଗୋପବନ୍ଧୁ କଲେଜରେ ଅଧ୍ୟୟନ କରୁଥିବା ସମୟରେ ଓଡ଼ିଶାରେ ଉଚ୍ଚଶିକ୍ଷା ପରିବ୍ୟାପ୍ତ ହୋଇନଥିଲା । କେବଳ କେତେକ ଧନୀବ୍ୟକ୍ତି ଉଚ୍ଚଶିକ୍ଷା ପାଇଁ ନିଜ ପିଲାଙ୍କୁ ପଠାଉଥିଲେ । ପୁଣି ଓଡ଼ିଶାରେ ରେଭେନ୍ସା କଲେଜ ଏକମାତ୍ର ଡିଗ୍ରୀ କଲେଜ ଥିଲା । ଗୋପବନ୍ଧୁ ଓ ହରିହରଙ୍କ ପରି ମଧ୍ୟବିତ୍ତ ପରିବାରର ଖୁବ୍ କମ୍ ଛାତ୍ର ଉଚ୍ଚଶିକ୍ଷା ଉଦ୍ଦେଶ୍ୟରେ ଆସୁଥିଲେ ।

ଗୋପବନ୍ଧୁ ନିଜ ଆଚରଣ, ବେଶଭୂଷାରେ ସ୍ୱାତନ୍ତ୍ର୍ୟ ରକ୍ଷାକରୁଥିଲେ । ବିଶେଷତଃ ଆମ ପ୍ରାଚୀନ ସଂସ୍କୃତି ଓ ପରମ୍ପରା ପ୍ରତି ତାଙ୍କର ଅସୀମ ମମତା ଥିଲା । ତେଣୁ କୌଣସି ବିଦ୍ରୂପ ବା ସମାଲୋଚନା ତାଙ୍କୁ ବିଚଳିତ କରୁନଥିଲା । ନିଜର ସେଇ କଳାପାହାଡ଼ୀ ଧୋତି ଓ ଗୁଦର ତତ୍କାଳୀନ ବିଦେଶୀ ପୋଷାକର ଅନୁକରଣ ନିକଟରେ ନିଜ ଉଦ୍ଧତ ଆତ୍ମବିଭ୍ରମା ଓ ପରମ୍ପରାର ଇସ୍ତାହାର ପ୍ରକାଶ କରୁଥିଲା । ଏପରିକି ମୂଲ୍ୟବାନ୍ ଧୋତି ପିନ୍ଧିବାକୁ ସେ ଅନ୍ୟାୟ ବୋଲି ବିଚାରୁଥିଲେ । ସବୁ ଘଟଣାରେ ଓଡ଼ିଶାର ଦୁଃଖ ଓ ଦାରିଦ୍ର୍ୟ ତାଙ୍କ ଆଖିରେ ବିମୂର୍ତ୍ତ ହେଉଥିଲା ଓ ସେଇ ପରିବେଶରେ ସେ ନିଜକୁ ତଉଲିନେଉଥିଲେ ।

ଛାତ୍ର ଜୀବନରୁ ତାଙ୍କଠାରେ ପର ସେବା, ଉଦ୍ୟମ ଓ ଉଦ୍‌ଯୋଗର ପ୍ରୟାସ ଦେଖା-ଦେଇଥିଲା । ଏପରିକି ପାଠପଢ଼ାକୁ ଗୌଣ ମନେକରି ସେ ଜାତି କାମରେ ଆଗୁଯାଉ ହେଉଥିଲେ । ସଙ୍ଗଠନ ଶକ୍ତି ଥିବାରୁ କେତେକ ଛାତ୍ରଙ୍କୁ ମେଳେଇ କୌଣସି ଏକ ଗଠନମୂଳକ କାମ ହାସଲ କରିବା ତାଙ୍କ ପକ୍ଷେ ସହଜସାଧ ହେଉଥିଲା । ନିଜ ସ୍ତରରୁ ଊର୍ଦ୍ଧ୍ୱ ବିଷୟକଥା ସେ ଛାତ୍ର ଜୀବନରୁ ଚିନ୍ତା କରୁଥିଲେ ଓ ଆବଶ୍ୟକ ହେଲେ ସେଥିରେ ଭାଗ ମଧ୍ୟ ନେଉଥିଲେ ।

୧୯୦୨ ମସିହା ବି. ଏ. ପରୀକ୍ଷାରେ ସେ ବିଫଳ ହେଲେ । ପୁଣି ସେଇଦିନ ତାଙ୍କର ପିତାଙ୍କ ମୃତ୍ୟୁ ସମ୍ବାଦ ମଧ୍ୟ ପାଇଲେ । ଏ ଉଭୟ ସମ୍ବାଦ ତାଙ୍କୁ ଆଲୋଡ଼ିତ କରିଥିଲେ ମଧ୍ୟ ବିଚଳିତ କଲା ନାହିଁ । ସେ ନିଜର କର୍ତ୍ତବ୍ୟକୁ ଆଖି ଆଗରେ ସ୍ଥିର ସତ୍ୟ ଭାବରେ ଧରି ବସିଲେ, ପୁଣି ପରୀକ୍ଷା ପାଇଁ ପ୍ରସ୍ତୁତ ହେଲେ ଓ ପରବର୍ଷ (୧୯୦୩) ପାଶ୍ ମଧ୍ୟ କଲେ । ଏହି ସମୟଗୁଡ଼ିକରେ ସେ ନିଜର ପରିବାର ଉପରେ ଅଯଥା ଗଳଗ୍ରହ ନହୋଇ କବିବନ୍ଧୁ ରାଧାନାଥଙ୍କ ପରାମର୍ଶ କ୍ରମେ ନୟାଗଡ଼ ରାଜାଙ୍କ ଭଣଜା ଦାଶରଥି ସୁରଦେଓ ଓ ଗୋବିନ୍ଦଚନ୍ଦ୍ର ସୁରଦେଓଙ୍କ ଗୃହଶିକ୍ଷକତା ମଧ୍ୟ କରୁଥିଲେ ।

କଲିକତାରେ ଏକାଦିକ୍ରମେ ଏମ୍. ଏ. ଓ ବି. ଏଲ୍. ଶ୍ରେଣୀରେ କିଛିକାଳ ଅଧ୍ୟୟନ ପରେ ଏମ୍.ଏ. ଅଧ୍ୟୟନ ଛାଡ଼ି ଦେଇଥିଲେ । ତାଙ୍କର ଧାରଣା ହେଲା —ଓଡ଼ିଶାର ଅର୍ଥନୈତିକ ଓ ରାଜନୈତିକ ପରିପ୍ରେକ୍ଷୀରେ ଏମ୍. ଏ. ଅଧ୍ୟୟନ ଏକ ବିଳାସ ମାତ୍ର । ଏପରିକି ଘରୁ

କୌଣସି ସାହାଯ୍ୟ ଆଣି ଏହି ଉଚ୍ଚ ବୃତ୍ତି (service) ଉପଯୋଗୀ ପାଠ ପଢ଼ିବା ଏକ ପ୍ରତାରଣା । ଭବିଷ୍ୟତରେ ଉଚ୍ଚ ସରକାରି ଚାକିରି କରିବା ତାଙ୍କର ଲକ୍ଷ୍ୟ ନ ଥିଲା । ସ୍ୱାଧୀନ ବୃତ୍ତି ପାଇଁ ଓକିଲାତି ପାଠ ଅଧିକ ଦରକାରି ଭାବି ସେ କେବଳ ଓକିଲାତି ହିଁ ଅଧ୍ୟୟନ କଲେ । କଲିକତାରେ ସେ ବଡ଼ବଜାରର ଏକ ବଙ୍ଗାଳୀ ମେସ୍‌ରେ ରହୁଥିଲେ । ତାଙ୍କ ଆଚରଣରେ କଟକ ପରି ଏଠାରେ ମଧ୍ୟ ସେହି ଅଭିନ୍ନ ଏକନିଷ୍ଠତା ଫୁଟିଉଠିଲା । ଝାଡ଼ାଗଲାବେଳେ ମୁଣ୍ଡରେ ପୁରା ବ୍ରାହ୍ମଣଙ୍କ ପରି ଠେକା ଓ କାନରେ ପଇତା ଦେଇ ସେ ଲୋଟାଟିଏରେ ପାଣି ନେଉଥିଲେ । ପୁଣି ପ୍ରତିଦିନ ଗଙ୍ଗାରେ ଗାଧୋଇ କପାଳମାରି ଗାମୁଛା ପିନ୍ଧି ମନ୍ତ୍ରପାଠ କରି କରି ଫେରୁଥିଲେ । ସେଠାରେ କେତେକ ନବ୍ୟ ଆଧୁନିକ ବନ୍ଧୁ, ତାଙ୍କୁ 'ଆବନରମାଲ୍' ବୋଲି ଅଳ୍ପା ପରିହାସ କରୁଥିବାବେଳେ, ଅନେକ ଗୁଣଗ୍ରାହୀ ବଙ୍ଗାଳୀ ସହାଧ୍ୟାୟୀ ତାଙ୍କର ଉଚ୍ଚ ନୈତିକ ଚେତନାରେ କ୍ରମେ ଆକୃଷ୍ଟ ମଧ୍ୟ ହେଉଥିଲେ ।

ଏହି ସମୟରେ ଓଡ଼ିଶାର କୋର୍ଟ କଚେରିମାନଙ୍କରେ ବଙ୍ଗାଳୀ କର୍ମଚାରୀମାନଙ୍କର ଅଧିକ ଭିଡ଼ ଥିଲା । ଏପରିକି ବଙ୍ଗାଳୀମାନେ ଓଡ଼ିଆଙ୍କୁ ନ୍ୟୂନ ଦୃଷ୍ଟିରେ ଦେଖୁଥିଲେ । ସେମାନଙ୍କ ଚିନ୍ତାରେ ଓଡ଼ିଆମାନେ ମାଳୀ, ପୂଜାରି ଓ ଭାରବାହୀ ଜାତି । ଏପରି ପ୍ରକାଶ୍ୟ ସମାଲୋଚନା ମଧ୍ୟ ଚାଲୁଥିଲା । ଗୋପବନ୍ଧୁ ଉଦାର ଓ ଗମ୍ଭୀରଭାବରେ ସୁହୃଦ ବନ୍ଧୁମାନଙ୍କୁ ଏ ଜାତିର ଅତୀତ ସମ୍ପର୍କରେ ସୁନ୍ଦର ତଥ୍ୟ ଦେଉଥିଲେ । ଏହାର ଗୌରବାବହ ସ୍ମୃତିରାଜିକୁ ବଡ଼ଭାବରେ ଚିତ୍ରଣ କରି ସେ ଓଡ଼ିଆ ଜାତି ଓ ଓଡ଼ିଆଙ୍କ ପ୍ରତି ଥିବା ଭ୍ରମ ଧାରଣା ଦୂର କରୁଥିଲେ ।

କଲିକତାରେ ରହୁଥିବା ଓଡ଼ିଆମାନେ ନିଜ ମାତୃଭାଷା ପରିବର୍ତ୍ତେ ବଙ୍ଗଳାରେ କଥାବାର୍ତ୍ତା କରିବାକୁ ଅଧିକ ପସନ୍ଦ କରୁଥିଲେ । ସେମାନଙ୍କ ଭିତରେ ଏକ ନ୍ୟୂନ ଭାବ (Inferiority Complex) ବଳିଭାବରେ କାମ କରୁଥିଲା । ଗୋପବନ୍ଧୁ ବହୁ ଯତ୍ନ କରି ସେମାନଙ୍କ ମଧ୍ୟରେ ନିଜ ଜାତିପାଇଁ ଉଗ୍ର ଚେତନା ଆଣିପାରିଥିଲେ ।

ଏସବୁ ଭିତରେ ଏଇ ମହାମଣିଷର ଅନ୍ତର ତଳେ ଅନୁଭବର ଯେଉଁ ପ୍ରାଣବନ୍ତ ଭାବରାଜି ଜନ୍ମନେଉଥିଲା ତାର ପ୍ରତିଫଳନ କବିତା ଆକାରରେ ପ୍ରକାଶପାଉଥିଲା । କି ସରଳ, ସ୍ୱଚ୍ଛ ଓ ନିଷ୍ଠାପର ଭାବରାଜି । ଚିନ୍ତା ଓ କର୍ମର ଭାବସମ୍ପଦ ଏଇ ଶ୍ରେଷ୍ଠ କବିତାଗୁଡ଼ିକରେ ଯେପରି ଫୁଟି ଉଠିଛି ଏତେ ସାବଲୀଳ ଭାବରେ ଅନ୍ୟତ୍ର ଫୁଟି ନାହିଁ । ଗୋପବନ୍ଧୁଙ୍କ ଯୁବପ୍ରାଣକୁ ଯେଉଁ ଦୃଶ୍ୟ, କାହାଣୀ ବା ଘଟଣା କ୍ଷଣକ ପାଇଁ ଦୋହଲେଇ ଦେଇଛି ତାଙ୍କ ଲେଖନୀ ସେସବୁର ଅଙ୍ଗୀକାର କରିଛି । ପ୍ରତିଦିନର ଶ୍ରେଷ୍ଠ ଥିଲା ଜିନିଷ ଉପରେ ତାଙ୍କର ଏସବୁ କବିତା ସେଇ ସେଇ ବସ୍ତୁର ପ୍ରାଣବାଣୀକୁ ମୁଖରିତ କରିଛି । ଶ୍ରେଷ୍ଠ ଜିନିଷରେ ଏକ ଅଭିନବ ଅନୁଭବ, ଏକ ଗଭୀର ମନନଶୀଳତା— କାଙ୍କଡ଼ଗଛ କେଉଁଠି ରାସ୍ତା ଯୋଗେ ମରିଗଲା, ଗ୍ରୀଷ୍ମ ତାପରେ କେଉଁଠି ପ୍ରିୟ ପ୍ରତିବେଶିନୀ ମାଳତୀଲତା ଭାରିବା ଶୁଷ୍କ, କେଉଁଠି ପୁଣି କାଠଯୋଡ଼ୀ, କେଉଁଠି ପୁଣି ଲୁଚିରହିଲେ ଏ ଜାତିର ଅତିପ୍ରିୟ ଜଗନ୍ନାଥ ଦାସ, ଡାଳିଆ

ଦାସ, ବଳରାମ, ଅନଙ୍ଗଭୀମ, ଚନ୍ଦ୍ରଶେଖର, ବାଜପେୟୀ—ସମସ୍ତଙ୍କ ପାଇଁ ତାଙ୍କ ଚିନ୍ତାରେ ଦରଦ; କବିତାରେ ହେଲା ସେ ସବୁର ଉଚ୍ଛଳ ଆତ୍ମପ୍ରକାଶ । କେଉଁଠି ପଡ଼ିରହିଛି ଅତୀତର ମଶାଣି ଗଦାରେ ସ୍ମୃତିର ସମ୍ବଳ ଧରି ଅସହାୟ ବାରବାଟୀ, ପୁଣି କେଉଁଠି ତା'ରି ସନ୍ନିଧିରେ ସ୍ଖଳିତ ଐତିହାସିକ ପୂର୍ବ ବାଲିଯାତ୍ରା, କେଉଁଠି କଟକର ଶିଳାସେତୁ ଆଉ ତା'ର ନିର୍ମାତା ମର୍କତକେଶରୀ, କେଉଁଠି ଜୈନବିହାର ଖଣ୍ଡଗିରି । କେଉଁଠି ରେଲଉପରେ ଚାଲିବାର ଶୋଭାରାଣି ତାଙ୍କ କବିପ୍ରାଣକୁ ଆନ୍ଦୋଳିତ କରିଛି ତ କେଉଁଠି ରେଭେନ୍ସା କଲେଜରୁ ବିଦାୟ ପ୍ରାଣରେ ପ୍ରିୟସ୍ମୃତିର ଦାରୁଣ ବ୍ୟଥା ଭରିଦେଇଛି । ଅହା, ସେ ପଦାବଳୀ ପରି ସ୍ପଷ୍ଟ ଓ ସରଳ ଗାଥା ଆଉ କେହି ଲେଖି ନାହିଁ । 'ଅବକାଶ ଚିନ୍ତା'— ତାର ପ୍ରତିଲିପି ବହନ କରି ଏଇ ମଣିଷର ବିପୁଳ ଅନୁଭୂତିର ଜୟଜୟକାର କରୁଛି । ବର୍ଷୀୟସର ଜୀବନାନୁଭୂତି ପୁଣି ତାରୁଣ୍ୟର ତରଙ୍ଗ, ଫୁଲର ଫସଲ, ପୁଣି ପଥରର ପୀଡ଼ା—ଜୀବନର ଦ୍ୱୈତମୁଖୀ ବିକାଶରେ ଏ କବିତା ଗ୍ରନ୍ଥ ଯେତିକି ଉପଭୋଗ୍ୟ ଏ ଜାତି ପାଇଁ ସେତିକି ମୂଲ୍ୟବାନ୍ । 'ଶିବରାତ୍ରି' କବିତାରେ ସେଇ ପ୍ରାଣର ଅକୁତୋଭୟ ପ୍ରକାଶ—

"ରାତ୍ରି କର ଜାଗରେ କିସ ପ୍ରୟୋଜନ
ନିଦ୍ରା-ବିମୋହିତ ମୋର ସମସ୍ତ ଜୀବନ ।"
× × ×
"ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ
ନିଜ ଅଭ୍ୟନ୍ତର ଦେଖ ଫେଡ଼ିଣ ନୟନ,"
"ସମସ୍ତ ଜୀବନ କର ଏକ ଶିବରାତ୍ରି,
ଅନ୍ଧାରେ ନ ଛାଡ଼ ପଥ ହେ ସ୍ୱରଗ-ଯାତ୍ରି ।"

ଏହା କ'ଣ ଜଣେ ସାମାନ୍ୟ ଗୃହୀ ଗୋପବନ୍ଧୁର ମର୍ମବାଣୀ ? ଏଇ ଗୃହୀ ଭିତରେ ଏହା କ'ଣ ଏକ ମହାପୁରୁଷର ପ୍ରତୀକ୍ଷା ନୁହେଁ ? ନୁହେଁ ଏକ ବିପୁଳ ଜାତିପ୍ରାଣର ବଜ୍ରଘୋଷଣା ? କେଉଁଠି ଲୁଚି ଲୁଚି ସଙ୍କୁଚିତ ହୋଇ ଏଇ ସରଳ ମଣିଷ ଭିତରେ ସେ ଲୋଡ଼ୁଛି ଆତ୍ମ-ପ୍ରକାଶ । ପୁଣି ସେଇ ଗୃହୀ ଛବିଶବର୍ଷ ପ୍ରବେଶରେ ବନ୍ଧୁଙ୍କ ପାଖରେ ପ୍ରାର୍ଥନା କରୁଛି—

× × × ,×
"ଅତୀତ କେବଳ ମୋର ରୁକ୍ଷ ସଇକତ
ଦିଶେ ନାହିଁ କାହିଁ ଏକ ଶ୍ୟାମ ଦୂର୍ବାଦଳ ।
× × ×
ମଧ୍ୟାହ୍ନେ ପ୍ରଦୋଷ ଛାୟା ପଡ଼ଇ ମୋ ଚକ୍ଷେ
ମୋ ଆଶା-ମୁକୁଳ ରାଜି ବସନ୍ତେ ମଳିନ ।
× × ×

ଧର୍ମ ଅନୁକୂଳ ଯେବେ ମୋ କାମନା ଚସ୍ତ
ସାଧନେ ଶକତ ହଅ ପ୍ରଭୁ ଦୟାମସ୍ତ ।"

ପୁଣି କେଉଁଠି ଭାରତର ଜାତୀୟତା ପାଇଁ ବ୍ୟାକୁଳ ଚନ୍ତାରେ ସେଇ ବ୍ୟକ୍ତିତ୍ୱ ବିଭକ୍ତ ହୋଇ ଗ୍ରନ୍ଥଜୀବନରେ ପରିଚୟ ଦେଇଛି—

"ଭାରତ ଜାତୀୟ ଜୀବନ ତରଣୀ
ପାଏ ନାହିଁ ଏବେ ସହଜ ସରଣୀ ।
ଜାତୀୟତା ପୋତେ ଜୀବନ ବୋଇତ
ଯୋଡ଼ିବା ତ ପ୍ରତି ଜନର ବିହିତ ।"

ପୁଣି ନୀରବରେ ବିଶ୍ୱର ସକଳ ଅନୁଶାସନ ମାନିନେଇ ସେଇ ଆତ୍ମୀୟତା ଉଠିଛି—

"ନୀରବେ ପ୍ରେମିକ ନେତ୍ରେ ଅଶ୍ରୁ ଜଳଜଳ
ନୀରବେ ସରସୀ-ବକ୍ଷେ ହସେ ଶତଦଳ ।
ନୀରବେ ନିସ୍ୱଣ ହୃଦେ ବହେ ଦୀର୍ଘଶ୍ୱାସ
ସୁଖେ ଦୁଃଖେ ପରାଣରେ ନୀରବ ଆଶ୍ୱାସ ।"

ସମଗ୍ର ଜଗତ ପ୍ରତି ଗ୍ରନ୍ଥଜୀବନରୁ ଏହି ଭୂୟୋଦର୍ଶନ ଗୋପବନ୍ଧୁଙ୍କ ଭବିଷ୍ୟତର ଉଜ୍ଜ୍ୱଳ ସ୍ୱାକ୍ଷର ବହନ କରିଛି । ମହାମାନବର ଜୟଯାତ୍ରାରେ ଗ୍ରନ୍ଥଜୀବନର ଏ କଳରବ ଉଦ୍‌ବୁଦ୍ଧିତ ହୋଇ ତାଙ୍କ ଜୀବନର ଧ୍ରୁବ ଲକ୍ଷ୍ୟକୁ ନିୟନ୍ତ୍ରିତ କରିଛି । ସତ୍ୟର ସ୍ୱାକ୍ଷର ନେଇ ଏ ଜୀବନର ବ୍ୟାବହାରିକ ମୂଲ୍ୟବୋଧ ଖଣ୍ଡିତ ହେବାର ନୁହେଁ । ଏହା ଏକ ବ୍ୟାପକ ବିସ୍ଫୋରଣରେ ପ୍ରତ୍ୟାଶାରେ ଗଠନମୁଖୀ ଉତ୍କଳକଣ୍ଠା ଆଲେଖର ସ୍ୱର୍ଣ୍ଣରେ ହିନ୍ଦୋଳପାଦ, ମଣିଷର ହସକାନ୍ଦ, ସୁଖଦୁଃଖ ପୀଡ଼ାପୁଲକର ବିଶ୍ୱାସରେ ପ୍ରାଣବନ୍ତ ।

ପୁଣି କଲିକତାରେ ଗୋପବନ୍ଧୁଙ୍କ ଗ୍ରନ୍ଥପ୍ରାଣରେ ଦେଶପ୍ରାଣତାର ଗଭୀର ଉନ୍ମାଦନା ଜାଗି ଉଠିଲା । ସେତେବେଳେ ଲର୍ଡ଼ କର୍ଜନ ବଙ୍ଗଳାର ଗ୍ଭର୍ଣ୍ଣର ଥିଲେ । ବଙ୍ଗାଳୀମାନଙ୍କ ଭିତରେ ଜାଗିଉଠିଥିବା ଦେଶପ୍ରାଣତାକୁ ଅବଦମିତ କରିଦେବା ପାଇଁ ବଙ୍ଗକୁ ଦୁଇଭାଗ କରିଦିଆଗଲା । ଏହି ନୀତିର ବିରୁଦ୍ଧରେ ଲଢ଼ିବାପାଇଁ କଲିକତା ତେଜି ଉଠିଲା । ସ୍ୱରାଜ୍ୟ ସନ୍ତ୍ରାସବାଦୀ କାର୍ଯ୍ୟ ଆରମ୍ଭ ହୋଇଗଲା । କ୍ଷୁଦିରାମ ଘୋଷ ନାମକ ଜଣେ ବଙ୍ଗାଳୀ ସାହସୀ ଯୁବକ ମୁଜାଫର-ପୁରର ଜିଲ୍ଲା ଓ ସେସନ୍‌ସ ଜଜ୍ ମି. କିଙ୍ଗସଫୋର୍ଡଙ୍କୁ ହତ୍ୟାକରିଥିବା ଅପରାଧରେ ଫାଶୀଦଣ୍ଡରେ ଦଣ୍ଡିତ ହୋଇଥିଲେ; କିନ୍ତୁ ସେ ଆତ୍ମଗୋପନ କରିଥିବାରୁ ତାଙ୍କୁ ଧରିବା ଇଂରାଜ ସରକାରଙ୍କ ପକ୍ଷରେ ସମ୍ଭବ ହେଉନଥିଲା । ଏହି ସମୟରେ କ୍ଷୁଦିରାମ ଲୁଚିବାକୁ ପାଇଁ କଟକରେ ବ୍ରଜସୁନ୍ଦର ଦାସଙ୍କ ଘରେ ମଧ୍ୟ ଆତ୍ମଗୋପନ

କରିଥିଲେ । ଏଇଠାରେ ତାଙ୍କ ସହିତ ଗୋପବନ୍ଧୁଙ୍କର ପରିଚୟ ହୋଇଥିଲା । ପୁନଶ୍ଚ ଶଶିଭୂଷଣ ରାୟଚୌଧୁରୀ (ଶଶୀଦା) ଙ୍କ ପରି ଜଣେ ଉଗ୍ର ସନ୍ତ୍ରାସବାଦୀଙ୍କ ସହିତ ମଧ୍ୟ ଗୋପବନ୍ଧୁଙ୍କର ସଖ୍ୟ ସ୍ଥାପନ ହେଲା । ବଙ୍ଗଳାର 'ବନ୍ଦେମାତରମ୍‌' ଆନ୍ଦୋଳନ ସହିତ ଗୋପବନ୍ଧୁ ପରିଚିତ ହୋଇଗଲେ ଓ ବଙ୍ଗଭଙ୍ଗ ବିରୁଦ୍ଧରେ ବଙ୍ଗାଳୀମାନଙ୍କ ଉଗ୍ର ଜାତୀୟ ଚେତନା ତାଙ୍କୁ ମନ୍ତ୍ରମୁଗ୍ଧ କରିଦେଲା । କଟକରେ ସେ ବ୍ରଜସୁନ୍ଦର, ନୀଳକଣ୍ଠ, ହରିହର, ଜଗନ୍ନାଥ ମହାପାତ୍ର, ଶ୍ରୀ ଅନନ୍ତ ମିଶ୍ର (ପ୍ରଚାରକ) ଆଦିଙ୍କ ସହିତ ଏ ବିଷୟରେ ଏକାଧିକବାର ଆଲୋଚନା କରି ଦେଶପାଇଁ କ୍ରମେ ନିଜର କର୍ତ୍ତବ୍ୟ ସ୍ଥିର କରିନେଲେ । କବିପ୍ରାଣର ସୂକ୍ଷ୍ମ ଚେତନା କ୍ରମେ ଜାତି କାର୍ଯ୍ୟର ଦୁରୂହ ଶ୍ରେଣୀରେ ନିମଜ୍ଜିତ ହେବାକୁ ଲାଗିଲା । କବିତା ଲେଖାରେ ଏକପ୍ରକାର ବିରତି ଆସିଗଲା ।

## ଧ୍ରୁବନକ୍ଷତ୍ରର କକ୍ଷରେ

୧୯୦୪ରୁ ୧୯୦୭ ମସିହା ମଧ୍ୟରେ କଲିକତାରେ ଆଇନ ଅଧ୍ୟୟନ କରୁଥିବା ବେଳେ ୧୯୦୫ର ବଙ୍ଗଭଙ୍ଗ ବିରୁଦ୍ଧରେ କଲିକତାରେ ତେଜି ଉଠିଥିବା ଆନ୍ଦୋଳନ ଗୋପବନ୍ଧୁଙ୍କୁ ଖୁବ୍ ପ୍ରଭାବିତ କରିଥିଲା, ଏକଥା ଆଗରୁ କୁହାଯାଇଛି । ଇଂରେଜମାନେ ଶାସନର ସୁବିଧା ଓ ବଙ୍ଗବାସୀଙ୍କ ଏକତାକୁ ଖଣ୍ଡିତ କରିବା ନିମନ୍ତେ ଏହିପରି ଏକ ସିଦ୍ଧାନ୍ତ ନେଇଥିଲେ; କିନ୍ତୁ ଭାରତୀୟ ଜାତୀୟ କଂଗ୍ରେସ ଏହି ସିଦ୍ଧାନ୍ତର ଘୋର ବିରୋଧ କରିଥିଲା, ୧୯୦୫ ମସିହାରେ ବଙ୍ଗ ବିଭାଗ ବିରୋଧରେ ଏକ ବିରାଟ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । 'ବନ୍ଦେମାତରମ୍‌' ଦୈନିକ ପତ୍ରିକାରେ ଇଂରେଜ ସରକାରଙ୍କ ଶାସନନୀତିର ତୀବ୍ର ସମାଲୋଚନା ପ୍ରକାଶ ପାଇଲା । ଅରବିନ୍ଦ ଘୋଷଙ୍କ ନେତୃତ୍ୱରେ କଲିକତାରେ ଗୋଟିଏ ଜାତୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ଏସବୁ ଛାତ୍ରମାନଙ୍କ କୋମଳ ମନରେ ଢେର ପ୍ରଭାବ ବିସ୍ତାର କରିଥିଲା । ବଙ୍ଗଭଙ୍ଗ ବିରୁଦ୍ଧରେ ସମଗ୍ର ଭାରତ ସ୍ୱର ଉତ୍ତୋଳନ କରିବାକୁ ଆରମ୍ଭ କଲା ଓ ଏହାର ନେତୃତ୍ୱ ବହୁ ସ୍ଥାନରେ ଛାତ୍ରମାନେହିଁ ଆପେ ଆପେ ନେଇଥିଲେ । ଛାତ୍ର ମହଲରେ ବିଶୃଙ୍ଖଳା ଖେଳିଗଲା । କଲିକତାର ସ୍ଥାନେ ସ୍ଥାନେ ବହୁ ସନ୍ତ୍ରାସବାଦୀ କାର୍ଯ୍ୟ ଆରମ୍ଭ ହେଲା । ଛାତ୍ରମାନେ ଅନ୍ଧାର ଘରେ ଲୁଚି ଲୁଚି ବୈଠକ କଲେ; ଇଂରେଜମାନଙ୍କୁ ଦେଶରୁ ହଟାଇବା ପାଇଁ ଗୁପ୍ତ ମନ୍ତ୍ରଣା କଲେ । ଗୋପବନ୍ଧୁ କଲିକତାରେ ଥାଇ ଏସବୁରେ ବହୁ ପ୍ରତ୍ୟକ୍ଷ ଓ ପରୋକ୍ଷ ଅନୁଭୂତି ସଂଗ୍ରହ କଲେ । ତାଙ୍କ ଯୁବପ୍ରାଣ ଜାତୀୟ ଜାଗୃତି ମନ୍ତ୍ରରେ ବିପୁଳ ଭାବରେ ଉଦ୍‌ବେଳିତ ହୋଇଉଠିଲା ।

ଦିନେ ପୁରୀ ବଡ଼ଦାଣ୍ଡରେ ବିଲାତି ଲୁଗାଗଣ୍ଠି ପୋଡ଼ାଗଲା । ଏହା ସ୍ୱଦେଶୀ ଆନ୍ଦୋଳନର ପ୍ରାରମ୍ଭ । ପୁରୀର ବିଭିନ୍ନ 'ଜାଗା'ମାନଙ୍କରେ ବହୁବର ଯୁବକମାନେ ଶୀତଋତୁରେ କସରତ୍ କରୁଥାନ୍ତି । ସେମାନଙ୍କ ଭିତରୁ ଅନେକ 'ମାଲ' ବାହାରନ୍ତି ଓ କୁସ୍ତି ପ୍ରତିଯୋଗିତାରେ ମଧ୍ୟ ଯୋଗ ଦିଅନ୍ତି । ଗୋପବନ୍ଧୁ ବଙ୍ଗୀୟମାନଙ୍କ ସଜାଗ ସଚେତନତା ଦେଖି ଖୁବ୍ ଉଦ୍‌ବୁଦ୍ଧ ହୋଇଥିଲେ । ଏକ 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ' ଗଠନ ପାଇଁ ସେ ବହୁବର ଚିନ୍ତା କରୁଥିଲେ । ତେଣୁ ଏହି 'ଜାଗା'-ମାନଙ୍କରେ ବୁଲି ସେ ସମସ୍ତଙ୍କୁ ବାଡ଼ି ତରୁଆଲ ଶିଖିବାକୁ ଉତ୍ସାହିତ କରନ୍ତି ।

ଦିନେ ରାତିରେ ପୁରୀ ବଡ଼ଦାଣ୍ଡରେ ଗୋଟିଏ ସଭାର ଆୟୋଜନ ହେଲା । ଗୋପବନ୍ଧୁ ବାବୁ, ଓକିଲ ହରିଶ ବାବୁ ମୁକ୍ତାର ରାମଚନ୍ଦ୍ର ଦାସ ଇଂରେଜ ସରକାରଙ୍କ କୁଟନୀତିର ସମାଲୋଚନା କରି ଖୁବ୍ ଉଦ୍ଦୀପନାମୂଳକ ବକ୍ତୃତାମାନ ତାଙ୍କୁ ଦେଲେ । ଗୋପବନ୍ଧୁ ବାବୁ ସେଦିନ ତାରୁଣ୍ୟର ଅଗ୍ନିଶିଖାରେ ଦେଦୀପ୍ୟମାନ; ତାଙ୍କ ମୁଖମଣ୍ଡଳରୁ ଯୌବନର ଜ୍ୱଳନ୍ତ ଦୀପ୍ତି ବାହାରୁଥାଏ । ଗୋରା ମୁହଁରେ କଳାଦାଢ଼ୀ ତାଙ୍କୁ ଖୁବ୍ ମାନୁଥାଏ । ସେ ଟିକିଏ ରହି ରହି ଅନର୍ଗଳ ବକ୍ତୃତା ଦେଇ ଉତ୍ତେଜନା ସୃଷ୍ଟି କରୁଥା'ନ୍ତି । ଏହା ବୋଧହୁଏ ୧୯୦୬ ମସିହା ଗ୍ରୀଷ୍ମ ସମୟର କଥା ।

ଗୋପବନ୍ଧୁ ବାବୁ ସେତେବେଳେ ପୁରୀ ହେରିଗୋହିରି ସାହି ବ୍ରାହ୍ମଣ ସମିତି ଛାତ୍ରାବାସରେ ରହୁଥାନ୍ତି । ସେଠାରେ କ୍ରମେ କ୍ରମେ ପୁରୀଜିଲ୍ଲା ସ୍କୁଲର କେତେକ ଛାତ୍ର ଯୁଟନ୍ତି । ଏଠାରେ ପ୍ରଥମେ ଗୋଦାବରୀଶଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଗୋପବନ୍ଧୁଙ୍କ ଭାଷଣ ଶୁଣି ଗୋଦାବରୀଶ ଖୁବ୍ ପ୍ରଭାବିତ ହୋଇଥିଲେ । ଶଶୀଦା ନାମରେ ପରିଚିତ ଜଣେ ବିପ୍ଳବୀ ସମାଜସେବୀ ବଙ୍ଗାଳୀ ଯୁବକ ଏହି ପରିଚୟରେ ଭାଗ ନେଇଥିଲେ । ଗୋପବନ୍ଧୁ ବାବୁ ପ୍ରତିଦିନ ତାଙ୍କ କଲିକତା ରହଣି କାଳର ଅନୁଭୂତି ଗପନ୍ତି । ଏସବୁରୁ କ୍ରମେ କ୍ରମେ ଫରାସୀ ବିପ୍ଳବ ବାଦଦେଇ ଭାରତର ସ୍ୱାଧୀନତା ଲଭର ସ୍ୱପ୍ନାୟିତ ମୁହୂର୍ତ୍ତ ପର୍ଯ୍ୟନ୍ତ ନାନାକଥା କହି ଗୋପବନ୍ଧୁ କେତେବେଳେ ଶ୍ରୋତାମାନଙ୍କୁ ହସରେ ମଜାଇ ଦିଅନ୍ତି, କେତେବେଳେ ବା ଦୁଃଖ ଓ ଅନୁଶୋଚନାରେ କନ୍ଦାଇ ଦିଅନ୍ତି ।

ଏହାର ବର୍ଷକ ପୂର୍ବରୁ ଗୋପବନ୍ଧୁଙ୍କର ନୀଳକଣ୍ଠଙ୍କ ସହିତ ପରିଚୟ ହୋଇ ସାରିଥାଏ । ଏ ପରିଚୟ କରାଇ ଦେଇଥିଲେ ଓଡ଼ିଶାର ସ୍ୱନାମଧନ୍ୟ ଆଚାର୍ଯ୍ୟ ହରିହର ଦାସ । ବୋଧହୁଏ ୧୯୦୫ ମସିହାର କଥା । ଗୋପବନ୍ଧୁ କଲିକତାରେ ଆଇନ ପଢ଼ୁଥା'ନ୍ତି । ସେବର୍ଷ ଗ୍ରୀଷ୍ମଛୁଟିରେ ସେ ଗ୍ରାମକୁ ଆସିଥା'ନ୍ତି । ପ୍ରତିବର୍ଷ ଜ୍ୟେଷ୍ଠ ପୂର୍ଣ୍ଣିମାର ସାତଦିନ ପୂର୍ବରୁ ତାଙ୍କ ଠାକୁରାଣୀଙ୍କ ମନ୍ଦିରରେ ଭାଗବତ ସପ୍ତାହ ବସେ । ଭାର୍ଗବୀ ତୀର ଅଶ୍ୱତ୍ଥ ଗଛ ମୂଳରେ ଏହି ମନ୍ଦିରଟି ଅବସ୍ଥିତ । ଜଣେ ବ୍ରାହ୍ମଣ ବରଣ ହୋଇ ଭାଗବତ ପାରାୟଣ କରନ୍ତି । ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ

ଭାଗବତ ବଡ଼ା ହୁଏ । ସେଦିନ ଗ୍ରାମବାସୀ ଓ ଆଖପାଖ ଅଞ୍ଚଳର ପରିଚିତ ଓ ବିଶିଷ୍ଟ ବ୍ୟକ୍ତିମାନେ ନିମନ୍ତ୍ରିତ ହୋଇ ଆସି ପଂକ୍ତି ଭୋଜନରେ ପ୍ରସାଦ ପାଆନ୍ତି । ନିଜେ ଗୋପବନ୍ଧୁ ହବିଷ୍ୟ ପାଳନ କରି କେବେ ଶ୍ରୋତା ଓ କେବେ ନିଜେ ଭାଗବତ ପାରାୟଣରେ ବସନ୍ତି । ସାତଦିନ ହବିଷ୍ୟ କରି ଘରୁ ବାହାରେ ରହି ଜଗନ୍ନାଥ ଦାସଙ୍କ ଭାଗବତ ପୂରା ଆବୃତ୍ତି କରନ୍ତି । ନୀଳକଣ୍ଠଙ୍କର ସେବର୍ଷର ଅନୁଭୂତି ! ହରିହର ଦାସଙ୍କ ସହିତ ଆସି ସେ ଦେଖିଲେ ସୌମ୍ୟବପୁ, ଉଜ୍ଜ୍ୱଳ ଚକ୍ଷୁ ଗୋପବନ୍ଧୁ ପ୍ରାତଃସ୍ନାନ ସାରି ମଠା ପିନ୍ଧି ପିଢ଼ାରେ ବସିଛନ୍ତି । ଆଗରେ ପୋଥିଟିଏ ଥୁଆ ହୋଇଛି । ତାଳପତ୍ରର ଖେଦା ଭାଗବତ ପୋଥି । ପୃଷ୍ଠାପରେ ପୃଷ୍ଠା ସେ ଖେଦାରୁ ଲେଉଟାଇ ଦେବୀଙ୍କ ଆଗରେ 'ରକ୍ତପୃଷ୍ଠ' କଟିଗ୍ରୀବ' ହୋଇ ସୁନ୍ଦର ସ୍ୱର ଝଙ୍କାରରେ ଭାଗବତ ପଢ଼ୁଛନ୍ତି । ପାଖରେ କେତେଜଣ ଶ୍ରୋତା ଓ ଚତା ଚୈତନ୍ୟ ଜାତି ସେବକ ବ୍ରାହ୍ମଣ । କଞ୍ଚ ଚୂଡ଼ାଘସା ବାଲଭୋଗ ହୁଏ । ସେଥିରୁ କିଛି ବଳିଥିଲା । ତାକୁ ହରିହର ଓ ନୀଳକଣ୍ଠ ସେବନ କଲେ । ପରେ ଭାଗବତଙ୍କୁ ଅନ୍ନ ଓ ସଞ୍ଜୁଡ଼ି ଭୋଗ ଦିଆଗଲା । ଗୋପବନ୍ଧୁ କଦଳୀପତ୍ର ପକାଇ ହବିଷ୍ୟରେ ବସିଲେ । ଅନ୍ୟମାନେ ମଧ୍ୟ ସାଙ୍ଗରେ ବସିଲେ । ଚଳନ୍ତି ନକରି ଖାଇବା ବିଧି ଗୋପବନ୍ଧୁ ପ୍ରଚଳନ କରିଥିଲେ ।

ସେ ସମୟରେ ଏପରି ପଂକ୍ତି ଭୋଜନ ଓ ଜଗନ୍ନାଥ ଦାସକୃତ ପ୍ରାକୃତ ବନ୍ଧରେ ଲିଖିତ ଓଡ଼ିଆ ଭାଗବତ ପାରାୟଣ—ଏସବୁ ଶାସନୀ ବ୍ରାହ୍ମଣମାନଙ୍କ ଭିତରେ ଖୁବ୍ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଏପରିକି ଶାସନମାନଙ୍କରେ ଓଡ଼ିଆ ଭାଗବତ ପାଠ କରିବା ଅପରାଧ ବିବେଚିତ ହେଉଥିଲା । ତଥାପି ଗୋପବନ୍ଧୁ ନିଜ ବିଶ୍ୱାସବୋଧରେ ଅତି ନିର୍ବିକଲ୍ପ ଓ ସଂକଳ୍ପବଦ୍ଧ ଥିଲେ । ତାଙ୍କ ଅନ୍ତରଟା ଏତେ ସ୍ୱଚ୍ଛ ଓ ସୁନ୍ଦର ଥିଲା ଯେ ସେଥିରେ ବାହାରର ଲୋକଦେଖାଣିଆ ବୈଦିକ ଅତିଶ୍ୱର ସବୁ ନିଷ୍ପ୍ରଭ ହୋଇପଡ଼ୁଥିଲା ।

ଏଣିକି ନୀଳକଣ୍ଠଙ୍କ ପ୍ରତ୍ୟକ୍ଷ ଅନୁଭୂତି ତାଙ୍କର ସ୍ମୃତି ପୃଷ୍ଠାରୁ ଉଦ୍ଧାର କରୁଛି । "ଦେବୀ ମନ୍ଦିରକୁ ଲାଗିଛି ଭାର୍ଗବୀ ନଦୀବନ୍ଧ । ବନ୍ଧ ତଳକୁ ପାଣି । ପାଣି ପରେ ନଈ ଭିତରେ ବାଲି । ସେଇ ବାଲି ଭିତରେ ଖରାଦିନେ ହୁଏ ବଳସୁର ମୌଜାର ଶ୍ମଶାନ । ସେଦିନ ସନ୍ଧ୍ୟାବେଳକୁ ଜହ୍ନ ପଡ଼ିଗଲା । ଆକାଶ ପରିଷ୍କାର । କଳାଭ୍ରମର ପରି ପାଣି ଧାରଟାରେ ରୁପାଗୁଣ୍ଡ ଗୁଣା ହେଲାପରି ବାଲି ଦାଉ ଦାଉ ଦିଶୁଛି । ସେତେବେଳେ ସେ ଅଞ୍ଚଳରେ ଭାରି ବାଡ଼ି ପଡ଼ୁଥାଏ । ବଳସୁରରେ ବେଶୀ ଲାଗିଥାଏ । ଲୋକେ ମୁର୍ଦାର ପୋଡ଼ି ପାରୁନଥାନ୍ତି । କେହି କେହି ଶ୍ମଶାନରେ ଦରପୋଡ଼ା କରି ଛାଡ଼ିଯା'ନ୍ତି । ଅତି ଗରିବ ଲୋକେ ହୁଏତ ମୁର୍ଦାର ମୁହଁରେ ନିଆଁ ଦେଇ ଘରକୁ ଚାଲିଯା'ନ୍ତି । ଦୁର୍ଭିକ୍ଷ ବା ମଡ଼କ ପଡ଼ିଲେ ଅନେକ ଗ୍ରାମରେ ଏହିପରି ହୁଏ । ସେଦିନ ନଈବନ୍ଧ ଉପରେ ବରଗଛ ମୂଳ ଚନ୍ଦ୍ରାଲୋକିତ ଛାଇରେ ଗୋପବନ୍ଧୁ ଦାସଙ୍କୁ ଘେନି ଆମେ

ପାଞ୍ଚଜଣ ବସିଥାନ୍ତି । ଆରପାଖେ ବାଲୁଆସବୁ ହଳକରି ଦଉଡ଼ାଘୋଡ଼ା ମଡ଼ା ଓଟାରୁଥା'ନ୍ତି । ମୂର୍ଦ୍ଧାରଙ୍କ କୋଳେଇଉ କନା-କଟର ସବୁ ପଢ଼ିବାର ଚଳୁଥାଏ । ଆମର ଗପ ଜମିଲା । ଗୋପବନ୍ଧୁ ଦାସଙ୍କ ପରି ଗଳ୍ପ କରି ଭୁଲାଇବା ଲୋକ ବଡ଼ କମ୍ ଅଛନ୍ତି । ବିଶେଷରେ ଆମେ ପିଲା । ସେ ରାତି ଗଳ୍ପର ଚିତ୍ରସବୁ ପ୍ରାଣରେ ଆଙ୍କିହୋଇଗଲା । ଚନ୍ଦ୍ର ବୁଡ଼ିଗଲେ । ରାତି ବି ସକାଳ ହୋଇଆସିଲା । ଆମେ ତନ୍ମୟ । ଶେଷକୁ ଠିକ୍ ହେଲା, “ଆମେ ପାଠ ପଢ଼ି ସରକାରୀ ଚାକିରି କରିବା ନାହିଁ । ଦେଶପାଇଁ କଷ୍ଟ କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଇଁ ତା'ଠାରୁ ଉନ୍ନତ ଦେଖି ମରିବା ।”

ଏହାହିଁ ନୀଳକଣ୍ଠଙ୍କ ପ୍ରଥମ ପରିଚୟର ସ୍ମୃତି । ଜୀବନର ଭାଷ୍ୟକାର ପରି ଏ ସ୍ମୃତି ସମଗ୍ର ଜୀବନର ନିୟାମକ ହୋଇ ରହିଗଲା । ଓଡ଼ିଶାକୁ ବଞ୍ଚାଇବାର ମନ୍ତ୍ରରେ ଏ ସ୍ମୃତି ଚିର ସଜୀବିତ, ଚିର ଜାଗ୍ରତ । ଧ୍ରୁବତାରାର କକ୍ଷରେ ସପ୍ତର୍ଷି ନକ୍ଷତ୍ରର ଏହି ଉଦୟନ ଓଡ଼ିଶା ପାଇଁ କେଉଁ ଆକାଙ୍କ୍ଷିତ ତା ସେଦିନ ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଆଉ ପ୍ରଚାରକ ଅନନ୍ତ ମିଶ୍ର ସତେ କ'ଣ ହୃଦୟଙ୍ଗମ କରିଥିବେ । କେତେ ଆକାଙ୍କ୍ଷା, କେତେ ଅନୁରାଗ, କେତେ ଝଡ଼, କେତେ ଝଞ୍ଜା, କେତେ ଆଶା, କେତେ ଆକୁଳତାରେ ଏ ପାଞ୍ଚଜଣ ଜୀବନ ଅତିବାହିତ କରିଛନ୍ତି, ଏଇ ଜାତିର ନାୟକମାନେ ନୌକାକୁ ଆଶାର ଅସରନ୍ତି ଉଦ୍ଦୀପନାରେ ପଥ ଦେଖାଇ କଢ଼ାଇ ନେଇଛନ୍ତି— ତା'ର ସ୍ମୃତି ଓଡ଼ିଶା ପାଇଁ ଚିର ଅନାବିଳ ରହିବ —ଏଥିରେ ସନ୍ଦେହ ନାହିଁ ।

ଆଉ ଦିନକର କଥା । ପଣ୍ଡିତ ବାସୁଦେବ ରଥ (ସେତେବେଳର ଛାତ୍ର) ଗୋପବନ୍ଧୁଙ୍କ ସହିତ ଏଇ ଭାଗବତ ପାରାୟଣରେ ଥା'ନ୍ତି । ବହୁ ଆଗରୁ ପୁରୀରେ ତାଙ୍କର ବନ୍ଧୁତା । ଥରେ ଭାଗବତ ବଢ଼ା ପୂର୍ବଦିନ ମନ୍ଦିର ପାଖରେ ବହୁଲୋକ ରୁଣ୍ଡ ହେଲେ । ନଦୀବନ୍ଧ ଉପରେ ଗୋଟିଏ ଗୋପାଳ ଗୋରୁ ଚରାଉଥାଏ । ଗୋପବନ୍ଧୁ ଜଣେ ଲୋକଦ୍ୱାରା ତାକୁ ଡକାଇ ପଠାଇଲେ । ଲୋକଟି ଯାଇ କହିଲା—“ଦିଅଁ ଘରକୁ ଆସ, ଭାଗବତ ଶୁଣିବୁ ।”

ଗୋପାଳ କହିଲା—“ସବୁଦିନେ ସକାଳେ ମତେ ଯେ କଂସାଏ ଭାତ ଖାଇବାକୁ ଦିଅନ୍ତି, ସେଇ କେବଳ ମୋର ଦିଅଁ । ଆଉସବୁ ଫିଅଁ ।” ଲୋକଟିଠାରୁ ଗୋପାଳର ଏହି ଉତ୍ତର ଶୁଣି ଗୋପବନ୍ଧୁ ଟିକିଏ ହସିଦେଲେ । ପରମୁହୂର୍ତ୍ତରେ ଗମ୍ଭୀର ହୋଇ କହିଲେ—“କର୍ମ ମୋହର ନିଜ ଗୁରୁ, ଉଦ୍ଧବ କେତେ ରୁ ପଚାରୁ ।”

—କର୍ମହିଁ ଦିଅଁ; ବିନା କର୍ମରେ କିଛି ହେବନାହିଁ ।” ଗୋପବନ୍ଧୁ ଜୀବନରେ ଏହି କର୍ମର ଆଦେଶରୁ କେବେ ବିଚ୍ୟୁତ ହୋଇନାହାନ୍ତି । ଜାତିର ଜୟଯାତ୍ରାରେ ଜଣେ ସୈନିକ ଭାବରେ ସେ କର୍ମ ଯୁଦ୍ଧର ବର୍ମ ପିନ୍ଧି ଲମ୍ଫ ଦେଇଛନ୍ତି । କେଉଁଠି ଜିତିଛନ୍ତି, କେଉଁଠି ବା ହାରିଛନ୍ତି ।

# ନୀଳଗିରିରେ ଶିକ୍ଷକତା (୧୯୦୭)

ଗୋପବନ୍ଧୁ ବାବୁ କଲିକତାରେ ଲ'ପରୀକ୍ଷା ଦେଇ କଟକ ଫେରିଥାନ୍ତି । ଏହି ସମୟରେ ଆଚାର୍ଯ୍ୟ ହରିହର ଗୋପବନ୍ଧୁ ବାବୁଙ୍କୁ ନୀଳଗିରି ସ୍କୁଲରେ ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟ କରିବା ପାଇଁ ଡାକିନେଲେ । ନୀଳଗିରିର ଦେଓ୍ୱାନ ଶ୍ରୀ ମାଧବ ନାୟକ ଆଗରୁ ଉମାଚରଣ ଦାସଙ୍କୁ ପ୍ରଧାନ ଶିକ୍ଷକତା କରିବାପାଇଁ ଡାକି ନେଇଥିଲେ । ଉମାବାବୁଙ୍କ ପ୍ରରୋଚନାର ପରେ ହରିହର ଓ ଯଦୁନାଥ ମହାପାତ୍ର (ଭଦ୍ରକ) ମଧ୍ୟ ସେଠାରେ ଶିକ୍ଷକତା କରିବାକୁ ଯାଇଥିଲେ । ଉମାଚରଣ ପ୍ରଧାନ ଶିକ୍ଷକ ପଦରୁ ଇସ୍ତଫା ଦେଇ ଡେପୁଟି କଲେକ୍ଟର ଭାବରେ ଯୋଗଦେଲେ । ତେଣୁ ଗୋପବନ୍ଧୁ ସେଠାରେ ପ୍ରଧାନ ଶିକ୍ଷକ ଭାବରେ ଯୋଗଦେଲେ ।

ନୀଳଗିରିରେ ଶିକ୍ଷକତା କରୁଥିବାବେଳେ ଗୋପବନ୍ଧୁ ଜଣେ ଆଦର୍ଶ ଶିକ୍ଷକ ଭାବରେ ଖୁବ୍ କମ ଦିନ ମଧ୍ୟରେ ସୁନାମ ଅର୍ଜନ କରିଥିଲେ । ଅନେକ ସମୟରେ ସହକର୍ମୀମାନଙ୍କୁ ଡାକି ବିଭିନ୍ନ କଥା ଆଲୋଚନା କରୁଥିଲେ । ଥରେ ସେ ଯୁଗାବତାର ସମ୍ପର୍କରେ ସହକର୍ମୀମାନଙ୍କୁ ବୁଝାଉଥାଆନ୍ତି । ଆମ ସଂସ୍କୃତିର ଦଶାବତାର ବିଷୟରେ ବ୍ୟାଖ୍ୟା କରି ସେ କହିଲେ—"ରାମ ହେଉଛନ୍ତି ତ୍ୟାଗର ଜ୍ୱଳନ୍ତ ପ୍ରତୀକ । ପିଲାବେଳଠାରୁ ମୃତ୍ୟୁ ପର୍ଯ୍ୟନ୍ତ ତ୍ୟାଗହିଁ ତାଙ୍କ ଜୀବନର ଏକମାତ୍ର ମନ୍ତ୍ର ଥିଲା । ଯୌବନରେ ରାଜ୍ୟ ଛାଡ଼ିଲେ । ପରେ ସ୍ତ୍ରୀଙ୍କୁ ବି ତ୍ୟାଗକଲେ ।"

ଆଚାର୍ଯ୍ୟ ହରିହର ପ୍ରଶ୍ନ କଲେ—"ତା' ହେଲେ ରାବଣ ସହିତ କାହିଁକି ଯୁଦ୍ଧକଲେ । ସୀତାଙ୍କୁ ତ୍ୟାଗ କଲେନି ?"

ଗୋପବନ୍ଧୁ ବାବୁ ଉତ୍ତର ଦେଲେ—"ସୀତାଙ୍କୁ ରାବଣ ଚୋରି କରିନେଇଥିଲା । ରାମଚନ୍ଦ୍ର ଯଦି ରାବଣ ହାତରେ ସୀତାଙ୍କୁ ଦାନ କରିଥାନ୍ତେ ତେବେ ଏ ଯୁଦ୍ଧ ଲାଗି ନଥା'ନ୍ତା ।"

"ଏପରିକି ରାମଚନ୍ଦ୍ର ଶେଷକୁ ପ୍ରିୟ ଅନୁଜ ଲକ୍ଷ୍ମଣଙ୍କୁ ବି ତ୍ୟାଗକଲେ ।"

ଦିନକର ସ୍ୱର୍ଗରୁ ଦେବତାମାନଙ୍କ ପ୍ରେରିତ ଦୂତ ରାମଚନ୍ଦ୍ରଙ୍କୁ କହିବାକୁ ଆସି ପହଞ୍ଚିଛନ୍ତି ଯେ ତାଙ୍କର ସ୍ୱର୍ଗକୁ ଯିବାବେଳ ହୋଇଗଲା । ସେ ତାଙ୍କ ସହିତ ଗୋପନୀୟ ଆଲୋଚନା କଲାବେଳେ ଅନ୍ୟ କାହାରି ଭିତରକୁ ଆସିବା ଅନୁମତି ନଥିଲା । ଲକ୍ଷ୍ମଣ ଦ୍ୱାରପାଳ ଥିଲେ । କାହାକୁ ଛାଡ଼ିଲେ ଦ୍ୱାରପାଳଙ୍କୁ ପ୍ରାଣଦଣ୍ଡ ହେବାର ହୁକୁମ୍ ଥିଲା ।

ଦୁର୍ବାସା ଆସି ପହଞ୍ଚିଲେ । ବାଟ ଛାଡ଼ିବାକୁ ସେ ଜିଦ୍‌କଲେ । ଲକ୍ଷ୍ମଣ ମନାକରିବାରୁ ପ୍ରଚଣ୍ଡ କ୍ରୋଧାଗ୍ନିରେ ଅଯୋଧ୍ୟାକୁ ସେ ଜାଳିଦେବାକୁ ଉଦ୍ୟତ ହେଲେ । ଏଥିରେ ଲକ୍ଷ୍ମଣ ବିଚଳିତ ହୋଇ ଦ୍ୱାର ଛାଡ଼ିଦେଲେ ।

ରାଜାଦେଶ ଅମାନ୍ୟ କରିଥିବାରୁ ଲକ୍ଷ୍ମଣଙ୍କୁ ମୃତ୍ୟୁଦଣ୍ଡ ଆଦେଶ ହେଲା । ତ୍ୟାଗହିଁ ଥିଲା ରଘୁବଂଶର ସମସ୍ତ ରାଜାଙ୍କର ଏକମାତ୍ର ଆଦର୍ଶ ।

କୃଷ୍ଣାବତାର ବିଷୟରେ ଗୋପବନ୍ଧୁ ବାବୁ କହୁଲେ—"କୃଷ୍ଣ ହେଉଛନ୍ତି ଏକ ସାମଗ୍ରିକ ପୂର୍ଣ୍ଣତାର ପ୍ରତୀକ । ପିଲବେଳୁ ସେ ଦୁଷ୍ଟାମିରେ ସମସ୍ତଙ୍କୁ ବଳି ପଡ଼ୁଥିଲେ । ତାଙ୍କଠାରୁ ବଡ଼ ପ୍ରେମିକ ବୋଧହୁଏ ପୃଥିବୀରେ କେହି ନାହାନ୍ତି । ସେ ସବୁଠାରୁ ବଳି ବଡ଼ ଯୋଦ୍ଧା । ପୁଣି ଶେଷରେ ସେ ଗୀତାପରି ଏକ ମହାନ ଧର୍ମଗ୍ରନ୍ଥ ମଧ୍ୟ ଲେଖି ପାରିଲେ । ସବୁ ନୈତିକ, ଧର୍ମନୀତି ଓ ସମାଜନୀତିର ବୀଜ ଏହି ଗୀତା ଶାସ୍ତ୍ରରେ ପୂରି ରହିଛି ।

ବୁଦ୍ଧଦେବ ମଧ୍ୟ ସେହିପରି ଏକ ତ୍ୟାଗର ପ୍ରତୀକ ଥିଲେ । ରାଜପ୍ରାସାଦ, ପତ୍ନୀ, ସନ୍ତାନ କ୍ଷୁଧା, ତୃଷ୍ଣା ସବୁ ତ୍ୟାଗକରି ସେ ସତ୍ୟର ସନ୍ଧାନରେ ବୈରାଗୀ ହେଲେ ।" ଏସବୁ କଥା ଗୋପବନ୍ଧୁ ବରାବର ଚିନ୍ତା କରୁଥିଲେ । ହିନ୍ଦୁଧର୍ମ ପ୍ରତି ତାଙ୍କର ଗଭୀର ବିଶ୍ୱାସ ଥିଲା । ଭଗବତ ଧର୍ମର ସେ ଜଣେ ନିଷ୍ଠାପର ପୃଷ୍ଟପୋଷକ ଥିଲେ । ସେ ନିଜ ଭାବବିହ୍ୱଳ ପ୍ରାଣର ପରିପ୍ରକାଶ କରି ଲେଖିଥିଲେ—

"ଧର୍ମ ଅନୁକୂଳ ଯେତେ ମୋ କାମନାଚୟ
ସାଧନେ ଶକତି ଦିଅ ପ୍ରଭୁ ଦୟାମୟ ।"

ତାଙ୍କ ବ୍ୟକ୍ତିତ୍ୱ କ୍ରମେ ଅନ୍ୟମାନଙ୍କୁ ପ୍ରଭାବିତ କରୁଥିଲା । ଭାବନା ଓ ଚିନ୍ତାର ଭାବପ୍ରଗତି କର୍ମର ବଜ୍ର ବନ୍ଧନରେ କେବେ ବିପଥଗାମୀ ହେଉନଥିଲା । ବସ୍ତୁତଃ କାର୍ଯ୍ୟ ଚିନ୍ତାରେ ସେ ସମାନ ଥିଲେ । ଏକଥା ପରେ ଆଲୋଚିତ ହେବ ।

ନୀଳଗିରିରେ ପ୍ରଧାନ ଶିକ୍ଷକ ଥିଲାବେଳେ ସେ ଏକ ସ୍ୱେଚ୍ଛାସେବକ ବାହିନୀ ଗଠନ କରିଥିଲେ । ଶ୍ରୀ ହରିହର ଦାସ ଏହାର ପ୍ରତ୍ୟକ୍ଷ ଦାୟିତ୍ୱରେ ଥିଲେ । ଦିନେ ପୁରୀ ଯାତ୍ରୀରୁ ଫେରି ନୀଳଗିରିଠାରେ ଗୋଟିଏ ଲୋକ ରାସ୍ତାରେ ହଇଜାଦ୍ୱାରା ଆକ୍ରାନ୍ତ ହୋଇ ମରିଗଲା । ତା' ପାଖରେ ତା'ର ବିଧବା ମାଆ ଶବକୁ ଧରି କାନ୍ଦୁଥାଏ । ଗୋପବନ୍ଧୁ ବହୁତ ବୁଝାଇଲେ—ଶବକୁ ଛୁଇଁଲେ ସତ୍କାର ପାଇଁ ବୋହିନେବେ ବୋଲି ବହୁ ଅନୁରୋଧ କଲେ; କିନ୍ତୁ ରକ୍ଷଣଶୀଳା ନାରୀ ଅନ୍ୟ ହାତରେ ନିଜ ପୁଅ ଶବକୁ ଉଠାଇବାକୁ ବାରଣ କଲେ । ଅନ୍ୟ ଜାତିର ଲୋକ ମୃତପୁଅକୁ ଛୁଇଁଲେ ତାର ସଦ୍‌ଗତି ହେବନାହିଁ ବୋଲି ଏକ ଧାରଣା ପୁତ୍ରାତୁରା ଜନନୀ ମନରେ ବଦ୍ଧମୂଳ ଥିଲା । ଶବ ନିକଟରେ ଗୋପବନ୍ଧୁ ଓ ହରିହର କାଠକୁଟା ଆଣି ଜୁଇ ଜାଳିଦେଲେ । ସ୍ତ୍ରୀଲୋକଟି କଷ୍ଟର ସହିତ କାନ୍ଦି କାନ୍ଦି କୌଣସିମତେ ପୁଅକୁ ସେଇ ଜୁଇରେ ଶୁଆଇଦେଲା । ଗୋପବନ୍ଧୁ ଓ ହରିହର କିଛି ଟଙ୍କା ପଇସା ସାହାଯ୍ୟ ଦେଇ ବୁଢ଼ୀକୁ ନିଜ ଗନ୍ତବ୍ୟ ପଥରେ ବିଦାୟ ଦେଲେ । ଏଥିରେ ନୀଳଗିରିର ନୈଷ୍ଠିକ ବ୍ରାହ୍ମଣମାନେ ପ୍ରଥମେ ପ୍ରଥମେ ଉତ୍ତ୍ୟକ୍ତ ହୋଇଥିଲେ । ଗୋପବନ୍ଧୁ କିନ୍ତୁ ଏଥିପାଇଁ ଖାତିର ନକରି ସମାଜ ଓ ରୋଗୀସେବାମୂଳକ କାମ ଚଳାଇ ରଖିଲେ । ପରେ ସେହି ଲୋକମାନେ ନିଜର ଭୁଲ ବୁଝି ଗୋପବନ୍ଧୁଙ୍କୁ କ୍ଷମା ମାଗିଥିଲେ ।

ଏହି ସମୟରେ କଲିକତାରେ ଜାତୀୟ କଂଗ୍ରେସ ଅଧିବେଶନ ଦାଦାଭାଇ ନୌରଜୀଙ୍କ ସଭାପତିତ୍ୱରେ ବସିଥିଲା । ଓଡ଼ିଶାରୁ ଗୋପବନ୍ଧୁ, ହରିହରଙ୍କ ସମେତ କେତେଜଣ ପ୍ରତିନିଧି ଏଥିରେ ଯୋଗଦେଇଥିଲେ । ସ୍ୱାଧୀନତା ହାସଲ କଂଗ୍ରେସର ଏକମାତ୍ର ଲକ୍ଷ୍ୟ ବୋଲି ଏହି ଅଧିବେଶନରେ ଘୋଷିତ ହେଲା । ଏହା ଯୁବକ ଗୋପବନ୍ଧୁଙ୍କୁ ଖୁବ୍ ଉଦ୍‌ବୁଦ୍ଧ କରିଥିଲା ଓ କଂଗ୍ରେସ ଅନୁଷ୍ଠାନ ପ୍ରତି ଆସକ୍ତି ଆଣି ଦେଇଥିଲା ।

ଏହି ମିଲିକଲେଜରେ ଶିକ୍ଷକତା କରୁଥିବା ବେଳେ ଗୋପବନ୍ଧୁ ଦିନେ ରାତିରେ ସ୍ୱପ୍ନ ଦେଖିଲେ ଯେ ତାଙ୍କ ପତ୍ନୀ ପାଖରେ ଠିଆ ହୋଇ ହସିହସି ଚାଲିଗଲେ । ଧରିବାକୁ ଚେଷ୍ଟାକଲେ ବି ଧରାଦେଲେନି, ମୁହଁ ତାଙ୍କର କରୁଣ ଓ ବିଷଣ୍ଣ ଥିଲା । ବାଳ ମୁକୁଳା, ଆଖିରେ ଦ'ଧାର ଲୁହ । ପାଖକୁ ଡାକିଲେ ସେ କ୍ରମେ ଦୂରେଇ ଗଲେ । ହରିହର ଦାସଙ୍କୁ ଡାକି ଏହି ସ୍ୱପ୍ନ କାହାଣୀ ଅତି ଆବେଗରେ ସେ କହୁଥା'ନ୍ତି । ସେହି ମୁହୂର୍ତ୍ତରେ ତା'ର ଆସିଲା ତାଙ୍କର ସ୍ତ୍ରୀ ମରିଯାଇଛନ୍ତି । ଗୋପବନ୍ଧୁ ବଡ଼ ବିଚଳିତ ହୋଇପଡ଼ିଲେ ।
[ସେଦିନ ରାତିରେ ରାତି ପାହିଲା । ତା'ପରଦିନ ଗୋପବନ୍ଧୁ ନିର୍ବିଚଳିତ ଭାବରେ କ୍ଲାସ୍‌କୁ ଗଲେ । ପାଠ ମଧ୍ୟ ପଢ଼ାଇଲେ । ଶ୍ରେଷ୍ଠ ବଡ଼ କଥାରେ ତାଙ୍କୁ କାନ୍ଦିବା ଆମେ ଦେଖିନ୍ତୁ । ଅଥଚ ଏ ଖବର ପାଇ କେତେ ସହଜରେ ସେ ସହିନେଲେ । ହେଲେ ଅନ୍ତର ଭିତରେ ଯେଉଁ ଅଦମ୍ୟ ଦୁଃଖ, ତାହା ସ୍ପଷ୍ଟ ପ୍ରକାଶ ପାଉଥିଲା—ଆଚାର୍ଯ୍ୟ ହରିହର ]

ଘରକୁ ଫେରିଆସିବା ବାଟରେ କଟକରେ ଓକିଲାତି ପରୀକ୍ଷାରେ ପାସ୍ କରିବା ଖବର ପାଇଲେ । ଭାଗ୍ୟର ଏହି ବିଦ୍ରୂପକୁ ଗୋପବନ୍ଧୁଙ୍କ ଧର୍ମପ୍ରାଣ ହୃଦୟ ଈଶ୍ୱରଙ୍କ ଆଶୀର୍ବାଦ ଭାବି ସହି ନେବାକୁ ପ୍ରସ୍ତୁତ ହେଉଥାଏ । ଭବିଷ୍ୟତରେ ଯହିଁର ଅଗ୍ନିପରୀକ୍ଷା ନିମନ୍ତେ ଯୁବକ ଗୋପବନ୍ଧୁଙ୍କ ପାଇଁ ଏ ନିର୍ମମ ପରୀକ୍ଷା—ଆଃ କେଡ଼େ କରୁଣ, କେଡ଼େ ଜୀବନ୍ତ । ବିଦଗ୍‌ଧ ଗୋଧୂଳିର ବିଷଣ୍ଣ ସନ୍ଧ୍ୟା । ନୀଡ଼ହରା ଚକୋରର କାରୁଣ୍ୟରେ ଆକାଶର ଛାତିରେ ବ୍ୟଥାର ରାଗିଣୀ । ଏକାକୀ···ଚାଲିଛନ୍ତି ଗୋପବନ୍ଧୁ । ଗ୍ରାମ ଶ୍ମଶାନରେ ପ୍ରାଣତମା ପତ୍ନୀ ଚୂଳିରେ ଜଳି ନିଃଶେଷ ହୋଇଯାଇଛି । ଚୂଳିର ଶେଷ ଶିଖା ତଥାପି ଧୂମାୟିତ ।

ଘରେ ପହଞ୍ଚି ଗୋପବନ୍ଧୁ ଜାଣିଲେ ତାଙ୍କର ନ'ମାସ ଗର୍ଭବତୀ ସ୍ତ୍ରୀ ଆସନ୍ନପ୍ରସବା ଥିଲେ । ସିଡ଼ିରେ ଠିଆହୋଇ ଘର ଲିପୁଥିଲେ, ହଠାତ୍ ଖସି ପଡ଼ିଲେ । ସେଇଥିରେ କାନ୍ଧ ଓ ତଳପେଟରେ ଭୀଷଣ ବ୍ୟଥା ହେଲା । କଷ୍ଟ ପାଇଲେ । ତିନିଦିନ ପରେ ମଲା ଛୁଆଟାଏ ପ୍ରସବ କରି ସେଇ ଯନ୍ତ୍ରଣାରେ ଶେଷ ନିଃଶ୍ୱାସ ଛାଡ଼ିଲେ ।

ଓକିଲାତି ପରୀକ୍ଷାରେ ପାସ୍ କରିବାପରେ ସେ ମିଲିକଲେଜ ଛାଡ଼ି ଓକିଲାତି କରିବାକୁ କଟକକୁ ଚାଲିଆସିଲେ । ସେହିବର୍ଷ (୧୯୦୬) ଜୁଲାଇ ୩୧ ତାରିଖ ଶ୍ରାବଣ ଶୁକ୍ଳ ଝୁଲଣ ଏକାଦଶୀରେ ମୁକ୍ତ୍ୟାର ରାମଚନ୍ଦ୍ର ଦାସଙ୍କ ଦେହାନ୍ତ ହେଲା । ଗୋପବନ୍ଧୁ ଏ ସମ୍ବାଦ ପାଇ ଅତି ମର୍ମାହତ ହୋଇପଡ଼ିଲେ । ତାଙ୍କ ଜୀବନଗଠନରେ ରାମଚନ୍ଦ୍ର

ଦାସଙ୍କ ଅବଦାନ—ଅତି ମହତ୍ ଥିଲା । ତାଙ୍କପରି ଦେଶପ୍ରେମୀ ହୃଦୟବାନ୍ ଲୋକ ଖୁବ୍ କମ୍ ଥିଲେ ।

ଗୋପବନ୍ଧୁ ଓକିଲାତି କରିବାକୁ କଟକ ଚାଲିଆସିଲେ; ପଛରେ ଛାଡ଼ିଆସିଲେ ଶିକ୍ଷକତାର ଆଦର୍ଶ—ଯାହା ଅନ୍ୟମାନଙ୍କୁ ମନ୍ତ୍ରମୁଗ୍ଧ କରିଥିଲା । ଛାତ୍ରପ୍ରେମର ଉଜ୍ଜ୍ୱଳତାରେ ଏ ଜୀବନ ମହାର୍ଘ ଥିଲା । ଛାତ୍ରର ମନକୁ ପାଇଲାପରି, ହୃଦ୍‌ବୋଧ ହେଲାପରି ସରଳ ତରଳ ଭାଷାରେ ବହୁ ଉଦାହରଣ ଦେଇ ଗୋପବନ୍ଧୁ ପାଠ୍ୟ ବିଷୟକୁ ବୁଝେଇ ଦେଉଥିଲେ । ପାଠ ପଢ଼େଇବାରେ ତାଙ୍କର ନିଷ୍ଠା ଥିଲା ଅନନ୍ୟ । ନୀଳଗିରିର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ବହୁ ଯତ୍ନ କରୁଥିଲେ ମଧ୍ୟ ସମସାମୟିକ ଦେଶୀୟ ରାଜ୍ୟମାନଙ୍କର ରାଜନୈତିକ ପ୍ରତିନିଧି ମି. କବଡେନ୍ ରାମସେ ଏଥିରେ ବହୁ ଅଯଥା ବାଧା ଉପୁଜାଇଲେ । ଏହି ସୀମିତ ପରିଧିଠାରୁ ଆଉ ଏକ ବ୍ୟାପକ ଦିଗନ୍ତର ଡାକରା ଗୋପବନ୍ଧୁଙ୍କ ପକ୍ଷରେ ଏଡ଼ିଦେବା ସମ୍ଭବ ନଥିଲା ।

## ମୁକ୍ତ୍ୟାର ରାମଚନ୍ଦ୍ର ଦାସ

ପୁରୀ ଜିଲ୍ଲାସ୍କୁଲରେ ପଢ଼ିବାବେଳେ ଗୋପବନ୍ଧୁଙ୍କ ସହିତ ଯେଉଁମାନଙ୍କର ବିଶେଷ ସଖ୍ୟ ହୋଇଥିଲା—ସେମାନଙ୍କ ମଧ୍ୟରେ ପୁରୀର ମୁକ୍ତ୍ୟାର ଶ୍ରୀ ରାମଚନ୍ଦ୍ର ଦାସ, ପଣ୍ଡିତ ବାସୁଦେବ ରଥ କାବ୍ୟତୀର୍ଥ, (ଉଭୟଙ୍କର ଘର ଭିଙ୍ଗାରପୁର) ଶ୍ରୀ ରଘୁନାଥ ରାଓ, ଶ୍ରୀ ଜଗବନ୍ଧୁ ସିଂହଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ନୀଳକଣ୍ଠ, ହରିହର, ଗୋଦାବରୀଶ, କୃପାସିନ୍ଧୁ, ଜଗନ୍ନାଥ ମହାପାତ୍ର ଓ ଅନନ୍ତ ମିଶ୍ର ପ୍ରମୁଖଙ୍କ ସହିତ ଗୋପବନ୍ଧୁଙ୍କର ଆଗରୁ ପରିଚୟ ଥିଲା । ମୁକ୍ତ୍ୟାର ରାମଚନ୍ଦ୍ର ଦାସ ସାଧାରଣ ଜୀବନରେ ଗୋପବନ୍ଧୁଙ୍କ ଆଦ୍ୟଗୁରୁ ଓ ସ୍ୱଦେଶୀ ମନ୍ତ୍ରଦାତା ଥିଲେ । ପଣ୍ଡିତ ବାସୁଦେବ ମୁକ୍ତ୍ୟାର ରାମଚନ୍ଦ୍ରଙ୍କର ପରମ ଭକ୍ତ ଓ ଅନ୍ତରଙ୍ଗ ଥିଲେ । ରାମଚନ୍ଦ୍ର ଦାସଙ୍କ ସହିତ ଗୋପବନ୍ଧୁଙ୍କ ପ୍ରଗାଢ଼ ସମ୍ପର୍କ ପ୍ରତିଷ୍ଠା କରିବାରେ ପଣ୍ଡିତ ବାସୁଦେବଙ୍କର ବିଶେଷ ଭାଗ ଥିଲା । କାରଣ ସେତେବେଳେ ସେ ପୁରୀ ସଂସ୍କୃତ ଟୋଲରେ ଅଧ୍ୟୟନ କରୁଥିଲେ ଓ ଦେଶପ୍ରେମୀ ମୁକ୍ତ୍ୟାର ରାମଚନ୍ଦ୍ର ଦାସଙ୍କ ଦଇତାପଡ଼ାସ୍ଥ ବାସଭବନରେ ରହୁଥିଲେ । ରାମଚନ୍ଦ୍ର ଦାସଙ୍କ ସହିତ ସେତେବେଳେ ପୁରୀରେ ମାତ୍ର ତିନିଜଣ ମୁକ୍ତ୍ୟାରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ମୁକ୍ତ୍ୟାର ଥିଲେ । ୧୮୯୫ ମସିହାରେ ବାସୁଦେବ ରଥଙ୍କ ସହିତ ଗୋପବନ୍ଧୁଙ୍କର ମୁକ୍ତ୍ୟାରଙ୍କ ଘରେ ପ୍ରଥମେ ସାକ୍ଷାତ ହେଲା । ଗୋପବନ୍ଧୁ ସେ ସମୟରେ ଏନ୍ଟ୍ରାନ୍ସ ୪ର୍ଥ ଶ୍ରେଣୀର ଛାତ୍ର । ସେ ଆଗରୁ ପ୍ରତ୍ୟହ ରାମଚନ୍ଦ୍ର ଦାସଙ୍କ ଘରକୁ ଆସୁଥିଲେ ଓ ବହୁରାତି ପର୍ଯ୍ୟନ୍ତ ଅନ୍ୟାନ୍ୟ କେତେକ ଛାତ୍ରଙ୍କ ସହିତ ସେଠାରେ ବହୁ ବିଷୟରେ ଆଲୋଚନା ହେଉଥିଲା ।

ରାମଚନ୍ଦ୍ର ଦାସ ତରୁଣ ହେଲେ ମଧ୍ୟ ଗମ୍ଭୀର ଚିନ୍ତାଶୀଳ ଥିଲେ ଓ ଜଣ୍ଟାପୁରର ଏହି ଛାତ୍ରମାନଙ୍କୁ ନେଇ ଦେଶର କାର୍ଯ୍ୟରେ ଅନୁପ୍ରେରଣା ଦେଉଥିଲେ । ସନ୍ଧ୍ୟାରେ ସମ୍ବାଦପତ୍ର ପାଠ ହୁଏ ଓ ତା'ଉପରେ ଆଲୋଚନା ଓ ସମାଲୋଚନା ହୁଏ । ରାମଚନ୍ଦ୍ର ଦାସ 'ବଙ୍ଗବାସୀ', 'ବସୁମତୀ' ଓ 'ସଞ୍ଜୀବନୀ' ନାମକ ତିନୋଟି ବଙ୍ଗଳା ପତ୍ରିକା ଏବଂ 'ଉତ୍କଳ ଦୀପିକା' ଓ ବାଲେଶ୍ୱରରୁ ପ୍ରକାଶିତ 'ସମ୍ବାଦବାହିକା' ମଗାଉଥା'ନ୍ତି ।

ଦିନକର ଗୋପବନ୍ଧୁ ଓ ବାସୁଦେବଙ୍କୁ ଏକତ୍ର କରି ଉଭୟଙ୍କ ମୁଣ୍ଡରେ ହାତ ରଖି ରାମଚନ୍ଦ୍ର ଦାସ କହିଲେ—"ମୁଁ ତୁମ ଦୁହିଁଙ୍କୁ ମିଶାଇଦେଇ ପ୍ରାଚ୍ୟ ଓ ପାଶ୍ଚାତ୍ୟର ସମ୍ମିଳନ କରାଇଲି ।" ଏହାପରେ ରଥ ଓ ଗୋପବନ୍ଧୁଙ୍କ ମଧ୍ୟରେ ଅଧିକ ବନ୍ଧୁତା ଗଢ଼ିଉଠିଥିଲା ।

୧୮୯୬ ମସିହାରେ କୁକ୍ ସାହେବ ପୁରୀର କଲେକ୍ଟର ହୋଇ ଆସିଲେ । ସେ ମଧ୍ୟ ପୁରୀ ସଂସ୍କୃତ ଟୋଲର ସୁପରିଣ୍ଟେଣ୍ଡେଣ୍ଟ୍ । ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ଲାଗି ରାମଚନ୍ଦ୍ର ଦାସ ନିଜ ଘରକୁ ନିମନ୍ତ୍ରଣ କରିଥିଲେ । ଗୋପବନ୍ଧୁ ଓ ବାସୁଦେବ ରଥଙ୍କ ଉପରେ ଆୟୋଜନ ତଥା ବକ୍ତୃତା ଦେବାର ଭାର ନ୍ୟସ୍ତ ଥିଲା । ରାମଚନ୍ଦ୍ର ଦାସଙ୍କ ଇଙ୍ଗିତ ଅନୁଯାୟୀ ଗୋପବନ୍ଧୁ ଇଂରାଜୀରେ ଓ ବାସୁଦେବ ରଥ ସଂସ୍କୃତରେ କେତେପଦ କହି ସମ୍ବର୍ଦ୍ଧନା ଜଣାଇଥିଲେ । ରାମଚନ୍ଦ୍ର ଦାସ ତାଙ୍କ ବକ୍ତୃତାରେ ସଂସ୍କୃତ ଟୋଲର ଲାଇବ୍ରେରୀ ଓ ସମୁଦ୍ରକୂଳ ବାଲିରେ ଝାଉଁଗଛ ଲଗାହେବା ସମ୍ପର୍କରେ ଦାବୀ ଜଣାଇଥିଲେ । ପରେ ଲାଇବ୍ରେରୀ ପାଇଁ ଅର୍ଥ ବ୍ୟବସ୍ଥା ଓ ଲକ୍ଷେ ଝାଉଁଗଛ ରୋପଣର ବ୍ୟବସ୍ଥା ହୋଇଗଲା ।

୧୯୦୦ ମସିହାରେ ରାମଚନ୍ଦ୍ର ଦାସଙ୍କର ପ୍ରଥମ ପୁତ୍ରସନ୍ତାନ ମାତ୍ର ଏକବର୍ଷ ବୟସରେ ମରିଗଲା । ଏ ସମ୍ବାଦ ପାଇ ଗୋପବନ୍ଧୁ କଟକରୁ ଧାଇଁ ଆସିଥିଲେ । ଦିନକର ରାମଚନ୍ଦ୍ର ଦାସ ଆଣ୍ଠୁମାଡ଼ି ବସି ପ୍ରାର୍ଥନା କରି ଠାକୁରଙ୍କୁ ଜଣାଉଥା'ନ୍ତି : "ଠାକୁରେ ମୋତେ ଆଉ ପିଲା ଦିଅନାହିଁ । ପିଲାହେଲେ ଏ ସଂସାରରେ ମୁଁ ଜଡ଼ିତ ହୋଇପଡ଼ିବି ।"

ଗୋଟିଏ ସନ୍ଧ୍ୟାର କଥା । ଗୋପବନ୍ଧୁ, ବାସୁଦେବ ରଥ ଓ ଆଉ ତିନିଜଣ ରାମଚନ୍ଦ୍ର ଦାସଙ୍କ ପାଖରେ ବସିଥା'ନ୍ତି । ରାମଚନ୍ଦ୍ର କହିଲେ—"ତୁମେ ଅଛ ୫ ଜଣ । ତୁମେ ଶପଥ ନିଅ ଯେ ପ୍ରତ୍ୟେକେ ଅନ୍ତତଃ ଆଉ ୫ ଜଣଙ୍କୁ ଶିକ୍ଷିତ କରାଇବାରେ ସାହାଯ୍ୟ କରିବ । ତୁମ ଶିଷ୍ୟମାନେ ଏପରି ଶିକ୍ଷା ପାଇବେ ଯେ ତୁମ ଆଦର୍ଶରେ ସେମାନେ ପ୍ରତ୍ୟେକେ ୫ ଜଣଙ୍କୁ ଶିକ୍ଷାଦେବାର ବ୍ୟବସ୍ଥା କରିବେ । ତା'ହେଲେ ୫ ବର୍ଷ ମଧ୍ୟରେ ଆମ ଓଡ଼ିଶାରେ ଶିକ୍ଷିତଙ୍କ ସଂଖ୍ୟା ବହୁତ ବଢ଼ିଯିବ ।

୧୯୦୪ ମସିହାରେ ଗୋପବନ୍ଧୁ ବି. ଏ. ପାଶ୍ କଲେ । ସେ ସମୟକୁ ଓଡ଼ିଶାରେ ମାତ୍ର ୧୨ ଜଣ ବି. ଏ. ଡିଗ୍ରୀଧାରୀ ଓଡ଼ିଆ ଥା'ନ୍ତି । ଗୋପବନ୍ଧୁଙ୍କ ସାଙ୍ଗରେ ବୈଦ୍ୟନାଥ ମିଶ୍ର, ଗୋପୀନାଥ ଦାସ, ବ୍ରଜସୁନ୍ଦର ଦାସ, ବି.ଏ. ପାସ୍ କରିଥା'ନ୍ତି । ବୈଦ୍ୟନାଥ, ଗୋପୀନାଥ

ଓ ଗୋପବନ୍ଧୁଙ୍କୁ ହସି ହସି ରାମଚନ୍ଦ୍ର ଦାସ ପଚାରିଲେ—"ଏହାପରେ କ'ଣ କରିବ ?" ମୁରବିମାନଙ୍କ ଇଚ୍ଛା ଅନୁସାରେ ସରକାରୀ ଚାକିରି କରିବା କଥା ବୈଦ୍ୟନାଥ ଓ ଗୋପୀନାଥ ଦାସ କହିଲେ । ଗୋପବନ୍ଧୁଙ୍କୁ ଏହି ପ୍ରଶ୍ନ ହେବାକ୍ଷଣି ସେ କାନ୍ଦି ପକାଇଲେ । ତାଙ୍କ ଆଖିରୁ ଖାଲି ଝରଝର ଲୁହ ବୋହିଯାଇ ତାଙ୍କ ମନ କଥା ପ୍ରକାଶ କରିଦେଲା । ରାମଚନ୍ଦ୍ର ଦାସ ତାଙ୍କୁ ବୁଝାଇ କହିଲେ—"ତୁମେ ହିଁ ଠିକ୍ ବାଟ ଧରିଛ, ଓକିଲାତି ପଢ଼ । ତା'ପରେ ଦେଶ ସେବାରେ ନିଜକୁ ନିୟୋଜିତ କର ।"

ଗୋପବନ୍ଧୁ ବି. ଏ. ପରୀକ୍ଷା ଦେଇ ପୁରୀକୁ ଆସିବା ସଙ୍ଗେସଙ୍ଗେ "ବିଶ୍ୱବିଦ୍ୟାଳୟ" ନାମରେ ଗୋଟିଏ ସାହିତ୍ୟ ଆଲୋଚନା ଚକ୍ର ଖୋଲିଲେ । ସେଥିରେ ରାମଚନ୍ଦ୍ର ଦାସ ନିୟମିତ ଉପସ୍ଥିତ ରହୁଥିଲେ । ଗୋପବନ୍ଧୁ ଏହି ଅନୁଷ୍ଠାନର ପରିଚାଳକ ଥିଲେ । ସେ ରଘୁନାଥ ରାଓ, ଦିବାକର ଦାସ ଏବଂ ବୋଡ଼ଙ୍ଗ ବକ୍ସି ପରିବାରର ଲୋକନାଥ ବିଦ୍ୟାଧର ବିଭିନ୍ନ ବିଷୟରେ ପ୍ରବନ୍ଧ, କବିତା ଆଦି ଲେଖି ପାଠ କରୁଥିଲେ । ଗୋପବନ୍ଧୁଙ୍କ ଲିଖିତ ପ୍ରବନ୍ଧ ସମସ୍ତଙ୍କ ଦ୍ୱାରା ବିଶେଷ ଆଦୃତ ହେଉଥିଲା । ଥରେ ଏହି ଆଲୋଚନା ସଭାରେ ତତ୍କାଳୀନ ଓଡ଼ିଶା କମିସନର୍ ଓ ପ୍ରସିଦ୍ଧ ସାହିତ୍ୟିକ ରମେଶଚନ୍ଦ୍ର ଦତ୍ତଙ୍କ ସହିତ ଗୋପବନ୍ଧୁଙ୍କର କୌଣସି ସାହିତ୍ୟ ବିଷୟରେ ବିଶେଷ ଯୁକ୍ତିତର୍କ ହୋଇଥିଲା ।

ସେ ସମୟରେ ଦ୍ୱୀପାନ୍ତର ଦଣ୍ଡ ପାଇଥିବା ଦିବ୍ୟସିଂହଦେବଙ୍କ ପୁତ୍ର ମୁକୁନ୍ଦଦେବ ପୁରୀର ରାଜା ଥିଲେ । ଜଣେ ଗୋରା ସାହେବ ପୁରୀ ଶ୍ରୀମନ୍ଦିରର ମ୍ୟାନେଜର ନିଯୁକ୍ତ ହୋଇଥିବାରୁ ସେବକ ଓ ପୁରୀବାସୀଙ୍କ ମଧ୍ୟରେ ଖୁବ୍ ଚହଲ ପଡ଼ିଗଲା । ପୂର୍ବରୁ ପ୍ରତିବର୍ଷ ରଥଟଣା ପାଇଁ ରାହାଙ୍ଗଗଡ଼ର ଲୋକେ କତାଦଉଡ଼ି ଯୋଗାଇ ଆସୁଥିଲେ । ତାହା ଅତି ମୋଟା ଓ ଭାରି ଥିଲା । ମ୍ୟାନେଜର୍ କତା ସଂଗ୍ରହ କରି କଲିକତା ପଠାଇଲେ ଓ ସେଠାରୁ କଳରେ ମଜଭୁତ୍ ଦଉଡ଼ି ବଳାଇ ଆଣିଲେ ।

ସେ ସମୟର ରଥଯାତ୍ରା ବେଳେ ହଇଜା ଓ ମହାମାରୀ କିପରି ମହାମଡ଼କ ସୃଷ୍ଟି କରୁଥିଲା ତା'ର ଗୋଟିଏ ଚିତ୍ର ଦିଆଯାଉଛି । ୧୮୯୯ ବେଳକୁ ପୁରୀକୁ ରେଳଚଳାଚଳର ସୁବିଧା ହେବାରୁ ଭାରତର ସବୁ ଅଞ୍ଚଳରୁ ଲକ୍ଷ ଲକ୍ଷ ଯାତ୍ରୀ ରଥଯାତ୍ରା ଦେଖିବାକୁ ଆସିଲେ । ସେହିବର୍ଷ ରଥ ସମୟରେ ହଇଜା ଏପରି ବ୍ୟାପକରୂପ ଧାରଣ କଲା ଯେ ପୁରୀ ସହରର ପ୍ରତ୍ୟେକ ରାସ୍ତା, ଗଳିକନ୍ଦି, ପୋଖରୀ ହୁଡ଼ାରେ ଶହ ଶହ ମୃତଦେହ ପଡ଼ିରହିଥିବାର ଦେଖାଗଲା । ବଡ଼ଦାଣ୍ଡରେ ନରେନ୍ଦ୍ର ପୋଖରୀ ପର୍ଯ୍ୟନ୍ତ ଯିବାକୁ ଶତାଧିକ ମୃତଦେହ ଡେଇଁଯିବାକୁ ପଡ଼ୁଥିଲା । ସରକାରୀ ହିସାବରେ ହଜାର ହଜାର ଲୋକ ପ୍ରାଣ ହରେଇଥିବା କଥା କୁହାଯାଇଥିଲା ।

ରାମଚନ୍ଦ୍ର ସେ ସମୟରେ ପୁରୀ ମ୍ୟୁନିସିପାଲ ବୋର୍ଡ଼ର ଜଣେ ସଭ୍ୟ ଥିଲେ । ଗୋପବନ୍ଧୁ, ହରିହର ପ୍ରଭୃତି ଅନୁଗତ ଛାତ୍ରଙ୍କୁ ଧରି ରୋଗୀସେବା, ବିପନ୍ନ ଲୋକଙ୍କୁ ସାହାଯ୍ୟ ଓ ଶବସଂସ୍କାରରେ ଲାଗିପଡ଼ିଥିଲେ । ଅବସ୍ଥା ଅସମ୍ଭାଳ ହୋଇପଡ଼ିବାରୁ କଲିକତାରୁ ଜଣେ ସ୍ୱାସ୍ଥ୍ୟ ବିଭାଗର ଅଫିସର ଗୋରା ସାହେବ ଆସିଲେ । ବାଟରେ

ଘାଟରେ ସେତେବେଳେ ଯେଉଁଠି ମୃତଦେହ ପଡ଼ିଥିଲା ମେହେନ୍ତରମାନଙ୍କ ଦ୍ୱାରା ସେମାନଙ୍କ ମୁହଁରେ ଚୂନ ବୋଳି ସେଗୁଡ଼ିକୁ ବଳଭଦ୍ର ବଲ୍ଲଭ (ବର୍ତ୍ତମାନ ଯେଉଁଠାରେ ମାର୍କେଟ ହୋଇଛି)ରେ ଥିବା ୭ ବଖରା ବଡ଼ ବଡ଼ ଘରେ ରୁଣ୍ଡ କରାଗଲା । ତାହାପରେ ସମୁଦ୍ରକୂଳ ମହାବୀର ମନ୍ଦିର ପାଖରେ ଗୋଟାଏ ଅତି ବଡ଼ ଖନ୍ଦକ ଖୋଳାଯାଇ କାଠଗଡ଼ି ଉପରେ ମୁର୍ଦ୍ଦାରଗୁଡ଼ିକୁ ପୂରାଗଲା । ଉପରେ କାଠ ଲଦି କିରୋସିନ ଢାଳି ନିଆଁ ଲଗାଇ ଦିଆଗଲା । ସେ ନିଆଁ ୧୭ ଦିନ ଧରି ଜଳୁଥିଲା । ନରେନ୍ଦ୍ର ପୋଖରୀର ଉତ୍ତର କୋଣରେ ଥିବା ଶ୍ମଶାନରେ ମଧ୍ୟ ଏହିପରି ଖନ୍ଦକ ଖୋଳି ଶବସତ୍କାର କରାଯାଉଥିଲା ।

ଏଇ ହଇଜାବେଳର ଗୋଟିଏ କରୁଣ କାହାଣୀ । ରାମଚନ୍ଦ୍ର ଦାସ ପ୍ରତ୍ୟୁଷରୁ ନରେନ୍ଦ୍ର ପୋଖରୀକୁ ସ୍ନାନ କରିବାକୁ ଯାଆନ୍ତି । ସେଦିନ ସେ ଯେଉଁ ଗୁଠରେ ସ୍ନାନ କରୁଥିଲେ ତା' ପାଖରେ ଗୋଟିଏ ପଶ୍ଚିମା ମହିଳାଯାତ୍ରୀ ବସି ବିକଳରେ କାନ୍ଦୁଥିଲା । ରାମଚନ୍ଦ୍ର ଦାସ ତା' ପାଖରେ ଟିକିଏ ଅଟକିଯିବା'ରୁ ମହିଳାଟି ତାଙ୍କ ପାଦତଳେ ପଡ଼ିଯାଇ କାନ୍ଦି କାନ୍ଦି କହିଲା, "ମୁଁ ମୋ ସ୍ୱାମୀଙ୍କୁ କେଉଁଠାରେ ପାଉନାହିଁ ।" ମେହେନ୍ତରମାନେ ସେତେବେଳକୁ ବହୁ ଜୀବନ୍ମୃତ ରୋଗୀଙ୍କୁ ଖାତରେ ପକାଇ ଦେଉଥିବା କଥା ପ୍ରଚାରିତ ହେଉଥାଏ । ତେଣୁ ସ୍ୱାମୀ ଦେଖି ସୁକୁସୁକୁ ହେଉଥିବା ଲୋକଙ୍କୁ ବି ଡୋଲିରେ ପୂରାଇ ଖାତକୁ ନେଇଯାଉଥାନ୍ତି । (ଗୋଦାବରୀଶଙ୍କ ଆତ୍ମ ଜୀବନୀ) । ନୀଳକଣ୍ଠ ତାଙ୍କ ଆତ୍ମ ଜୀବନୀରେ ଲେଖିଛନ୍ତି—"ମୁଁ ଜାଣେ ଦେଖିଥିବା ଲୋକ ଏବେ ବଞ୍ଚିଥିଲେ ବି କହିବେ ସେହି ବାଲିଟୋପ ଭିତରୁ ପରେ ଲୋକେ ବଞ୍ଚିକରି ଉଠି ଯାଉଥିଲେ ।" ଯାହା ହେଉ ମ୍ୟୁନିସିପାଲିଟି ସଭ୍ୟ ରାମଚନ୍ଦ୍ର ଦାସ ଆଶଙ୍କା କରି ସେହି ମହିଳାଟିକୁ ସାଙ୍ଗେ ସାଙ୍ଗେ ଖନ୍ଦକ ପାଖକୁ ନେଇ ଆସିଲେ । ତାଙ୍କ ଆଦେଶରେ ଖନ୍ଦକରେ ପଡ଼ିଥିବା ମୃତଦେହଗୁଡ଼ିକ ଦେଖାଗଲା । ଟିକିଏ ମୃତଦେହ କାଢ଼ା ହେବାପରେ ଯେଉଁ ଲୋକ ପଡ଼ିଥିବାର ଦେଖାଗଲା, ମହିଳାଟି ତାକୁ ଦେଖି ଅତି ବିକଳ ହୋଇ ସାଙ୍ଗେ ସାଙ୍ଗେ ଖାତ ଭିତରକୁ ଡେଇଁପଡ଼ିବାକୁ ଚେଷ୍ଟାକଲେ । କୌଣସିମତେ ତାକୁ ଅଟକାଇ ରଖାଗଲା । ସେ ଲୋକଟିକୁ ଉପରକୁ ଉଠାଇ ଶୁଶ୍ରୂଷା କରାଗଲା ପରେ ଦେଖାଗଲା ଯେ ସେ ଜୀବିତ ଅଛନ୍ତି । ପରେ ସ୍ୱାମୀ ଓ ସ୍ତ୍ରୀ କଟକବାସୀ ଉକ୍ତ ବୃତ୍ତିଜୀବୀ ନିକଟରୁ ଆଶ୍ରିତ ହୋଇ ଘରକୁ ଫେରିଯାଇଥିଲେ ।

## ବ୍ରାହ୍ମଣ ସମିତି

୧୮୯୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଗୋପବନ୍ଧୁ ଏଣ୍ଟ୍ରାନ୍ସ ପାଶକଲେ । ତାଙ୍କୁ ଡାକି ରାମଚନ୍ଦ୍ର ଦାସ କହିଲେ, "ଆଜି ମୋ ମନକାମନା

ପୂର୍ଣ୍ଣହେଲା । ୧୮୮୭ରୁ ମୁଁ ମୃତ୍ୟୁଆଶା କରୁଛି । ମୋ ଅର୍ଜିତ ଧନରେ ମୁଁ ୧୮ଗୁଣ୍ଠ ଜମି କିଣି ପକାଇ ରଖିଛି । ପ୍ରଥମେ ଭାବିଥିଲି ଘରକରି ରହିବି; କିନ୍ତୁ ପରେ ଠିକ୍‌କଲି ଏ ପବିତ୍ର ପୀଠରେ ସ୍ତ୍ରୀଙ୍କୁ ଧରି ରହିବା ସଙ୍ଗତ ନୁହେଁ । ଦେଶର ଅଭାବଗ୍ରସ୍ତ ଦରିଦ୍ର ପିଲାମାନେ ଯେପରି ସୁବିଧାରେ ରହି ବିଦ୍ୟାଶିକ୍ଷା କରିବେ, ସେଥିପାଇଁ ଏଠାରେ ଗୋଟିଏ ଛାତ୍ରାବାସ କରିବି । ତୁମେ ବି. ଏ.; ବି. ଏଲ୍ ପାଶ୍ କରି ରାଜନୀତିରେ ଯୋଗଦିଅ । ଏହାହିଁ ମୋର ଇଚ୍ଛା । ତୁମେ ଏ ଛାତ୍ରାବାସର ପରିଚାଳକ ହେବ । ମୁଷ୍ଟିଭିକ୍ଷା ଆଣି ପିଲାଙ୍କ ଖର୍ଚ୍ଚ ତୁଲାଇବାକୁ ପଡ଼ିବ । ଅବଶ୍ୟ ଚେଷ୍ଟାକଲେ ଧନୀ, ମହାରାଜାଙ୍କଠାରୁ ଅନେକ ଧନ ମିଳିବ । ମାତ୍ର ସେ ଟଙ୍କାରେ ଏହି ଅନୁଷ୍ଠାନ ଗଢ଼ିଲେ ମୋର ପ୍ରକୃତ ଉଦ୍ଦେଶ୍ୟ ସାଧିତ ହୋଇପାରିବନାହିଁ ।

ସେହି ଜମିରେ ବର୍ତ୍ତମାନ 'ବ୍ରାହ୍ମଣ ସମିତି' ଛାତ୍ରାବାସ ଠିଆ ହୋଇଛି । ୧୮୯୯ରେ ଏହା ପ୍ରଥମେ ଆରମ୍ଭ ହୋଇଥିଲା । ମହାମହୋପାଧ୍ୟାୟ ସଦାଶିବ କାବ୍ୟକଣ୍ଠ ଜଣେ ଉଦ୍ୟୋକ୍ତା ଭାବରେ ଏହି ସମିତି ଗଠନରେ ବହୁ ଭାବରେ ଲାଗିପଡ଼ିଥିଲେ । ଗୋପବନ୍ଧୁ ଏହି ସମିତିର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ସମ୍ପର୍କରେ ଏକ ମୂଲ୍ୟବାନ କବିତା ଲେଖିଥିଲେ । ଯାହାର କେତୋଟି ପଙ୍‌କ୍ତି ତଳେ ଉଦ୍ଧାର କରାଗଲା—

"କୁଳ ଗଉରବ ବଂଶ ବଡ଼ପଣ
ରଖିବାକୁ ଯେବେ ଅଛି ଭାଇ ମନ,

ଗଢ଼ ଏଥି ଦୃଢ଼େ ଜୀବନ ବୋଇତ
କର ଆୟୋଜନ ଭବିଷ୍ୟତ ହିତ ।
ଭାରତ ଅର୍ଣ୍ଣବେ କି ଘୋର ତୋଫାନ
ଦେଖି ଭାଇ ଆଗୁଁ ହୁଅ ସାବଧାନ ।

ବହେ ଅଣରୁଣ-ପବନ କରାଳ
ଉଠଇ ଉଦ୍‌ବେଳ ଭୀମ ଊର୍ମିମାଳ ।

କେତେ ଦ୍ୱୀପପୁଞ୍ଜ ନିମଗନ ଜଳେ
କେତେ ଶତ ଶୈଳ ମିଶିଲେଣି ତଳେ ।

ଭାରତ ଜାତୀୟ ଜୀବନ ତରଣୀ
ପାଏ ନାହିଁ ଏବେ ସହଜ ସରଣୀ ।

ଜାତୀୟତା-ପୋତେ ଜୀବନ-ବୋଇତ
ଯୋଡ଼ିବା ତ ପ୍ରତି ଜନର ବିହିତ ।

ଭାରତବାସୀର ଧର୍ମବଳ ସାର
ଧର୍ମବିନା ଆଜ ଏଡ଼େ ଛାରଖାର ।

ଦେଖାଅ ଜୀବନେ ଅଦ୍ଭୁତ ଶକତି,
କର୍ମେ ଅନାଶକ୍ତ; ଧର୍ମେ ଦୃଢ଼ ରତି ।
ସତ୍ୟ, ଶମ, ଦମ, ଶଉଚ, ତିତିକ୍ଷା
ଏ ଆଦି ସକଳ ଶୁଭ୍ର କୁଳ ଦୀକ୍ଷା ।
ଆଚରଣେ ତାହା ଜୀବନେ ନିରତେ,
ବ୍ରହ୍ମଣ୍ୟର ତେଜ ପ୍ରକାଶ ଜଗତେ ।
ଲୋକ ହିତେ ପ୍ରାଣ-ପ୍ରଦାନ-ପ୍ରବଣ
ଦଧୀଚି ଶୋଣିତ କରିଛି ଧାରଣ ।
ହିଅ ସ୍ୱାର୍ଥ ବଳି, ଦେଖାଅ ସେ ତ୍ୟାଗ
ଭାରତ ଜାତୀୟ ମହା ଯାଗେ ଲାଗ ।
ନିଜ ସ୍ୱାର୍ଥ ପାଇଁ ଜାତି ନୁହେଁ ହିନ୍ଦୁ,
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ ।" [ ଅବକାଶ ଚିନ୍ତା ]

୧୯୦୧ରେ 'ବ୍ରାହ୍ମଣ ସମିତି' ପକ୍ଷରୁ ବ୍ରାହ୍ମଣ ମହାସମ୍ମିଳନୀ ବସିଥିଲା । ସେଥିରେ ମେଦିନୀପୁର, ବାଙ୍କୁଡ଼ା, ବ୍ରହ୍ମପୁର, ଗଞ୍ଜାମ, କୋରାପୁଟ, ସମସ୍ତ ଗଡ଼ଜାତ ଓ ଓଡ଼ିଶାର ସମସ୍ତ ଜିଲ୍ଲାରୁ ପ୍ରାୟ ୧୭୦୦ ପ୍ରତିନିଧି ଯୋଗ ଦେଇଥିଲେ । ତିନିଦିନଯାଏ ଏ ବୈଠକ ବସିଥିଲା । ମେଦିନୀପୁରର ଜମିଦାର ହିତମ୍ବର ନନ୍ଦ ଏଥିରେ ସଭାପତିତ୍ୱ କରିଥିଲେ । ସେଥିରେ ଏକ ପ୍ରସ୍ତାବ ଅନୁମୋଦିତ ହୋଇଥିଲା ଯେ ପ୍ରାକୃତିକ ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳର ବ୍ରାହ୍ମଣମାନେ ଅନ୍ୟ ଅଞ୍ଚଳର ବ୍ରାହ୍ମଣମାନଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରନ୍ତୁ ।

୧୯୩୦ରେ 'ପ୍ରଜା ପ୍ରତିନିଧି ସଭା' ନାମରେ ଏକ ଅନୁଷ୍ଠାନ ଗଢ଼ା ଯାଇଥିଲା । ମଧୁବାବୁ ନିମନ୍ତ୍ରିତ ହୋଇ ସେଥିରେ ଯୋଗ ଦେଇଥିଲେ । ରାମଚନ୍ଦ୍ର ଦାସ ଏହି ଅନୁଷ୍ଠାନରେ ବକ୍ତୃତା ଦେଇ କହିଲେ—'ବ୍ରାହ୍ମଣ ସମିତି', 'କରଣ ସମିତି', 'କାୟସ୍ଥ ସମିତି'— ଏପରି ଭିନ୍ନ ଭିନ୍ନ ଅନୁଷ୍ଠାନ ଗଢ଼ିବାର ଉଦ୍ଦେଶ୍ୟ ନୁହେଁ ଯେ ଦେଶରେ ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଶ୍ରେଷ୍ଠତା ପ୍ରତିପାଦନ କରିବାକୁ ଉଦ୍ୟମ କରିବା । ଏହାର ଉଦ୍ଦେଶ୍ୟ ହେଉଛି ପ୍ରଥମେ ଦଳ ଦଳ ହୋଇ ସଂଘବଦ୍ଧ ହେବା । ଗୋଟିଏ ଗୋଟିଏ ସଙ୍ଗଠନ ଦୃଢ଼ ହୋଇଗଲେ ସମସ୍ତେ ମିଳିମିଶି ଦେଶ ଓ ଜାତିର ସର୍ବବିଧ ଉନ୍ନତି ପାଇଁ ଏକ ଧ୍ୟାନରେ ଲାଗି ପଡ଼ିବେ ।"

୧୯୦୬ ରେ ବ୍ରହ୍ମପୁରଠାରେ ଗଞ୍ଜାମ ଜିଲ୍ଲା ସମ୍ମିଳନୀ ବସିଲା । ହରିଡ଼ାଖଣ୍ଡି ନିବାସୀ ପଣ୍ଡିତ ସଦାଶିବ ବିଦ୍ୟାଭୂଷଣ ସଭାପତିତ୍ୱ କରିଥିଲେ । ମୁକ୍ତ୍ୟାର ରାମଚନ୍ଦ୍ର ଦାସ ସେଠାରେ ପ୍ରସ୍ତାବ କଲେ ଯେ ସମଗ୍ର ଓଡ଼ିଶାର ସବୁ ସମ୍ପ୍ରଦାୟର ଲୋକଙ୍କୁ ନେଇ ଗୋଟିଏ ସମ୍ମିଳନୀ ହେଉ । ସେଥିରେ ରାଜନୀତିକ ଚର୍ଚ୍ଚାକୁ ମୁଖ୍ୟ ସ୍ଥାନ

ଦିଆଯାଉ । ଏଥିପାଇଁ ମଧୁସୂଦନ ଦାସ ଉପଯୁକ୍ତ ବ୍ୟକ୍ତି । ତାଙ୍କୁ ତୁରନ୍ତ ଡକାଯାଉ । ଏହି ପ୍ରସ୍ତାବ ଅନୁସାରେ ଦ୍ୱିତୀୟ ଦିନ ମଧୁବାବୁ ଯାଇ ସେଠାରେ ପହଞ୍ଚିଲେ । ତାହାହିଁ ଉତ୍କଳ ସମ୍ମିଳନୀର ଭିତ୍ତି ସ୍ଥାପନ । ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନଠାରୁ ୧୯୦୮ ମସିହା ଅଧିବେଶନ ପର୍ଯ୍ୟନ୍ତ ସମ୍ମିଳନୀର ଯେତେ ବିବରଣୀ ଛପା ଯାଇଛି ସେଥିରେ ଥାଏ—ପ୍ରତିଷ୍ଠାତା ରାମଚନ୍ଦ୍ର ଦାସ । ୧୯୦୯ ମସିହାର ବିବରଣୀରେ ତାଙ୍କ ନାମ ନଥିବାରୁ ମଧୁବାବୁ ଉଦ୍ୟୋକ୍ତା ସମ୍ପାଦକଙ୍କ ଉପରେ ଘୋର ବିରକ୍ତି ପ୍ରକାଶ କରିଥିଲେ ।

ସେହିବର୍ଷ (୧୯୦୨) ରମ୍ଭା ସମ୍ମିଳନୀ ରମ୍ଭାଠାରେ ଖଲିକୋଟ ରାଜନଗରରେ ଅନୁଷ୍ଠିତ ହୋଇଥିଲା । ମୟୂରଭଞ୍ଜର ମହାରାଜା ଶ୍ରୀ ରାମଚନ୍ଦ୍ର ଭଂଜଦେଓ ଏଥିରେ ସଭାପତିତ୍ୱ କରିଥିଲେ । ସମ୍ମିଳନୀର ପ୍ରଧାନ ଉଦ୍ୟୋକ୍ତା ଓ ପରିଚାଳକ ଥିଲେ ମୁକ୍ତ୍ୟାର ରାମଚନ୍ଦ୍ର ଦାସ ଓ ଗୋପବନ୍ଧୁ । 'ପ୍ରଜାବନ୍ଧୁ'ର ସମ୍ପାଦକ ନୀଳମଣି ବିଦ୍ୟାରତ୍ନ ତାଙ୍କୁ ପୂର୍ଣ୍ଣ ସହଯୋଗ କରିଥିଲେ ।

ରାମଚନ୍ଦ୍ର ଦାସ ଅତ୍ୟନ୍ତ ସୁବକ୍ତା ଥିଲେ । ଆଳାପରେ ସମସ୍ତଙ୍କୁ କିଣି ନେଉଥିଲେ । ଯୁବକମାନଙ୍କୁ ଦେଶର ଭବିଷ୍ୟତ ଭାବି ତାଙ୍କ ସଙ୍ଗେ ପ୍ରାଣ ମିଶାଇ ଦେଉଥିଲେ । ନିଜର ବୋଲି ତାଙ୍କର କିଛି ନଥିଲା କହିଲେ ଚଳେ । ପ୍ରାଣଟା ତାଙ୍କର ଅତ୍ୟନ୍ତ ବିସ୍ତୀର୍ଣ୍ଣ ଥିଲା । ତାଙ୍କୁ ବହୁମୂତ୍ର ରୋଗ ସହିତ ଆହୁରି କେତେକ ବେମାରି ଧରିଥିଲା । ତାଙ୍କ ଗୋଡ଼ ଚଳୁ ନଥାଏ । ବଡ଼ କଷ୍ଟରେ ଉଠି ଚାଲନ୍ତି । ତାଙ୍କୁ କିଛି ଗୋଟାଏ ଦଶା ଘାରିଥାଏ । କିନ୍ତୁ ସେ ଜ୍ୟୋତିଷରେ ଆଦୌ ବିଶ୍ୱାସ କରନ୍ତି ନାହିଁ । ଥରେ ନୀଳକଣ୍ଠ ଦାସ ଓ ଅଭିମାନ ଦାସ ତାଙ୍କ ଘରକୁ ଯାଇଥିଲେ । ଅଭିମାନ ଦାସ ତାଙ୍କ ଜାତକ ଦେଖି କହିଲେ—ଏ ଦଶା ମେଣ୍ଟିଯିବ । ରାମଚନ୍ଦ୍ର ସାଙ୍ଗେ ସାଙ୍ଗେ ଚାକରକୁ ବଡ଼ପାଟି କରି କହିଲେ—"ଘରେ କହିଦେ, ପଣ୍ଡିତ ମହାଶୟ କହିଲେ—ମୁଁ ଏଥର ମରିବି ନାହିଁ । କିଛି ଚିନ୍ତା ନାହିଁ । ଘରେ ଟିକିଏ ଦମ୍ଭ ପାଇ ଯା'ନ୍ତୁ ।" ଏମାନେ ଆସିଲାବେଳେ ବଡ଼ କଷ୍ଟରେ ଦାଣ୍ଡ ଦୁଆରଯାଏ ସେ ଆସିଲେ ଓ କହିଲେ—"ମୁଁ ଯାଉଚି, ଭଗବାନ ତୁମମାନଙ୍କୁ ବଡ଼ ମଣିଷ କରନ୍ତୁ । ଦେଶକୁ କେବେ ଭୁଲିବ ନାହିଁ ।" ଏ ହେଉଛି ୧୯୦୬ ମସିହାର କଥା । ସେହିବର୍ଷ ବାଲେଶ୍ୱରରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ରେ ଯୋଗ ଦେବାକୁ ରାମଚନ୍ଦ୍ର ଦାସ ଯାଇଥିଲେ । ସେ ଏତେ ଦୁର୍ବଳ ହୋଇପଡ଼ିଥିଲେ ଯେ ଦୁଇଜଣ ତାଙ୍କୁ ଉଠାଇ ଧରି ମଣ୍ଡପରେ ଠିଆ କରାଇବାରୁ ସେ ବକ୍ତୃତା ଦେଲେ । ସେହିବର୍ଷ ଜୁଲାଇ ୩୦ ତାରିଖ ଶ୍ରାବଣ ଶୁକ୍ଳ ଝୁଲଣ ଏକାଦଶୀ ତିଥିରେ ତାଙ୍କର ଦେହାନ୍ତ ହୋଇଥିଲା । ତାଙ୍କ ମୃତ୍ୟୁରେ ଗୋପବନ୍ଧୁ ଅତିମାତ୍ରାରେ ମ୍ରିୟମାଣ ହୋଇପଡ଼ିଥିଲେ । ତାଙ୍କ ଇଚ୍ଛା ଓ ଉଦ୍ଦେଶ୍ୟକୁ ଆଜୀବନ ସେ ସମ୍ମାନ ଦେଇ ତଦନୁଯାୟୀ କାମ କରିଥିଲେ । ବହୁ ସଭା ସମିତିରେ ମୁକ୍ତ୍ୟାରଙ୍କ ଆଦର୍ଶପୂତ ଜୀବନର ଉଦାହରଣ ଦେଇ ଲୋକମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲେ ।

# ଓକଲତ ଜୀବନ

୧୯୦୭ ମସିହାରେ ଗୋପବନ୍ଧୁ ବି. ଏଲ୍. ପରୀକ୍ଷା ଦେଇ ମାତ୍ର ତିନି ଚାରି ମାସକାଳ ନୀଳଗିରିରେ ଶିକ୍ଷକତା କରିଥିଲେ । ଏହାପରେ କଟକ ଚାଲିଆସିଲେ ଓ ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀଙ୍କ ପିତା ଗୋକୁଳାନନ୍ଦ ଚୌଧୁରୀଙ୍କ ପାଖରେ ରହି ଓକିଲାତି କଲେ । ବେଳେ ବେଳେ ସେ ମଧୁବାବୁ ଓ ବୈକୁଣ୍ଠନାଥ ଦେଙ୍କ ପାଖରେ ବସି ବହୁ ଅଭିଜ୍ଞତା ହାସଲ କରୁଥିଲେ । ଏମାନେ ସେତେବେଳେ ଓଡ଼ିଶାର ପ୍ରତିଷ୍ଠିତ ଓକିଲ ଥିଲେ । ଓକିଲାତି କରୁଥିବା ସମୟରେ ସେ ରାମଚନ୍ଦ୍ର ଦାସ ମୁକ୍ତ୍ୟାରଙ୍କ କଥା ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ବହୁ ଆଗରୁ ପୁରୀର ଶ୍ରୀ ଜଗବନ୍ଧୁ ସିଂହ ଓ ଗୋପବନ୍ଧୁ—ଦୁହିଁଙ୍କଠାରୁ ରାମଚନ୍ଦ୍ର ଦାସ ଶପଥ କରାଇ ନେଇଥିଲେ ଯେ—"ଯେଉଁ ପକ୍ଷ ପ୍ରକୃତ ସତ୍ୟ କଥା କହିବ କେବଳ ତାର ପକ୍ଷ ଗ୍ରହଣ କରିବ ।" ଗୋପବନ୍ଧୁ ଓକିଲାତି କରୁଥା'ନ୍ତି ସତ, କିନ୍ତୁ ଏଥିରେ ତାଙ୍କର ପେଶା ଚଳେଇବାର ଆଗ୍ରହ ନ ଥାଏ । ମୁଦ୍ଦାଲମାନଙ୍କୁ ବୁଝାଇ ସୁଝାଇ ମାମଲା କରିବାରୁ ନିବୃତ୍ତ କରାଇ ଦିଅନ୍ତି । ଏଥିରେ ତାଙ୍କ ମୋହରିର ବ୍ୟସ୍ତହୋଇ ଥରେ କହିଲେ, "ଆଜ୍ଞା, ଆପଣ ଏପରି କଲେ ଆମମାନଙ୍କ ପେଟ ପୋଷା କିପରି ହେବ ? ଆପଣଙ୍କ ଘରୁ ସିଧା ଚାଉଳ ଆସୁଚି, ଆପଣ ଏଠାରେ ଚଳି ଯାଉଛନ୍ତି । ମୁଁ ଗରିବ ଲୋକ, ଚଳିବି କିପରି ?"

ଗୋପବନ୍ଧୁ ଗୋଟିଏ ଉପାୟ ବାହାରେଇଲେ । କହିଲେ, "ତୁମେ ଜ୍ୟାମିତି ପଢ଼ିଛ ?"

ମୋହରିର ପଦ୍ମନାଭ ଦାସ ଉତ୍ତର ଦେଲେ—"ହଁ ।"

ଗୋପବନ୍ଧୁ କହିଲେ—"ଜ୍ୟାମିତିରେ ସାମାନ୍ୟକଥନ, ତା'ପରେ ବିଶେଷକଥନ, ତା'ପରେ ଅଙ୍କନ, ତା'ପରେ ପ୍ରମାଣ କରାହୋଇଥାଏ । ଏହି ପ୍ରମାଣ ପରେ ଉପପାଦ୍ୟ ବା Conclusion ଆସେ । 'ଅରଜି' ଠିକ୍ ଜ୍ୟାମିତି ପରି ଏକ ପାଠ । ଏହା ଠିକିଏ ଭୁଲ ହୋଇଗଲେ ମକଦ୍ଦମା ଖାରଜ ହୋଇଯିବ । ଓକିଲ ଯେତେ ବିଜ୍ଞ ହୋଇଥିଲେ ମଧ୍ୟ 'ଅରଜି' ଭୁଲ୍‌ଥିଲେ ସେ ନିରୁପାୟ ।

ପଦ୍ମନାଭ ଦାସ ମୋହରିର ଏହାପରେ 'ଅରଜି' ଲେଖାରେ ବିଚକ୍ଷଣତା ଅର୍ଜନ କଲେ ଓ ବହୁ ବଡ଼ ବଡ଼ ଓକିଲ ତାଙ୍କ ପାଖକୁ 'ଅରଜି' ଲେଖାଇବା ପାଇଁ ମକ୍କେଲମାନଙ୍କୁ ପଠାଇଲେ ।

୧୯୦୭ ରେ ଗୋପବନ୍ଧୁ ପୁରୀ ଯାଇ ସେଠାରେ କିଛିଦିନ ଓକିଲାତି କରିଥିଲେ । ଏହି ସମୟରେ ତାଙ୍କର ଦୁଇ ଝିଅ ଓ ବିମାତା (ବାପାଙ୍କ ଚତୁର୍ଥ ପତ୍ନୀ) ତାଙ୍କ ସହିତ ପୁରୀର ଦଇତାପଡ଼ା ସାହିରେ ରହୁଥାନ୍ତି । ଯେଉଁ ସ୍ନେହ ନିଜ ସ୍ତ୍ରୀକୁ ଦେବାପାଇଁ ସମୟ ଓ ସୁଯୋଗ ପାଇନଥିଲେ ଏଠାରେ ଦୁଇ ମାତୃହରା ସନ୍ତାନଙ୍କଠାରେ ସେ ସମସ୍ତ ଢାଳି ଦେଇଥିଲେ । ଏହି ଦୁଇଝିଅଙ୍କୁ ଦେଖି ଅନେକ ସମୟରେ ମୃତାପତ୍ନୀଙ୍କ ସ୍ମୃତି ମନେପଡ଼େ । ଏହି ଝିଅ

ବୁଢ଼ିଙ୍କୁ ଧନ ଜୀବନର ଦୁଃଖ ଓ ପତ୍ନୀ ବିଚ୍ଛେଦ ଜନିତ ଖେଦ ଭୁଲିବାକୁ ଚେଷ୍ଟା କରୁଥା'ନ୍ତି । ମେଡ୍ରା ନାମକ ଜଣେ ଇଂରେଜ ସାହେବ ସେତେବେଳେ ପୁରୀରେ ରହୁଥାନ୍ତି । ସେ ବରାବର ଗୋପବନ୍ଧୁ ବାବୁଙ୍କ ଘରକୁ ଆସନ୍ତି । ଦିନେ ଗୋପବନ୍ଧୁଙ୍କ ବିମାତା ଗୋଟିଏ ଶଙ୍ଖ ପୁଅ କଣ୍ଢେଇ ଓ ତାକକଣ୍ଠି କିଣିଆଣି ତାଙ୍କ ସାନଝିଅଙ୍କୁ ଦେଲେ । ସକାଳେ ଗୋପବନ୍ଧୁ ବାବୁ ଦାନ୍ତ ଘଷୁଥାନ୍ତି । ପଛଆଡ଼ୁ ଆସି ବେକରେ ଲାଗି ହୋଇ ସାନଝିଅ କେତକୀ କଣ୍ଢେଇ ଦେଖାଇ କହିଲା—"ନନା, ମୋର ଗୋଟିଏ ପୁଅ ହୋଇଛି ।"

ଗୋପବନ୍ଧୁ କହିଲେ—"ସେ ପୁଅଟାକୁ ଫିଙ୍ଗିଦେ । ତୋର ଖୁବ୍ ବଡ଼ ପୁଅ ହେବ । ଘୁଲବୁଲ କରିପାରିବ । ବଡ଼ ମଣିଷ ହେବ ।"

ଝିଅ କଣ୍ଢେଇଟାକୁ ଫୋପାଡ଼ିଦେଲା ଓ କଣ୍ଢେଇର ବେକ ଭାଙ୍ଗିଗଲା । ଝିଅ କାନ୍ଦିଲା ।

ତା'ପରେ ମେଡ୍ରା ସାହେବ ସେଇ ବାଟ ଦେଇ ସାଇକେଲରେ ଗଲାବେଳେ କଣ୍ଢେଇ ଅଣ୍ଟ ଦ'ଗଡ଼ ହୋଇଗଲା । ଝିଅ ଆହୁରି ଅଧୀର ହୋଇ କୋହଧରି କାନ୍ଦିବାକୁ ଲାଗିଲା ।

ଗୋପବନ୍ଧୁ ବାବୁ ତାକୁ ବୁଝାଇ ଦେଲେ—"କାନ୍ଦିଲେ ତୋ ପୁଅ ମେଡ୍ରା ସାହେବକୁ ମାରିଦେଲା । ଦେଖିବୁ ତୋର ଯେଉଁ ପୁଅ ଜନ୍ମହେବ ସେ ସବୁ ସାହେବଙ୍କୁ ଏ ଦେଶରୁ ଘଉଡ଼େଇ ଦେବ ।"

ଝିଅ ବୁଝିଗଲା ଓ ଅନେକ ଦିନ ପର୍ଯ୍ୟନ୍ତ କହୁଥିଲା—"ମୋ ପୁଅ ମେଡ୍ରା ସାହେବକୁ ମାରିଦେଲା ।"

ଗୋପବନ୍ଧୁ ବାବୁ ବିଦେଶୀ ଜିନିଷର ତୀବ୍ର ବିରୋଧ କରୁଥିଲେ । ନିଜେ ପଖାଳକଣିଆ ଓ କଳାପାହାଡ଼ୀ ଗାମୁଛା ବ୍ୟବହାର କରୁଥିଲେ ଓ ପିଲାମାନଙ୍କୁ ମଧ୍ୟ ତାହା ବ୍ୟବହାର କରିବାକୁ ଦେଉଥିଲେ । ଝିଅ ବେକର କଣ୍ଠୀ ବିଦେଶୀ ଜିନିଷ ହୋଇଥିବାରୁ ଦିନେ ତାକୁ ଛଡ଼େଇ ଫୋପାଡ଼ିଦେଲେ । ଝିଅ କାନ୍ଦିବାରୁ ବିଦେଶୀ ଜିନିଷ ଭଲ ନୁହେଁ କହି ତାକୁ ବୁଝେଇ ଦେଉଥା'ନ୍ତି । ସେତେବେଳେ ଇଂରେଜ ସାମ୍ରାଜ୍ୟର ସୂର୍ଯ୍ୟ ଭାରତୀୟ ଆକାଶର ପଶ୍ଚିମ ବିନ୍ଦୁରେ ଅଧିଷ୍ଠାନ କରୁଥାଏ ।

ଗୋପବନ୍ଧୁ ବାବୁ କଟକରେ ଓକିଲାତି କରୁଥିଲାବେଳେ ନାମକୁ ମାତ୍ର ସେ ବ୍ୟବସାୟ କରୁଥିଲେ । ସେତେବେଳେ ନୀଳକଣ୍ଠ, ଗୋଦାବରୀଶ ପ୍ରଭୃତି ରେଭେନ୍‌ସା କଲେଜ ଛାତ୍ର ଥା'ନ୍ତି । ଝାଞ୍ଜିରିମଙ୍ଗଳ (?) ... ସେତେବେଳେ ଛାତ୍ରାବାସରେ ଛାତ୍ରମାନେ ନିଘୋଡ଼ ନିଦରେ ଶୋଇସାରିବା ପରେ 'ଯୁବକଉତ୍କଳ ଆସୋସିଏସନ୍'ର ଗୁପ୍ତ ବୈଠକ ବସୁଥିଲା । ଗୋପବନ୍ଧୁ ପ୍ରାୟ ଏ ବୈଠକରେ ବରାବର ଯୋଗ ଦେଉଥିଲେ । ସେ ତରୁଣ ଛାତ୍ରମାନଙ୍କୁ ଫରାସୀ ରୁଷିଆ ବିପ୍ଳବ ଓ ଇଟାଲୀ ସ୍ୱାଧୀନତାର କାହାଣୀମାନ କହି ଭାରତ ସ୍ୱାଧୀନତା ପଥ ଆକୃଷ୍ଟ କରନ୍ତି । ଶେଷକୁ ପୁରୀରେ ତାଙ୍କର ଘରେ ଏହି ତରୁଣ ଉତ୍କଳ ସଂଘର ବୈଠକ ସବୁବେଳେ ବସିଲା । ବେଳେ ବେଳେ ଏହି ଗୁପ୍ତ ଅଲୋଚନା C. I. D. ମାନେ ମଧ୍ୟ ଅନୁସନ୍ଧାନ କରୁଥିଲେ । ଗୋପବନ୍ଧୁ ଓ

ବିଶ୍ୱନାଥ କର ଛାତ୍ରମାନଙ୍କୁ ମତାଉଛନ୍ତି ଓ କୁଶିକ୍ଷା ଦେଉଛନ୍ତି ବୋଲି ପୋଲିସ ବିଭାଗ ରିପୋର୍ଟ କରିଥା'ନ୍ତି ।

## ଜୀବନର ଦୁଇବର୍ଷ —(୧୯୦୭—୧୯୦୮)

ଜୀବନର ଏହି ଦୁଇବର୍ଷ ଗୋପବନ୍ଧୁ ପତ୍ନୀ ବିଚ୍ଛେଦ-ଜନିତ ଦୁଃଖ, ଦୁଇଟି ଝିଅଙ୍କ ଭବିଷ୍ୟତ ଚିନ୍ତା ଓ ଅନିଶ୍ଚିତ ଓକିଲାତି ଜୀବନ କଥା ଭାବି ଭାବି ବହୁ ଦୁଃଖ ଓ ଦୁରବସ୍ଥାରେ କାଳ କାଟୁଥିଲେ । ବହୁ ଯତ୍ନ କରି ମଧ୍ୟ ଓକିଲାତି ବ୍ୟବସାୟ ପ୍ରତି ତାଙ୍କର ଆନୁଗତ୍ୟ ଆସୁନଥିଲା । ଆଚାର୍ଯ୍ୟ ମହାଶୟ କୁହନ୍ତି, "ଗୋପବନ୍ଧୁ ଏହି ସମୟରେ ଅତି ନୀରବ ଓ ଗମ୍ଭୀର ରହୁଥିଲେ । ତଥାପି ଅନ୍ତରର ଅଗ୍ନିଦାହକୁ ପ୍ରକାଶ ପାଇବାକୁ ଦେଉ ନଥିଲେ ।" ତାଙ୍କ 'ଅନାଥା କଳିକା' କବିତାରେ ଏଇ ଦୁଃଖ ଏକ ପ୍ରତୀକ ମାଧ୍ୟମରେ ପ୍ରକାଶ ପାଇଛି—

"ପ୍ରଣୟର ସ୍ଥାନ ନୁହେଁ ଏ ସଂସାର ଏକା
ପ୍ରେମେ ପ୍ରଣୟୀ ସଙ୍ଗତେ ହେବ ସ୍ୱର୍ଗେ ଦେଖା ।
ଏହି ଦିବ୍ୟ ସାନ୍ତ୍ୱନାରେ ଆଶ୍ୱାସିଣ ମନେ
କ୍ଷଣେ ଏଥି ରହି ଚଳ ଅମର ଭୁବନେ ।"

କିମ୍ବା "ମୋ ଜୀବନ-ବୀଣା ଯନ୍ତ୍ର-ତାର
ସ୍ୱରହୀନ ହଇଛମ ଅତି,
ଏବେ କ୍ରମେ ହେଉଛି ଅସାର,
ତେଜି ଆଦ୍ୟ ମୋହିନୀ ଶକତି ।
ମଧୁକାଳ ଆଶା-ଫୁଲରାଜି
ନିଦାଘର ତପନ କିରଣେ,
ଝାଉଁଳିଛି କି ବିଷାଦେ ଆଜି
ଗନ୍ଧହୀନ ଜୀବନ କାନନେ ।"

ଏସବୁ ବିଷାଦ ସମସ୍ୱର ଲେଖା ଗୋପବନ୍ଧୁଙ୍କ ଉପରେ ପାର୍ଥିବ ଦୁଃଖର ଅଭିକ୍ଷେପ ସମ୍ପର୍କରେ ସ୍ପଷ୍ଟ ସୂଚନା ଦିଏ । ତଥାପି ସେ ବ୍ୟକ୍ତିଗତ ଦୁଃଖକୁ ସାଧାରଣ ମଣିଷ ପରି ଜପାମାଳି କରି ଆତ୍ମବିସ୍ମୃତ ହେବାର ବ୍ୟକ୍ତି ନଥିଲେ । ତାଙ୍କ ମନରେ ଦେଶ ଓ ଜାତିର ଡାକରା ଅହରହ ବାଜୁଥିଲା । ନିଜକୁ ବ୍ୟାପକ କର୍ମ ଯୋଜନା ଓ କୃଆର ଭିତରେ ମିଶେଇ ଦେଇ ବ୍ୟକ୍ତିଗତ ଦୁଃଖକୁ ସେ ପାଶୋରି ବସୁଥିଲେ ।

୧୯୦୭ ମସିହାରେ ବ୍ରାହ୍ମଣୀ, ଖରସ୍ରୋତା ଓ ବୈତରଣୀରେ ପ୍ରବଳ ବଢ଼ି ଆସି କୂଳ

ଲାଗିଲା । କଟକ ଜିଲ୍ଲାର ଯାଜପୁର ଓ କେନ୍ଦ୍ରପଡ଼ା ସବ୍‌ଡିଭିଜନ ଜଳମଗ୍ନ ହେଲା । ଘରଦ୍ୱାର ସମେତ ବହୁ ଗୋରୁ ଗାଈ ଓ ଲୋକକ୍ଷୟ ହେଲା । ଗୋପବନ୍ଧୁ ଏ ପରିସ୍ଥିତିରେ ବିଚଳିତ ହୋଇପଡ଼ିଲେ । ରେଭେନ୍‌ସା କଲେଜ ଅଧ୍ୟକ୍ଷ ଶ୍ରୀ ଆର୍. ସି.ଙ୍କ ପରାମର୍ଶକ୍ରମେ ସେ ତୁରନ୍ତ 'Central Young Utkal Association' ନାମକ ଏକ ଅନୁଷ୍ଠାନ ଗଢ଼ିଦେଲେ । ନିଜେ ସେଥିରେ ସାଧାରଣ ସମ୍ପାଦକ ରହିଲେ ଓ ବହୁ ସଂଖ୍ୟାରେ କଲେଜ ଛାତ୍ର ଏଥିରେ ସଭ୍ୟ ଭାବରେ ଯୋଗଦେଲେ । ବ୍ରଜସୁନ୍ଦର ଦାସଙ୍କ ଘରେ ଏହାର ବୈଠକ ବସୁଥିଲା । ରେଭେନ୍‌ସା କଲେଜ ଛାତ୍ରଙ୍କୁ ନେଇ ବ୍ରଜସୁନ୍ଦର, ଅଭିରାମ ଭକ୍ତ ଓ ଗୋପବନ୍ଧୁ ଦ୍ୱାରାରେ ଚୂଲିଚୂଲି ବନ୍ୟା ପ୍ରପୀଡ଼ିତଙ୍କ ପାଇଁ ଖାଦ୍ୟ ଓ ବସ୍ତ୍ର ସଂଗ୍ରହ କଲେ ଏବଂ ବହୁ ଛାତ୍ରଙ୍କୁ ନେଇ ବନ୍ୟାବିଧ୍ୱସ୍ତ ଅଞ୍ଚଳରେ ସେବାମୂଳକ କାମରେ ଲାଗିପଡ଼ିଲେ । ତାଙ୍କ ଉପସ୍ଥିତି ପ୍ରପୀଡ଼ିତ ଜନତା ପ୍ରାଣରେ ସାହସ ଆଣିଲା । ପୁଣି କଟକ ଜିଲ୍ଲାର ବିଭିନ୍ନ ହାଇସ୍କୁଲର ଛାତ୍ରମାନଙ୍କୁ ଏହି ଅନୁଷ୍ଠାନ ମାଧ୍ୟମରେ ଲୋକସେବାମୂଳକ କାର୍ଯ୍ୟରେ ଅନୁପ୍ରାଣିତ କଲେ ।

ଏହି କରାଳ ବନ୍ୟାର ଖବର ଗୋପବନ୍ଧୁ ଓ ମଧୁବାବୁ ବାରମ୍ବାର କଲିକତାରୁ ପ୍ରକାଶ ପାଉଥିବା ଦୈନିକ କାଗଜ 'Statesman'ରେ ପ୍ରକାଶ କଲେ । ଭାରତର ବିଭିନ୍ନ ଅଞ୍ଚଳରୁ ବହୁ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏ ବାର୍ତ୍ତା ପଢ଼ି ସାହାଯ୍ୟ ଆଣି ଆଗେଇ ଆସିଲେ । କିନ୍ତୁ ସେତେବେଳେ ଯାତାୟାତର ଏତେ ସୁବିଧା ନଥିଲା । ବିଳମ୍ବ ହେଲେ ମଧ୍ୟ ଏସବୁ ଅଞ୍ଚଳରେ ସାହାଯ୍ୟ କାମ ବେଶ୍ ଆଗେଇ ପାରିଥିଲା ।

ଗୋପବନ୍ଧୁଙ୍କ ଆହ୍ୱାନ କ୍ରମେ ତତ୍‌କାଳୀନ ଓଡ଼ିଶାର ବିଶିଷ୍ଟ ନେତା ଶ୍ରୀ ମଧୁସୂଦନ ଦାସ ଏହି ବନ୍ୟାଞ୍ଚଳ ନିଜେ ବୁଲି ଦେଖିଥିଲେ । ସେତେବେଳେ ବଙ୍ଗ-ବିହାର-ଓଡ଼ିଶାର ଲେଫ୍ଟେନାଣ୍ଟ୍ ସାର୍ ଏଣ୍ଡ୍ରୁ ଫ୍ରେଜର କଟକକୁ ଆସିଥିଲେ ଓ ମଧୁବାବୁ ତାଙ୍କୁ ସାକ୍ଷାତ କରି ବିପନ୍ନ ଲୋକଙ୍କ ପାଇଁ ସରକାରୀ ସାହାଯ୍ୟ ଦାବୀ କରିଥିଲେ । କିନ୍ତୁ ମଧୁବାବୁ ପରିସ୍ଥିତିକୁ ଅତିରଞ୍ଜିତ କରୁଛନ୍ତି ମନେକରି ଫ୍ରେଜର ସାହେବ କୌଣସି ପ୍ରତିକାର କଲେ ନାହିଁ । କଟକ ମ୍ୟୁନିସିପାଲିଟି ପଡ଼ିଆରେ ସରକାରଙ୍କ ଏହି ବ୍ୟବହାରର ପ୍ରତିବାଦ ନିମନ୍ତେ ଗୋଟିଏ ସାଧାରଣ ସଭା ହୋଇଥିଲା । ବ୍ରିଟିଶ୍ ବିଲାତ ପାର୍ଲିଅମେଣ୍ଟ ସଭ୍ୟ ମି. ନେଭିନ୍‌ସନ୍ ଏହି ସଭାରେ ଉପସ୍ଥିତ ଥିଲେ । ବନ୍ୟାକ୍ଲିଷ୍ଟ ଅଞ୍ଚଳରୁ କେତେକଣ ଉପାସୀ, ଅସ୍ଥିଚର୍ମସାର ଲୋକଙ୍କୁ ଏ ସଭାକୁ ଅଣାହୋଇଥିଲା । ଗୋପବନ୍ଧୁ ବାବୁ ସେମାନଙ୍କୁ ଦେଖି ଦୀର୍ଘ ଦୁଇଘଣ୍ଟା କାଳ ଏତେ କରୁଣ ଭାବରେ କ୍ରନ୍ଦନ କରିଥିଲେ ଯେ ସଭାରେ କେହି ଅଶ୍ରୁରୋଧ କରିପାରିନଥିଲେ । ସ୍ୱୟଂ ନେଭିନ୍‌ସନ୍ ସାହେବ ବି କାନ୍ଦପକାଇ ରୁମାଲରେ ଆଖି ପୋଛୁଥିଲେ । ତଥାପି ଫ୍ରେଜର୍ ସାହେବଙ୍କ ପାଷାଣ ହୃଦୟ ତରଳିଲା ନାହିଁ । ସରକାରଙ୍କ ପକ୍ଷରୁ କୌଣସି ସାହାଯ୍ୟ ବ୍ୟବସ୍ଥା ହେଲାନାହିଁ । ଦେଶବାସୀଙ୍କ ଦାନ ଏହି ସମୟରେ ବିପନ୍ନ ଲୋକଙ୍କୁ

ଯଥେଷ୍ଟ ସାହାଯ୍ୟ କରିଥିଲା ।

ଏହା ପରେ ପରେ ପୁରୀରେ 'ଉତ୍କଳ ସମ୍ମିଳନୀ'ର ଯେଉଁ ଅଧିବେଶନ ତା ୧୮-୪-୧୯୦୮ ମସିହାରେ ବସିଥିଲା ସେଥିରେ ଗୋପବନ୍ଧୁ ଅତି ଅଧୀର ଭାବରେ କଟକ ଜିଲ୍ଲାର ବନ୍ୟା ଦୁର୍ଗତ ଅଞ୍ଚଳ ଉପରେ ଏକ ପ୍ରସ୍ତାବ ଆଣିଥିଲେ । ଏହି ପ୍ରସ୍ତାବରେ ଦଶଜଣ ସଭ୍ୟଙ୍କୁ ନେଇ ଏକ କମିଟି ମାଧ୍ୟମରେ ସ୍ଥାୟୀ ବନ୍ୟା ପ୍ରତିକାର ନିମନ୍ତେ ଉପାୟ ସ୍ଥିର କରିବା ପାଇଁ କୁହାଯାଇଥିଲା । ଆବଶ୍ୟକ ସ୍ଥଳେ ଅଧିକ ସଭ୍ୟ ଗ୍ରହଣ କରାଯିବାର ପ୍ରସ୍ତାବ ମଧ୍ୟ ଥିଲା । ଗୋପବନ୍ଧୁ ନିଜେ ପ୍ରସ୍ତାବ ଉପସ୍ଥାପିତ କରି ଅତି ବିହ୍ୱଳ ହୋଇ କହିଥିଲେ—"ସଭାପତି ଓ ଭାଇମାନେ, ମୁଁ କ'ଣ ବା ଆଜି କହିପାରିବି ? ସୁଖ ନା ଦୁଃଖ, ନା ଅଙ୍ଗେ ନିଭେଇଥିବା କଥା ? ମୁଁ ନିଜେ ବନ୍ୟାବିଧ୍ୱସ୍ତ ଅଞ୍ଚଳ ବୁଲି ବୁଲି ଦେଖିଛି । ପୁଣି ପ୍ରବଳ ବନ୍ୟାବେଳେ ନିଜ ଆଖିରେ ମୁଁ ସେ କରାଳ ଦୃଶ୍ୟ ଦେଖି ଆସିଛି । ସ୍ଥାନେ ସ୍ଥାନେ ଘରସବୁ ପାଣିସୁଅରେ ବୁଡ଼ି ରହିଛି, ଗ୍ରାମେ ଗ୍ରାମେ ଘରଦ୍ୱାରର ଚିହ୍ନବର୍ଣ୍ଣ ବି ନାହିଁ । କେଉଁଠି କେଉଁଠି ଲୋକେ ଗଛ ଡାଳରେ ବସି ରହିଛନ୍ତି । ତଳେ ପାଣିର ସୁଅ ସାପ ମୁଣ୍ଡ ଦ'ଖଣ୍ଡ କରୁଛି । କେତେକ ଘର ଗ୍ରୁଡ଼ ଉପରେ ଲୋକେ ବସିଛନ୍ତି—ଘର ପାଣିସୁଅରେ ଭାସି ଭାସି ଯାଉଛି । ସେ ଦୁଃଖ ବର୍ଣ୍ଣନା କରିବାକୁ ମୋର ଭାଷା ନାହିଁ । ଲୋକଙ୍କର ଖାଇବାକୁ ନାହିଁ, ପିନ୍ଧାଲୁଗା ବକଟେ ବି ନାହିଁ । ଏପରିକି ପାନୀୟଜଳ ବି ମିଳୁନାହିଁ । ବନ୍ୟା ଓ ଦୁର୍ଭିକ୍ଷଗ୍ରସ୍ତ ଲୋକେ ଆମରିପରି ମଣିଷ, ଆମରି ଭାଇ; ଆମକୁ ପ୍ରମାଣ କରିଦେବାକୁ ହେବ ଯେ ସେମାନେ ଆମ ଭାଇ; ବିପଦବେଳେ ସାହା ହୋଇ ଡୋକ ନେଇ ତାଙ୍କ ପାଖରେ ଠିଆ ହେବାକୁ ହେବ । ତା'ହେଲେ ସେମାନେ ଆମ ସମ୍ମିଳନୀ ପ୍ରତି ଆସ୍ଥା ପ୍ରକାଶ କରିବେ । ଆଜି ଉତ୍କଳ ଜନନୀ ଛିନ୍ନମସ୍ତା; କିନ୍ତୁ ତା' ବେକରେ ମଣିଷମୁଣ୍ଡର ମାଳ ଝୁଲୁଛି । ତାଙ୍କୁ ଭୁଲି ଆମେ ବନ୍ଦନା କରିବା ।"

ଗୋପବନ୍ଧୁଙ୍କର ଏହି ଆନ୍ତରିକ ଆହ୍ୱାନ ସମ୍ମିଳନୀ ମଣ୍ଡପରେ ବେଶ୍ ଉଦ୍ଦୀପନା ଓ କରୁଣ ବାତାବରଣ ଖେଳେଇ ଦେଇ ପାରିଥିଲା । ସମସ୍ତ ସମ୍ମିଳନୀ ଗୋପବନ୍ଧୁଙ୍କ ଆଡ଼କୁ ଦୃଷ୍ଟି ସ୍ଥିରକଲା । ଏଇ ମଣିଷ ଭିତରେ ଭବିଷ୍ୟତର ଜାତକ ଖୋଜିଲା । ଗୋପବନ୍ଧୁ ଆଖିରେ ଲୁହ ଆଉ ହୃଦରେ ଅକାତ ବେଦନା ନେଇ ମଣ୍ଡପରୁ ଓହ୍ଲାଇଲେ ।

ପୁଣି ଏଇ ସମୟରେ ଆଉ ଗୋଟିଏ ଘଟଣାରେ ଏଇ କାନ୍ଦୁରା ଜାତି-ପାଗଳ ମଣିଷଟିର ପ୍ରାଣର ଦରଦ ଫୁଟି ଉଠିଲା । ସେକଥା ସ୍ୱର୍ଗତ ଲିଙ୍ଗରାଜ ମିଶ୍ର ଲେଖିଛନ୍ତି—"କଟକ ରେଭେନ୍ସା କଲେଜ ଓଲଡବ୍ଲକ ହଷ୍ଟେଲ୍‌ର ଗୋଟିଏ ଘରେ ଥରେ ଦାସେ ଆପଣଙ୍କ ଉପରେ କେତେଜଣ ଉପର କ୍ଲାସର ବୟସ୍କ ବନ୍ଧୁ କିପରି ଗାଳି ଓ ଅଭିଯୋଗ ବର୍ଷଣ କରିଥିଲେ, ତାହା ମୋର ମନେଅଛି । ଆମେ ଫାଷ୍ଟ ଇଅର୍ କ୍ଲାସରେ ଭର୍ତ୍ତିହେବା ପରେ ବୋର୍ଡ଼ିଂରେ ଦେଖିଲୁ ଯେ ବ୍ରାହ୍ମଣ-କରଣ ବିରୋଧ ଭାବ ପ୍ରକାଶ୍ୟରେ

ଏବଂ ବୃଢ଼ ବୃଢ଼ ପ୍ରସରୁଛୁ । ସେଥିପାଇଁ ମୁଁ ଓ ମୋର ସ୍ୱର୍ଗୀୟ ବନ୍ଧୁ ଡାକ୍ତର ବାଳକୃଷ୍ଣ ମିଶ୍ର ଦୁହେଁ ଯାଇ ଥରେ ଦାସେ ଆପଣଙ୍କୁ ବୋର୍ଡ଼ିଂକୁ ଡାକି ଆଣିଲୁ । ଆମଲାଗି ଦାସେ ଆପଣେ ସେଦିନ ଅନେକ ଅହେତୁକ ଅପମାନ, ପରାଭବ ପାଇଲେ । ମନରେ କିନ୍ତୁ ସନ୍ତୋଷ ଯେ, ଦାସେ ଆପଣଙ୍କର ସେ ରାତିର କାମ ଫଳରେ ବୋର୍ଡିଂରୁ ସଙ୍କୀର୍ଣ୍ଣ ଜାତିଗତ ବିରୋଧ ଭାବ ଅନେକ ପରିମାଣରେ କମିଯାଇଥିଲା ।”

ଆଜି ଲୁହରେ ସମସ୍ୟା ସମାଧାନ କରିବାର ଦ୍ୱିତୀୟ ବ୍ୟକ୍ତିତ୍ୱ ଆଉ ଓଡ଼ିଶାରେ ଜନ୍ମ ହୋଇନାହିଁ ।

ଆଉ କେତୋଟି ଘଟଣା ଓ ଅନୁଷ୍ଠାନରେ ଗୋପବନ୍ଧୁ ନିଜକୁ ଅତି ନିବିଡ଼ ଭାବରେ ମିଶାଇ ଦେଇଥିଲେ—ସତେ ଯେପରି ଘଟଣା ଓ ସେବାର ଉପଯୋଗ ମଧ୍ୟରେ ସେ ନିଜର ବ୍ୟକ୍ତିଗତ ଦୁଃଖକୁ ଭୁଲିବାକୁ ଉଦ୍ୟମ କରୁଥିଲେ । ଏହିପରି ଗୋଟିଏ ଅନୁଷ୍ଠାନ ହେଲା ପୁରୀ କୁଷ୍ଠାଶ୍ରମ । ସମାଜ ଓ ଦୁଃସ୍ଥ ସେବା ପ୍ରତି ତାଙ୍କର ଗଭୀର ଅନୁରାଗ ଲକ୍ଷ୍ୟକରି ପୁରୀକଲେକ୍ଟର ତଦାନୀନ୍ତନ ଜିଲ୍ଲାପାଳ ତାଙ୍କୁ କୁଷ୍ଠାଶ୍ରମର ସମ୍ପାଦକ ପଦ ଯାଚି ଦେଇଥିଲେ । ଗୋପବନ୍ଧୁ ପ୍ରପୀଡ଼ିତ ବ୍ୟାଧିଗ୍ରସ୍ତ ଏଇ ଦୁଃଖୀ ଜନତାର ସେବାରେ ପ୍ରାଣପଣେ ଲାଗିଗଲେ । ଜଣେ ମହାତ୍ମା ଆପଣା ହାତରେ କୁଷ୍ଠରୋଗୀର ଘା ଧୋଇ ଦେଇଥିଲେ । ସେଥିରେ ବିକାର ନଥିଲା, ଘୃଣା ନଥିଲା । ଆଉ ଜଣେ ମହାପୁରୁଷ ଗୋପବନ୍ଧୁ—ଘରଘର, ରାସ୍ତା ଓ ଗଳି ବୁଲି ଏଇ ଦରିଦ୍ରମାନଙ୍କ ପାଇଁ ସେମାନଙ୍କ ପଥ୍ୟ ଓ ଔଷଧ ପାଇଁ ଅର୍ଥ ସଂଗ୍ରହ କଲେ । ସତେ ଯେପରି ସେମାନେ ତାଙ୍କ ନିଜ ସନ୍ତାନ, ରୋଗ ଓ ଶୋକ ଉପାସରେ ସଢ଼ି ହେଉଛନ୍ତି, ନାରଖାର ହେଉଛନ୍ତି । ନିଜ ଆୟରୁ ଦେଇ, ଦାନ ସଂଗ୍ରହ କରି ସେ କୁଷ୍ଠାଶ୍ରମକୁ ସ୍ୱଚ୍ଛଳ କରିଦେଲେ । ରୋଗୀ ପଥ୍ୟ ଓ ଔଷଧ ପାଇଲା । ଏହି ସମୟରେ ସେ କ୍ରମେ ଲୋକଙ୍କ ଭିତରେ ଏତେ ଆପଣାର ହୋଇପଡ଼ିଲେ ଯେ ତାଙ୍କୁ ମ୍ୟୁନିସିପାଲିଟି ପାଇଁ ପ୍ରତିନିଧି ହେବାକୁ ଏକରକମ ସମସ୍ତେ ବାଧ୍ୟକଲେ ଓ ସେ ପ୍ରତିନିଧି ଭାବରେ ମନୋନୀତ ହୋଇଗଲେ । ସାକ୍ଷୀଗୋପାଳ ମନ୍ଦିର ପରିଚାଳନା ବୋର୍ଡରେ ମଧ୍ୟ ତାଙ୍କୁ ସଭ୍ୟ ଭାବରେ ନିଆଗଲା ।

ସ୍ୱର୍ଗତ ରାମଚନ୍ଦ୍ରଙ୍କ ଆତ୍ମା ଗୋପବନ୍ଧୁଙ୍କୁ ସବୁବେଳେ ଆହ୍ୱାନ କରୁଥିଲା । ଜାତି ଓ ଦେଶପ୍ରାଣରେ ଅନୁବ୍ରତୀ ହେବାର ସେ ପୁଣ୍ୟ ପ୍ରେରଣା ଗୋପବନ୍ଧୁଙ୍କ ଜୀବନରେ ଭୁଲିବାର ନୁହେଁ । ତାଙ୍କ ଗଢ଼ା ‘ବ୍ରାହ୍ମଣ ସମିତି’ରେ ଗୋପବନ୍ଧୁ ଛାତ୍ରମାନଙ୍କୁ ବନ୍ଧୁ ଭାବରେ ଅନୁପ୍ରାଣିତ କଲେ । ସେମାନଙ୍କୁ ବନ୍ଧୁ ବୈଠକରେ ଉଦ୍‌ବୋଧନ ଦେଇ ସମସ୍ୟା-ସଚେତନ କଲେ । ଦେଶ ଓ ଜାତି ହିଁ ତାଙ୍କ ପାଖରେ ସବୁଠାରୁ ବଳି ମହାନ୍ ସତ୍ୟରେ କ୍ରମେ ରୂପନ୍ୟାସ ନେଲା । ତାଙ୍କ ବ୍ୟକ୍ତିଗତ ସତ୍ତା ଭିତରୁ ନବୀନ ଜାତି-ପ୍ରାଣର ଚେତନା ଫିଟିପଡ଼ିଲା ।

# କଟକରୁ ବାରିପଦା (୧୯୦୯)

୧୯୦୯ ମସିହାରେ ଗୋପବନ୍ଧୁ ପୁରୀରୁ କଟକ ଫେରି ଆସିଲେ ଓ ମଧୁବାବୁଙ୍କ ପାଖରେ ରହି ଓକିଲାତି କଲେ । 'ଉତ୍କଳ ସମ୍ମିଳନୀ' ରେ ଆଗତ ଗୋଟିଏ ପ୍ରସ୍ତାବ ଉପରେ ମଧୁବାବୁ ଓ ଗୋପବନ୍ଧୁଙ୍କ ମଧ୍ୟରେ ମତଭେଦ ହୋଇଥିବା କଥା ଆଗରୁ କୁହାଯାଇଛି । ସେତେବେଳେ ବଙ୍ଗ ବିହାର ଓଡ଼ିଶା ପ୍ରଦେଶ ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ଓଡ଼ିଶାକୁ ଅଲଗା କରି ଅନ୍ୟ ଏକ ପ୍ରଦେଶ ସହିତ ମିଶାଇବା ପ୍ରସ୍ତାବ ଯେତେବେଳେ ସରକାରୀ ସ୍ତରରେ ଆଲୋଚିତ ହେଲା ଓଡ଼ିଶା ବଙ୍ଗଳା ସହିତ ଯେପରି ଅଛି ସେହିପରି ରହୁ ବୋଲି ମଧୁବାବୁ ଯୁକ୍ତିକଲେ । ଗୋପବନ୍ଧୁ ବାବୁଙ୍କ ମତ ଥିଲା—"ଓଡ଼ିଶା ବଙ୍ଗ ସହିତ ଥାଇ ନିଜର ସ୍ୱତନ୍ତ୍ର ହରାଇଲାଣି । ଏହା ବରଂ ମଧ୍ୟପ୍ରଦେଶ ସହିତ ମିଶି ରହୁ ।" ଏହି ପ୍ରସ୍ତାବ ଉପରେ 'ଉତ୍କଳ ସମ୍ମିଳନୀ'ରେ ବହୁ ସମୟ ଧରି ବାଦ ପ୍ରତିବାଦ ଚାଲିଥିଲା ଓ ମଧୁବାବୁଙ୍କ ପ୍ରସ୍ତାବ ସେତେବେଳେ ବାସ୍ତବତା ଦୃଷ୍ଟିରୁ ଅଧିକ ଅନୁକୂଳ ବୋଲି ବହୁ ଭୋଟରେ ଗୃହୀତ ହୋଇଥିଲା । ପରେ ୧୯୧୨ ମସିହାରେ ଯେତେବେଳେ ବଙ୍ଗଳାରୁ ଅଲଗା ହୋଇ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା, ସେତେବେଳେ ମଧୁବାବୁ ପ୍ରମୁଖ ଏକ ସାଧାରଣ ସଭାରେ ଏହି ପ୍ରସ୍ତାବକୁ ସ୍ୱାଗତ ଜଣାଇଥିଲେ । ଗୋପବନ୍ଧୁ ଏହାର ପ୍ରତିବାଦ ଜଣାଇ କହିଥିଲେ -"ଓଡ଼ିଶା ସବ୍-ପ୍ରଭିନସ୍ ହେଲା ନାହିଁ ସେ 'ଶବ-ପ୍ରଦେଶ' ହେଲା । ସରକାର ଓଡ଼ିଆ ଜାତିକୁ ଗୋଟିଏ ପେଣ୍ଡୁ କରି ରଖିଛନ୍ତି । ସେତେବେଳେ ଯେଉଁ ପାଖକୁ ଇଚ୍ଛା ଗୋଡ଼ରେ ମାରି ଠେଲି ଦେଉଛନ୍ତି ।"

ମଧୁବାବୁଙ୍କର ଯାହା ଆନ୍ତରିକ ଇଚ୍ଛା ଥାଉନା କାହିଁକି ଓଡ଼ିଶାରେ ବଙ୍ଗାଳୀ ଶାସନ ଓ ସମ୍ପ୍ରସାରଣର ସେ ଘୋର ବିରୋଧୀ ଥିଲେ । ମୟୂରଭଞ୍ଜ ମହାରାଜାଙ୍କ ରାଜନୈତିକ ପରାମର୍ଶଦାତା ଥାଇ ସେ ଏକଦା ଅଧିକ ପରିମାଣରେ ଉପଯୁକ୍ତ ଯୋଗ୍ୟତାସମ୍ପନ୍ନ ଓଡ଼ିଆ ଲୋକଙ୍କୁ ଇଷ୍ଟେଟ ଶାସନ କାର୍ଯ୍ୟରେ ନିଯୁକ୍ତ କରିବାକୁ ପରାମର୍ଶ ଦେଇଥିଲେ । ଅବଶ୍ୟ ସେତେବେଳେ ଆବଶ୍ୟକ ପରିମାଣ ଉଚ୍ଚ ଶିକ୍ଷିତ ଓଡ଼ିଆଙ୍କ ଅଭାବ ଥିଲା ।

ମହାରାଜା ରାମଚନ୍ଦ୍ର ଭଞ୍ଜଦେଓ ମଧୁବାବୁଙ୍କ କଥାକୁ ସମ୍ମାନ ଦେଇ ଜଣେ ସରକାରୀ ଆଡ୍‌ଭୋକେଟ୍ ଭାବରେ ଓଡ଼ିଆ ଓକିଲଙ୍କୁ ପଠାଇବାକୁ ପତ୍ର ଦେଲେ । ମଧୁବାବୁ ଗୋପବନ୍ଧୁଙ୍କୁ ହିଁ ଉପଯୁକ୍ତ ବିବେଚନା କରି ପଠାଇଲେ । ଗୋପବନ୍ଧୁ ୧୯୦୯ ମସିହା ଶେଷ ଭାଗରେ ( ତା ୧୦ । ୧୨ । ୧୯୦୯ ) ନିଜର ନୂତନ ନିଯୁକ୍ତିରେ ଯୋଗଦେଲେ । ମହାରାଜା ରାମଚନ୍ଦ୍ରଙ୍କୁ ଓଡ଼ିଶାର ଜାତୀୟ କାର୍ଯ୍ୟରେ ଅଧିକ ଉତ୍ସାହିତ କରିବା ତାଙ୍କର ଉଦ୍ଦେଶ୍ୟ ଥାଏ । କାରଣ ସେତେବେଳେ ସମସ୍ତ ଦେଶୀୟ ରାଜ୍ୟ ମଧ୍ୟରେ ମୟୂରଭଞ୍ଜ ବୃହତ୍ତମ ଥିଲା ଓ ରାଜା ରାମଚନ୍ଦ୍ର ଭଞ୍ଜଦେଓ ଜଣେ ଉଦାର ବ୍ୟକ୍ତି ଥିଲେ । ପୁଣି

ଓଡ଼ିଶାର ଏହି ସୀମାନ୍ତ ରାଜ୍ୟରେ ସେ ବଙ୍ଗାଳୀ ପ୍ରଭାବକୁ ନ୍ୟୂନ କରିବା ପାଇଁ ଉପାୟ ପାଇଁ ମନେ ମନେ ସ୍ଥିର କରୁଥିଲେ । ବଙ୍ଗଳା ଅଧିକୃତର ଆକ୍ରମଣରୁ ବାଲେଶ୍ୱର ଓ ବାରିପଦାକୁ ଦୂରେଇ ରଖିବା ସେତେବେଳେ ଏ ଜାତି ପାଇଁ ଖୁବ୍ ବଡ଼ ଆବଶ୍ୟକତାରେ ପରିଣତ ହୋଇଥିଲା । ଜଣେ ଯୋଗଜନ୍ମା ସାଧକ କଥାଶିଳ୍ପୀ ଫକୀରମୋହନ ଏହି ଦିଗରେ ଜୀବନବ୍ୟାପୀ ପ୍ରଚଣ୍ଡ ଉଦ୍ୟମ କରି ଆସିଥିଲେ । ନ'ଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାର ସାମାଜିକ ଓ ଅର୍ଥନୀତିକ ସ୍ଥିତି ଭୁସ୍ପୁଡ଼ି ପଡ଼ିଥିଲା । ଏହି ସୁଯୋଗରେ ବଙ୍ଗାଳୀମାନେ ୧୮୬୯ ଖ୍ରୀଷ୍ଟାବ୍ଦରେ ଓଡ଼ିଆ ଭାଷାର ସ୍ୱକୀୟତା ଉପରେ ଏକ ଅଭିସନ୍ଧିମୂଳକ ଆକ୍ରମଣ ଆରମ୍ଭ କରିଥିଲେ । ତାର ମୁକାବିଲା କରିଥିଲେ ଫକୀରମୋହନ, ରାଧାନାଥ, କର୍ମଯୋଗୀ ଗୌରୀଶଙ୍କର, ମଧୁସୂଦନ ରାଓ, ବିଶ୍ୱନାଥ, ଗଙ୍ଗାଧର ଓ ସମସାମୟିକ ଅନ୍ୟ ସାହିତ୍ୟ-ରଥୀମାନେ; କିନ୍ତୁ ଶାସନ କ୍ଷେତ୍ରରେ ତଥାପି ସେମାନଙ୍କ ପ୍ରଭାବ ଅପ୍ରତିହତ ଥିଲା । ତେଣୁ ଗୋପବନ୍ଧୁ ଅନ୍ତରରେ ଓଡ଼ିଆ ଭାଷାଭାଷୀ ଏହି ସୀମାନ୍ତ ରାଜ୍ୟରେ ନିଜର କର୍ମପସରା ମେଲିଦେଲେ ।

ଗୋପବନ୍ଧୁ ତାଙ୍କ କର୍ମମୟ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଛାତ୍ରମାନଙ୍କ ସହିତ ଅଧିକ ସମ୍ପର୍କ ପ୍ରତିଷ୍ଠା କରୁଥିଲେ । ସେଇମାନଙ୍କ ଚିନ୍ତାରେ ଜାତି-ଗଠନର ଦୂରନ୍ତ ଆଗ୍ରହ ସୃଷ୍ଟି କରିବା ତାଙ୍କର ଗଠନମୂଳକ ଉଦ୍ଦେଶ୍ୟ ଥିଲା । ସେଇମାନଙ୍କ ଭିତରେ ସେ ଏକ ମହାନ ଜାତିର ଭବିଷ୍ୟତ ଖୋଜିଥିଲେ । ବାରିପଦାରେ ରହଣୀ କାଳରେ ସେ ସ୍କୁଲ ଛାତ୍ରମାନଙ୍କୁ ନେଇ 'Young Utkal Association' ନାମକ ଏକ ସମାଜସେବୀ ଅନୁଷ୍ଠାନ ଗଢ଼ିଥିଲେ । ବିପଦ ଆପଦରେ ଲୋକଙ୍କୁ ସାହାଯ୍ୟ କରିବା, ଗୃହଦାହାରେ ସ୍ୱେଚ୍ଛାସେବୀ କାର୍ଯ୍ୟ କରିବା, ବଢ଼ି ମରୁଡ଼ିରେ ଲୋକଙ୍କୁ ଭେଟିବା, ଏ ଅନୁଷ୍ଠାନର ସାମାଜିକ କାର୍ଯ୍ୟକ୍ରମ ଥିଲା । ପୁଣି ବହୁ ସମସ୍ୟା ଆଲୋଚନାରେ ଭାଗନେଇ ଗୋପବନ୍ଧୁ ସେମାନଙ୍କୁ ଦେଶର ସାମାଜିକ, ରାଜନୈତିକ ଓ ଅର୍ଥନୀତିକ ପରିସ୍ଥିତି ଉପରେ ଧାରଣା ଦେଉଥିଲେ । ବେଳେବେଳେ ଏ ଅନୁଷ୍ଠାନରେ ସାହିତ୍ୟଚର୍ଚ୍ଚା ମଧ୍ୟ ହେଉଥିଲା । ଅଳ୍ପ ଦିନ ମଧ୍ୟରେ ବାରିପଦାରେ ଏ ଅନୁଷ୍ଠାନ ମୁଣ୍ଡଟେକ ଲୋକଙ୍କ ପ୍ରଭୂତ ସାହାଯ୍ୟରେ ଆସି ପାରିଥିଲା ଓ ଲୋକମାନେ ଏହାର ଉପଯୋଗିତା ବେଶ୍ ହୃଦୟଙ୍ଗମ କରିପାରିଥିଲେ ।

ଗୋପବନ୍ଧୁ ବାରିପଦାକୁ ଯିବାର ଅଳ୍ପଦିନ ପରେ ୧୯୧୦ ମସିହା ମେ' ମାସରେ ମହାରାଜା ରାମଚନ୍ଦ୍ର ଭଞ୍ଜଦେଓ ପୃଥିବୀ ଭ୍ରମଣରେ ବାହାରିଲେ । ମହାରାଜାଙ୍କ ବିଦାୟ ଉପଲକ୍ଷ୍ୟେ ଗୋଟିଏ ବଡ଼ ସଭାର ଆୟୋଜନ ହୋଇଥିଲା । ଏହି ବିରାଟ ସାଧାରଣ ସଭାରେ ଗୋପବନ୍ଧୁଙ୍କ ଲିଖିତ ବିଦାୟ ସଙ୍ଗୀତ ଦୁଇଜଣ ଝିଅ ଅତି ଲଳିତ କଣ୍ଠରେ ଗାନ କରିଥିଲେ । ଏ ସଙ୍ଗୀତ ଶୁଣି ସମସ୍ତେ କାନ୍ଦି ପକାଇଲେ । ନିଜେ ରାଜା ମଧ୍ୟ ଅଧୀର ଓ ଶୋକାକୁଳ ହୋଇପଡ଼ିଲେ । ସହସ୍ର ସହସ୍ର ଲୋକଙ୍କ ଆଖିର ଅଶ୍ରୁଧାର ଏହି ଗୀତର କାରୁଣ୍ୟରେ ଉଚ୍ଛୁଳି ଉଠିଲା । ସେଇ ଦୀର୍ଘ କବିତାରେ ଦୁଇଟି ପଦ ଥିଲା—

"ରାମଚନ୍ଦ୍ର ମହାରାଜା ପରଜା ପରାଣ ଧନ
ଯାଉଛ କେଉଁ ବିଦେଶେ ହେ ଭଞ୍ଜ କଞ୍ଜ ତପନ ।
ସରଳ ଶୁଦ୍ଧ ସଲିଳ ଭୁଲିବ ନାହିଁ ଭୂପାଳ
ମେଘାସନ ଗୁରୁକୁଞ୍ଜ ବୁଢ଼ାବଳଙ୍ଗ ପୁଲିନ ।
ଚହ୍ଲାଡ଼ ପାହାଡ଼ ଦେଶ ଭୁଲିବ ନାହିଁ ନରେଶ
ଯେନ ହବ୍ୟ ଅବଧାନେ ଏ ବିନୀତ ନିବେଦନ ।"

ଗୋପବନ୍ଧୁଙ୍କ ସାଧୁତା ଓ ନିରଳସ ବ୍ୟକ୍ତିତ୍ୱରେ ନିଜେ ରାଜା ମୁଗ୍ଧ ହୋଇ ପଡ଼ିଥିଲେ । ଗୋପବନ୍ଧୁଙ୍କ ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ସେ ଥରେ ଅତି ନିଷ୍ଠାର ସହିତ ଗୋପବନ୍ଧୁଙ୍କୁ କହିଥିଲେ —"ଆପଣଙ୍କ ପରି ଜଣେ ସାଧୁ ବନ୍ଧୁ ପାଇ ମୁଁ ଖୁସି ଖୁସି ।" ଗୋପବନ୍ଧୁ ଗାମ୍ଭୀର୍ଯ୍ୟ, ତତ୍ପରତା, ନିଷ୍ଠା ଓ ସମାଜସେବା ପ୍ରତି ରାଜାଙ୍କର ଗଭୀର ସମ୍ମାନ ଜାଗ୍ରତ ହୋଇଥିଲା । ତାଙ୍କ ପରାମର୍ଶକ୍ରମେ ରାଜ୍ୟ ଶାସନର ସୁବିଧା ପାଇଁ ସେ ଗୋଟିଏ ଶ୍ରେଷ୍ଠ ଧରଣର ପ୍ରତିନିଧି ସଭା ଓ ମନ୍ତ୍ରୀପରିଷଦ ମନୋନୀତ କରିଥିଲେ । ଏ ଉଭୟରେ ଗୋପବନ୍ଧୁ ସଦସ୍ୟ ଥିଲେ । ରାଜାଙ୍କ ପ୍ରତି ଭୟ ପରିବର୍ତ୍ତେ ଶ୍ରଦ୍ଧା ଓ ମମତା ଜାଗ୍ରତ କରିବା ଗୋପବନ୍ଧୁଙ୍କର ଶାସନ ଖସଡ଼ାର ଦିଗ୍‌ଦର୍ଶନ ଥିଲା । ସେ ସେହି ମର୍ମରେ ସମସ୍ତଙ୍କୁ ପରାମର୍ଶ ଓ ଉପଦେଶ ଦେଉଥିଲେ । ରାଜ୍ୟ ପାଣ୍ଠିରୁ ତାଙ୍କ ଉଦ୍ୟମରେ ଗରିବ ଛାତ୍ରମାନଙ୍କ ପାଇଁ ଅଧ୍ୟୟନର ବ୍ୟବସ୍ଥା ହେଲା । ଏହି ସମୟରେ ବାରିପଦାରେ ଗୋଟିଏ 'ଅନାଥାଶ୍ରମ' ଖୋଲିବାକୁ ସେ ମହାରାଜାଙ୍କୁ ଅନୁରୋଧ କରିଥିଲେ । ଏହି ଆଶ୍ରମ ଖୋଲିବା ପଛରେ ରୂପଦେଈପୁର ଭଣ୍ଡାରିକୁଳର ସ୍କୁଲର ତାଙ୍କ କୈଶୋର ଗୁରୁ ଶ୍ରୀ ସଦାଶିବ ମିଶ୍ରଙ୍କ ସ୍ମୃତି ତାଙ୍କୁ ଆନ୍ଦୋଳିତ କରୁଥିଲା । ଛାତ୍ରବତ୍ସଳ ସଦାଶିବ ନିଃସନ୍ତାନ ଥିଲେ ଓ ଗୋପବନ୍ଧୁଙ୍କୁ ପୁଅପରି ଭଲ ପାଉଥିଲେ । ଗୋପବନ୍ଧୁ ତାଙ୍କୁ ଅନାଥାଶ୍ରମରେ ଯୋଗ ଦେବାକୁ ଚିଠି ଲେଖିଲେ—"ମୁଁ ଆପଣଙ୍କର ଗୋଟିଏ ମାତ୍ର ସନ୍ତାନ ଥିଲି । ଏଠାରେ ବହୁ ସନ୍ତାନ ଆପଣଙ୍କର ସ୍ନେହ ଓ ଶ୍ରଦ୍ଧାରେ ଅନୁପାଳିତ ହୋଇ ପାରିବେ ।" ଏ ଚିଠି ପାଇ ଶ୍ରୀ ମିଶ୍ର ବାରିପଦା ଆସିଲେ ଓ ଅନାଥାଶ୍ରମ ଦାୟିତ୍ୱରେ ଯୋଗଦେଲେ ।

ଗୋପବନ୍ଧୁ ବାରିପଦାରେ ଏକ ସୁନ୍ଦର ସାହିତ୍ୟିକ ପରିବେଶ ଗଢ଼ି ପାରିଥିଲେ । ସ୍କୁଲ ଛାତ୍ର ଓ ସ୍ଥାନୀୟ ସାହିତ୍ୟପ୍ରେମୀ ଲୋକମାନଙ୍କର ମଝିରେ ମଝିରେ ସଭା ଓ ଆଲୋଚନା ହେଉଥିଲା । ଏ ଆଲୋଚନାରେ ଗୋପବନ୍ଧୁଙ୍କର ନିମନ୍ତ୍ରଣ କ୍ରମେ ବେଳେବେଳେ ନୀଳକଣ୍ଠ, ହରିହର, ଗୋଦାବରୀଶ ଓ କୃପାସିନ୍ଧୁ ମଧ୍ୟ ଯୋଗ ଦେଉଥିଲେ । ନୀଳକଣ୍ଠ, କୃପାସିନ୍ଧୁ, ଓ ଗୋଦାବରୀଶ ସେତେବେଳେ କଲିକତା ବିଶ୍ୱବିଦ୍ୟାଳୟରେ ଏମ୍. ଏ. ପଢ଼ୁଥାଆନ୍ତି । ଯିବା ଆସିବା ରାସ୍ତାରେ ଗୋପବନ୍ଧୁଙ୍କ ପବିତ୍ର ଆକର୍ଷଣ ସେମାନଙ୍କୁ ବାରିପଦା ଟାଣିନିଏ ।

ଗୋଟିଏ ଦିନର ଘଟଣା । ରାଜ୍ୟର କୌଣସି ଡାକବଙ୍ଗଳାର ଚୌକିଦାର ଚୋରିମାମଲାରେ ଗିରଫ ହୋଇଥାଏ । ଗୋପବନ୍ଧୁ ତା'ଉପରେ ନୈତିକ ଚାପ

ପକାଇବାରୁ ସେ ସତ କଥା ପ୍ରକାଶ କରିଥିଲା । ଗୋପବନ୍ଧୁ ରାଜ୍ୟର ଓକିଲ ହେଲେ ମଧ୍ୟ ତାକୁ ଖଲାସ କରିବାପାଇଁ ତା' ପକ୍ଷ ହୋଇ ବିନା ଫିସ୍‌ରେ ଓକିଲାତି କରିଥିଲେ । ସେ ଲୋକଟି ଅତି ଗରିବ ଥିବାରୁ ଟଙ୍କା ପଇସା ଖର୍ଚ୍ଚ କରି ଓକିଲ ଦେବା ତା' ପକ୍ଷରେ ସାଧ୍ୟାତୀତ ଥିଲା । ଗୋପବନ୍ଧୁଙ୍କ ଏ ସାହସିକତା ତାଙ୍କ ଅନାବିଲ ଅନ୍ତରର ସ୍ୱଚ୍ଛ ପ୍ରତିଫଳନ ଥିଲା । ଏତେ ଶ୍ରେଷ୍ଠ କଥାଟିରେ ମଧ୍ୟ ସେ ନିଜକୁ ମିଶାଇ ଦେଉଥିଲେ ।

ମହାରାଜା ରାମଚନ୍ଦ୍ର ପୃଥିବୀ ଭ୍ରମଣରୁ ୧୯୧୧ ମସିହା ଜାନୁୟାରୀ ମାସରେ ଫେରି ଆସିଲେ । ତାଙ୍କ ଆସିବାର ବର୍ଷକ ପରେ ଏକ ଦୁର୍ଘଟଣା ଘଟିଥିଲା । ସେଦିନ ଥିଲା ୧୯୧୨ ମସିହା ଫେବୃୟାରୀ ୨୨ ତାରିଖ । ମହାରାଜା ଓ ତାଙ୍କ ଶଳା ଶିକାରକୁ ଯାଇଥିଲେ । ରାଜାଙ୍କ ଗୁଳି ରାବ ବଦଳରେ ତାଙ୍କ ନିଜ ଶଳା ଭ୍ରମରେ ଗୁଳିକରି ମାରିଦେଲେ । ଏହି ଘଟଣାରେ ସମଗ୍ର ଓଡ଼ିଶାରେ ଶୋକର କଳାଛାଇ ଖେଳିଗଲା । ଗୋପବନ୍ଧୁ ରାଜାଙ୍କ ବିୟୋଗରେ ଏତେ ଅଧୀର ହୋଇ ପଡ଼ିଲେ ଯେ ଆଉ ବାରିପଦାରେ ରହିବାକୁ ମନ କଲେ ନାହିଁ । ଏହାବ୍ୟତୀତ ଅନ୍ୟ ଏକ କାରଣ ମଧ୍ୟ ଥିଲା । ଅବଶ୍ୟ ବାରିପଦାରେ ଥିଲାବେଳେ ତାଙ୍କର ପ୍ରଚୁର ଅର୍ଥାଗମ ହେଉଥିଲା । ଏହି ଆୟରୁ ସେ ନବପ୍ରତିଷ୍ଠିତ ସତ୍ୟବାଦୀ ବନବିଦ୍ୟାଳୟ ପାଇଁ ବହୁ ଆର୍ଥିକ ସାହାଯ୍ୟ ମଧ୍ୟ କରିପାରୁଥିଲେ । ୧୯୧୨ ମସିହା ଜୁଲାଇ ମାସରେ ବିହାର ଓଡ଼ିଶା ଲେଫ୍‌ଟନାଣ୍ଟ ବାରିପଦା ପରିଦର୍ଶନରେ ଆସିବା ସ୍ଥିର ହେବାରୁ ପଲିଟିକାଲ ଏଜେଣ୍ଟ କବଡେନ୍ ରାମସେ ବାରିପଦାରେ ରହି ସମସ୍ତ ଆୟୋଜନ କରୁଥିଲେ । ସେ ଶିକ୍ଷା ବିଭାଗ ସୁପରିଣ୍ଟେଣ୍ଡେଣ୍ଟ (ଜଣେ ବଙ୍ଗାଳୀ) ଙ୍କୁ ନିଜ ଘୋଡ଼ା ଗାଡ଼ିରେ ବସିବାକୁ ଡାକି କଚୁଆନ ପାଖରେ ବସିବାକୁ ନିର୍ଦ୍ଦେଶ ଦେବାରୁ ଗୋପବନ୍ଧୁଙ୍କ ମନରେ ଏକଥା ଖୁବ୍ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ପୁନଶ୍ଚ ମହାରାଜା ରାମଚନ୍ଦ୍ରଙ୍କ ମୃତ୍ୟୁପରେ ତାଙ୍କ ପୁଅ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେଓ ନାବାଳକ ଥିବାରୁ ମୟୂରଭଞ୍ଜ ରାଜ୍ୟ 'କୋର୍ଟ ଅଫ୍ ୱାର୍ଡ଼ସ୍' ବଳରେ ଇଂରେଜ ଶାସନାଧୀନ ହେଲା ଓ ଏଥିପାଇଁ ଜଣେ ୟୁରୋପୀୟ ସୁପରିଣ୍ଟେଣ୍ଡେଣ୍ଟ ନିଯୁକ୍ତ ହେଲେ । ଖର୍ଚ୍ଚକାଟ ପାଇଁ ସରକାରୀ ଓକିଲ ପଦ ମଧ୍ୟ ଉଠାଇ ଦିଆଗଲା । ତଥାପି ଗୋପବନ୍ଧୁ ଚାହିଁଥିଲେ ସେଠାରେ ବ୍ୟକ୍ତିଗତ ଭାବରେ ଓକିଲାତି କରିପାରି ଥା'ନ୍ତେ । ଅର୍ଥ ଓ ସମ୍ମାନ ଉଭୟ ମିଳିଥା'ନ୍ତା; କିନ୍ତୁ ଆଉ ଅଧିକ କାଳ ରାଜା ରାମଚନ୍ଦ୍ରଙ୍କ ବିୟୋଗପରେ ବାରିପଦାରେ ରହିବାକୁ ତାଙ୍କ ଅନ୍ତର ଡାକିଲା ନାହିଁ । ନିଜ ଆତ୍ମ-ମର୍ଯ୍ୟାଦା ଜଗି ସେ ବାରିପଦାରୁ କଟକ ଓ ସତ୍ୟବାଦୀକୁ ଆସିବାକୁ ସିଦ୍ଧାନ୍ତ କଲେ ।

ସେତେବେଳେ ସତ୍ୟବାଦୀରେ ଗୋଟିଏ ଆକସ୍ମିକ ଘଟଣା ଘଟିଥିଲା । ସାକ୍ଷୀଗୋପାଳ ମନ୍ଦିରରେ ଜଣେ ସେବକକୁ କେତେଜଣ ମାଡ଼ ମାରୁମାରୁ ପ୍ରାଣରେ ମାରି ପକାଇଲେ । ପୁଲିସ ତରଫରୁ ସେମାନଙ୍କ ବିରୁଦ୍ଧରେ ୩୦୨ ଦଫାରେ ମକଦ୍ଦମା ରୁଜୁ ହେଲା । କଥାଟା ସତ, ଆଖ ପାଖ ଲୋକେ ସମସ୍ତେ ଜାଣିଥିଲେ । ଆସାମୀମାନେ ଗୋପବନ୍ଧୁଙ୍କ

ପାଖକୁ ଆସିଲେ । ତାଙ୍କୁ ଓକିଲ ହେବାକୁ ନେହୁନୀ ହୋଇ ଅନେକ ଟଙ୍କାର ପ୍ରଲୋଭନ ଦେଖାଇଲେ । କିନ୍ତୁ ଗୋପବନ୍ଧୁ କେଉଁଥିରେ ହେଲେ ରାଜିହେଲେ ନାହିଁ । କହିଲେ, "ମିଛକୁ ଯିବିନାହିଁ । ତୁମେ ତୁମକଥା ବୁଝ, ଅନ୍ୟ ଓକିଲ ଠିକଣା କର ।" ଏତେ ବଡ଼ ମକଦ୍ଦମା ହାତରୁ ଗଲା । ଆସାମୀମାନେ ଅନ୍ୟ ଓକିଲ ଧରି ଖଲାସ ହେଲେ ।

ଯେଉଁ ମକ୍କେଲ ନ୍ୟାୟରେ ଓ ସତ୍ୟରେ ଥାଏ, ଗୋପବନ୍ଧୁ ତାର ଘଟ ଧରି ଓକିଲାତି କରନ୍ତି । ମକ୍କେଲ ଖୋଜେ ଶତ୍ରୁକୁ କପରି ଦଣ୍ଡ ମିଳିବ, କୋରିମାନା ହେବ । ଶତ୍ରୁ ନିପାତ ହେବ । ଗୋପବନ୍ଧୁ କିନ୍ତୁ ନିଜ ମକ୍କେଲ ଉପରେ ସବୁବେଳେ ନୈତିକ ଚାପ ପକାଇ ମିଳାମିଶା ପାଇଁ ଲଗାନ୍ତି । କହନ୍ତି—"ରାଜି ହୋଇଯାଅ, ଭାଇ ଭାଇ ମିଳମିଶି ଚଳ । ମକଦ୍ଦମା ବନ୍ଦ କର ।" ଏଥିରେ କନ୍ଦ୍ଖୋର ମକ୍କେଲ ହାତରୁ ଖସେ । ନ୍ୟାୟପରାୟଣ ଲୋକ ତାଙ୍କ କଥାର କମିଆଁରେ ଅଭିଭୂତ ହୁଏ ।

## ମୟୂରଭଞ୍ଜ ଷ୍ଟେଟ୍ କାଉନ୍‌ସିଲ

ମୟୂରଭଞ୍ଜ ଷ୍ଟେଟ୍ କାଉନ୍‌ସିଲର ଅଣସରକାରୀ ସଭ୍ୟଭାବରେ ଗୋପବନ୍ଧୁ ମନୋନୀତ ହୋଇଥିଲେ ଓ ପ୍ରାୟ ଦୁଇବର୍ଷ ଏହି ଦାୟିତ୍ୱରେ ରହିଥିଲେ । ୧୯୧୦ ଫେବୃୟାରୀ ୨୫ ତାରିଖ ବୈଠକରେ ଅସ୍ତ୍ର ଆଇନ (Arms Regulation) ଚଳାଇବା ପାଇଁ ଏହି କାଉନ୍‌ସିଲର ଉପଦେଷ୍ଟା ସଭ୍ୟ ଓ ଷ୍ଟେଟ ଜଜ୍ ବାବୁ ହରିଦାସ ବୋଷ ଏକ ପ୍ରସ୍ତାବ ଆଣିଥିଲେ । ଗୋପବନ୍ଧୁ ଏହାର ବିରୋଧ କରି କହିଲେ ଯେ, "ମୟୂରଭଞ୍ଜରେ କୌଣସି ବାହ୍ୟ ବିପଦ ନ ଉପୁଜିଥିବା ବେଳେ ଏପରି ଏକ ଆଇନ ପ୍ରଚଳନ କରିବା ଅନାବଶ୍ୟକ ମନେ ହେଉଅଛି । ମୟୂରଭଞ୍ଜ ରାଜ୍ୟର ଅଣ-ଆଦିବାସୀଙ୍କ ମଧ୍ୟରେ ବହୁ ଭଦ୍ର ଓ ସଦ୍‌ବଂଶଜ ତଥା ଧନୀଲୋକ ରହିଛନ୍ତି । ସେମାନେ ଦେଶ ବିରୁଦ୍ଧରେ କିଛି କେବେ କରି ନାହାନ୍ତି—ଅଥଚ ସେମାନେ ଏହି ଆଇନ ପରିସର ଭିତରକୁ ଆସିଯିବେ । ଯଦି ବାହ୍ୟ ଶତ୍ରୁ ବିରୁଦ୍ଧରେ ଏଭଳି ଆଇନ ପ୍ରଚଳନ ପାଇଁ ମସୁଧା ହେଉଥାଏ, ତା'ହେଲେ ଭିନ୍ନକଥା ।" ଏହା ସ୍ପଷ୍ଟ ଜାଣିବାପାଇଁ ସେ ପଚାରିଥିଲେ ।

ଶ୍ରୀଯୁକ୍ତ ହରିଦାସ ବୋଷ ଉତ୍ତର ଦେଲେ—"ମୟୂରଭଞ୍ଜ ରାଜ୍ୟ ମଧ୍ୟକୁ ଯେ କୌଣସି ଧରଣର ଅସ୍ତ୍ରଶସ୍ତ୍ର ଆମଦାନି ରୋକିବା ପାଇଁ ଏହି ଆଇନ ପ୍ରଚଳନ କରାଯାଉଛି । ଏପରିକି ଆଦିବାସୀମାନେ ମଧ୍ୟ ଏଥିରୁ ବାଦ୍ ଯିବେ ନାହିଁ । ସେମାନେ ଦେଶ ମଧ୍ୟରେ ତିଆରି ହେଉଥିବା ଅସ୍ତ୍ରଶସ୍ତ୍ର କିଣିବା ଓ ବ୍ୟବହାର କରିବାପାଇଁ ଆବଶ୍ୟକ ଲାଇସେନ୍‌ସ ପାଇପାରିବେ ।"

ଏହାପରେ ସଭାପତି ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଏହି ଆଇନ ସମ୍ପର୍କରେ ବିସ୍ତୃତ ଆଲୋଚନା କଲାପରେ ଏହା ଅଧିକ ସମର୍ଥନ ଲାଭ କରି ଗୃହୀତ ହୋଇଥିଲା ।

ଏହି ଅଧିବେଶନରେ 'କୋର୍ଟଫି ଅକ୍ଟ' ଶ୍ରୀଯୁକ୍ତ ହରିଦାସ ବୋଷଙ୍କ ଦ୍ୱାରା ଆଗତ ହୋଇଥିଲା । ଏହି ପ୍ରସ୍ତାବ ଧନୀମାନଙ୍କୁ ସୁହାଇବ ଓ ଗରିବମାନଙ୍କୁ ବିପତ୍ତିରେ ପକାଇବ ବୋଲି ଗୋପବନ୍ଧୁ ଯୁକ୍ତି କରିଥିଲେ, କିନ୍ତୁ ଏହି ଆଇନ ଦ୍ୱାରା ମାଲିମକଦ୍ଦମା ରୋକାଯାଇ ପାରିବ ବୋଲି ଶ୍ରୀ ବୋଷ ମନ୍ତବ୍ୟ ଦେଇଥିଲେ । ଗୋପବନ୍ଧୁ ଏହି ଯୁକ୍ତିକୁ ଖଣ୍ଡନ କରି କହିଲେ ଯେ, ପାରିବାରିକ ବା ଗ୍ରାମ୍ୟ ବିପଦରୁ ମୟୂରଭଞ୍ଜ ରାଜ୍ୟରେ ମାଲିମକଦ୍ଦମା ବଢ଼ୁନାହିଁ । ବରଂ ଶାସନ ବିଭାଗରେ ଅଯଥା ବହୁ ଦପ୍ତର ସୃଷ୍ଟି ହେବାରୁ ଲୋକମାନେ ହଇରାଣ ହୋଇ କୋର୍ଟ କଚେରୀର ଆଶ୍ରୟ ନେଉଛନ୍ତି । ନ୍ୟାୟାଳୟର ବିଚାର ପାଇବା ପାଇଁ ଗରିବ ଲୋକମାନେ କୋର୍ଟଫି ଦାଖଲ କରି ପାରିବେ ନାହିଁ । ଏହା ସେମାନଙ୍କୁ ଅତିରିକ୍ତ ବାଧିବ । ପ୍ରଚଳିତ ଗ୍ରାମ୍ୟ ସଂସ୍ଥା ସଙ୍କାନ୍ତରେ ଉଲ୍ଲେଖ କରି ଗୋପବନ୍ଧୁ କହିଲେ ଯେ 'ସମବାୟ ଋଣ ସମିତି ଆକ୍ଟ' ପ୍ରଚଳନ ଫଳରେ ଲୋକେ ବିପଦରେ ପଡ଼ୁଛନ୍ତି । ସେପରି ପରିସ୍ଥିତି ନ ଉପୁଜିବା ଯାଏ ଏପରି ଏକ ଆଇନ ଅନୁମୋଦନ ହେବା ଉଚିତ ନୁହେଁ । ଏହା ମୟୂରଭଞ୍ଜର ଗରିବ ଜନସାଧାରଣଙ୍କ ମତ ବୋଲି ଅତି ଦୃଢ଼ତାର ସହିତ ଗୋପବନ୍ଧୁ ଯୁକ୍ତି କରିଥିଲେ ।

କିନ୍ତୁ ଏହି କାଉନସିଲର ସଭାପତି ନିଜେ ମହାରାଜା ଶେଷରେ ତାଙ୍କର ମତାମତ ଦେଇ କହିଥିଲେ—"ବିନା କରରେ କୌଣସି ରାଜ୍ୟ ଚଳିପାରିବ ନାହିଁ । ଲୋକମାନଙ୍କ ଉପକାର ନିମନ୍ତେ ଶାସନ ସଂସ୍ଥାର ପରିସର ପରିବର୍ଦ୍ଧିତ ହୋଇଅଛି । କେତୋଟି ନୂଆ ବିଭାଗ ଖୋଲିବା ଫଳରେ ରାଜ୍ୟରେ ଖର୍ଚ୍ଚ ସ୍ୱାଭାବିକ ବୃଦ୍ଧି ପାଇଛି । ପୁନଶ୍ଚ ରାସ୍ତାଘାଟ ଆଦି ଜନହିତକର କାର୍ଯ୍ୟ ବି ହେବା କଥା । ଏଥିପାଇଁ କର ବସିବା ଅପରିହାର୍ଯ୍ୟ । ବ୍ରିଟିଶ ଶାସନ ପଦ୍ଧତି ଅନୁସାରେ ଶାସନ ସଂସ୍ଥାକୁ ଚଳାଇବାକୁ ପଡ଼ୁଅଛି । ଫଳରେ ଅଧିକ ବ୍ୟୟ ହେବା ସ୍ୱାଭାବିକ । ଆମକୁ ତେଣୁ ରାଜସ୍ୱ ବଢ଼ାଇବା ପାଇଁ ପନ୍ଥା ବାହାର କରିବାକୁ ହେବ । ରାଜ୍ୟର ସମ୍ବଳ ବୃଦ୍ଧି ପାଇଲେ ଅଧିକ କାର୍ଯ୍ୟ ହୋଇପାରିବ । ନୀଳଗିରି, କେଉଁଝର ଓ କୋହ୍ଲାନରେ ଏହିପରି କୋର୍ଟଫି ବୃଦ୍ଧି କରାଯାଇଛି ।"

କିଛିକାଳ ପାଇଁ ଏହି 'କାର୍ଟ ଫି ଆକ୍ଟ'କୁ ସ୍ଥଗିତ ରଖିବାକୁ ଗୋପବନ୍ଧୁ ଏକ ସଂଶୋଧନ ପ୍ରସ୍ତାବ ଆଣିଥିଲେ । କିନ୍ତୁ ଭୋଟ ନିଆଯିବାରେ ଚାରିଜଣ ଉପଦେଷ୍ଟା ସଭ୍ୟ ଏହି ସଂଶୋଧନ ପ୍ରସ୍ତାବ ବିପକ୍ଷରେ ଓ ଦୁଇଜଣ ଅତିରିକ୍ତ ସଭ୍ୟ ସପକ୍ଷରେ ଭୋଟ୍ ଦେଇଥିଲେ । ଫଳରେ ଅଧିକ ଭୋଟରେ ସଂଶୋଧନ ପ୍ରସ୍ତାବ ନାକଚ ହେବା ସଙ୍ଗେ ସଙ୍ଗେ 'କୋର୍ଟଫି ଆକ୍ଟ' ଗୃହୀତ ହୋଇଥିଲା ।

୧୯୧୧ ମସିହା ଏପ୍ରିଲ ୭ତାରିଖରେ ଷ୍ଟେଟ୍ ବଜେଟ ଆଲୋଚନା ପାଇଁ କାଉନସିଲ୍ ଡକା ହୋଇଥିଲା । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ସଭାପତି, ଶ୍ରୀ ଏମ୍. ଏମ୍. ଧର, ଜେ. ଏ. ମାର୍ଟିନ୍, ଶ୍ରୀ ହରିଦାସ ବୋଷ୍, ଉପଦେଷ୍ଟା ସଭ୍ୟ ଥିଲେ ଏବଂ ଶ୍ରୀ ରାମହରିଜାତ୍, ଶ୍ରୀ ଗୋପବନ୍ଧୁ ଦାସ, ଶ୍ରୀ ଗୋପବନ୍ଧୁ ପଟ୍ଟନାୟକ ଅତିରିକ୍ତ ସଭ୍ୟ ଭାବରେ କାଉନ୍‌ସିଲ୍‌କୁ

ମନୋନୀତ ହୋଇଥିଲେ ।

ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଭାଷଣ ଦେଇ ବଜେଟ୍ ଉପସ୍ଥାପିତ କଲାପରେ ଗୋପବନ୍ଧୁ ଏକ ଦୀର୍ଘ ବକ୍ତବ୍ୟରେ କହିଲେ ଯେ ଶିକ୍ଷିତ ମୟୂରଭଞ୍ଜ ଯୁବକ ରାଜ୍ୟର ବଜେଟ୍‌କୁ ଯେତକ ଆଶା ଓ ଆକାଙ୍କ୍ଷା ନେଇ ଗ୍ରହଣ କରିବା କଥା ସେ ଦୃଷ୍ଟିରୁ ଉଣା କରି ନାହାନ୍ତି । କିନ୍ତୁ ଶିକ୍ଷା ଓ ସ୍ୱାସ୍ଥ୍ୟ ଦିଗରେ ରାଜ୍ୟର ଅର୍ଥ ସଙ୍କୋଚ ନୀତିକୁ ସେ ସ୍ୱାଗତ କରିପାରୁନାହାନ୍ତି । ଲୋକମାନଙ୍କ ନୈତିକ ଓ ବୈଷୟିକ ସ୍ୱଚ୍ଛଳତା ଉପରେ ଯେଉଁ ପରିମାଣରେ ଧ୍ୟାନ ଦିଆଯିବାକଥା ଏହାଦ୍ୱାରା ତାହା ହୋଇ ପାରିନାହିଁ । ମହାରାଜା ତାଙ୍କ ଭ୍ରମଣ ବେଳେ ଟୋକିଓ, ଲଣ୍ଡନ ଓ ନ୍ୟୁୟର୍କ ବୁଲି ଆସିଛନ୍ତି । ସେଠାରେ ଶିକ୍ଷାକୁ ରାଜ୍ୟର ଶ୍ରେଷ୍ଠ ସ୍ଥାନ ଦିଆଯାଇଛି । ତାହାହିଁ ଏକ ସୁଶାସନର ଭିତ୍ତି ହେବା ଉଚିତ । ବିଦେଶ ଭ୍ରମଣ କରି ନୂତନ ଅଭିଜ୍ଞତା ହାସଲ କରିଥିବା ମୟୂରଭଞ୍ଜର ରାଜାଙ୍କଠାରୁ ଏ ଦିଗରେ ଅଧିକ ପ୍ରଗତିପନ୍ଥୀ ପଦକ୍ଷେପ ଆଶା କରାଯାଉଥିଲା ।"

ଢେଙ୍କାନାଳ ଓ ବରୋଦା ରାଜ୍ୟରେ ଶିକ୍ଷାବାବଦରେ ଖର୍ଚ୍ଚର ଉଦାହରଣ ଦେଇ ଗୋପବନ୍ଧୁ କହିଲେ ଯେ ବରୋଦାରେ ଶିକ୍ଷା ବାବଦରେ ରାଜ୍ୟ ସମ୍ବଳର ଶତକଡ଼ା ଦଶଭାଗ ଖର୍ଚ୍ଚ ହେଉଥିବାବେଳେ ମୟୂରଭଞ୍ଜରେ ମାତ୍ର ଶତକଡ଼ା ୩.୫ ଭାଗ ଖର୍ଚ୍ଚ ଅଟକଳ କରାଯାଇଛି । ମୟୂରଭଞ୍ଜ ହେଉଛି ଓଡ଼ିଶାର ବରୋଦା । ସେ ରାଜ୍ୟର ସୀମିତ ସମ୍ବଳ ପ୍ରତି ଅବହିତ ଥିଲେ ମଧ୍ୟ ଶିକ୍ଷା ବାବଦରେ ଅଧିକ କିଛି ଆଶା କରୁଛନ୍ତି । ଅବଶ୍ୟ ଉଚ୍ଚପଦାଧିକାରୀ କର୍ମଚାରୀମାନେ ଶିକ୍ଷା ପ୍ରସାର ଦିଗରେ ଅଧିକ ଧ୍ୟାନଶୀଳ ହେଲେ ଏ ଦିଗରେ ଆଶାତୀତ ଅଗ୍ରଗତି ହୋଇପାରିବ ବୋଲି ଗୋପବନ୍ଧୁ ପ୍ରକାଶ କରିଥିଲେ ଏବଂ ବାରିପଦାର ଛ'ଶହ ଛାତ୍ରଙ୍କ ପାଇଁ ଅବୈତନିକ ଶିକ୍ଷାବ୍ୟବସ୍ଥା ପ୍ରଚଳନ କରିଯିବା ଉଚିତ ବୋଲି ମତ ଦେଇଥିଲେ । ଏଠି ପିଲାମାନେ ଶିକ୍ଷାପ୍ରାପ୍ତିର ବୟସରେ ଉପନୀତ ହୋଇଥିଲେ ମଧ୍ୟ ଅଭାବ ଦୃଷ୍ଟିରୁ ଏ ସୁଯୋଗ ଲଭିରୁ ବଂଚିତ ହୋଇଛନ୍ତି ବୋଲି ଗୋପବନ୍ଧୁ ଦୁଃଖ ପ୍ରକାଶ କରିଥିଲେ । ତାଙ୍କର ଏହି ଉଚ୍ଛ୍ୱାସପୂର୍ଣ୍ଣ ବକ୍ତବ୍ୟରେ ସେ କହିଥିଲେ—"ଲୋକମାନେ ଶିକ୍ଷିତ ହେଲେ ରାଜ୍ୟ କାଉନ୍‌ସିଲ୍ ଓ ଆଞ୍ଚଳିକ ସଂସ୍ଥା ପ୍ରତି ଆକୃଷ୍ଟ ହେବେ । ଲୋକମାନେ ହିଁ ରାଜ୍ୟର ଶ୍ରେଷ୍ଠ ସମ୍ପଦ; ରାଜ୍ୟର ଖଣି ଓ ବନସମ୍ପଦ ଯଥାର୍ଥ ସମ୍ପଦ ନୁହେଁ । ଗୋଟିଏ ସାମ୍ବିଧାନିକ ଶାସନ ସଂସ୍ଥା ଯେ ଜନତାର ମଙ୍ଗଳପାଇଁ ଉଦ୍ଦିଷ୍ଟ ଶିକ୍ଷାପ୍ରାପ୍ତ ଲୋକମାନେହିଁ ବୁଝନ୍ତି । ଲୋକମାନେ ନିଜର ସ୍ଥିତି ଓ ଅଧିକାର ବୁଝିବା ପାଇଁ ଯୋଗ୍ୟତା ହାସଲ କରିବା ଉଚିତ ଏବଂ ଏହା କେବଳ ଶିକ୍ଷାର ସମ୍ପ୍ରସାରଣ ଦ୍ୱାରା ହିଁ ସମ୍ଭବ ହେବ ।"

ଜନସ୍ୱାସ୍ଥ୍ୟ ନିମନ୍ତେ ନିର୍ମଳ ସ୍ୱାସ୍ଥ୍ୟପ୍ରଦ ଜଳଯୋଗାଣ କେବଳ ସରକାରଙ୍କ କର୍ତ୍ତବ୍ୟ ନୁହେଁ, ହିନ୍ଦୁଧର୍ମର ଏକ ମହାନ୍ କର୍ମ ବୋଲି ସେ ସ୍ପଷ୍ଟ ମତ ଦେଇଥିଲେ । ଅବଶ୍ୟ ତାଙ୍କ ବକ୍ତବ୍ୟର ଉତ୍ତରରେ ମିଃ ଜେ. ଏ. ମାର୍ଟିନ ଏକ ପ୍ରସ୍ତାବ ଗୃହରେ ଉପସ୍ଥାପିତ କରି

କହିଲେ ଯେ ସ୍ୱାସ୍ଥ୍ୟ ଦିଗରେ ରାଜ୍ୟସରକାର ଅବହେଳା କରୁନାହାନ୍ତି । ସମଗ୍ର ରାଜ୍ୟରେ ଏକ ଶହ କୂପ ଓ ଦୁଇ ଶହ ପୁଷ୍କରିଣୀ ଥିବା କଥା ସେ ଉଲ୍ଲେଖ କରିଥିଲେ । ଶ୍ରୀଯୁକ୍ତ ଏମ୍. ଏମ୍. ଧର ଶିକ୍ଷା ସମ୍ପର୍କରେ ଗୋପବନ୍ଧୁଙ୍କ ବକ୍ତବ୍ୟର ଉତ୍ତର ଦେଇ କହିଲେ ଯେ ରାଜ୍ୟର ଶିକ୍ଷା ବାବଦରେ ଖର୍ଚ୍ଚ ଅଟକଳ ପୂର୍ବେ ୯୦୦୦ ଟଙ୍କା ଥିବା ସ୍ଥଳେ ବର୍ତ୍ତମାନ ୪୦, ୦୦୦ ଟଙ୍କାକୁ ବୃଦ୍ଧିପ୍ରାପ୍ତ ହୋଇଅଛି । ଶ୍ରୀଯୁକ୍ତ ହରିଦାସ ବୋଷ୍ କହିଲେ ଯେ ଶିକ୍ଷା ଅପେକ୍ଷା ଲୋକମାନଙ୍କ ଜୀବନଧାରଣ ନିମନ୍ତେ ଅତ୍ୟାବଶ୍ୟକ ଯୋଜନାଗୁଡ଼ିକ ପ୍ରତି ଅଧିକ ଧ୍ୟାନ ଦିଆଯିବା ଉଚିତ । ରାଜ୍ୟର ବଡ଼ ବଡ଼ ଜଳସେଚନ ଯୋଜନାଗୁଡ଼ିକ ଲୋକମାନଙ୍କ ବୈଷୟିକ ଉନ୍ନତି ପାଇଁ ଅଭିପ୍ରେତ । ବର୍ତ୍ତମାନ ସୁଦ୍ଧା ରାଜ୍ୟରେ ମାତ୍ର ଶତକଡ଼ା ୧୬ଭାଗ ଲୋକ ଶିକ୍ଷା ପାଉଛନ୍ତି । ଅବଶ୍ୟ ସେ ତାଙ୍କ ବକ୍ତବ୍ୟରେ ବାରିପଦା ଟାଉନ୍‌ରେ ଅବୈତନିକ ବାଧ୍ୟତାମୂଳକ ପ୍ରାଥମିକ ଶିକ୍ଷା ପ୍ରଚଳନ ହେବା ସପକ୍ଷରେ ମତ ଦେଇଥିଲେ ।

ଏହାପରେ ସଭାପତି ତାଙ୍କ ବକ୍ତବ୍ୟରେ ଗୋପବନ୍ଧୁଙ୍କ ମତାମତ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରକାଶ କରି ରାଜ୍ୟର ଆର୍ଥିକ ଅନଟନ କଥା ଦର୍ଶାଇଥିଲେ । ଭାରତର ତତ୍କାଳୀନ ସାକ୍ଷର ଜନସଂଖ୍ୟାର ପରିମାଣ ଶତକଡ଼ା ଚବିଶ ଭାଗ ଥିବାସ୍ଥଳେ ମୟୂରଭଞ୍ଜ ପରି ଏକ ଅନୁନ୍ନତ ଆଦିବାସୀ ବହୁଳ ରାଜ୍ୟରେ ଏହାର ପରିମାଣ ଜନସଂଖ୍ୟାର ୧୬ଭାଗ ଥିବାରୁ ରାଜା ଆତ୍ମତୃପ୍ତି ପ୍ରକାଶ କରିଥିଲେ । ରାଜ୍ୟର ସ୍ୱାସ୍ଥ୍ୟ ଓ ଶିକ୍ଷାପାଇଁ ଲୋକମାନେ ଅଧିକ ଉଦ୍ୟମ କରିବା ଉଚିତ ଓ ଏ ଦିଗରେ ସେମାନଙ୍କୁ ବେସରକାରୀ ସଭ୍ୟମାନେ ଉତ୍ସାହିତ କରିବାପାଇଁ ରାଜା ଆହ୍ୱାନ କରିଥିଲେ ।

ଗୋପବନ୍ଧୁ ଯେ ମୟୂରଭଞ୍ଜ ରାଜ୍ୟ କାଉନ୍‌ସିଲରେ ବିରୋଧୀଦଳର ଭୂମିକା ନେଉଥିଲେ, ଏହା ତାଙ୍କ ବକ୍ତବ୍ୟରୁ ସ୍ପଷ୍ଟ ହୁଏ । ଲୋକଙ୍କର ପ୍ରକୃତ ପ୍ରତିନିଧି ଭାବରେ ସେମାନଙ୍କ ଦୁଃଖ ଓ ବେଦନା, ଆଶା ଓ ଆକାଙ୍‌କ୍ଷା ସେ ଯଥାଯଥ ଭାବରେ ଉପସ୍ଥାପିତ କରିବାରେ ଆଦୌ ମୋହମନ୍ତ ରଖୁନଥିଲେ ବା ଅବହେଳା କରୁନଥିଲେ । ତାଙ୍କର ଏହି ଅଭିଜ୍ଞତା ପରେ ବିହାର-ଓଡ଼ିଶା କାଉନ୍‌ସିଲରେ ଅଧିକ ଭାବରେ ପ୍ରକଟିତ ହୋଇଥିଲା ଓ ଲୋକସ୍ୱାର୍ଥକୁ ଉପସ୍ଥାପିତ କରିବାରେ ସେ ଅଧିକ ସକ୍ରିୟ ହୋଇ ଉଠିଥିଲେ ।

## ପଣ୍ଡିତ ହରିହର (୧୮୪୨—୧୮୭୪)

ଗୋପବନ୍ଧୁଙ୍କ ଜନ୍ମର ତିନିବର୍ଷ ପୂର୍ବରୁ ପଣ୍ଡିତ ହରିହରଙ୍କ ମୃତ୍ୟୁ ହୋଇ ସାରିଥିଲା । ପୁରୀର ଶ୍ରୀରାମଚନ୍ଦ୍ରପୁର ଶାସନ ଓଡ଼ିଶାର ବହୁ ଯୋଗଜନ୍ମା ସାଧକଙ୍କ ଜନ୍ମସ୍ଥାନ ଥିଲା । ହରିହର ସେଇ ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ୧୮ ବର୍ଷରେ ତାଙ୍କର ବିଦ୍ୟାରମ୍ଭ ହୋଇଥିଲା ଓ ୩୨ ବର୍ଷରେ ସେ ଇହଲୀଳା ସାଙ୍ଗ କରିଥିଲେ । ଭାରତର ଶ୍ରେଷ୍ଠ ପଣ୍ଡିତ

ଶଙ୍କରାଚାର୍ଯ୍ୟ ଓ ଇଂରେଜୀ ସାହିତ୍ୟର କିଟସ୍ ଓ ସେଲିଙ୍କ ପରି ପୃଥିବୀବିଖ୍ୟାତ କବି ଏହି ବୟସରେ ଇହଲୀଳା ସାଙ୍ଗ କରିଥିବା କଥା ଜଣାଅଛି । ଏହି ଅଳ୍ପ ବୟସ ମଧ୍ୟରେ ହରିହର ସଂସ୍କୃତ ଭାଷା ଓ ସାହିତ୍ୟରେ ଅସାଧାରଣ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଓଡ଼ିଶାର ପୁରୀ ଧାମରେ ସଂସ୍କୃତ କଲେଜ କରିବା କଳ୍ପନାରେ ବିଭିନ୍ନ ଦେଶୀୟ ରାଜଧାନୀକୁ ସେ ଭିକ୍ଷା ପାଇଁ ଯାଇ ବହୁ ଲୋକଙ୍କ ପରିଚୟରେ ଆସିଥିଲେ ।

ଏହିପରି ଥରେ ସେ ରାଜସ୍ଥାନର ବଳରାମପୁର କରଦ ରାଜ୍ୟରେ ପହଞ୍ଚିଲେ । ରାଜା ସେଦିନ ନ ଥାନ୍ତି । ପାରିଧିରୁ ଫେରୁ ଫେରୁ ବହୁତ ବିଳମ୍ବ ହେଲା । ପୁରୀରୁ ଆସିଥିବା ପଣ୍ଡିତଙ୍କ ସମ୍ବର୍ଦ୍ଧନା ଜଣାଇବାକୁ ରାଜା ବଡ଼ ତତ୍ପର ହୋଇ ପଡ଼ିଲେ । ଏକ ସଭାର ଆୟୋଜନ ହେଲା ।

ରାଜାଙ୍କର ସଂସ୍କୃତ ସାହିତ୍ୟରେ ପ୍ରବେଶ ଥିଲା । ସେ ପଣ୍ଡିତ ମହାଶୟଙ୍କୁ ପ୍ରଥମ ପ୍ରଶ୍ନ କଲେ—'କ୍ୱଃ ପୁର୍ବଃ' (ଆପଣଙ୍କ ଘର କେଉଁଠି) ହରିହର ସଙ୍ଗେ ସଙ୍ଗେ ଉତ୍ତର ଦେଲେ—"ପୁରୀ ପୁର୍ଣ୍ଣଃ (ପୂର୍ ନଃ)' । ରାଜା ହରିହରଙ୍କ ପାଣ୍ଡିତ୍ୟରେ ମୁଗ୍‌ଧ ହୋଇ ଯଥେଷ୍ଟ ଦାନ ଦେଇଥିଲେ । ସେ ପଣ୍ଡିତଙ୍କୁ Govt. Promissory note ଦେଲେ । (ଆଜି ଏହାକୁ ଚେକ୍ କୁହାଯାଉଛି) । ଅନେକ ହଜାର ଟଙ୍କାର ଏହି ଦାନକୁ ପଣ୍ଡିତ ହରିହର ତତ୍କାଳୀନ ବରିଷ୍ଠ ପଣ୍ଡିତ ସଦାଶିବ ମିଶ୍ର କାବ୍ୟକଣ୍ଠଙ୍କ ହାତରେ ଦେଇଥିଲେ । ପଣ୍ଡିତ ସଦାଶିବ ସେତେବେଳେ ପୁରୀ ଜିଲ୍ଲା ସ୍କୁଲର ହେଡ୍ ପଣ୍ଡିତ ଥିଲେ ଓ ଏକ କଲେଜ ପ୍ରତିଷ୍ଠା ପାଇଁ ଖୁବ୍ ଉଦ୍ୟମ କରୁଥିଲେ । ହରିହରଙ୍କ ମୃତ୍ୟୁ ପରେ ପୁରୀରେ ସଦାଶିବ ସଂସ୍କୃତ କଲେଜ ଓ ହରିହର ଟୋଲ୍ ପ୍ରତିଷ୍ଠିତ ହୋଇଅଛି ।

ପଣ୍ଡିତ ହରିହର ବଡ଼ ବକ୍ତା ଥିଲେ । କଲିକତାରେ ମହର୍ଷି ଦେବେନ୍ଦ୍ରନାଥ ଟାଗୋରଙ୍କ ଘରେ ତତ୍କାଳୀନ ପଣ୍ଡିତ ଦୟାନନ୍ଦ ସରସ୍ୱତୀଙ୍କୁ ଯୁକ୍ତିତର୍କରେ ପରାସ୍ତ କରିଥିଲେ । ଏହି ବକ୍ତୃତା ପ୍ରତିଯୋଗିତାରେ ସେ ଏତେ ଉତ୍ତେଜିତ ହୋଇ ପଡ଼ିଥିଲେ ଯେ ପରେ ପରେ ସେ ମୂକ ହୋଇଗଲେ । ଡାକ୍ତରମାନେ ମତ ଦେଲେ ଯେ ତାଙ୍କ ମସ୍ତିଷ୍କର ଶିରାଗୁଡ଼ିକ ଖୁବ୍ ଆନ୍ଦୋଳିତ ହୋଇ ଫାଟିଗଲା । ପରେ ସେ ପୁରୀରେ ତରୁଣ ବୟସରେ ଦେହତ୍ୟାଗ କରିଥିଲେ ।

ଏହି ସମାଜସଂସ୍କାରକ, ବାଗ୍ମୀ, ଜଗନ୍ନାଥ ସଂସ୍କୃତିର ପରମ ସାଧକଙ୍କ ପ୍ରତି ଗୋପବନ୍ଧୁଙ୍କ ଚିତ୍ତରେ ଅସୀମ ଶ୍ରଦ୍ଧା ଓ ଭକ୍ତି ଜାତ ହୋଇଥିଲା । ତାଙ୍କର ଜନ୍ମ ଓ ଶ୍ରାଦ୍ଧ ଉପଲକ୍ଷ୍ୟେ ଗୋପବନ୍ଧୁ ଶ୍ରୀରାମଚନ୍ଦ୍ରପୁର ଶାସନକୁ ଆସି ସଭାର ଆୟୋଜନ କରୁଥିଲେ ଓ ଅନ୍ତରର ଏକାନ୍ତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଥିଲେ । ହରିହରଙ୍କ ବୟସ୍କ ଗ୍ରାମବାସୀଙ୍କ ଠାରୁ ଓ ଦୂରଦୂରାନ୍ତରରୁ ସେ ଯେତେ ଅଧିକ ଶୁଣୁଥିଲେ ସେତେ ତାଙ୍କ ଅନ୍ତର ଅନାବିଳ ଶ୍ରଦ୍ଧାରେ ଭରି ଉଠୁଥିଲା । ମୃତ୍ୟୁର ବର୍ଷକ ପୂର୍ବରୁ ହରିହର ମୂକ ହୋଇ ଯାଇଥିଲେ । ଗୋପବନ୍ଧୁ ଯଥାର୍ଥରେ ଲେଖିଥିଲେ—

'ମୂକ ହୋଇ କରି ଆଜନ୍ମଯାଏ ହରି
ଯହିଁ ରହିଥାନ୍ତି ବଂଚି
ଓଡ଼ିଆଙ୍କ ହାତେ ଦେଇଥାନ୍ତି ସତେ
ହିମ୍ମତ-ଭଣ୍ଡାର କୁଂଚି ।

ସେ ହରିହର ନାହାନ୍ତି; କିନ୍ତୁ ତାଙ୍କ ବ୍ୟକ୍ତିତ୍ୱର ସ୍ପର୍ଶ ରହିଯାଇଛି ଗୋପବନ୍ଧୁଙ୍କ ଠାରେ । ସେ ହିମ୍ମତ ଭଣ୍ଡାରର କୁଂଚି ଯଥାର୍ଥରେ ମଧୁବାବୁ ଓ ଗୋପବନ୍ଧୁଙ୍କ ପାଖରେ ହିଁ ରହିଗଲା । ସେ ସ୍ୱତ୍ୱର ଅସଦ୍‌ବ୍ୟବହାର ହୋଇନାହିଁ । ଓଡ଼ିଶା ଗନ୍ତାଘର ପାଇଁ ପଣ୍ଡିତ ହରିହରଙ୍କ ଉପଚିତ୍ତ ସ୍ୱର୍ଣ୍ଣମାଳିକାର ଅପଚୟ ଘଟିନାହିଁ ।

## ସତ୍ୟବାଦୀ—ଏକ ଜାତୀୟ ଦର୍ଶନ (୧୯୦୯)

ଗୋପବନ୍ଧୁଙ୍କ ଜୀବନରେ ପଣ୍ଡିତ ହରିହର ଦାସ ଓ ମୁକ୍ତ୍ୟାର ରାମଚନ୍ଦ୍ର ଦାସଙ୍କ ସ୍ମୃତି ଭୁଲିବାର ନୁହେଁ । କଲେଜରେ ପାଠ ପଢ଼ୁଥିବାବେଳେ ଗୋପବନ୍ଧୁ ପ୍ରତି ବର୍ଷ ପାର୍ବଣରେ ଶ୍ରୀରାମଚନ୍ଦ୍ରପୁର ଆସି କୁମାର ପୂର୍ଣ୍ଣିମୀରେ ହରିହରଙ୍କ ସ୍ମୃତି ପାଳନ କରୁଥିଲେ । ସେଥିପାଇଁ ସ୍ମୃତିସଭାର ଆୟୋଜନ ହେଉଥିଲା ଓ ସମସ୍ତେ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଥିଲେ । ନିଜ ଉଦ୍ୟମରେ ଗ୍ରାମରେ ଭାଗବତ ପାରାୟଣ ଓ ଏଠାରେ ହରିହରଙ୍କ ସ୍ମୃତି ସଭା ମାଧ୍ୟମରେ କ୍ରମେ ନୀଳକଣ୍ଠ ଓ କୃପାସିନ୍ଧୁଙ୍କ ସହିତ ଗୋପବନ୍ଧୁଙ୍କର ପରିଚୟ ହୋଇ ଯାଇଥାଏ । ଗୋପବନ୍ଧୁ ଶ୍ରୀ ରାମଚନ୍ଦ୍ରପୁର ଆସିଲେ ତାଙ୍କ ସହପାଠୀ ଗୋପୀନାଥ ଦାସଙ୍କ ଘରେ ୬ । ୭ ଦିନ ରହନ୍ତି ଓ ଏଠାରେ ଦେଶ ବିଦେଶ କଥା ଓ ସାମାଜିକ କଲ୍ୟାଣପ୍ରଦ କାର୍ଯ୍ୟାବଳୀ ଆଦି ବିଷୟରେ ଆଲୋଚନା ହୁଏ । ଏ ଆଲୋଚନାରେ ପ୍ରଚାରକ ଅନନ୍ତ ମିଶ୍ର ମଧ୍ୟ ଯୋଗ ଦିଅନ୍ତି । ଆଚାର୍ଯ୍ୟ ହରିହର ସହିକେ ତ କଲେଜ ବୋର୍ଡିଂର ସାଥୀ, ପୁଣି ଏହି ଗ୍ରାମର ବାସିନ୍ଦା । ଗୋପବନ୍ଧୁଙ୍କ ନିଷ୍ଠା ଓ ବନ୍ଧୁତ୍ୱ ଏମାନଙ୍କୁ ଖୁବ୍ ଆକୃଷ୍ଟ କରିଥାଏ । ଓଡ଼ିଶାରେ ଶିକ୍ଷାର ପ୍ରସାର ନିମନ୍ତେ ଗୋପବନ୍ଧୁ ସବୁବେଳେ ଏହି ଆଲୋଚନାରେ ଗଭୀର ଆଗ୍ରହ ପ୍ରକାଶ କରନ୍ତି । ତାଙ୍କର ଦୃଢ଼ ମତ ହୋଇଥାଏ ଯେ ଶିକ୍ଷା ପ୍ରସାର ନ ହେଲେ ଇଂରେଜୀ ଶାସନ ନିଗଡ଼ରୁ ଭାରତ ମୁକ୍ତି ପାଇବ ନାହିଁ କିମ୍ବା ଅଜ୍ଞାନ କୁସଂସ୍କାର ଘୁଞ୍ଚିବ ନାହିଁ । ପୁଣି ଏକ ନୂତନ ତଥା ଗଠନମୂଳକ ଶିକ୍ଷାପ୍ରଣାଳୀ ପ୍ରଚଳନ ପାଇଁ ଗୋପବନ୍ଧୁଙ୍କ ମନରେ ଏକାନ୍ତ ଆଗ୍ରହ ରହିଥାଏ । ଇଂରେଜୀ ଶିକ୍ଷା ଯୁବକମାନଙ୍କୁ କେବଳ ଚାକିରୀ ଅଭିମୁଖୀ କରି ପକାଉଛି ଓ ସ୍ୱାଧୀନତା ଚେତନା ଗ୍ରାସ କରି ବସୁଛି— ଏହା ସେ ମର୍ମେ ମର୍ମେ ଅନୁଭବ କରୁଥାନ୍ତି ।

ସେତେବେଳେ ଶ୍ରୀରାମଚନ୍ଦ୍ରପୁର ଗ୍ରାମରେ ଗୋଟିଏ ଭର୍ଣ୍ଣାକୁଲାର ସ୍କୁଲ ଥାଏ । ଶ୍ରୀରାମଚନ୍ଦ୍ରପୁର ସ୍କୁଲକୁ ଏମ୍. ଇ. ସ୍କୁଲରେ ପରିଣତ କରିବାକୁ ଉଦ୍ୟମ ହେଉଥାଏ । ବିଶେଷତଃ ରାଜ୍ୟ ପ୍ରଶାସନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଶ୍ରୀ ଗୋପୀନାଥ ଦାସ ଡେପୁଟୀ ହେଲା ପରେ ଏ ଗ୍ରାମର ସମସ୍ତ ଶିକ୍ଷିତ ଲୋକେ ଏମ୍. ଇ ସ୍କୁଲ ପାଇଁ ଆଶା ପ୍ରକାଶ କରୁଥାନ୍ତି; କିନ୍ତୁ ପରେ ବିଶ୍ୱନାଥପୁରରେ ଶ୍ରୀ ରାମଚନ୍ଦ୍ରପୁର ମଧ୍ୟସ୍ଥଳୀ ସତ୍ୟବାଦୀରେ ଏମ୍. ଇ. ସ୍କୁଲ କରିବା ପାଇଁ ସମସ୍ତେ ଏକମତ ହେଲେ । କାରଣ ରାମଚନ୍ଦ୍ରପୁର ଓ ବିଶ୍ୱନାଥପୁରର—ଏ ଉଭୟ ସ୍ଥାନ ମଧ୍ୟରୁ କେଉଁ ସ୍ଥାନରେ M.E. ସ୍କୁଲ ହେବ ଏହା ବିବଦମାନ ଥାଏ । ସେତେବେଳେ ଭର୍ଣ୍ଣାକୁଲାର ସ୍କୁଲ ପାଇଁ ସରକାରୀ ଗ୍ରାଣ୍ଟ ମାତ୍ର ବାର ଟଙ୍କା ଆଠ ଅଣା ଥାଏ ।

ଶ୍ରୀରାମଚନ୍ଦ୍ରପୁର ଶାସନ ଅଧିବାସୀମାନେ ଅପେକ୍ଷା ନ କରି ଅସ୍ଥାୟୀ ଭାବରେ ମାଇନର ସ୍କୁଲ ଖୋଲି ପାଠ ପଢାଇବାର ଆୟୋଜନ କରିଦେଲେ । ସରକାରୀ ନିୟମ ଅନୁସାରେ ଶିକ୍ଷାବିଭାଗ ଉଚ୍ଚ କର୍ତ୍ତୃପକ୍ଷ ପରିଦର୍ଶନ କରି ସୁପାରିଶ କଲେ ସ୍କୁଲ ମଞ୍ଜୁରୀ ହେବାର କଥା । ସେତେବେଳେ ମଧୁସୂଦନ ରାଓ ଥା'ନ୍ତି ଶିକ୍ଷା ବିଭାଗର ପରିଦର୍ଶକ (Inspector of Schools-1907) । ସେ ଶ୍ରୀରାମଚନ୍ଦ୍ରପୁର ସ୍କୁଲ ପରିଦର୍ଶନରେ ଆସି ବିଶ୍ୱନାଥପୁର ସ୍ଥାନର ଲୋକମାନଙ୍କ ଅଭିଯୋଗ ମଧ୍ୟ ଶୁଣିଲେ । ଶେଷକୁ ସତ୍ୟବାଦୀ ଦେଉଳ ପଛଆଡ଼ ତୋଟାରେ ଉଭୟ ଗ୍ରାମବାସୀଙ୍କ ଉଦ୍ୟମରେ M E. ସ୍କୁଲ କରିବାକୁ ସେ ପରାମର୍ଶ ଦେଲେ । ଏଥିରେ ବିଶ୍ୱନାଥପୁର ଲୋକମାନଙ୍କର ମଧ୍ୟ ମତ ରହିଲା । ମଧୁସୂଦନ ରାଓଙ୍କ ପ୍ରାଣରେ ହରିହରଙ୍କ ପୁଣ୍ୟ ପ୍ରଭାବ ଅତି ସାକ୍ଷାତ ଭାବରେ ପଡ଼ିଥିଲା । ପୁଣି ଏହି ସ୍ଥାନ ବାଛିବା ମୂଳରେ ପଣ୍ଡିତ ହରିହରଙ୍କ ସ୍ମୃତି ତାଙ୍କୁ ଅଧିକ ଆଲୋଡ଼ିତ କରିଥିଲା । ମଧୁବାବୁଙ୍କ ପ୍ରେରଣାରେ ସତ୍ୟବାଦୀଠାରେ ଏ ସ୍କୁଲ ଖୋଲା ହେବା ପରେ ଶ୍ରୀ ରାମଚନ୍ଦ୍ରପୁର ପ୍ରସ୍ତାବିତ ଏମ୍: ଇ: ଓ ଭର୍ଣ୍ଣାକୁଲାର ସ୍କୁଲର ସମସ୍ତ ଆସବାବ ଏଠାକୁ ଉଠି ଆସିଲା । ଏପରିକି ସ୍କୁଲ ଲାଇବ୍ରେରୀ (ହରିହର ଲାଇବ୍ରେରୀ) ଓ କଳାପଟା ପର୍ଯ୍ୟନ୍ତ ସବୁ ଜିନିଷ ଏଠାକୁ ଉଠାଇ ଅଣାହେଲା । ଭର୍ଣ୍ଣାକୁଲାର ଓ ପ୍ରସ୍ତାବିତ ଏମ୍. ଇ. ସ୍କୁଲର ତତ୍କାଳୀନ ହେଡପଣ୍ଡିତ ଶ୍ରୀ ମଧୁସୂଦନ ମିଶ୍ର ସତ୍ୟବାଦୀ ସ୍କୁଲ ଗଢିବାକୁ ସଙ୍କଳ୍ପ କରି ଆସିଲେ । ତାଙ୍କର ନିଷ୍ଠା ଓ ଐକାନ୍ତିକତା ପାଇଁ ଗୋପବନ୍ଧୁ ତାଙ୍କୁ ବିଶେଷ ଆଦର କରୁଥିଲେ ।

ଏହି ମାଇନର ସ୍କୁଲ ସ୍ଥାପିତ ହୋଇଗଲା । ପୁଣ୍ୟଶ୍ଳୋକ ପଣ୍ଡିତ ହରିହରଙ୍କ ପବିତ୍ର ସ୍ମୃତି ପୀଠରେ ଗୋପବନ୍ଧୁଙ୍କ କଳ୍ପନା ଓ ଯୋଜନାର ଶରୀର ଧରି ଠିଆ ହେଲା ସତ୍ୟବାଦୀ ମଧ୍ୟଇଂରାଜୀ ବିଦ୍ୟାଳୟ । 'ଶୁଭଦିଆ' ଉତ୍ସବ ହେଲା । ସେଦିନ ଥାଏ ପଣ୍ଡିତ ହରିହରଙ୍କ ଜନ୍ମତିଥି କୁମାରପୂର୍ଣ୍ଣିମୀ ୧୯୦୯ ମସିହା । ନୀଳକଣ୍ଠ ବାବୁ ସେତେବେଳକୁ ବି. ଏ. ପାଶ୍ କରି ଏହି 'ଶୁଭଦିଆ' ଉତ୍ସବରେ ଯୋଗ ଦେଇଥିଲେ । ପରେ ହାଇସ୍କୁଲରେ

ରହିବା ପାଇଁ ଉପଯୁକ୍ତ ଯୋଗ୍ୟତା ହାସଲ କରିବାକୁ ଗୋପବନ୍ଧୁଙ୍କ ପ୍ରେରଣାରେ ସେ ଏମ୍. ଏ. ଡିଗ୍ରୀ ପାଇଁ କଲିକତା ଗଲେ ।

ଏହାପରେ ଗୋଟିଏ ଉଚ୍ଚକୋଟୀର ହାଇସ୍କୁଲ ପ୍ରତିଷ୍ଠା କରିବାପାଇଁ ଗୋପବନ୍ଧୁ ବିଭିନ୍ନ ସ୍ଥାନ ଉପରେ ଆଖି ପକାଉଥାନ୍ତି । ଏପରିକି ମୟୂରଭଞ୍ଜଠାରୁ ଗଞ୍ଜାମ ପର୍ଯ୍ୟନ୍ତ ବହୁ ଅଞ୍ଚଳରେ ସେ ଏଥିପାଇଁ ଅନୁସନ୍ଧାନ କରୁଥା'ନ୍ତି । ସୀମାନ୍ତ ଅଞ୍ଚଳରେ ଏକ ଜାତୀୟ ବିଦ୍ୟାଳୟ କରି ଓଡ଼ିଆ ଭାଷା ଓ ସଂସ୍କୃତିକୁ ସଂପ୍ରସାରିତ କରିବା ତାଙ୍କର ଲକ୍ଷ୍ୟ ଥାଏ । ଶେଷକୁ ମଧୁସୂଦନ ରାଓ ଦିନେ କଥାବାର୍ତ୍ତା ପ୍ରସଙ୍ଗରେ କହିପକାଇଲେ ସତ୍ୟବାଦୀର ବଉଳ ଝୁଣ୍ଟିଆନା ବଣ ଏଥିପାଇଁ ସବୁଠାରୁ ବଳି ଉପଯୁକ୍ତ । ଠିକ୍ ହେଲା ସେହିଠାରେ ସ୍କୁଲ ହେବ । ଶଗଡ଼େ ଇଟା ଧରି ସତ୍ୟବାଦୀ ମନ୍ଦିର ପଛଆଡ଼େ ଗୋପବନ୍ଧୁ ଓ ନୀଳକଣ୍ଠ ପହଞ୍ଚିଲେ । ହାତରେ ଗୋଟିଏ ମାପ ଫିତା ବି ଥାଏ । ଗ୍ରେଟ ବଡ଼ ଝୁଣ୍ଟିଅନାଗଛର ଘନ ଜଙ୍ଗଲ । ସିଧା କରି ଫିତା ଧରିବାକୁ ସୁବିଧା ନାହିଁ । ଇଟା କେଉଁଠାରେ ରହିବ ତା'ବି ଜଣା ନାହିଁ । ମାତ୍ର ତାହାହିଁ ଥିଲା ବିଶାଳ ସତ୍ୟବାଦୀ ସ୍କୁଲର ଭୌତିକ ଆରମ୍ଭ ।

ପ୍ରାଚ୍ୟ ପାଶ୍ଚାତ୍ୟ ଶିକ୍ଷାର ସମନ୍ୱୟ ଗୋପବନ୍ଧୁଙ୍କ ଜୀବନର ବଡ଼ ଉଦ୍ଦେଶ୍ୟ ଥିଲା । ତେଣୁ ଝୁଣ୍ଟିଅନା ବଣରେ ପ୍ରକୃତିର ସୁରମ୍ୟ କୋଳରେ ଗୁଳଘରଟିଏ ତିଆରି ହେଲା । କେତେବେଳେ ବର୍ଷାଦିନେ ଏଇ ଗୁଳଘରେ, କେତେବେଳେ ଗଛତଳେ ଖୋଲା ଜାଗାରେ ପାଠପଢ଼ା ଚାଲିଲା । ଭବିଷ୍ୟତରେ ସେହି ବନ ବିଦ୍ୟାଳୟ ଓଡ଼ିଶାରେ ଏକ ଜାତୀୟ ଦର୍ଶନର ବାର୍ତ୍ତା ବିସ୍ତାରିଲା, ଉଦ୍ଦେଶ୍ୟର ମହାନତାରେ ଓଡ଼ିଶାରେ ଏକ ନୂତନ ଇତିହାସର ଅଙ୍କ ସୃଷ୍ଟି କଲା ଏହା ତାହାର ଅସ୍ପମାରମ୍ଭ ମାତ୍ର; କିନ୍ତୁ ନୀଳକଣ୍ଠ ବାବୁ ଏଥିରେ ଏକମତ ହେଉ ନ ଥା'ନ୍ତି । ସେ ବଡ଼ କୋଠାଘର କରିବାର ସପକ୍ଷରେ ଥା'ନ୍ତି । ସେତେବେଳେ ଆଚାର୍ଯ୍ୟ ହରିହର ପ୍ୟାରିମୋହନ ଏକାଡେମୀ ସ୍କୁଲର ଶିକ୍ଷକ । ନୀଳକଣ୍ଠ ପରେ ଏମ୍. ଏ. ପାଶ କରି ଆସି ୧୯୧୧ ମସିହା ଅକ୍ଟୋବର ମାସରେ ତତ୍କାଳୀନ ଏମ୍. ଇ. ସ୍କୁଲରେ ଯୋଗଦେଲେ । ୧୯୧୨ ମସିହା ଆରମ୍ଭରୁ ହାଇସ୍କୁଲ କରିବା ପାଇଁ ଉଦ୍ୟମ ଆରମ୍ଭ ହେଲା । ହରିହର ୧୯୧୨ ରେ ଆସି ହାଇସ୍କୁଲରେ ଯୋଗଦେଲେ । ଗୋପବନ୍ଧୁ ବାବୁ ଏ ସ୍କୁଲର ସମ୍ପାଦକ ରହିଲେ ।

ପ୍ରଥମେ ନୀଳକଣ୍ଠ ମାସିକ ଟ ୩୦-୦୦ ବେତନରେ ପ୍ରଧାନ ଶିକ୍ଷକ ରୂପେ ନିଯୁକ୍ତ ହେଲେ । ପରେ ତାଙ୍କ ଶଳା ଓ ଭଣଜାର ପାଠପଢ଼ା ଦୃଷ୍ଟିରୁ ତାଙ୍କୁ ଟ ୪୦-୦୦ ମାସିକ ବେତନ ଦିଆହେଲା । ହରିହର ଦାଶ ଏକାଡେମୀ ସ୍କୁଲରୁ ଇସ୍ତଫା ଦେଇଆସିଲେ । ସେଠାରେ ସେ ପାଉଥିବା ମାସିକ ବେତନ ଟ୫୦-୦୦ ସତ୍ୟବାଦୀ ବିଦ୍ୟାଳୟରେ କାଏମ୍ ରହିଲା । ତା'ପରେ ଆସିଲେ ଗୋଦାବରୀଶ । ତାଙ୍କ ଆସିବା ପଛରେ ଏକ ଜୀବନ୍ତ ସ୍ମୃତିରହିଛି । ଭବରାଜ୍ୟରେ ସେ ସ୍ମୃତିର ମୃତ୍ୟୁ ନାହିଁ । ଗୋପବନ୍ଧୁଙ୍କ ପ୍ରଭାବ ଓ

ବନ୍ଧୁ ଅଗରେ ବଡ଼ଲୋକ ହେବାର ସମସ୍ତ ଅଳୀକ ମୋହ ଓ ଇନ୍ଦ୍ରଜାଲକୁ ଛିନ୍ନ କରି ସେ ବି ଏଠାକୁ ଆସିଲେ । ମାତ୍ର ଗୋଟିଏ ଚିଠି ଯେଉଁ ଚିଠିରେ ଗୋପବନ୍ଧୁ ଲେଖିଥିଲେ —"ଗୋଦାବରୀଶ, ତୁମେ କଲିକତା ମୂକ ବଧୀର ବିଦ୍ୟାଳୟରେ ଶିକ୍ଷକ ହେବା ପାଇଁ ଉଚ୍ଚଶିକ୍ଷା ଆଶାରେ ବିଲାତ ଯାଉଛ । ଏଣେ ଓଡ଼ିଶାର ଲକ୍ଷ ଲକ୍ଷ ମୂକ ବଧୀରଙ୍କ କଥା କ'ଣ ଭୁଲିଗଲ ।" ଗୋପବନ୍ଧୁଙ୍କ ସ୍ୱର ଘନ ଶଙ୍ଖ ନାଦ ଭଳି ଦୂରରୁ ତାଙ୍କ କାନରେ ପଡ଼ିଲା । ସେ ଚମକି ପଡ଼ିଲେ । ସେଇ ମୁହୂର୍ତ୍ତରେ ସରକାରୀ ଖର୍ଚ୍ଚରେ ବିଲାତ ଯାଇ ୟୁରୋପ ଓ ଆମେରିକା ଭ୍ରମଣର ଆଗ୍ରହ ପୁଣି କଲିକତା ମୂକ ବଧୀର ବିଦ୍ୟାଳୟର ଉପାଧ୍ୟକ୍ଷ ପଦବୀ ସବୁ କଳ୍ପନା ଜଳ୍ପନାର ଇତି ହେଲା । ସେ ବି ଏମ୍. ଏ. ପାସ କରି ଆସି ସତ୍ୟବାଦୀରେ ଯୋଗ ଦେଲେ (୧୯୧୪) ।

ଗୋଦାବରୀଶ ସପରିବାର ଆସିଲେ । ସାଙ୍ଗରେ ସ୍ତ୍ରୀ, କନ୍ୟା ଜଣେ ଲେଖାଯୋଖା ନାଟି । ପତ୍ନୀ ତାଙ୍କର ସନ୍ତାନସମ୍ଭବା ଥା'ନ୍ତି । ଏମାନେ ସମସ୍ତେ ସତ୍ୟବାଦୀରେ ବସା ଭଡ଼ା ନେଇ ରହିଲେ । ତାଙ୍କୁ କେତେ ଦରମା ଦେବାକୁ ହେବ ଗୋପବନ୍ଧୁ ପ୍ରଥମେ ସ୍ଥିର କରି ପାରିଲେ ନାହିଁ । ଶେଷରେ ସ୍ଥିର ହେଲା ତାଙ୍କ ପରିବାରରେ ଯାହା ଉଚିତ ଖର୍ଚ୍ଚ ହେବ—ତା' ସେ ଦରମା ଆକାରରେ ପାଇବେ । ଶିକ୍ଷକ ହରିହରଙ୍କ ଉପରେ ଏ ଖର୍ଚ୍ଚ ହିସାବ ରଖିବାର ଦାୟିତ୍ୱ ପଡ଼ିଲା । ଅନ୍ୟମାନଙ୍କଠାରୁ ତାଙ୍କୁ ଅଧିକ ଦରମା ମିଳିଲା ।

ତା'ପରେ ଆସିଲେ ଶ୍ରୀ କୃପାସିନ୍ଧୁ ମିଶ୍ର, ଏମ୍. ଏ. । ସେ ସସ୍ତ୍ରିକ ବସା ନେଇ ରହିଲେ । ସେ କହିଲେ ତାଙ୍କର ମାସିକ ଟ ୫୦.୦୦ ମାତ୍ର ଦରକାର । ତାହାହିଁ ଶେଷ ପର୍ଯ୍ୟନ୍ତ ତାଙ୍କ ଦରମାର ହାର ଥିଲା । ସତ୍ୟବାଦୀ ବିଦ୍ୟାଳୟରେ ଟଙ୍କା ପ୍ରତି କାହାର ଲକ୍ଷ୍ୟ ନଥିଲା । ସମସ୍ତେ ଜଣେ ଯାଦୁକରର ମନ୍ତ୍ରରେ ଉଦ୍‌ବୁଦ୍ଧ ଥିଲେ । ସମସ୍ତଙ୍କ ଭିତରେ ତ୍ୟାଗ ଓ ତିତିକ୍ଷାର ପ୍ରଚ୍ଛନ୍ନ ଉତ୍ସ୍ରୁପ ଗୋପବନ୍ଧୁ ଖୁଦ୍ଧ ଦେଇଥିଲେ । ପରେ ହାଇସ୍କୁଲ ଶିକ୍ଷକଙ୍କ ଦରମାରେ ଏକ ନିର୍ଦ୍ଦିଷ୍ଟ ହାର ଶିକ୍ଷା ବିଭାଗ ସ୍ଥିର କରିଦେଲା । ତେଣୁ ସତ୍ୟବାଦୀର ଶିକ୍ଷକମାନଙ୍କ ପ୍ରାପ୍ୟରୁ ଯାହା ଅଧିକା ହେଲା ତାହା ଗୋପବନ୍ଧୁଙ୍କ ପାଖରେ ଜମା ରହିଲା । ପରେ ସେହି ଟଙ୍କାରେ 'ନୀଳାଚଳ ସମାଚାର' ଛପା ହେଉଥିବା ପ୍ରେସ ପୁରୀରୁ କିଣା ହୋଇ ସତ୍ୟବାଦୀକୁ ଅଣାହେଲା ଓ 'ସତ୍ୟବାଦୀ' ନାମକ ଏକ ପତ୍ରିକା ପ୍ରକାଶ ପାଇଲା (୧୯୧୫) ।

ଆଗରୁ ଆସିଥିଲେ ଶ୍ରୀ ରାମଚନ୍ଦ୍ର ରଥ । ଏନ୍‌ଟ୍ରାନ୍‌ସ୍ ପାଶ୍ କରି ସେ ପ୍ରଥମେ ପୁରୀ କଚେରୀରେ ଓ ପରେ ଖୋର୍ଦ୍ଧା କଚେରୀରେ ପେସ୍‌କାର କାମରେ ନିଯୁକ୍ତ ଥିଲେ । ଏନ୍‌ଟ୍ରାନ୍‌ସ୍ ପଢ଼ିବାବେଳୁଁ ତାଙ୍କର ଗୋପବନ୍ଧୁଙ୍କ ସହିତ ପରିଚୟ ଥିଲା । ଦିନେ ସେ କଥା ପ୍ରସଙ୍ଗରେ ଗୋପବନ୍ଧୁଙ୍କୁ ନିଜର ଦାରିଦ୍ର୍ୟ ଓ ତହିଁରେ ପାଠ ପଢ଼ାର କ୍ଷତି ବିଷୟରେ କହିବାରୁ ଗୋପବନ୍ଧୁ କହିଲେ, "ମାଗନାହିଁ, ଅର୍ଜିକରି ପଢ଼ ।" କିପରି ଅର୍ଜିବେ ବୋଲି ସେ ପଚାରିବାରୁ ଗୋପବନ୍ଧୁ କହିଲେ—"ଷ୍ଟେସନରୁ କ'ଣ ମୋଟ ବୋହିପାରିବ

ନାହିଁ ?" ତା'ପରେ ସେଇକାମ ସେ କଲେ । ସେଥିରେ ଚଳିଲେ ଓ ପାଠ ପଢ଼ିଲେ । ସେ ଜୀବନ ଗଢ଼ିବା ସୂତ୍ରରେ କେତେ ଗାଳି ଖମା ଉଠାଣୀ ଓ ପଡ଼ାଣୀ ଦେଇ ଚାଲି ଆସିଥିଲେ । କିନ୍ତୁ ଭାଙ୍ଗି ଯାଇନଥିଲେ । ଅଭାବ ଅସୁବିଧାର ଘୋରଣାରେ ପେଷି ହୋଇ ସେ ଦୃଢ଼ ମଜଭୁତ ହୋଇ ଯାଇଥିଲେ । ସେ ଆସିଲେ; ପୁରୀ ଓ ପରେ ଖୋର୍ଦ୍ଧା କଚେରୀରେ ଲାଞ୍ଚ ଓ ଉତ୍କୋଚକୁ ଉପହାସ କରି ସେ ମଣିଷପଣିଆର ସନ୍ଧାନରେ ନିଆଁ ପରି ପ୍ରଜ୍ଜ୍ୱଳିତ ଓ ସୁନାପରି ପରୀକ୍ଷିତ ହୋଇ ଆସି ସତ୍ୟବାଦୀର ବକୁଳକୁଞ୍ଜରେ ଦିନେ ହଠାତ୍ ଠିଆହେଲେ, ଆଉ କହିଲେ "ମୁଁ ରହିବି । ଏ ପେସ୍କାରି କାମ ବଡ଼ ଖରାପ, ଏଥିରେ ଆଉ ଦିନାକେତେ ରହିଲେ ସତ୍ୟବାଦୀରେ ରହିବା ପାଇଁ ମୋର ଆଉ ଯୋଗ୍ୟତା ରହିବ ନାହିଁ । ମୋତେ ଟଙ୍କା ମିଳୁ ନ ମିଳୁ ମୁଁ ଏଇଠି ରହିବି ।" ସେ ବଡ଼ ନିଃସମ୍ବଳ ଥିଲେ । ତାଙ୍କୁ ମାସିକ ଛ' ଟଙ୍କା ବେତନ ମିଳିବା ସ୍ଥିରହେଲା ।

ଏହି ସମୟରେ ସତ୍ୟବାଦୀ ସ୍କୁଲ ପ୍ରତି ଅଗ୍ନିନକ ଏକ ବିପତ୍ତି ଆସିଲା । ଶିଶୁ ଅନୁଷ୍ଠାନ — ତେଣା ଲାଗିନାହିଁ—ଉଡ଼ି ଶିଖିନାହିଁ । କେହି ଦୁଷ୍ଟଲୋକ ବିଦ୍ୟାଳୟର ନୂଆ ତିଆରି ସ୍କୁଲଘର ପୋଡ଼ିଦେଲେ । ସାମାଜିକ କୁସଂସ୍କାର ବିରୁଦ୍ଧରେ ନୀଳକଣ୍ଠଙ୍କ ଆହ୍ୱାନ ସତ୍ୟବାଦୀରେ ପଂକ୍ତି ଭୋଜନ, ତାଙ୍କର ନିଶରଖା ଓ ବ୍ରାହ୍ମଣ ଶାସନର ରକ୍ଷଣଶୀଳତା ବିରୁଦ୍ଧରେ ତାଙ୍କ ଧ୍ୱନିର ପ୍ରତିବାଦ ସ୍ୱରୂପ ଏ ଘର ପୋଡ଼ି ଦିଆଗଲା । ୧୯୧୧-୧୨ ମସିହାର କଥା । ସକାଳ ଓଳି ସ୍କୁଲ ସରିଲା । ଗ୍ରୀଷ୍ମକାଳ । ଉପରଓଳି ନିଆଁ ଲାଗିଲା । ଲାଇବ୍ରେରୀ ସମେତ ବହୁ ଆସବାବ ଜଳି ପାଉଁଶ ହୋଇଗଲା ।

କିନ୍ତୁ ଦୁର୍ବଳ ସ୍ତୂପର ପାଉଁଶଗଦା ଉପରେ ଠିଆହୋଇ ଧୈର୍ଯ୍ୟର ଆହ୍ୱାନ ଦେବାକୁ ପୂର୍ଣ୍ଣପ୍ରାଣ ଗୋପବନ୍ଧୁ ପରଦିନ ସକାଳେ କର୍ମପୀଠ ବାରିପଦାରୁ ଧାଇଁ ଆସିଲେ । ଶିକ୍ଷକମାନେ ସମସ୍ତେ ତାଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲେ । ସମସ୍ତେ ବିପନ୍ନ । କିନ୍ତୁ ତାଙ୍କୁ ସତେ ଯେପରି ଏ ଆଘାତ ସ୍ପର୍ଶ କରି ନଥିଲା । ସେ ଗମ୍ଭୀର ଭାବରେ କହିଲେ— "ଏଥିପାଇଁ ଦୁଃଖ କ'ଣ ? ଭଗବାନଙ୍କ ଇଚ୍ଛା ବୋଧହୁଏ ଏ ବିଦ୍ୟାଳୟ ପାଇଁ କୋଠାଘର ହେବ ।" ଗୋପବନ୍ଧୁଙ୍କ ଆଗ୍ରହ ଓ ଅନୁପ୍ରେରଣା ସତ୍ୟବାଦୀର ସାଧକମାନଙ୍କୁ ସାହସ ଦେଲା । ମନରେ ଭରସା ଆଣିଲା । ସମସ୍ତେ ଅଗ୍ନି-ଦାହର ପ୍ରଦାହ ଭୁଲିଗଲେ । ନଡ଼ିଆ ବାହୁଙ୍ଗାର ଛାମୁଡ଼ିଆ ତଳେ ଯଥାରୀତି କ୍ଲାସ ଚାଲିଲା । ନୈତିକ ଚରିତ୍ରର ବିକାଶ ଲାଗି ସତ୍ୟବାଦୀର ପରିକଳ୍ପନା ହୋଇଥିଲା । ଶୃଙ୍ଖଳା, ଧୈର୍ଯ୍ୟ ଓ ସଞ୍ଜମ ସ୍କୁଲର ମୂଳଭିତ୍ତି । କାହାରି ମନରେ ଦୈନ୍ୟ, ଅବସାଦ ବା ନିରୁତ୍ସାହତା ରହିଲା ନାହିଁ । ଆଶାରେ ଉତ୍ଫୁଲ୍ଲ ଯୁବକ, ଶିକ୍ଷକ, ଛାତ୍ର— ସମସ୍ତେ ଧରିନେଲେ ଦାସେ ଆପଣଙ୍କ ପରି ଅସାଧାରଣ ମଣିଷ ଯେତେବେଳେ ମଙ୍ଗୁଆଳି ଏ ସ୍କୁଲର ପତନ ହେବ ନାହିଁ; ପୁଣି ଆପଣାଛାଏଁ ଠିଆ ହୋଇଯିବ ।

ତା' ପରଦିନ ପ୍ରବଳ ପବନରେ କାନ୍ଥ ପଡ଼ିଗଲା । ପୁରୁଣା ଘର ପୋଡ଼ିଯିବା ପରେ

ଅସ୍ଥାୟୀ ଘରରେ କାନ୍ଥ ଉପରେ ଲଦା ଦିଆଯାଇଥିବା ଟିଣଗୁଡ଼ିକ ଛିନ୍ନଛିନ୍ନ ହୋଇ ପଡ଼ିଗଲା; କିନ୍ତୁ ଶିକ୍ଷକମାନେ ସନ୍ତ୍ରସ୍ତ ହେଲେ ନାହିଁ । ଛାତ୍ରମାନଙ୍କୁ ଧରି ପୁଣି ମରାମତି କାମରେ ମାତି ଉଠିଲେ । ବର୍ଷା ଓ ଝଡ଼ ସେମାନଙ୍କୁ ପ୍ରତିହତ କରିପାରିଲା ନାହିଁ ।

ବର୍ଷଶେଷ ଆଡ଼କୁ ଗୋପବନ୍ଧୁ ନୀଳକଣ୍ଠଙ୍କୁ ସଙ୍ଗରେ ନେଇ ଅର୍ଥସଂଗ୍ରହ ଓ ଗୃହ ନିର୍ମାଣର ଉପକରଣ ପାଇଁ ବାହାରିଗଲେ । ତାଙ୍କ ଜୀବନର ତିତିକ୍ଷା ଓ ସାଧନା, ସେବା ଓ ନିଃସ୍ୱାର୍ଥପରତା ଓଡ଼ିଶାବାସୀଙ୍କ ମନରେ ବେଶ୍ ପ୍ରତ୍ୟୟ ଆଣି ପାରିଥିଲା । ଏମାର ମଠର ମହନ୍ତ ମହାରାଜ, ରାଧାକାନ୍ତ ମଠାଧୀଶ, ପୁରୀର କେତେକ ବିତ୍ତଶାଳୀ ବ୍ୟକ୍ତି, ଗଡ଼ଜାତର ମହାରାଜାମାନେ ସତ୍ୟବାଦୀ ବିଦ୍ୟାଳୟର ଗୃହ ନିର୍ମାଣ ପାଇଁ ସାହାଯ୍ୟ ଦେଲେ । ଘର ତିଆରି ପାଇଁ ପ୍ରାରମ୍ଭିକ ଆୟୋଜନ ହୋଇଗଲା । ଇଟା ଭାଟି ପଡ଼ିଲା, ଗଡ଼ଜାତରୁ କାଠ ଆସି କବାଟ ଓ ଝରକା ତିଆରି ହେଲା । ଗଡ଼ଜାତ ଅଞ୍ଚଳର କେତେକ ରାଜା, ମଧୁବାବୁ ଓ ବ୍ରଜସୁନ୍ଦର ଦାସ ଆଦି ବହୁ ପୃଷ୍ଠପୋଷକ ମଝିରେ ମଝିରେ ଆସି ବରାବର ଉତ୍ସାହ ଦେଲେ । ଛାତ୍ରମାନେ କାୟିକ ଶ୍ରମରେ ଲାଗି ପଡ଼ିଲେ । ମୂଲ ମଜୁରି ପାଇଁ ବାହାରକୁ ଅପେକ୍ଷା କରାଗଲା ନାହିଁ । ସେ ବର୍ଷର ସତ୍ୟବାଦୀର ଆକର୍ଷଣରେ ବହୁ ଦୂର ଦୂରାନ୍ତରୁ ପ୍ରାୟ ୩୦୦ ଛାତ୍ର ଆସି ଯୋଗଦେଲେ ।

## ପୁରୀରେ ସତ୍ୟବାଦୀର ସ୍ୱେଚ୍ଛାସେବୀ (୧୯୧୭)

ପ୍ରାୟ ପ୍ରତିବର୍ଷ ଗ୍ରୀଷ୍ମଋତୁବେଳେ ପୁରୀରେ ହଇଜା ହୁଏ । ଏହାର ପ୍ରଥମ କାରଣ ହେଲା ରଥଯାତ୍ରା ବେଳେ ଲୋକ ଗହଳି । ବିଶେଷତଃ ୧୮୯୭ ମସିହାରେ ପ୍ରଥମେ ଦକ୍ଷିଣରୁ ଖୋର୍ଦ୍ଧା ବାଟଦେଇ ପୁରୀକୁ ରେଳରାସ୍ତା ଖୋଲିଗଲା । ସେତେବେଳେ ଗୁଣ୍ଡିଚା ଗ୍ରାମ ପାଖରେ ପୁରୀ ଷ୍ଟେସନ ବସିଥିଲା । ଏହି ରେଳରାସ୍ତାର ନାମ ଥିଲା 'ଇଷ୍ଟକୋଷ୍ଟ ରେଲୱାଇ' । ୧୯୦୪ ମସିହାରେ ଖୋର୍ଦ୍ଧାଠାରୁ ବାରଙ୍ଗ ପର୍ଯ୍ୟନ୍ତ ରେଳରାସ୍ତା ପଡ଼ିଥିଲା । କଟକ ଆସୁଥିବା ଯାତ୍ରୀମାନେ ବାରଙ୍ଗରୁ ଓହ୍ଲାଇ କାଠଯୋଡ଼ି ପାରହୋଇ ସ୍ୱର୍ଗଘାଟଠାରେ ଉଠୁଥିଲେ ।

୧୮୯୯ ମସିହା ରଥଯାତ୍ରାରେ ଲକ୍ଷାଧିକ ଲୋକଙ୍କର ସମାଗମ ହୋଇଥିଲା । ହଠାତ୍ ଏତେଲୋକ ଆସି ପହଞ୍ଚିବେ ବୋଲି ଆଗରୁ କଳ୍ପନା କରାଯାଇ ପାରିନଥିଲା । ପୁଣି ପୁରୀ ସହରରେ ସେତେବେଳେ ପାନୀୟ ଜଳର ବିଶେଷ ସୁବିଧା ନଥିଲା । ଗୋଟିଏ ବର୍ଷ ରଥ ସମୟରେ ହଇଜା ରୋଗ ଏପରି ବ୍ୟାପକ ଆକାର ଧାରଣ କଲା ଯେ, ପୁରୀ ସହରର ପ୍ରତ୍ୟେକ ରାସ୍ତା, ଗଳିକନ୍ଦି ଓ ପୋଖରୀ କୂଳମାନରେ ଶହ ଶହ ମୃତଦେହ ପଡ଼ିରହିଥିବାର ଦେଖାଗଲା । ବଡ଼ଦାଣ୍ଡରେ ନରେନ୍ଦ୍ର ପୋଖରୀ ଆଡ଼କୁ ଅନ୍ୟୂନ ଶତାଧିକ ମୃତଦେହ ଡେଇଁ ବା ଗୋଡ଼ରେ ମାଡ଼ି ଯିବାକୁ ପଡ଼ୁଥିଲା । ପୁରୀ ଆସିବା ରାସ୍ତାକଡ଼ରେ ମଧ୍ୟ ସ୍ଥାନେ ସ୍ଥାନେ

ବହୁ ସଂଖ୍ୟାରେ ମୃତଦେହ ପଡ଼ିରହିଥିଲା । ପ୍ରାୟ ୨୫ ହଜାର ଲୋକ ସେ ବର୍ଷ ପ୍ରାଣ ହରାଇଥିଲେ ବୋଲି ସରକାରୀ ହିସାବରେ କୁହାଯାଇଥିଲା ।

ଏହି ହଇଜା କ୍ରମେ ନିକଟବର୍ତ୍ତୀ ଅଞ୍ଚଳକୁ ଓ ପୁରୀର ଉପକଣ୍ଠକୁ ସଂକ୍ରମିତ ହେଉଥିଲା । ବହୁଲୋକ ଅକାଳରେ ଝଡ଼ି ପଡ଼ୁଥିଲେ । ପ୍ରାୟ ୧୯୧୨ କିମ୍ବା ୧୯୧୩ ମସିହାର କଥା । S. N. Tiwari ସେତେବେଳେ ବିହାର-ଓଡ଼ିଶାର ସ୍ୱାସ୍ଥ୍ୟ ନିର୍ଦ୍ଦେଶକ ଥା'ନ୍ତି । ସେ ଓଡ଼ିଶାକୁ ଆସି ପୁରୀରେ ହଇଜାର କାରଣ ଅନୁସନ୍ଧାନ କଲେ । ସେ ବୁଝିଲେ ଯେ ହଇଜା ହେଲପରେ ମଧ୍ୟ ଲୋକମାନେ ଏ କଥା ଜଣାଉ ନାହାନ୍ତି । ହଇଜା ହେବାର ଜାଣିଲେ କାଳେ ମେହେନ୍ତରମାନେ ଠେଲାଗାଡ଼ିରେ ରୋଗୀକୁ ଚିକିତ୍ସାଳୟକୁ ବୋହିନେବେ ଓ ବାଟରେ ମରିବାର ମଧ୍ୟ ଆଶଙ୍କା ଉପୁଜିବ ଏଥିପାଇଁ ଲୋକମାନେ ଖୁବ୍ ଡରୁଥିଲେ । ଏପରିକି ଧର୍ମଭୀରୁ କୁଳୀନ ଓ ରକ୍ଷଣଶୀଳ ଲୋକମାନେ ମୃତବ୍ୟକ୍ତିକୁ ମେହେନ୍ତର ବୋହିନେବା ଆଦୌ ପସନ୍ଦ କରୁନଥିଲେ ।

ପୁରୀରେ ସ୍ୱେଚ୍ଛାସେବକ ଖୋଜାହେଲେ । କୌଣସି ସ୍କୁଲ୍ ଛାତ୍ର ଏ କାମ ପାଇଁ ଆଗେଇ ଆସିଲେ ନାହିଁ । କୌଣସି ପୁରୀ ବାସିନ୍ଦା ତିଓ୍ୱାରୀଙ୍କୁ ଗୋପବନ୍ଧୁଙ୍କ ନାମ କହିଦେଲା । ଗୋପବନ୍ଧୁଙ୍କ ସହିତ ସାକ୍ଷାତ କରିବାରେ ସେ ସ୍ୱେଚ୍ଛାସେବକ ଯୋଗାଇ ଦେବାର ଭରସା ଦେଲେ ।

ଶ୍ରୀ ତିଓ୍ୱାରୀ ସାଙ୍ଗହୋଇ ଗୋପବନ୍ଧୁଙ୍କ ସହିତ ବନବିଦ୍ୟାଳୟକୁ ଆସିଲେ । ସତ୍ୟବାଦୀର ନିରାଡ଼ମ୍ବର ପରିବେଶ ତାଙ୍କୁ ଖୁବ୍ ମୁଗ୍ଧ କରିଥିଲା । ଗୋପବନ୍ଧୁ ପିଲାମାନଙ୍କୁ ସେମାନଙ୍କ ମତାମତ ପଚାରିବାରେ ପ୍ରାୟ ୩୦୦ ପିଲା ଏହି କାମରେ ଯିବାକୁ ଆଗୁସାର ହୋଇ ପଡ଼ିଲେ । ସେମାନେ ହାତଟେକି ସମ୍ମତି ଜଣାଇଲେ । ଶେଷରେ ୨୦୦ ସ୍ୱେଚ୍ଛାସେବକ ଯିବାର ସ୍ଥିର ହେଲା । ହରିହର ବିଶ୍ୱନାଥପୁରର ଶ୍ରୀ ରାମଚନ୍ଦ୍ର ରଥ ତତ୍ତ୍ୱାବଧାରକ ଭାବରେ ସ୍ୱେଚ୍ଛାସେବୀ ବାହିନୀ ଚଳାଇ ପୁରୀ ଅଭିମୁଖେ ଯାତ୍ରାକଲେ । ସତ୍ୟବାଦୀର ଛାତ୍ରମାନେ ଖୁବ୍ ଶୃଙ୍ଖଳିତ ଭାବରେ ଆନ୍ତରିକତାର ସହିତ ସେମାନଙ୍କ କାର୍ଯ୍ୟ କରିଥିଲେ (୧୯୧୨) ।

ସେହିବର୍ଷଠାରୁ ପ୍ରତିବର୍ଷ ଗୋପବନ୍ଧୁଙ୍କ ନିର୍ଦ୍ଦେଶକ୍ରମେ ଦଳେ ସ୍ୱେଚ୍ଛାସେବୀ ରଥଯାତ୍ରାବେଳେ ପୁରୀ ଆସୁଥିଲେ । ଅନେକ ବର୍ଷ ପର୍ଯ୍ୟନ୍ତ ଏହି ପରମ୍ପରା ରହିଗଲା । ସେତେବେଳେ ପୁରୀରେ କଳପାଣି ନ ଥିଲା । କୂଅ ଓ ପୋଖରୀ ପାଣି ପିଇ ବହୁସଂଖ୍ୟାରେ ଯାତ୍ରୀମାନେ କଲେରାରେ ପଡ଼ୁଥିଲେ । ପରେ କଳପାଣି ବ୍ୟବସ୍ଥା ହୋଇଯିବା ପରେ କଲେରା ସଂକ୍ରମଣ କମିଗଲା ।

କଲେରା ଡରରୁ ବିଶେଷ ପରିମାଣରେ ହୋଇଥାଏ । ଏହି ଭୟ ଲୋକଙ୍କ ମନରୁ ଛଡ଼ାଇବା ସତ୍ୟବାଦୀ ଛାତ୍ରମାନଙ୍କର ପ୍ରଧାନକାର୍ଯ୍ୟ ହୋଇଥାଏ । ହଇଜା ସଂକ୍ରମିତ ସ୍ଥାନକୁ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ସତ୍ୟବାଦୀର ଶିକ୍ଷକ ଓ ଛାତ୍ରମାନେ ଯାଇ ହୋମିଓପ୍ୟାଥି ଔଷଧ ବାଣ୍ଟନ୍ତି ଓ ସମସ୍ତଙ୍କୁ ଏକତ୍ରିତ କରି ଗହଳିଚହଳିରେ ମନରୁ ବାଡ଼ି ଭୟ ଦୂର

କରାଇ ଦିଅନ୍ତି । ନୀଳକଣ୍ଠ ବାବୁଙ୍କର ହୋମିଓପ୍ୟାଥିରେ ବେଶ୍ ଅଧ୍ୟୟନ ଥାଏ ଓ ବନ୍ଧୁ କଳେବର ରୋଗୀଙ୍କୁ ସେ ହୋମିଓପ୍ୟାଥି ଦେଇ ଭଲ କରୁଥା'ନ୍ତି । କ୍ରମେ ସତ୍ୟବାଦୀର ଛାତ୍ର ଓ ଶିକ୍ଷକମାନଙ୍କ ସେବାପରାୟଣତା ହେତୁ ଉଗ୍ରପନ୍ଥୀ ରକ୍ଷଣଶୀଳ ଶାସନୀ ବ୍ରାହ୍ମଣମାନେ ଅବଦମିତ ହୋଇ ରହିଗଲେ । ଅଧିକରୁ ଅଧିକ ଗ୍ରାମମାନଙ୍କ ଗଠନମୂଳକ କାମ ସେମାନଙ୍କୁ ଆକର୍ଷିତ କଲା । ପ୍ରତ୍ୟେକ ଜନମ ପ୍ରତି ପ୍ରଥମ ମୋହ କଟିଗଲା ପରେ ଯେଉଁ ସ୍ୱାଭାବିକତା ଆସିଥାଏ ତାହାହିଁ ଆସିଥିଲା ।

## ପୁରୀଜିଲା ଶିକ୍ଷା ସମ୍ମିଳନୀ (୧୭ । ୭ । ୧୯୧୨)

ଗୋପବନ୍ଧୁ ଓଡ଼ିଶାର ଜାତୀୟ ଶିକ୍ଷା ସମ୍ପର୍କରେ ଗଭୀର ଭାବରେ ଚିନ୍ତା କରୁଥିଲେ । ଓଡ଼ିଶା ଲୋକମାନଙ୍କ ଦୁଃଖ ଦାରିଦ୍ର୍ୟ, ସେମାନଙ୍କ ଅଶିକ୍ଷା ଓ ଅଜ୍ଞତା ହେତୁରୁ ଉତ୍ପନ୍ନ ହୋଇଛି—ଏକଥା ସେ ଆନ୍ତରିକ ଅନୁଭବ କରିଥିଲେ । ଶିକ୍ଷା ମାଧ୍ୟମରେ ଓଡ଼ିଶାକୁ ପ୍ରଗତି ପଥରେ ଆଗେଇ ନେବାପାଇଁ ସତ୍ୟବାଦୀ ବନବିଦ୍ୟାଳୟର ପରିକଳ୍ପନା ହୋଇଥିଲା । ପୁସ୍ତକଗତ ଶିକ୍ଷାଠାରୁ ଜୀବନର ଯଜ୍ଞବେଦୀରେ ସାର୍ଥକ ମଣିଷପଣିଆ ଶିକ୍ଷା ତାଙ୍କ ଶିକ୍ଷା କାର୍ଯ୍ୟକ୍ରମର ମୁଖ୍ୟ ଲକ୍ଷ୍ୟ ଥିଲା ।

ତା ୧୬।୬।୧୯୧୨ ମସିହାରେ ସାକ୍ଷୀଗୋପାଳଠାରେ ସେ ପୁରୀଜିଲ୍ଲା ଶିକ୍ଷାସମ୍ମିଳନୀ ଆହ୍ୱାନ କରିଥିଲେ । ଏଥିରେ ସଭାପତିତ୍ୱ କରିଥିଲେ ଭକ୍ତକବି ମଧୁସୂଦନ ରାଓ । ଏହି ସମ୍ମିଳନୀର ଅଳ୍ପଦିନ ପୂର୍ବରୁ ଭକ୍ତକବି ଶିକ୍ଷାବିଭାଗ ଇନ୍ସପେକ୍ଟର ପଦରୁ ଅବ୍ୟାହତି ନେଇଥିଲେ । ତାଙ୍କର ୧୯୧୨ ମସିହା ଡ଼ିସେମ୍ବର ୨୮ ତାରିଖରେ ଦେହାନ୍ତ ହୋଇଥିଲା ।

ଏହି ଶିକ୍ଷାସମ୍ମିଳନୀର ଅଭ୍ୟର୍ଥନା ସମିତି ସଭାପତି ଭାବରେ ପଣ୍ଡିତ ଗୋପବନ୍ଧୁ ଯେଉଁ ବକ୍ତବ୍ୟ ଦେଇଥିଲେ, ତହିଁରେ ଓଡ଼ିଶାର ଭବିଷ୍ୟତ ଶିକ୍ଷା ବିସ୍ତାର ନିମନ୍ତେ ଏକ ପୂର୍ଣ୍ଣାଙ୍ଗ ରୂପ ପ୍ରକାଶ ପାଇଥିଲା । ଅର୍ଦ୍ଧ ଶତାବ୍ଦୀରୁ ଅଧିକକାଳ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ଗୋପବନ୍ଧୁଙ୍କ ଚିନ୍ତାଧାରା ଆଜି ବି ଶିକ୍ଷାବିତ୍‌ମାନଙ୍କୁ ଅନୁପ୍ରେରଣା ଦେବାକୁ ସମର୍ଥ । ସେ ଏକ ଦୀର୍ଘ ବକ୍ତବ୍ୟରେ କହିଥିଲେ—

"ଭାଇମାନେ !

ମଙ୍ଗଳମୟ ବିଧାତାଙ୍କ କରୁଣାରୁ ଆମ୍ଭେମାନେ ଆଜି ଏହି ଅଭିନବ ଜାତୀୟ ଶୁଭଅନୁଷ୍ଠାନରେ ସମ୍ମିଳିତ ହୋଇଅଛୁଁ । ମୁଁ ଏହି ଉପସ୍ଥିତ ସମ୍ମିଳନକୁ ଅଭିନବ ଜାତୀୟ ଅନୁଷ୍ଠାନ କହୁଅଛି । ଜିଲ୍ଲା ସମ୍ମିଳନୀ ବା ଡ଼ିଷ୍ଟ୍ରିକ୍ଟ କନ୍‌ଫରେନ୍ସ ଭାରତରେ ନୂତନ ନୁହେଁ । ଭିନ୍ନ ଭିନ୍ନ ପ୍ରଦେଶର ବିଭିନ୍ନ ଜିଲ୍ଲାରେ ଗତ କେତେକ ବର୍ଷ ହେଲା ଜିଲ୍ଲା କନ୍‌ଫରେନ୍‌ସମାନ ହେଉଅଛି; ଶିକ୍ଷା, ସାହିତ୍ୟ, ରାଜନୀତି ପ୍ରଭୃତି ନାନା ଦେଶହିତକର

ବିଷୟମାନ ଏହିପରି କନ୍‌ଫରେନ୍‌ସରେ ଆଲୋଚିତ ହୋଇଥାଏ; କିନ୍ତୁ ଓଡ଼ିଶାରେ ଏପରି ଜିଲ୍ଲାକନ୍‌ଫରେନ୍‌ସ ନୂତନ । ଏହା ପୁଣି କେବଳ ଶିକ୍ଷା ବିଷୟରେ ଆବଦ୍ଧ । ଇତିପୂର୍ବେ କେବଳ ଶିକ୍ଷାର ଉନ୍ନତି କଲେ ଯେ ସ୍ଥାନେ ସ୍ଥାନେ ଦଳଗତ ଉଦ୍ୟମ ହୋଇ ନାହିଁ; ତାହା ନୁହେଁ । ଅନେକ ବିଦ୍ୟାଳୟରେ 'ପୁଅର୍ ଫଣ୍ଡ' ଇତ୍ୟାଦି ନାମରେ ଛାତ୍ର ଓ ଶିକ୍ଷକମାନଙ୍କ ଯତ୍ନରେ ପାଣ୍ଠି ବହୁକାଳରୁ ସ୍ଥାପିତ ହୋଇଅଛି; କିନ୍ତୁ ସେଗୁଡ଼ିକର ଉଦ୍ଦେଶ୍ୟ ସୀମାବଦ୍ଧ, କାର୍ଯ୍ୟକ୍ଷେତ୍ର ସଙ୍କୀର୍ଣ୍ଣ ଓ ସ୍ଥାୟିତ୍ୱ ସର୍ବଦା ଶଙ୍କାକୁଳ । ସେ ସବୁ ଜାତୀୟ ଅନୁଷ୍ଠାନ ପଦବାଚ୍ୟ ନୁହେଁ । ଏହାଛଡ଼ା 'ବ୍ରାହ୍ମଣ ସମିତି', 'କରଣ ସମିତି', 'କାୟସ୍ଥ ସମିତି' ପ୍ରଭୃତି ସମିତିମାନ ନିଜ ନିଜ ସମାଜ ମଧ୍ୟରେ ଶିକ୍ଷା ବିସ୍ତାର ଉଦ୍ଦେଶ୍ୟରେ କେତେକବର୍ଷ ହେଲା କାର୍ଯ୍ୟ କରି ଆସୁଅଛନ୍ତି । କିନ୍ତୁ ଏହି ସବୁ ସମିତି ସାମ୍ପ୍ରଦାୟିକ, ସାର୍ବଜନୀନ ନୁହେଁ । ବ୍ରାହ୍ମଣ ସମିତି ଚଷାର ଶିକ୍ଷା ନିମନ୍ତେ ଆପଣାକୁ ଦାୟୀ ବୋଲି ମନେକରନ୍ତି ନାହିଁ; କରଣ ସମିତି ଖଣ୍ଡାଏତ ଶିକ୍ଷା ନିମନ୍ତେ କିମ୍ବା କାୟସ୍ଥ ସମିତି ବ୍ରାହ୍ମଣଙ୍କ ଶିକ୍ଷା ନିମନ୍ତେ କୌଣସି ଉଦ୍ବେଗ ଅନୁଭବ କରନ୍ତି ନାହିଁ । ଏହା ସେମାନଙ୍କର ଉଦ୍ଦେଶ୍ୟ ନୁହେ । ସୁତରାଂ ଏହି ସମିତିମାନଙ୍କର ଉଦ୍ଦେଶ୍ୟ ଯେତେ ମହତ ଏବଂ ସାଧୁ ହେଉ ପଛକେ ସେମାନଙ୍କୁ ଜାତୀୟ ଅନୁଷ୍ଠାନ ବୋଲଯାଇ ନ ପାରେ । ଦେଶର ସକଳ ଶ୍ରେଣୀର, ସକଳ ସମ୍ପ୍ରଦାୟର ବ୍ୟକ୍ତିମାନଙ୍କ କଲ୍ୟାଣସାଧନ ଯେଉଁସବୁ ଆନ୍ଦୋଳନ ବା ଉଦ୍ୟମର ଲକ୍ଷ୍ୟ ନୁହେଁ, ସେ ସବୁ ଜାତୀୟ ଆନ୍ଦୋଳନ ନୁହେଁ; ତଦ୍ୱାରା ଜାତିର ଅଙ୍ଗବିଶେଷର ଶ୍ରେୟ ସାଧିତ ହୋଇପାରେ; କିନ୍ତୁ ସମଷ୍ଟି ଭାବରେ ଜାତୀୟ ଉନ୍ନତି ଓ ଏକତା ସମ୍ପାଦିତ ହେବ ନାହିଁ ।

ଉତ୍କଳ ସମ୍ମିଳନୀ ଆଜକୁ ୯ ବର୍ଷ ପୂର୍ବେ ସର୍ବପ୍ରଥମେ ସ୍ଥାପିତ ହୋଇ ସମଗ୍ର ଉତ୍କଳରେ ଅପୂର୍ବ ଜାତୀୟ ଭାବର ଜାଗରଣ କରାଇଥିଲା । ନାନା କାରଣରୁ ପ୍ରଥମ କେତେକ ବର୍ଷ ପରେ ସମ୍ମିଳନୀର ଆଦ୍ୟ ଉତ୍ସାହ ଓ ଶକ୍ତି କ୍ରମେ ହ୍ରାସପ୍ରାପ୍ତ ହୋଇଥିଲେ ହେଁ ଏହା ଜାତୀୟ ଜୀବନରେ ଯେଉଁ ସ୍ପନ୍ଦନ ଜନ୍ମାଇଥିଲା, ତାହା ଅଦ୍ୟାପି ଲୋପ ପାଇନାହିଁ । ଉପଯୁକ୍ତ ପରିଚାଳନା ଦ୍ୱାରା ଏହା ପୁନର୍ବାର ଜାଗ୍ରତ ହେବ—ସନ୍ଦେହ ନାହିଁ । ସମ୍ମିଳନୀ ଏକ ବିରାଟ ଜାତୀୟ ଅନୁଷ୍ଠାନ, ଏଥିର ସଂରକ୍ଷଣ ଓ ସମ୍ପ୍ରସାରଣ ସର୍ବଦା ବାଞ୍ଛନୀୟ । ଶିକ୍ଷା, ଶିଳ୍ପ, ସାହିତ୍ୟ ପ୍ରଭୃତି ଜାତୀୟ ଜୀବନର ସକଳ ପ୍ରକାର ପ୍ରୟୋଜନୀୟ ବିଭାଗମାନଙ୍କର ଉନ୍ନତିକଲ୍ପେ ବିହିତ ଉପାୟମାନ ଅବଲମ୍ବନ କରିବା ଏବଂ ବର୍ଣ୍ଣ ଧର୍ମ ନିର୍ବିଶେଷରେ ଦେଶର ସକଳ ଶ୍ରେଣୀର ଲୋକଙ୍କ ମନରେ ଜାତୀୟ ସମ୍ମାନ ଓ ଆତ୍ମମର୍ଯ୍ୟାଦା ଜନ୍ମାଇବା ନିମନ୍ତେ ସମ୍ମିଳନୀ ପ୍ରଥମରୁ ଲକ୍ଷ୍ୟ ରଖିଅଛନ୍ତି । ଏହି ଲକ୍ଷ୍ୟ ସାଧନ ନିମନ୍ତେ ପ୍ରତ୍ୟେକ ଗ୍ରାମରେ, ପ୍ରତି ନଗରରେ ଓ ପ୍ରତି ଜିଲ୍ଲାରେ ଅଧିବେଶନ ହେବା ଆବଶ୍ୟକ । ତାହା ନ ହେବାଯାଏ ସମ୍ମିଳନୀର ଉଦ୍ଦେଶ୍ୟ କେବଳ କଥାରେ ରହିବ । ଅନେକଙ୍କ ମତରେ ସମ୍ମିଳନୀର କ୍ଷେତ୍ର ବିଶାଳ, କାର୍ଯ୍ୟ ସଂଖ୍ୟା ବହୁଳ ଓ ବିପୁଳ ଆୟାସସାଧ୍ୟ ଏବଂ କାର୍ଯ୍ୟ କରିବା

ଲୋକ ଅତି ଅଳ୍ପ । ଏହିସବୁ କାରଣରୁ ସମ୍ମିଳନୀ ଏପର୍ଯ୍ୟନ୍ତ ବିଶେଷ କୌଣସି କାର୍ଯ୍ୟ କରିବାକୁ ସମର୍ଥ ହୋଇନାହିଁ । ଏହି ମତ ଅନେକ ପରିମାଣରେ ସତ୍ୟ ବୋଲି ବୋଧହୁଏ । ବାସ୍ତବ ଦୃଷ୍ଟିରୁ ସମଷ୍ଟି ଭାବରେ ଯେ କୌଣସି ଜାତୀୟ ଅନୁଷ୍ଠାନର ପ୍ରଥମ ସୋପାନ ଜିଲ୍ଲା । ଆମ୍ଭମାନଙ୍କର ବର୍ତ୍ତମାନ ଶାସନ ବିଧାନରେ ପ୍ରତ୍ୟେକ ଜିଲ୍ଲାକୁ Administrative Unit ଅର୍ଥାତ ଏକ ଏକ ସ୍ୱତନ୍ତ୍ର ରାଜନୈତିକ ବିଭାଗ ବୋଲି ଧରାଯାଇପାରେ । ଏକ ଜିଲ୍ଲାବାସୀ ଲୋକସାଧାରଣଙ୍କର ଶ୍ରେୟ ସ୍ୱାର୍ଥ, ସୁବିଧା, ସମ୍ପର୍କ, ମାୟାମମତା ଅନେକ ବିଷୟରେ ଏକ । ପୁଣି ଗୋଟିଏ ପ୍ରଦେଶ ବା ତହିଁର ଅଧିବାସୀ ଲୋକସାଧାରଣଙ୍କ ଶ୍ରେୟ କେତେଗୁଡ଼ିଏ ଜିଲ୍ଲା ଶ୍ରେୟର ସମଷ୍ଟି ମାତ୍ର । ଦେଶାନୁରାଗ ଓ ଜାତୀୟ ଜୀବନ ଜିଲ୍ଲାଗତ ଶ୍ରେୟ ସ୍ୱାର୍ଥରୁ କ୍ରମେ ବିକାଶ ପାଇଥାଏ । ତେଣୁ ଜିଲ୍ଲା ସମିତିମାନଙ୍କୁ ସମ୍ମିଳନୀର ପ୍ରକୃତ କାର୍ଯ୍ୟକ୍ଷେତ୍ର ବୋଲି ଧରିବା ଉଚିତ । ଏହି ଜିଲ୍ଲା ସମିତିମାନ ଖରସ୍ରୋତରେ ପ୍ରବାହିତ ହୋଇ ଉପନଦୀ ରୂପେ ବିଶାଳ ସମ୍ମିଳନୀ ସରିତ୍ ସହିତ ମିଳିତ ହେଲେ ତାହା ଅଙ୍ଗ ପୁଷ୍ଟ ହେବ ଏବଂ ଶ୍ରୀ ସମ୍ପାଦିତ ହେବ । ସମ୍ମିଳନୀର କାର୍ଯ୍ୟ ନାନାବିଧ ହେଲେହେଁ ଶିକ୍ଷା ସେମାନଙ୍କ ମଧ୍ୟରେ ପ୍ରଥମ ଓ ପ୍ରଧାନ । ଶିକ୍ଷା ସମସ୍ତ ଜାତୀୟ ଉନ୍ନତିର ମୂଳାଧାର । ଶିଳ୍ପ ବୋଲ, କୃଷି ବୋଲ, ସାହିତ୍ୟ ବୋଲ ଲୋକସାଧାରଣ କିଛିଦୂର ଶିକ୍ଷିତ ନ ହେଲେ ଏସବୁ ବିଭାଗରେ ଉନ୍ନତିର ଆଶା ସୁଦୂରପରାହତ । ଗଭର୍ଣ୍ମେଣ୍ଟ ସର୍ବୋପରି ଶିକ୍ଷାର ପ୍ରୟୋଜନୀୟତା ଉପଲବ୍ଧି କରିଅଛନ୍ତି ଏବଂ ଦେଶର ଚିନ୍ତାଶୀଳ ନେତାମାନେ ମଧ୍ୟ ଏହା ହୃଦୟଙ୍ଗମ କରିଅଛନ୍ତି । ଆଜିକାଲି ଦେଶର ଚାରିଆଡ଼େ ଶିକ୍ଷାର ଉନ୍ନତି ନିମନ୍ତେ ନାନା ଆକାରରେ ଚେଷ୍ଟା ଲାଗିଅଛି । ଆମ୍ଭମାନଙ୍କ ଶକ୍ତି ସାମାନ୍ୟ, ସୁବିଧା ଅଳ୍ପ, ତେଣୁ ସମସ୍ତ ଜାତୀୟ ଉନ୍ନତିର ମୂଳାଧାର କେବଳ ଶିକ୍ଷା ପ୍ରତି ଉପସ୍ଥିତ ଆନ୍ଦୋଳନକୁ ଆବଦ୍ଧ ରଖିବା ଉଚିତ ବିବେଚନା କରାଯାଇଅଛି ।

'ଶିକ୍ଷା' ଏହି କଥାଟି ସହଜ ଓ ସରଳ ଏବଂ ସର୍ବଦା ଶୁଣାଯିବାରେ ଅତି ସାଧାରଣ ପରି ବୋଧହୁଏ; କିନ୍ତୁ ବସ୍ତୁତଃ ଏହାଠାରୁ ବଳି ମାନବ ଚିନ୍ତା ପକ୍ଷରେ ଗୁରୁତର ବିଷୟ କିଛି ନାହିଁ । ସମସ୍ତ ସଭ୍ୟ ଜାତିର ଅସାଧାରଣ ମନୀଷୀଗଣ ଏଥିର ଉନ୍ନତି ଓ ଆଲୋଚନାରେ ଜୀବନ ଦେଇଅଛନ୍ତି । ଦେଶହିତୈଷୀ ମହାତ୍ମାମାନେ ଏହାକୁ ସମସ୍ତ କଲ୍ୟାଣର ନିଦାନ ବୋଲି ଜାଣି ଏଥିର ଉନ୍ନତି ଓ ପ୍ରସାର ନିମନ୍ତେ ବିହିତ ବ୍ୟବସ୍ଥା କରିଥାନ୍ତି । ଜାପାନର ସମ୍ରାଟ ୧୮୭୨ ସାଲରେ ଯେଉଁଦିନ ନିର୍ଦ୍ଦେଶ ଦେଲେ—ଜାପାନ ରାଜ୍ୟରେ ଏପରି ଗ୍ରାମ ରହିବ ନାହିଁ, ଯହିଁରେ କୌଣସି ପରିବାର ମୂର୍ଖ ବା ଅଶିକ୍ଷିତ ରହିବ, ଯହିଁର ବ୍ୟକ୍ତିବିଶେଷ ଅଜ୍ଞ ରହିବ; ସେହିଦିନ ଜାପାନର ଜାତୀୟ ଉନ୍ନତିର ମୂଳଭିତ୍ତି ପଡ଼ିଲା ଏବଂ ଏହି କେତେକ ବର୍ଷ ମଧ୍ୟରେ ଜାପାନ ଯେ ଅଭାବନୀୟ ଆଶ୍ଚର୍ଯ୍ୟଜନକ ଉନ୍ନତି ସାଧନ କରିଅଛି ତାହା ଏହି ଭିତ୍ତି ଉପରେ ପ୍ରତିଷ୍ଠିତ । ଆମ୍ଭମାନଙ୍କର ଦୟାଳୁ ଗଭର୍ଣ୍ମେଣ୍ଟ କେବେ ସେପରି ଘୋଷଣା ପ୍ରଚାରିତ କରିବେ ଭଗବାନ ଜାଣନ୍ତି । କିନ୍ତୁ ସ୍ପଷ୍ଟ ଭାବରେ ଘୋଷଣା ନ ହେଲେହେଁ

ପ୍ରଜାମାନଙ୍କ ମଧ୍ୟରେ ସାର୍ବଜନୀନ ଶିକ୍ଷା ଯେ ସାମ୍ରାଜ୍ୟର କଲ୍ୟାଣ ପକ୍ଷରେ ଏକାନ୍ତ ଆବଶ୍ୟକ, ତାହା ଉଚ୍ଚକର୍ତ୍ତୃପକ୍ଷମାନେ ବହୁବାର ପ୍ରକାଶ କରିଅଛନ୍ତି ।

ଆଇନ ଦ୍ୱାରା ଲୋକମାନଙ୍କୁ ବିନା ଖର୍ଚ୍ଚରେ ପ୍ରାଥମିକ ଶିକ୍ଷା ଗ୍ରହଣ କରିବା ଲାଗି ବାଧ୍ୟ କରିବାର ସମୟ ଉପସ୍ଥିତ ହୋଇନାହିଁ ବୋଲି ଗଭର୍ଣ୍ଣମେଣ୍ଟ ଅଭିମତ ବ୍ୟକ୍ତ କଲେହେଁ ଶିକ୍ଷାର ବହୁଳ ପ୍ରସାରର ଅତୀବ ପ୍ରୟୋଜନୀୟତା ସ୍ପଷ୍ଟରୂପେ ଅନୁଭବ କରିଅଛନ୍ତି ଏବଂ ଦେଶକାଳ ପାତ୍ରର ଉପଯୋଗିତା ଦେଖିଲେ ଗଭର୍ଣ୍ଣମେଣ୍ଟ ଯେ ସେପରି ବିଧାନ ପ୍ରଣୟନ କରିବେ, ସେଥିରେ ସନ୍ଦେହ ନାହିଁ । ଗଭର୍ଣ୍ଣମେଣ୍ଟଙ୍କର ଏହି ସଦଭିପ୍ରାୟରେ ଯୋଗଦେବା ସମସ୍ତଙ୍କର ଉଚିତ ଏବଂ ଗଭର୍ଣ୍ଣମେଣ୍ଟ ଲୋକସାଧାରଣଙ୍କର ଯେପରି ଉପଯୁକ୍ତତା ଓ ଯେପରି ସମୟ ଅପେକ୍ଷା କରନ୍ତି, ତାହା କିପରି ଶୀଘ୍ର ଉପସ୍ଥିତ ହେବ, ତନ୍ନିମିତ୍ତ ସମସ୍ତଙ୍କର ଯତ୍ନବାନ ହେବା ଏକାନ୍ତ କର୍ତ୍ତବ୍ୟ । ଆମ୍ଭେମାନେ ଏହି ପବିତ୍ର କର୍ତ୍ତବ୍ୟ ପାଳନରେ ଆମ୍ଭମାନଙ୍କ କ୍ଷୁଦ୍ର ଶକ୍ତି ନିୟୋଗ କରିବାର ସଂକଳ୍ପ କରିଅଛୁଁ । ଏତାଦୃଶ ଗୁରୁତର ଅନୁଷ୍ଠାନରେ ପ୍ରୟାସୀ ହେବା ଆମ୍ଭମାନଙ୍କ ପକ୍ଷରେ ଧୃଷ୍ଟତା ଓ ଦୁଃସାହସିକତା ବୋଲି କେହି ମନେ କରିପାରନ୍ତି । ଆମ୍ଭେମାନେ ମଧ୍ୟ ନିଜର ଅକିଞ୍ଚନତା ହୃଦୟଙ୍ଗମ କରି ଶଙ୍କାକୁଳ ଚିତ୍ତରେ ଏଥିରେ ହସ୍ତକ୍ଷେପ କରିଅଛୁଁ । କିନ୍ତୁ ଆମ୍ଭେମାନେ ଉତ୍କଳର, ବିଶେଷତଃ ପୁରୀର ଅତୀତ ଗୌରବ ଉପରେ ନିର୍ଭର କରି ଏବଂ ଭବିଷ୍ୟତରେ ବିଶ୍ୱାସ ରଖି ଏହି ଅନୁଷ୍ଠାନ ଆରମ୍ଭ କରିଅଛୁଁ । ଉତ୍କଳର ଅନ୍ୟାନ୍ୟ ଜିଲ୍ଲାମାନଙ୍କ ଅପେକ୍ଷା ପୁରୀର କୌଣସି ବିଶେଷତ୍ୱ ଥାଉ ବା ନ ଥାଉ, ଏହା ସମସ୍ତ ଭାରତରେ ଅଦ୍ୟାପି ସାମ୍ୟମୈତ୍ରୀର କେନ୍ଦ୍ରସ୍ଥଳ ରୂପେ ବିଦ୍ୟମାନ ରହି କୋଟି କୋଟି ନରନାରୀଙ୍କୁ ନୀରବ ଗମ୍ଭୀର ନାଦରେ ଏକତା ଆଡ଼କୁ ଆମନ୍ତ୍ରଣ କରୁଅଛି । ଯୁଗେ ଯୁଗେ କେତେ କେତେ ପାପୀ, ତାପୀ, ଜ୍ଞାନୀ, ପଣ୍ଡିତ, ସିଦ୍ଧ, ସାଧକ, ମହାପୁରୁଷମାନେ ଏହାରି ପବିତ୍ର ଅଙ୍କରେ ଆଶ୍ରୟ ନେଇ ପରମ ଶାନ୍ତି ଲାଭ କରିଅଛନ୍ତି । ଏହିଠାରେ ଓଡ଼ିଆ ମସ୍ତିଷ୍କ ଓ ଓଡ଼ିଆମାନଙ୍କର ପୂର୍ବେଦୃଷ୍ଟିର ପରାକାଷ୍ଠା ପ୍ରକାଶ ପାଇଅଛି; ପ୍ରାଚୀନ ଉତ୍କଳୀୟ ନରପତିମାନେ ଧର୍ମର ଉନ୍ନତି ନିମନ୍ତେ, ଜ୍ଞାନଚର୍ଚ୍ଚା ନିମନ୍ତେ ଓ ପରୋପକାର ନିମନ୍ତେ ବ୍ରହ୍ମୋତ୍ତର, ଦେବୋତ୍ତର ପ୍ରଭୃତି ଲାଖରାଜ ଦାନକରି ରାଜୋଚିତ ଅସାଧାରଣ ସ୍ୱାର୍ଥତ୍ୟାଗର ଯେଉଁ ଉଜ୍ଜ୍ୱଳ ଉଦାହରଣ ରଖିଯାଇ ଅଛନ୍ତି, ତାହା ଅଦ୍ୟାପି ଏ ଜିଲ୍ଲାରେ ବହୁଳ ପରିମାଣରେ ଦେଖାଯାଏ । ବିଦ୍ୟାଚର୍ଚ୍ଚା, ଶାସ୍ତ୍ର ଆଲୋଚନା ଓ ଜ୍ଞାନ ଗରିମାରେ ପୁନା, ବାରାଣସୀ, ନବଦ୍ୱୀପ ପ୍ରଭୃତି ପ୍ରତିଷ୍ଠିତ ସ୍ଥାନମାନଙ୍କ ସହିତ ପୁରୀ ବହୁକାଳରୁ ପ୍ରତିଯୋଗିତା କରି ଆସିଅଛି ଏବଂ ଆଜି କର୍ପୂର ଉଡ଼ିଯାଇ କେବଳ କନାଖଣ୍ଡେ ପଡ଼ିଥିଲେ ସୁଦ୍ଧା ପୂର୍ବ ସୌରଭ ସ୍ମୃତିରେ ସମ୍ମାନିତ ହେଉଛି । ସୁତରାଂ ଶିକ୍ଷାବିଷୟକ କୌଣସି ଜାତୀୟ ଆନ୍ଦୋଳନରେ ପୁରୀର ଯଥେଷ୍ଟ କର୍ତ୍ତବ୍ୟ ଅଛି । ପୁରୀ ଜିଲ୍ଲାରେ ସତ୍ୟବାଦୀ ଗୋଟିଏ କେନ୍ଦ୍ରସ୍ଥାନ । ଏହାର ଚତୁର୍ଦ୍ଦିଗପାର୍ଶ୍ୱରେ ଅନେକ ବଡ଼ ବଡ଼ ଗ୍ରାମ ଅଛି । ବିଦ୍ୟାଭ୍ୟାସ ବହୁଦିନ ହେଲା ଏ ଅଞ୍ଚଳରେ ବିଲୁପ୍ତ ପ୍ରାୟ ହୋଇଥିଲେ ହେଁ ଅତୀତ ଶିକ୍ଷାର

ସଂସାର ଅଦ୍ୟାପି କ୍ଷୀଣ ଭାବରେ ବିଦ୍ୟମାନ ରହିଅଛି । ଏହା ପୁରୀ ନଗରୀର ଅତି ନିକଟବର୍ତ୍ତୀ, ଷ୍ଟେସନର ସନ୍ନିହିତ; ସହରର ସକଳ ପ୍ରକାର ସୁବିଧା ଏଠାରେ ଅଛି; ଅର୍ଥାତ୍ ବିଦ୍ୟାଶିକ୍ଷା ଏବଂ ଜ୍ଞାନଚର୍ଚ୍ଚା ନିମନ୍ତେ ଯେପରି ଶାନ୍ତି ଓ ଅପେକ୍ଷାକୃତ ବିଜନତା ଆବଶ୍ୟକ, ତାହା ଏଠାରେ ମିଳେ, ସୁତରାଂ ଏ ସ୍ଥାନକୁ ଜିଲ୍ଲାର ଶିକ୍ଷା ବିଷୟକ ଆନ୍ଦୋଳନର ଗୋଟିଏ କେନ୍ଦ୍ରସ୍ଥାନ କରାଯାଇପାରେ । ଅନ୍ୟାନ୍ୟ ବିଷୟ ଦୃଷ୍ଟିରେ ଏ ସ୍ଥାନର ଯେତେ ସୁବିଧା ବା ଦାବି ଥାଉ ପଛକେ, ମଫସଲର ସହଜ ଅସୁବିଧା ଓ ଅଭାବ ଅନେକ ଅଛି ଓ ରହିଛି । ତେଣୁ ଆପଣମାନଙ୍କ ଅବସ୍ଥାନ ପକ୍ଷେ ଏହା ଅନେକାଂଶରେ ଅସୁବିଧାଜନକ ଓ କଷ୍ଟକର ହୋଇଅଛି ସନ୍ଦେହ ନାହିଁ । ଯାହାହେଉ ଜାତୀୟ କାର୍ଯ୍ୟର ଗୌରବ ଦୃଷ୍ଟିରେ ଏବଂ ଆମ୍ଭମାନଙ୍କ ଶକ୍ତିର ସ୍ୱଳ୍ପତା ବିବେଚନାରେ ଆପଣମାନେ ସେ ସବୁ କଷ୍ଟ ଗଣିବେ ନାହିଁ । ଏହା ଶିକ୍ଷା ସମ୍ମିଳନୀର ପ୍ରଥମ ଅଧିବେଶନ, ତେଣୁ ଅପୂର୍ଣ୍ଣାଙ୍ଗ ହେବା ବିଚିତ୍ର ନୁହେଁ । ସମୟର ସ୍ୱଳ୍ପତା ଓ ଅନ୍ୟାନ୍ୟ ଅସୁବିଧା ହେତୁରୁ ଆମ୍ଭେମାନେ ଜାଣୁ ଆପଣମାନଙ୍କ ପରିଚର୍ଯ୍ୟାରେ ଯେପରି ଅନେକ ତ୍ରୁଟି ଘଟିଅଛି । ଏ ଅନୁଷ୍ଠାନର କେତେକ ପ୍ରୟୋଜନୀୟ ଅଙ୍ଗର ମଧ୍ୟ ଅଭାବ ରହିଅଛି । ଆଜିକାଲି ପ୍ରତ୍ୟକ୍ଷ ପ୍ରମାଣ ଯୁଗରେ ଏପରି କୌଣସି ସଭାସମିତି ସମ୍ମିଳନୀ ପ୍ରଭୃତିରେ ଲୋକସାଧାରଣଙ୍କୁ କୌଣସି ବିଷୟ ବିଶେଷ ରୂପେ ବୁଝାଇବା ନିମନ୍ତେ ସେହି ବିଷୟକ ଗୋଟିଏ ପ୍ରଦର୍ଶନୀ ଏକାନ୍ତ ଆବଶ୍ୟକ । ଆମ୍ଭେମାନେ ଏହି ପ୍ରଥମ ଅଧିବେଶନରେ ତାହା କରି ନ ପାରି ଦୁଃଖିତ ଅଛୁଁ । ଆଶାକରୁଁ ପରବର୍ତ୍ତୀ ଅଧିବେଶନମାନଙ୍କରେ ଏହି ଅଭାବ ପୂରଣ କରିବା ନିମନ୍ତେ ଯଥାସମ୍ଭବ ଚେଷ୍ଟା କରାଯିବ ।

ଏହି ଜିଲ୍ଲା କନ୍‌ଫରେନ୍‌ସରେ ଇଂରେଜୀ ଅଧିକାରସ୍ଥ ପୁରୀଜିଲ୍ଲା ଏବଂ ତତ୍‌ସଂଲଗ୍ନ ଦୁଇ ଗଡ଼ଜାତ ନିଆ ହୋଇଅଛି ; ଗଡ଼ଜାତମାନେ ରାଜନୈତିକ ଭାବରେ ଏକ ପ୍ରକାର ବ୍ରିଟିଶ ଜିଲ୍ଲାରୁ ପୃଥକ ହେଲେହେଁ ଆମ୍ଭମାନଙ୍କ ସହିତ ଗାଢ଼ ଜାତୀୟତା ଓ ସାମାଜିକତା ସୂତ୍ରରେ ଆବଦ୍ଧ । ସୁତରାଂ ଓଡ଼ିଆ ଜାତିର କଲ୍ୟାଣ ଉଦ୍ଦେଶ୍ୟରେ ଅନୁଷ୍ଠିତ ଯେ କୌଣସି ଆନ୍ଦୋଳନରେ ସେମାନଙ୍କର ଯୋଗ ରହିବା ସର୍ବଥା ବାଞ୍ଛନୀୟ ; ନତୁବା ଓଡ଼ିଆମାନଙ୍କର ଜାତୀୟତା ଆନ୍ଦୋଳନ ବିକଳାଙ୍ଗ ହେବ ।

ଏ ଜିଲ୍ଲାର ସକଳ ପ୍ରକାର ଶିକ୍ଷାର ଉନ୍ନତି ବିଧାନ ଏ ଆନ୍ଦୋଳନର ଉଦ୍ଦେଶ୍ୟ । ନିମ୍ନଶିକ୍ଷା, ମଧ୍ୟଶିକ୍ଷା ଓ ଉଚ୍ଚଶିକ୍ଷା, ଲୋକଶିକ୍ଷା, ସାଧାରଣ ଶିକ୍ଷା, ସ୍ତ୍ରୀ ଶିକ୍ଷା, ପୁରୁଷ ଶିକ୍ଷା, ବୈଷୟିକ ଶିକ୍ଷା, ନୈତିକ ଶିକ୍ଷା ଇତ୍ୟାଦି ସକଳ ବିଭାଗ ଓ ସକଳ ପ୍ରକାର ଶିକ୍ଷା ଏ ଆନ୍ଦୋଳନର ଅଙ୍ଗୀଭୂତ ହେବ । ଯେଉଁସବୁ ପ୍ରାଚୀନ ଅନୁଷ୍ଠାନମାନ ଉପଯୁକ୍ତ ପରିଚାଳନା ଓ ତତ୍ତ୍ୱାବଧାନ ଅଭାବରୁ ଲକ୍ଷ୍ୟଭ୍ରଷ୍ଟ ହୋଇ ବିକୃତ ଆକାର ଧାରଣ କରିଅଛି, ଯଥାସମ୍ଭବ ସଂସ୍କାର ଦ୍ୱାରା ସେମାନଙ୍କୁ କାଳୋଚିତ ପ୍ରୟୋଜନୀୟ ଅନୁଷ୍ଠାନରେ ପରିଣତ କରିବାକୁ

ହେବ । ଉଦାହରଣ ସ୍ଥଳରେ କୁହାଯାଇ ପାରେ ଯେ, ଆମ୍ଭମାନଙ୍କ ଦେଶରେ ଅନେକ ଗ୍ରାମରେ ଯେଉଁସବୁ ଭାଗବତ ମନ୍ଦିର ଅଛି, ଚେଷ୍ଟା କଲେ ସେ ସବୁର ସଂସ୍କାର କରାଯାଇପାରେ । ଯେଉଁଠାରେ ବିଦ୍ୟାଳୟ ନାହିଁ, ବିଦ୍ୟାଳୟ ସ୍ଥାପନର ଚେଷ୍ଟା ହେବ, ଯେଉଁଠାରେ ବିଦ୍ୟାଳୟ ଅବନତି ପ୍ରାପ୍ତ ହୋଇଛି, ତାହାକୁ ଜାଗ୍ରତ କରାଯିବ, ଜିଲ୍ଲାର ସମସ୍ତ ବିଦ୍ୟାଳୟ ମଧ୍ୟରେ ପରସ୍ପର ସ୍ନେହ, ସୌହାର୍ଦ୍ଦ୍ୟ ଓ ସହଯୋଗିତାର ବୃଦ୍ଧି କରାଯିବ । ଶିକ୍ଷା ସମ୍ବନ୍ଧୀୟ ନାନାପ୍ରକାର ଅଭାବ ଅଭିଯୋଗମାନ ପ୍ରୟୋଜନ ମତେ ବିଭାଗୀୟ କର୍ତ୍ତୃପକ୍ଷ ଓ ସରକାର ବାହାଦୁରଙ୍କ ନିକଟରେ ଉପସ୍ଥାପିତ କରାଯିବ । ବର୍ଣ୍ଣ, ଧର୍ମ, ଜାତି ନିର୍ବିଶେଷରେ ଲୋକସାଧାରଣଙ୍କ ମଧ୍ୟରେ ଗ୍ରାମେ ଗ୍ରାମେ ଶିକ୍ଷାର ଉପକାରିତା ଓ ପ୍ରୟୋଜନୀୟତା ପ୍ରଚାର କରାଯିବ । ଏ ଆନ୍ଦୋଳନ କେବଳ ପୁସ୍ତକଗତ ସାହିତ୍ୟିକ ଶିକ୍ଷାରେ ଆବଦ୍ଧ ନ ରହି ବୈଷୟିକ ଶିକ୍ଷା ପ୍ରଭୃତି ଭିନ୍ନ ଭିନ୍ନ ବିଷୟର ଉନ୍ନତିକଳ୍ପେ ବିହିତ ଉପାୟମାନ ଅବଲମ୍ବନ କରାଯିବ । ଶ୍ରମଜୀବୀମାନଙ୍କ ମଧ୍ୟରେ ସେମାନଙ୍କ ଶିଳ୍ପ ବ୍ୟବସାୟାଦିରେ ନୂତନ ପ୍ରଣାଳୀ ପ୍ରବର୍ତ୍ତିତ କରାଯିବ । ସର୍ବୋପରି ଜାତୀୟ ଚରିତ୍ର ଗଠନ ପ୍ରତି ବିଶେଷ ଦୃଷ୍ଟି ଦିଆଯିବ ।

ଲୋକସାଧାରଣଙ୍କ ମଧ୍ୟରେ ଶିକ୍ଷାର ଅଭାବ ହେତୁରୁ ଆମ୍ଭମାନଙ୍କ ଦେଶରେ ଆଜିକାଲି ଶିକ୍ଷିତ ଅଶିକ୍ଷିତ ସମ୍ପ୍ରଦାୟ ଏପରି ଦୁ'ଟି ସ୍ୱତନ୍ତ୍ର ଜାତିର ସୃଷ୍ଟି ହୋଇପଡ଼ିଛି ଏବଂ ସେ ଉଭୟଙ୍କ ମଧ୍ୟରେ ପରସ୍ପର ପ୍ରତି ସ୍ନେହ ସହାନୁଭୂତି କ୍ରମେ କ୍ଷୀଣ ହେଉଅଛି ।

ଲୋକସାଧାରଣ ଯେତେଦିନଯାଏ ଏପରି ଅନ୍ଧକାରରେ ଆଚ୍ଛନ୍ନ ରହିବେ, ଯେତେଦିନଯାଏ ସେମାନେ ଶିକ୍ଷିତମାନଙ୍କ ଆକାଙ୍କ୍ଷା ଓ ଅଭିପ୍ରାୟ ଅନୁଭବ କରିବାକୁ ସମର୍ଥ ନ ହେବେ, ଯେତେଦିନଯାଏ ଉଭୟଙ୍କ ମଧ୍ୟରେ ଗାଢ଼ ଅନୁରାଗ ଓ ଆଦର ଉଦ୍ରେକ ନ ହେବ, ଯେତେ ଦିନଯାଏ ପଲ୍ଲୀର ଅକିଞ୍ଚନ କୃଷକ ସମାଜରେ ତାହାର ସ୍ଥାନ କର୍ତ୍ତବ୍ୟ ନ ବୁଝିବ, ତେତେଦିନ ଶିକ୍ଷିତ ଜାତୀୟ ନେତାମାନଙ୍କର ସମସ୍ତ ଉଦ୍ୟମ ନିଶ୍ଚୟ ପଣ୍ଡ ହେବ, ସେମାନଙ୍କର ସମସ୍ତ ଉତ୍ସାହ ଓ ଉଦ୍‌ବୋଧନ ଉକ୍ତ ଅରଣ୍ୟେ ରୋଦନ ହେବ, ତେତେଦିନଯାଏ ପ୍ରକୃତ ଜାତି ଗଢ଼ି ହେବ ନାହିଁ, ଜାତୀୟ ପ୍ରାଣ ଓ ଜାତୀୟ ଶକ୍ତି କେବଳ ସାହିତ୍ୟଗତ ଭାଷା ହୋଇ ରହିବ ଏବଂ ତେତେଦିନ ଆମ୍ଭମାନଙ୍କ ହୃଦୟ ପ୍ରଜାବତ୍ସଳ ପଞ୍ଚମ ଜର୍ଜଙ୍କ ଭାଷାରେ—

"Wish that the homes of my Indian subjects may be brightened and their Labour sweatened by the spread of knowledge with what follows in its train—a higher level of thought, of comfort and of health." ଅପୂର୍ଣ୍ଣ ରହିବ ।

ଅତଏବ ଶିକ୍ଷା ବିଷୟକ ଏହି ଜାତୀୟ ଅନୁଷ୍ଠାନରେ ଦେଶାନୁରାଗୀ ରାଜଭକ୍ତ ଶିକ୍ଷିତ, ସମ୍ପତ୍ତିଶାଳୀ ସମସ୍ତଙ୍କର ଯଥାସାଧ୍ୟ ଧନ, ମନ, ପ୍ରାଣ ଦେବା କର୍ତ୍ତବ୍ୟ ।

ଅର୍ଥର ଅଭାବ ନାହିଁ । କୌଣସି ଜାତୀୟ ଆନ୍ଦୋଳନରେ ଅର୍ଥର ଅଭାବ ପ୍ରକୃତ ଅଭାବ ନୁହେଁ; ଅଭାବ କେବଳ ପ୍ରାଣ; ପ୍ରାଣ ନ ଥିଲେ ସ୍ପନ୍ଦନ ନାହିଁ, ସ୍ପନ୍ଦନର ଅନ୍ୟ ନାମ ତ ଆନ୍ଦୋଳନ । ପ୍ରାଣର ସହିତ, ପ୍ରଗାଢ଼ ଆନ୍ତରିକତା ଓ ଏକନିଷ୍ଠତାର ସହିତ କାର୍ଯ୍ୟରେ ଲାଗିଲେ ଅର୍ଥ ଓ ତଦନୁରୂପ ଅନ୍ୟାନ୍ୟ ଉପାଦାନମାନ ସ୍ୱତଃ ମିଳିବ । ଆମ୍ଭମାନଙ୍କ ଦେଶର ପ୍ରବୃଦ୍ଧ ପ୍ରବୀଣ ନେତା ପରମ ଭକ୍ତିଭାଜନ ମାନନୀୟ ଶ୍ରୀ ମଧୁସୂଦନ ଦାସ ମହାଶୟ ଉତ୍କଳ ସମ୍ମିଳନୀ ନିମନ୍ତେ ପ୍ରତ୍ୟେକ ଦେଶବାସୀଙ୍କୁ ନିଜର ଦୈନିକ ଆୟ ଦେବାଲାଗି ଯେ ଅନୁଜ୍ଞା କରିଥିଲେ ତହିଁରେ ସମସ୍ତେ ପ୍ରତିଶ୍ରୁତ ଥିଲେହେଁ ନାନା କାରଣରୁ ଅନେକେ ଆଜିଯାଏ ସେ ଅଙ୍ଗୀକାର ପୂରଣ କରିବାକୁ ପ୍ରସ୍ତୁତ ହୋଇନାହାନ୍ତି । ସମ୍ମିଳନୀରେ ପ୍ରକୃତ ପ୍ରାଣ ଜାଗ୍ରତ ହେବାର ଦେଖିଲେ ଅନେକେ ସେ ଅଙ୍ଗୀକାର ପୂରଣ କରିବେ, ସନ୍ଦେହ ନାହିଁ । ତାହାହେଲେ ଆମ୍ଭମାନଙ୍କ ଜାତୀୟ ଆନ୍ଦୋଳନର ସୁପରିଚାଳନା ଏବଂ ଉଦ୍ଦେଶ୍ୟ ସାଧନ ପକ୍ଷେ ଯଥେଷ୍ଟ ସୁବିଧା ହେବ । ଦୈନିକ ଆୟ ପର୍ଯ୍ୟନ୍ତ ନ ଯାଇ ଦେଶର ପ୍ରତ୍ୟେକ ବ୍ୟକ୍ତିଙ୍କଠାରୁ ଅର୍ଥାତ୍ ବାଳକ, ବୃଦ୍ଧ, ବ୍ରାହ୍ମଣ, ବାଉରୀ, ଧନୀ ଦରିଦ୍ର, ପ୍ରତ୍ୟେକଙ୍କ ଠାରୁ ବର୍ଷରେ ଗୋଟିଏ ଲେଖାଏଁ ପଇସା ଆଦାୟ କରି ପାରିଲେ ଜାତୀୟ ଅନୁଷ୍ଠାନ ନିମନ୍ତେ ଗୋଟିଏ ସୁଦୃଢ଼ ପାଣ୍ଠି ହୋଇ ପାରିବ । ଏହା ନିତାନ୍ତ କଳ୍ପନାର ବିଳାସ ବୋଲି ମନେ କରିବା ଉଚିତ ନୁହେଁ । ରାଜଭବନଠାରୁ କୃଷକର କୁଟୀର ପର୍ଯ୍ୟନ୍ତ ହାଟବାଟ, ନଗର ଗ୍ରାମ ସର୍ବତ୍ର ଥରେ ଜାତୀୟତା-ସ୍ରୋତ ପ୍ରବାହିତ କରି ଦେଇପାରିଲେ, ଜାତୀୟ ଭାବରେ ଲୋକସାଧାରଣଙ୍କ ପ୍ରାଣକୁ ଥରେ ନଚାଇ ଦେଇ ପାରିଲେ, ଜାତୀୟ ଅନୁଷ୍ଠାନକୁ ଧର୍ମର ପବିତ୍ର ରସରେ ରସାଣିତ କରି ଲୋକସାଧାରଣଙ୍କ ସମ୍ମୁଖରେ ରଖିପାରିଲେ, ଆମ୍ଭମାନଙ୍କର ସରଳ ପ୍ରାଣ, ଚିର ଦାନଶୀଳ ଦେଶବାସୀଗଣ ଅତି ଆଗ୍ରହ ସହକାରେ ଅନ୍ତତଃ ବର୍ଷରେ ଗୋଟିଏ ଗୋଟିଏ ପଇସା ଦେବାକୁ କୁଣ୍ଠିତ ହେବେ ନାହିଁ । ଜିଲ୍ଲାରେ ଏହି ଶିକ୍ଷା ବିଷୟକ ଆନ୍ଦୋଳନର ପରିଚାଳନା ନିମନ୍ତେ ଗୋଟିଏ ଜିଲ୍ଲାପାଣ୍ଠି ସ୍ଥାପିତ ହେବ । ଜିଲ୍ଲା ଶିକ୍ଷା ପାଣ୍ଠି ପ୍ରଧାନତଃ ଜିଲ୍ଲାର ଶିକ୍ଷାରେ ନିୟୋଜିତ ହେବ ଏବଂ ଜିଲ୍ଲାର ଉପଯୁକ୍ତ ଛାତ୍ର-ଛାତ୍ରୀମାନଙ୍କୁ ଦେଶ ମଧ୍ୟରେ ଯେ କୌଣସି ଶିକ୍ଷାରେ ସାହାଯ୍ୟ କରିବ । ପ୍ରତ୍ୟେକ ଜିଲ୍ଲାରେ ଏହିପରି ଗୋଟିଏ ଗୋଟିଏ ପାଣ୍ଠି ହେଲେ ସେହି ପାଣ୍ଠିର କୌଣସି ନିର୍ଦ୍ଦିଷ୍ଟ ଅଂଶ ଗୋଟିଏ ପ୍ରାଦେଶିକ ଶିକ୍ଷା ପାଣ୍ଠି ଗଠନ ନିମନ୍ତେ ଦିଆଯିବ । ପ୍ରାଦେଶିକ ପାଣ୍ଠି ସାହାଯ୍ୟରେ ଉତ୍କଳର ଯେ କୌଣସି ଗୋଟିଏ ସ୍ଥାନର ଉପଯୁକ୍ତ ଛାତ୍ର ବାର୍ଷିକ ଅନ୍ତତଃ ଜଣେ ଲେଖାଏଁ କୌଣସି ଗୋଟିଏ ଗୋଟିଏ ବିଶିଷ୍ଟ ବିଷୟ ଶିକ୍ଷା ନିମନ୍ତେ ବିଦେଶକୁ ପ୍ରେରିତ ହେବେ । ଏହି ଉଦ୍ଦେଶ୍ୟରେ ଏହି ସମ୍ମିଳନୀ ପକ୍ଷରୁ ଏ ଜିଲ୍ଲାରେ ଗୋଟିଏ ଶିକ୍ଷା ପାଣ୍ଠି ସ୍ଥାପନର ଆୟୋଜନ ହେବ । ସୁଖର କଥା, ଏପରି ପାଣ୍ଠି ସ୍ଥାପନ ବିଷୟରେ ଗଞ୍ଜାମ ଆଗରୁ ବାଟ ଦେଖାଇ ଅଛି । ଆଶା କରାଯାଏ, ଓଡ଼ିଶାର ଅନ୍ୟାନ୍ୟ ଜିଲ୍ଲାମାନଙ୍କରେ ଶିକ୍ଷା ପାଣ୍ଠି ସ୍ଥାପନର ଚେଷ୍ଟା ହେବ ଏବଂ ଅଳ୍ପ ସମୟ ମଧ୍ୟରେ ପ୍ରାଦେଶିକ ବା ଉତ୍କଳ ଶିକ୍ଷା ପାଣ୍ଠି

ସ୍ଥାପିତ ହେବ । ଅମ୍ଭମାନଙ୍କର ଆଶା ଉଚ୍ଚ, ଅନୁଷ୍ଠାନ ଗୁରୁତର, ଶକ୍ତି କ୍ଷୀଣ, ବଳ ସାମାନ୍ୟ । ଅତୀତ ଜାତୀୟ ଗୌରବ ସ୍ମୃତିରେ ଅନୁପ୍ରାଣିତ ଏବଂ ଭବିଷ୍ୟତ ପ୍ରତି ଆଶାନ୍ୱିତ ହୋଇ ଆମ୍ଭେମାନେ ଏହି ଆନ୍ଦୋଳନ ଆରମ୍ଭ କରିଅଛୁଁ ।

ଜଗତରେ କୌଣସି ଜାତିର ସୃଷ୍ଟି ନିରର୍ଥକ ନୁହେଁ । ପ୍ରତ୍ୟେକ ଜାତିର ଲକ୍ଷ୍ୟ ଅଛି, ଉଦ୍ଦେଶ୍ୟ ଅଛି; ସେ ଅବଶ୍ୟ ତାହା ସାଧନ କରିବ । ସେହି ଲକ୍ଷ୍ୟ ସାଧନ ନ ହେବାଯାଏ ତାହାର କାର୍ଯ୍ୟ ଅସମ୍ପୂର୍ଣ୍ଣ । ଉତ୍କଳ ଚିରଦିନ ନିର୍ଜୀବ ଓ ନଗଣ୍ୟ ରହିବ ନାହିଁ । ପୁରାଣ ପ୍ରସିଦ୍ଧ ଉତ୍କଳ ଏ ପର୍ଯ୍ୟନ୍ତ ତାହାର ଜାତୀୟ ଲକ୍ଷ୍ୟ ସାଧନ କରିନାହିଁ । ନୀଳାଚଳରେ ଉତ୍କଳୀୟମାନେ ସାମ୍ୟ ମୈତ୍ରୀର ଯେଉଁ ଧ୍ୱଜା ଉଡ଼ାଇ ଭାରତର ସକଳ ଶ୍ରେଣୀ, ସକଳ ସମ୍ପ୍ରଦାୟ, ସକଳ ସମାଜକୁ ମହାଜାତୀୟ ଏକତା ଆଡ଼କୁ ପରମ ପ୍ରେମରେ ଆମନ୍ତ୍ରଣ କରୁଅଛନ୍ତି, ଦିନ ଆସିବ, ଯେତେବେଳେ ସେହି ଆମନ୍ତ୍ରଣରେ ମହାଜାତୀୟ ସମନ୍ୱୟ ଘଟିବ ଏବଂ ଉତ୍କଳୀୟମାନଙ୍କର ସେହି ଧ୍ୱଜା ସମସ୍ତ ଭାରତର ଜାତୀୟ ଧ୍ୱଜାରେ ପରିଣତ ହେବ । ଉତ୍କଳ ଜାତିର ଏହି ଅବଶ୍ୟମ୍ଭାବୀ ଭବିଷ୍ୟତରେ ବିଶ୍ୱାସ ରଖି ଏବଂ ସେହି ସର୍ବଶକ୍ତିମାନ୍ ମଙ୍ଗଳ ନିଦାନ ବିଧାତାଙ୍କ ଆଶୀର୍ବାଦ ଉପରେ ନିର୍ଭର କରି ଆସ, ଜାତୀୟ ଆନ୍ଦୋଳନରେ ଆପଣାକୁ ନିୟୋଜିତ କରି ଧନ୍ୟ ହେବା; ପବିତ୍ର ହେବା । ପବିତ୍ର ସାଧୁ କାର୍ଯ୍ୟରେ ସନ୍ଦେହ ବା ଶଙ୍କା ନାହିଁ । ଭଗବାନ ଅମ୍ଭମାନଙ୍କୁ ଉତ୍ସାହ ଓ ଆଶ୍ୱାସନା ଦେଇ କହୁଅଛନ୍ତି—
"ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ ।"

## ରାଜ୍ୟ ବନାମ ରାଷ୍ଟ୍ର : ( ମୟୂରଭଞ୍ଜରେ ଓକିଲାତି )

ପଣ୍ଡିତ ଗୋପବନ୍ଧୁ ୧୯୦୬ରେ କଲିକତାରୁ ଓକିଲାତି ପାଶ୍ କରି ୧୯୦୮-୦୯ରେ ପୁରୀରେ ଓ ପରେ ମଧୁବାବୁଙ୍କ ପାଖରେ କଟକରେ ଓକିଲାତି କରିଥିଲେ । ଏହି ସମୟରେ ଉତ୍କଳସମ୍ମିଳନୀ ମିଳନପୀଠରେ ଓଡ଼ିଶାର ତତ୍କାଳୀନ ବୃହତ୍ତମ ଦେଶୀୟରାଜ୍ୟର ପରମ ପ୍ରଜାବତ୍ସଳ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ ଗୋପବନ୍ଧୁଙ୍କ ଅସାଧାରଣ ଗୁଣରାଜିର ପରିଚୟ ପାଇ ତାଙ୍କୁ ନିଜ ରାଜ୍ୟର ଓକିଲ କରିନେବା ପାଇଁ ଇଚ୍ଛା ପ୍ରକାଶ କଲେ । ଗୋପବନ୍ଧୁ ପ୍ରଥମେ ଏ ପ୍ରସ୍ତାବରେ ରାଜି ହୋଇ ନଥିଲେ ବି ପରେ ତାଙ୍କର ପରମବନ୍ଧୁ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପ୍ରରୋଚନାରେ ସେ ଏହି ପଦବୀ ଗ୍ରହଣ କରି ୧୯୧୦ ମସିହା ଜାନୁଆରୀ ୧୦ ତାରିଖରେ ବାରିପଦାରେ ସରକାରୀ ଓକିଲ ରୂପେ ଯୋଗଦେଲେ । ପରେ ମହାରାଜା ଗୋପବନ୍ଧୁଙ୍କୁ ବାରିପଦା ପୌରସଭାର ଭାଇସ୍ ଚେୟାରମ୍ୟାନ୍ ରୂପେ ମନୋନୀତ କରିଥିଲେ । ମହାରାଜା ଶ୍ରୀ ରାମଚନ୍ଦ୍ର ସନ ୧୮୯୬ରୁ ମୟୂରଭଞ୍ଜ ପାଇଁ ଯେଉଁ ରାଜ୍ୟପରିଷଦ ବା ବିଧାନସଭା ଗଠନ କରିଥିଲେ ସେଥିରେ ମଧ୍ୟ ଗୋପବନ୍ଧୁ ଆଇନ ପରାମର୍ଶଦାତା ସଭ୍ୟ ଭାବେ ମନୋନୀତ ହୋଇଥିଲେ ।

୧୯୧୦ ମସିହା ଫେବୃୟାରୀ ୨୫ ତାରିଖ ବିଧାନସଭାର ବୈଠକରେ ପ୍ରଥମଥର ପାଇଁ ଯୋଗଦେଇ ଗୋପବନ୍ଧୁଙ୍କୁ ଅସ୍ତ୍ର ଶସ୍ତ୍ର ନିୟନ୍ତ୍ରଣ ନିୟମାବଳୀର ବିତର୍କରେ ଭାଗ ନେବାକୁ ହୋଇଥିଲା । ସେ ଏପରି ଏକ ଆଇନ୍ ପ୍ରଣୟନର ବିରୋଧ କରି ଯେଉଁ ବକ୍ତୃତା ଦେଇଥିଲେ ତାହା ମହାରାଜାଙ୍କୁ ଖୁବ୍ ଆକୃଷ୍ଟ କରିପାରିଥିଲା । ବିଧାନସଭାର ଅଧ୍ୟକ୍ଷଭାବରେ ନିଜେ ମହାରାଜା ଗୋପବନ୍ଧୁଙ୍କ ମତାମତକୁ ଗ୍ରହଣ କରି ନିଷ୍ପତ୍ତି ଦେଇଥିଲେ ଯେ, "ମୟୂରଭଞ୍ଜରେ ଏପରି କୌଣସି ଘଟଣା ଘଟିନାହିଁ, ଯାହା ଫଳରେ କି ଏପରି ଏକ ଅସ୍ତ୍ର ଆଇନ ଜାରି ହେବା ଉଚିତ ହେବ ।"

ବିଧାନସଭାର ସଭ୍ୟଭାବେ ଓ ଆଇନ୍ ପରାମର୍ଶଦାତା ରୂପେ ଗୋପବନ୍ଧୁ ନିର୍ଭୀକଭାବେ ତାଙ୍କର ସ୍ୱାଧୀନ ମତ ପ୍ରକାଶ କରି କ୍ରମେ ଏକଚ୍ଛତ୍ରବାଦୀ ରାଜଶାସନକୁ ଲୋକଶାସନରେ ପରିଣତ କରିବାପାଇଁ ପରାମର୍ଶ ଦେଉଥିଲେ । ଅବଶ୍ୟ ସବୁ ଦିଗରୁ ସେତେବେଳେ ମୟୂରଭଞ୍ଜ ଅନ୍ୟାନ୍ୟ ଦେଶୀୟ ରାଜ୍ୟଠାରୁ ସବୁ ଦିଗରେ ବହୁତ ଉନ୍ନତି କରିଥିଲା । ନିଜେ ରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଦେଓ ବିଦ୍ୟୋତ୍ସାହୀ, ସଂସ୍କୃତିସମ୍ପନ୍ନ ଓ ଅତ୍ୟନ୍ତ ଉଦାର ପ୍ରଜାବତ୍ସଳ ରାଜା ଥିଲେ ।

୧୯୧୧ ମସିହା ଏପ୍ରିଲ ୬ ତାରିଖରେ ମୟୂରଭଞ୍ଜ ବିଧାନସଭାର ବଜେଟ ବୈଠକରେ ଗୋପବନ୍ଧୁ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ ଓ ଅବୈତନିକ କରିବା ପାଇଁ ଦାବୀ କରି ଯେଉଁ ବକ୍ତୃତା ଦେଇଥିଲେ ତାହା ମୟୂରଭଞ୍ଜର ଇତିହାସରେ ଏକ ସ୍ମରଣୀୟ ଅଧ୍ୟାୟ । ଗୋପବନ୍ଧୁ କହିଲେ ଯେ, "ବଣର କାଠ ବା ଭୂଗର୍ଭର ଖଣିଜସମ୍ପଦ ଅପେକ୍ଷା ଜନସାଧାରଣ ହେଉଛନ୍ତି ରାଜ୍ୟର ସର୍ବଶ୍ରେଷ୍ଠ ସମ୍ପଦ । ଲୋକଙ୍କ ଉପକାର ପାଇଁ ରାଜ୍ୟରେ ସାମ୍ବିଧାନିକ ସରକାର ପ୍ରତିଷ୍ଠା କଲେ, ଲୋକେ ତାକୁ ଅଧିକ ଉପଲବ୍ଧି କରିବେ । ସେଥିପାଇଁ ସେମାନଙ୍କର ଶିକ୍ଷା ନିତାନ୍ତ ଆବଶ୍ୟକ । ଶିକ୍ଷାର ପ୍ରସାର ନ ହେଲେ ଲୋକେ ସେମାନଙ୍କ ମୌଳିକ ଅଧିକାର ସମ୍ପର୍କରେ ଅବହିତ ହୋଇପାରିବେ ନାହିଁ ।" ଗୋପବନ୍ଧୁ ତାଙ୍କ ବକ୍ତବ୍ୟରେ ଭାରତର ପ୍ରଖ୍ୟାତ ଦେଶୀୟ ରାଜ୍ୟ ବରୋଦା ଓ ଓଡ଼ିଶାର ଢେଙ୍କାନାଳରେ ହୋଇଥିବା ଶିକ୍ଷାପ୍ରଗତି ସମ୍ପର୍କରେ ଏକ ତୁଳନାତ୍ମକ ବିବରଣୀ ବିଧାନସଭାରେ ଉପସ୍ଥାପିତ କରିଥିଲେ । ମହାରାଜା ତାଙ୍କ ବକ୍ତବ୍ୟରେ ବାରିପଦାରେ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ କରିବା ବିଷୟରେ ଉଚିତ ବିଚାର କରାଯିବ ବୋଲି ମନ୍ତବ୍ୟ ଦେଇଥିଲେ ।

ନୀଳଗିରି ରାଜ୍ୟରେ ୧୯୦୬ରେ ଶିକ୍ଷକତା କରିବା ସମୟରେ ତଥା ମୟୂରଭଞ୍ଜର ସରକାରୀ ଓକିଲଭାବେ ନିଯୁକ୍ତ ଓ ପରେ ୧୯୧୨ ମସିହାରେ ଏହି ପଦବୀ ପ୍ରତ୍ୟାଖାନରେ ସେ ଦେଶୀୟ ରାଜ୍ୟ ସମ୍ପର୍କରେ ଯେଉଁ ଅଭିଜ୍ଞତା ହାସଲ କରିଥିଲେ 'ସତ୍ୟବାଦୀ' ମାସିକ ପତ୍ରିକାରେ ପରେ 'ଭାରତୀୟ ରାଜା ଓ ରାଜକୁମାର' ନାମକ ଶିରୋନାମାରେ ଯେଉଁ ମତାମତ ପ୍ରକାଶ କରିଥିଲେ ତାହା ନିମ୍ନରେ ଉଦ୍ଧୃତ ହେଲା—

"ଲୋକଙ୍କର ସାଧାରଣତଃ ଧାରଣା ଯେ, ପୂର୍ବଜନ୍ମର ତପସ୍ୟା ଫଳରେ ମନୁଷ୍ୟ ରାଜବଂଶରେ ଜନ୍ମେ । ରାଜା ଓ ରାଜକୁମାରମାନଙ୍କ ଜୀବନ କେବଳ ଭୋଗ ନିମନ୍ତେ । ତେଣୁ ବିଳାସ, ଆମୋଦ ଓ ସମ୍ଭୋଗରେ ତାହା କଟିବ—ଏଥିରେ ଦୋଷ କଣ ? ପହଡ଼, ମଣୋହି, ଠାଲାଗି ଅନ୍ଧ ନିଯ୍ମା ଛଡ଼ା ରାଜାଙ୍କର ଆଉ କୌଣସି କର୍ତ୍ତବ୍ୟ ନାହିଁ । ଯଥାର୍ଥରେ କୌଣସି କୌଣସି ରାଜା ଓ ରାଜକୁମାର ଏହି ଧାରଣାରେ ଏତେ ଜଡୀଭୂତ ଯେ ସୂର୍ଯ୍ୟୋଦୟର ଶୋଭା ଦେଖିବା ତାଙ୍କ ଜୀବନରେ କେବେ ଘଟିନାହିଁ; କିନ୍ତୁ ରାଜାମାନେ ତ ଦେଶର ନାୟକ । ପ୍ରଜାପୁଞ୍ଜର ଆଖି ସବୁବେଳେ ସେମାନଙ୍କ ଉପରେ । କଥାରେ ଅଛୁ, "ଯଥା ରାଜା ତଥା ପ୍ରଜା" । ତେଣୁ ପ୍ରଜାର ଭିତରେ ଯାହାର ଟିକିଏ ବିଷୟ ବଳିଲ ତାଙ୍କୁ ରାଜାଙ୍କ ଆଳସ୍ୟ ଆମୋଦ କ୍ରମେ ଗ୍ରାସ କରୁଅଛି । ସେଥିରେ କ୍ରମେ ଆଳସ୍ୟାଦ ପ୍ରବୃତ୍ତି ବୃଦ୍ଧି ଭେଦ ସାରାସମାଜ ବ୍ୟାପି ଯାଉଅଛି । ଏହି ଅବସ୍ଥା ଦେଖି ଆଳସ୍ୟ, ଆମୋଦ, ଅନବଧାନତା ପ୍ରଭୃତି ଭାରତଜୀବନର ମୀତ ବୋଲି କ୍ରମେ ଦେଶୀ ବିଦେଶୀ ସମସ୍ତଙ୍କ ଧାରଣା ହୋଇଯାଉଅଛି । କିନ୍ତୁ ଭାରତୀୟ ଜୀବନର ଗତି ଏ ମାର୍ଗରେ ନୁହେଁ । ଭାରତର ରାଜା, ସମ୍ରାଟମାନେ କେବେ ଦିନକୁ ରାତି, କି ରାତିକୁ ଦିନ କରୁ ନଥିଲେ । ଭାରତର ପ୍ରାଚୀନ ଆଦର୍ଶ ନରପତି ରଘୁବଂଶୀୟମାନଙ୍କ ଚରିତ ବର୍ଣ୍ଣନାରେ ମହାକବି କାଳିଦାସ ସେମାନଙ୍କୁ "ଯଥାକାଳ ପ୍ରବୋଧୀ" ବୋଲି କହି ସେମାନଙ୍କ ଚରିତର ଗୋଟିଏ ବିଶେଷତ୍ୱ ଦେଖାଇ ଯାଇଛନ୍ତି ।"

ଗୋପବନ୍ଧୁ ଏହି ଲେଖାରେ ଆଉରଙ୍ଗଜେବ ତାଙ୍କ ପୁତ୍ର ମହମ୍ମଦଙ୍କୁ ଲେଖିଥିବା ଏକ ପତ୍ର ଉଲ୍ଲେଖ କରି ଆଉରଙ୍ଗଜେବଙ୍କ ସମୟାନୁବର୍ତ୍ତିତା ଓ କର୍ତ୍ତବ୍ୟଜ୍ଞାନ ସମ୍ପର୍କରେ ଆଲୋକପାତ କରିଛନ୍ତି । ପୁତ୍ର ମହମ୍ମଦଙ୍କର ଶିକାରପ୍ରତି ଅତ୍ୟନ୍ତ ଆସକ୍ତି ଦେଖି ଆଉରଙ୍ଗଜେବ୍ ତାଙ୍କୁ ଆକ୍ଷେପ କରି ଲେଖିଥିଲେ—"ସାଧାରଣ ମନୁଷ୍ୟ ଓ ରାଜା ଯାହା ଶିକ୍ଷା କରିବା ଉଚିତ ତୁମ୍ଭେ ତାହା କଲନାହିଁ । ମୁଁ କଅଣ କରିପାରେ ? ତୁମ୍ଭେ ବର୍ତ୍ତମାନ ବୟସ୍କ । ଭଲ ମନ୍ଦ ବୁଝିପାରୁଛ ।"

ଆଉରଙ୍ଗଜେବଙ୍କ ପତ୍ରର ଉପରୋକ୍ତ ଉଦ୍ଧୃତାଂଶ ଯେଉଁ "ଆବାବର ଆଲମଗିର' ନାମକ ପାଣ୍ଡୁଲିପିରୁ ନିଆହୋଇଅଛି । ମାର୍ଜିତ ଓ ସୁରୁଚିସମ୍ପନ୍ନ ଭାଷା ଶିକ୍ଷା ନିମନ୍ତେ ଆଉରଙ୍ଗଜେବ ପୁତ୍ର ମହମ୍ମଦଙ୍କୁ 'ଆକବର ନାମା', ଅଧ୍ୟୟନ କରିବାକୁ ପରାମର୍ଶ ଦେଇଥିଲେ । 'ଆକବର ନାମା'ର ଏକ ସ୍ଥାନରେ ଆକବର କୌଣସି କର୍ମଚାରୀଙ୍କ ନିକଟକୁ ବାଦସାହୀ ଗାମ୍ଭୀର୍ଯ୍ୟ ଓ ମର୍ଯ୍ୟାଦା ସହକାରେ ଗୋଟିଏ ଚିଠି ଲେଖିଥିଲେ । ଆକବର ତାଙ୍କ ପତ୍ରରେ ଯେଉଁ ସମ୍ଭାଷଣ କରିଥିଲେ ଓ ଯେଉଁ ଭାଷାରେ ପତ୍ର ଲେଖିଥିଲେ ମହମ୍ମଦ 'ଆକବର ନାମା' ପଢ଼ି ପିତାଙ୍କୁ ଠିକ୍ ଅନୁରୂପ ଚିଠିଟିଏ ଲେଖିଥିଲେ । ପତ୍ର ପାଇ ପିତା ତାଙ୍କ ଉପଦେଶର ବିକୃତ ବ୍ୟବହାର ହୋଇଥିବାର ଅନୁଭବ କରି ଚରମ ମାନସିକ ଯନ୍ତ୍ରଣା ଅନୁଭବ କରିଥିଲେ । ଗୋପବନ୍ଧୁ ଏହି ଦୀର୍ଘଲେଖାରେ ଏ ଦୃଷ୍ଟାନ୍ତଟି ଦେଇ

ଶେଷକୁ ମନ୍ତବ୍ୟ ଦେଇଥିଲେ ଯେ "ଆମ ଦେଶରେ ଅନେକ ଲୋକ ଭାବପ୍ରକାଶ ନିମନ୍ତେ ଭାଷା ଖୋଜନ୍ତି ନାହିଁ, ବରଂ ଦେଶ କାଳ ପାତ୍ର ବିବେଚନା ନ କରି ଭାଷାର ଗୌରବ ଦେଖାଇବା ଲାଗି ଆସ୍ଥାନ ପ୍ରୟୋଗ କରିଥାନ୍ତି ।"

ଏହି ଲେଖାରେ ଗୋପବନ୍ଧୁ ଯେଉଁ ଦୂରଦୃଷ୍ଟି ଓ ଗଠନମୂଳକତାର ପରିଚୟ ଦେଇଥିଲେ ତାହାର ଯଥାର୍ଥ ତୁଳନା ନାହିଁ । ସେ କାୟମନୋବାକ୍ୟରେ ରାଜତନ୍ତ୍ରର ବିଲୋପ ଚାହୁଁଥିଲେ । ରାଷ୍ଟ୍ରଶାସନ ବା ଲୋକଶାସନ ତାଙ୍କ ଚିନ୍ତାର ସାମଗ୍ରୀ ଥିଲା ।

## ସରକାରୀ ଓକିଲ ପଦରୁ ଇସ୍ତଫା

ସାକ୍ଷୀଗୋପାଳରେ ତା୧୭-୭-୧୯୧୬ରେ ପୁରୀ ଜିଲ୍ଲା ଶିକ୍ଷା ସମ୍ମିଳନୀର ପ୍ରାୟ ଏକ ସପ୍ତାହକ ପୂର୍ବରୁ ଗୋପବନ୍ଧୁ ମୟୂରଭଞ୍ଜ ଷ୍ଟେଟ୍‌ର ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଏକ ବ୍ୟକ୍ତିଗତ ପତ୍ର (D.O. Letter)ରେ ୧୩।୭ ତାରିଖରେ ବାରିପଦା ଛାଡ଼ିବା ପାଇଁ ଛୁଟି ମାଗିଥିଲେ । କିନ୍ତୁ ସେତେବେଳେ ମୟୂରଭଞ୍ଜ ଷ୍ଟେଟ୍ ଓ ବନମାଳୀଧର ମହାପାତ୍ର ସରଦାରଙ୍କ ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ମକଦ୍ଦମାର ଶୁଣାଣି ଚାଲିଥାଏ । ଗୋପବନ୍ଧୁ ଷ୍ଟେଟ୍ ପକ୍ଷର ଓକିଲ ଭାବରେ ଏ ମକଦ୍ଦମା ଚଳାଉଥା'ନ୍ତି । ଆସନ୍ତା ୮।୭।୧୯୧୬ରେ ଏହି ମକଦ୍ଦମାର ଜମାନବନ୍ଦି ଥାଏ । ବୋଧହୁଏ ଏହି କାରଣରୁ ବାରିପଦା ଛାଡ଼ିବା ପାଇଁ ଗୋପବନ୍ଧୁଙ୍କୁ ସୁପରିଣ୍ଟେଣ୍ଡେଣ୍ଟ ସାହେବ ଅନୁମତି ଦେଲେ ନାହିଁ । ତେଣୁ ଗୋପବନ୍ଧୁ ଅନନ୍ୟୋପାୟ ହୋଇ ତା ୧୨।୭।୧୯୧୬ରେ ଏହି ଚାକିରିରୁ ଇସ୍ତଫା ଦେଇଦେଲେ । ଏହି ଇସ୍ତଫା ପତ୍ରରେ ଉପରୋକ୍ତ କେସ୍‌ରେ ଜବାବ୍ ସୁଆଲ କରିଥିବା ଓ ଅନ୍ୟାନ୍ୟ ଗସ୍ତ ବାବଦରେ ସେ ୧୯ ଦିନର ପ୍ରାପ୍ୟ ଦାବୀ କରିଥିଲେ । କିନ୍ତୁ ପୁରୀ ଜିଲ୍ଲା ଶିକ୍ଷା ସମ୍ମିଳନୀରୁ ମୟୂରଭଞ୍ଜ ଫେରିବା ବାଟରେ କଟକଠାରେ ଆସି ପହଞ୍ଚି ତା ୧୭। ୭ରେ ତାଙ୍କ ଇସ୍ତଫାପତ୍ର ଗୃହୀତ ହୋଇଥିବା ଚିଠି ପାଇଲେ । ଉପରଲିଖିତ ମକଦ୍ଦମାର ରାୟ ପ୍ରକାଶ ନ ପାଉଣୁ ମଝିରୁ ଦାୟିତ୍ୱ ଛାଡ଼ି ଦେଇଥିବାଯୋଗୁ ତାଙ୍କର କୌଣସି ପ୍ରାପ୍ୟ ମିଳିବ ନାହିଁ ବୋଲି ସୁପରିଣ୍ଟେଣ୍ଡେଣ୍ଟ ସ୍ପଷ୍ଟ ଜଣାଇ ଦେଇଥିଲେ । ଏ ଚିଠି ପାଇ ସମ୍ଭବତଃ ତତ୍କାଳୀନ ବିଶିଷ୍ଟ ଦେଶସେବୀ ଜନନେତା ମଧୁବାବୁଙ୍କ ପରାମର୍ଶକ୍ରମେ ସେ ମୟୂରଭଞ୍ଜ ଜିଲ୍ଲା ଜଜ୍‌ଙ୍କୁ ଗୋଟିଏ ଚିଠି ଲେଖିଲେ । ସେ ଚିଠିରେ ମକଦ୍ଦମାର ଶେଷ ପର୍ଯ୍ୟନ୍ତ (ଜୁଲାଇ ପର୍ଯ୍ୟନ୍ତ) ସେ ସରକାରୀ ଓକିଲ ଭାବରେ କାମ ଚଳାଇବାକୁ ନିଜର ସମ୍ମତି ପ୍ରକାଶ କରିଥିଲେ ଏହାକୁ ଏକ ନୈତିକ କର୍ତ୍ତବ୍ୟ ବୋଲି ସେ ବିଚାର କରି ନିଜ ଜିଦରୁ ଓହରି ଯାଇଥିବା ତାଙ୍କ ଉଦାରତାର ଏକ ମହତ ପରିଚୟ ଦିଏ ।

## ଉଦ୍ଦେଶ୍ୟ ଓ ଉପଯୋଗ

ଏକ ମହାନ୍ ଉଦ୍ଦେଶ୍ୟ ରଖି କାର୍ଯ୍ୟ କରିବାର ଉପଯୋଗିତା ଗୋପବନ୍ଧୁ ବୁଝିଥିଲେ । କର୍ମର ମାନଦଣ୍ଡରେ ଜୀବନର ସ୍ଥିତିକୁ ମାପି ସେ ଏକ ବିପୁଳ ରହସ୍ୟ ଉଦ୍‌ଘାଟନ କରିଥିଲେ । ତାହାର ପରୀକ୍ଷା ପୀଠ ହେଲା ସମଗ୍ର ଓଡ଼ିଶା ଓ ଭରକେନ୍ଦ୍ର ହେଲା ସତ୍ୟବାଦୀ । ଜନ୍ମଭୂମିର ଉପଯୁକ୍ତ ସେବକ ଭାବେ ଶିଶୁକୁ ଯୁବକ ଓ ଯୁବକକୁ ମନୀଷ କରିବାର ସ୍ୱପ୍ନରେ ସତ୍ୟବାଦୀ ଥିଲା ଏକ ଦୁରନ୍ତ ଯୋଜନା ପୀଠ । ଗୋପବନ୍ଧୁଙ୍କ ପ୍ରେରଣାରେ ସତ୍ୟବାଦୀର ସାଧକମାନେ ଅଭିଭୂତ ହେଉଥିଲେ ।

୧୯୧୩ ଜାନୁୟାରୀ ଶନିବାରର ଏକ ରମଣୀୟ ସନ୍ଧ୍ୟା । ଗୋପବନ୍ଧୁ ଉପସ୍ଥିତ ଥାଇ ଛାତ୍ରମାନଙ୍କର ଗୋଟିଏ ସମ୍ମିଳନୀ ବସିଲା । ଶିକ୍ଷକମାନେ ସମସ୍ତେ ଥା'ନ୍ତି । 'ଛାତ୍ର ଜୀବନର ଉଦ୍ଦେଶ୍ୟ' ସମ୍ପର୍କରେ ଗୋପବନ୍ଧୁ ପିଲାମାନଙ୍କ ବକ୍ତବ୍ୟ ଶୁଣିଲେ । ଉତ୍ତମ ମନୁଷ୍ୟ ଓ ଉତ୍ତମ ଦେଶବାସୀ ଗଢ଼ିବାର ଏହି ଉଦ୍‌ଯୋଗ ପଛରେ ଗୋପବନ୍ଧୁଙ୍କ ଉଦ୍‌ବେଗ ଅତି ଅକପଟ ଥିଲା । ସେ ସବୁ ଶ୍ରେଣୀରେ ମେଧାବୀ ଓ ଚରିତ୍ରବାନ୍ ପିଲାଙ୍କ କଥା ସବୁବେଳେ ପଚାରି ବୁଝୁଥିଲେ । ଶେଷକୁ ଗୋପବନ୍ଧୁ କିଛି ବକ୍ତବ୍ୟ ଦେଲେ । ସୁନ୍ଦର, ସରଳ, ପ୍ରାଣବନ୍ତ ସେ ଭାଷା । ଦେହରେ ଦେହରେ ମନରେ ମନରେ ସେ ଭାବନାର ଲହଡ଼ି ଖେଳି ଯାଉଥାଏ । ସେ ଉଦାହରଣ ଦେଇ କହୁଥାନ୍ତି—ଇଂଲଣ୍ଡର କବି ପୋପ୍ ପାଠପଢ଼ି କବି ହେବାର କଳ୍ପନା ଓ ଉଦ୍ଦେଶ୍ୟ ରଖିଥିଲେ । ଘୋର ଅର୍ଥାଭାବ ମଧ୍ୟରେ ସେ ଅକ୍ଳାନ୍ତ ପରିଶ୍ରମ କରିଥିଲେ । ସେ ମହାନ୍ କବି ହେଲେ । ଆବ୍ରାହମ ଲିଙ୍କନ ଏହି ମହାନ ଉଦ୍ଦେଶ୍ୟର ଉପଯୋଗିତା ପାଇଁ ଆମେରିକାର ରାଷ୍ଟ୍ରପତି ହୋଇପାରିଲେ । ନେପୋଲିୟନ ସାମାନ୍ୟ ସୈନିକ ସ୍ତରରୁ ଫ୍ରାନ୍ସର ସମ୍ରାଟ ହେଲେ ।

ଗୋପବନ୍ଧୁ ଜଣ ଜଣ କରି ପିଲାମାନଙ୍କୁ ସେମାନଙ୍କ ଭବିଷ୍ୟତ ଆଶା ଓ ଉଦ୍ଦେଶ୍ୟ ସମ୍ପର୍କରେ ପଚାରିବସିଲେ । ଜୀବନରେ କିଏ କଣ କରିବ ସେପରି କିଛି ସ୍ଥିର କରି ନଥିବାରୁ ସେ ଲକ୍ଷ୍ୟ ସ୍ଥିର କରିବାକୁ ବୁଝାଇ ଦେଇ ସମସ୍ତଙ୍କୁ ବିଦାୟ ଦେଲେ । ଆଉଥରେ ସତ୍ୟବାଦୀ ବିଦ୍ୟାଳୟକୁ ଗୋପବନ୍ଧୁ ଗ୍ରୀଷ୍ମ ଛୁଟୀ ପରେ ଆସିଥା'ନ୍ତି । ପିଲାମାନଙ୍କୁ ପାଖକୁ ଡ଼ାକି ବଡ଼ ଆଦରରେ ଛୁଟୀର କଥା ସବୁ ପଚାରିବସିଲେ ।

"ଛୁଟୀରେ ତୁମେ ସବୁ କଣ କଲ—ସଂକ୍ଷେପରେ କୁହ" । ବଡ଼ ମନୀଷୀର ଏ ନିହାତି ଛୋଟ ମାମୁଲି ପ୍ରଶ୍ନ । ହାଲୁକା ଭାବରେ ପିଲାଏ ଉତ୍ତର ଦେଲେ - କେହି ସହର ବୁଲି ଯାଇଥିଲା, କେହି ଯାତ୍ରା ଦେଖିଥିଲା, କେହି ବା ପିଠାପଣା ଖାଇ ଆନନ୍ଦରେ ଦିନ କଟାଇଥିଲା ।

କିନ୍ତୁ ଗୋପବନ୍ଧୁଙ୍କ ମୁହଁ ହଠାତ୍ ବିଷଣ୍ଣ ହୋଇଗଲା । ସେ ହସହସ ମୁହଁରେ ବ୍ୟଥାର କଳାଛାଇ ଘୋଟିଗଲା । ସେ ବଡ଼ ବିଚଳିତ ହୋଇ କହି ପକାଇଲେ—"କେହି ଜଣେ

ହେଲେ ଗ୍ରାମର ସାମୂହିକ କାମ କଲ ନାହିଁ । ରୋଗୀର ସେବା କଲ ନାହିଁ । ନିରକ୍ଷର ଲୋକଙ୍କୁ ପାଠ ପଢ଼ାଇଲ ନାହିଁ ?" ତାଙ୍କ କଥାର କାରୁଣ୍ୟ ବେଶ୍ ବାରି ହୋଇ ପଡ଼ୁଥିଲା ।

ଛାତ୍ରମାନେ ବଡ଼ ଲଜ୍ଜିତ ହେଲେ । ସେମାନଙ୍କ ମର୍ମେ ମର୍ମେ ଏହି ସ୍ନେହଶୀଳ ମଣିଷର ଆହତ ପ୍ରାଣର ବେସୁର ବେହାଗ କରୁଣ ମୂର୍ଚ୍ଛନା ସୃଷ୍ଟି କଲା । ସେଦିନ ବିମର୍ଷ ହୋଇ ସମସ୍ତେ ଫେରି ଆସିଲେ ।

ସତ୍ୟବାଦୀ ସ୍କୁଲର ସମ୍ପାଦକ ଗୋପବନ୍ଧୁ । ଏତେ ଯତ୍ନ, ଏତେ ନିଷ୍ଠା, ଏତେ ନିଅତ ଖୁବ୍ କମ୍ ଦେଖାଅଛୁ । ସେ ମଝିରେ ମଝିରେ ସ୍କୁଲକୁ ଆସନ୍ତି । ଅତି ଆଗ୍ରହରେ ବେଳେ ବେଳେ ପିଲାମାନଙ୍କୁ ପାଠ ପଢ଼ାଇ ବସନ୍ତି । ପିଲାମାନଙ୍କୁ ଏକାଠିକରି ସମାଜସେବା, ଦେଶସେବା ଆଦିରେ ଉଦ୍‌ବୁଦ୍ଧ କରନ୍ତି । ପିଲାମାନେ ଅତି ତନ୍ମୟ ହୋଇ ତାଙ୍କ କଥା ଶୁଣୁଥା'ନ୍ତି । ଶିକ୍ଷକମାନେ ତାଙ୍କ କଥାକୁ ବେଦପରି ମାନନ୍ତି । ପ୍ରାଣବନ୍ତ ଭାଷଣରେ ସେ ପିଲାମାନଙ୍କୁ ମୁଗ୍ଧ କରନ୍ତି । ଏହିଠାରେ ହିଁ ସେ ସମସ୍ତ ସାମାଜିକ କର୍ମ ପ୍ରେରଣାର ଭିତ୍ତି ପକାଇଲେ । ବନ୍ୟା, ମହାମାରୀ ଆଦିରେ ସମାଜ ଓ ରୋଗୀ ସେବା କରିବାଠାରୁ ବିଭିନ୍ନ ସଂସ୍କାରମୂଳକ ସ୍ୱେଚ୍ଛାସେବୀ କାମ ପର୍ଯ୍ୟନ୍ତ ତାଙ୍କ ଆହ୍ୱାନରେ ସମସ୍ତେ ଅଗ୍ରସର ହେଲେ । ବସ୍ତୁତଃ ସତ୍ୟବାଦୀ ଜୀବନଗଠନର ଏକ ସର୍ବତୋମୁଖୀ ଭୂମିକା ଗ୍ରହଣ କଲା । ସତ୍ୟବାଦୀ ହେଲା ଓଡ଼ିଶା ପାଇଁ ସବୁଠାରୁ ବଳି ଉଦ୍ଦେଶ୍ୟମୂଳକ ଜୀବନଦର୍ଶନ । ସମଗ୍ର ପରିପ୍ରେକ୍ଷୀରେ ତାହା ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣକଲା ।

## ଆଶ୍ଚର୍ଯ୍ୟ ଉପାଧି

ଗୋପବନ୍ଧୁ ସମ୍ପୂର୍ଣ୍ଣ ନୂତନ ଢାଞ୍ଚାରେ ଶିକ୍ଷାକୁ ପକାଇ ନୂତନ ନେତୃତ୍ୱ ଓ ଆଦର୍ଶ ବ୍ୟକ୍ତିତ୍ୱ ଗଢ଼ିବା ଦିଗରେ ଧ୍ୟାନ ରଖିଥିଲେ । ତେଣୁ ତାଙ୍କ ଚିନ୍ତାରେ ପ୍ରଚଳିତ ଶିକ୍ଷା ପଦ୍ଧତିର ବହୁ ବ୍ୟତିକ୍ରମ ଦେଖାଦେବା ସ୍ୱାଭାବିକ । ନୀଳକଣ୍ଠ ସତ୍ୟବାଦୀ ସ୍କୁଲ ଦାୟିତ୍ୱ ନେବା ପରେ ପରେ ଶ୍ରୀ ହରିହର ଦାଶଙ୍କୁ ପ୍ୟାରୀମୋହନ ଏକାଡ଼େମୀରୁ ସତ୍ୟବାଦୀକୁ ଅଣାଯାଇଥିବା କଥା ଆଗରୁ କୁହାଯାଇଛି । ତାଙ୍କୁ ଏ ସ୍କୁଲକୁ ହେଡମାଷ୍ଟର କରି ଅଣା-ଯାଇଥିଲା । ଗୋପବନ୍ଧୁଙ୍କ ପରିକଳ୍ପନାରେ ନୀଳକଣ୍ଠ ହେଲେ ସ୍କୁଲ ଓ ହଷ୍ଟେଲର ସୁପରି-ଣ୍ଟେଣ୍ଡେଣ୍ଟ । ଏପରି ପଦବୀ ବା ପାହ୍ୟା ସେତେବେଳେ ଶିକ୍ଷାବିଭାଗଦ୍ୱାରା ଅନୁମୋଦିତ ନ ହେବା କଥା । ଇନ୍‌ସପେକ୍ଟର ମେକଂବ (Mecomb) ସାହେବ ୧୯୧୩ ମସିହାର ମଧ୍ୟଭାଗରେ ସ୍କୁଲ ପରିଦର୍ଶନ କରିବାକୁ ଆସିଥିଲେ । ସେ ହେଡ୍‌ମାଷ୍ଟର ଓ ତାଙ୍କ ଉପରେ ଆହୁରି କ୍ଷମତାପନ୍ନ ଜଣେ ଶିକ୍ଷକ ସୁପରିଣ୍ଟେଣ୍ଡେଣ୍ଟ ପାହ୍ୟାରେ ରହିବା କଥା ପସନ୍ଦ କଲେ

ନାହିଁ । ସେ କହିଲେ ଜଣେ ତ ହେଡ଼ମାଷ୍ଟର, ପୁଣି ହାଇସ୍କୁଲ ସୁପରିଣ୍ଟେଣ୍ଡେଣ୍ଟ କ'ଣ ? ଏ ସ୍କୁଲର ପ୍ରାଣ ପ୍ରତିଷ୍ଠାତା ଗୋପବନ୍ଧୁଙ୍କ ଚିନ୍ତାଧାରା ଓ ସୁପରିକଳ୍ପିତ ଯୋଜନା ସେ ବା କିପରି ବୁଝନ୍ତେ ? ନିୟମ ଜଗି ଓ କୋର୍ଡ ଦେଖି ସରକାରୀ ଚାକିରିଆମାନେ ତାଙ୍କ କର୍ତ୍ତବ୍ୟ ଶେଷ କରନ୍ତି । ସେଥିରେ ଉଚ୍ଚ ଆବେଦନ ଓ ମାନବିକତା ଆସିବ ବା କାହୁଁ ?

ଗୋପବନ୍ଧୁ ଚିନ୍ତିତ ହେଲେନାହିଁ । ଇନ୍ସପେକ୍ଟର ଯିବାପରେ ସେ ସେଇଦିନ ସନ୍ଧ୍ୟାବେଳେ ହରିହର ଦାଶଙ୍କୁ 'ଆଚାର୍ଯ୍ୟ' ଉପାଧି ପ୍ରଦାନ କଲେ; ସେ ହେଲେ ସ୍କୁଲର ଆଚାର୍ଯ୍ୟ—ଆଚାର୍ଯ୍ୟ ହରିହର, ନୀଳକଣ୍ଠ ବାବୁ ପ୍ରଧାନ ଶିକ୍ଷକ ରହିଲେ, ଆଚାର୍ଯ୍ୟ ମହାଶୟ ଆପଣା ଯୋଗ୍ୟତା, ସହନଶୀଳତା ଓ ଅମାୟିକତାରେ ଏ ଉପାଧି ପାଇଁ ସୁଯୋଗ୍ୟ ବ୍ୟକ୍ତି । ତାଙ୍କର ସ୍ୱଭାବସୁଲଭ ସେବାପରାୟଣତା ପାଇଁ ସେ ଛାତ୍ରାବାସକୁ ଗୃହପରି କରି ପାରିଥିଲେ । ସମସ୍ତ ଛାତ୍ରଙ୍କ ଅନ୍ତରରେ ତାଙ୍କପାଇଁ ଅତୁଟ ଶ୍ରଦ୍ଧା କ୍ରମେ ସ୍ଥାନ ନେଉଥିଲା । ସମସ୍ତ ଛାତ୍ରଙ୍କ ଭଲମନ୍ଦର ଭାର ତେଣୁ ଏହି ପିତୃପ୍ରତିମ ମଣିଷ ଉପରେ ଆପଣା ଛାଏଁ ଲଦିହୋଇ ପଡ଼ିଲା । ସ୍ନେହର ବନ୍ଧନରେ ପ୍ରାଣର ଆବେଗରେ ସେ ସମସ୍ତଙ୍କୁ ଆପଣାର କଲେ । କାହାକୁ କଷ୍ଟ ଦେବା, କାହା ପ୍ରାଣରେ ଆଘାତ ଦେବା, ମନରେ ବେଦନା ଦେବା ତାଙ୍କ ଜାତକରେ ନଥିଲା । ଏଠାରେ ସେ ହୃଦୟର ଉଚ୍ଛଳ ପ୍ରାଣ-ପ୍ରାଚୁର୍ଯ୍ୟ ଆପଣାର ରାହାଧରି ନେଲା ।

## ମଣିଷ ପଣିଆର ଡାକରା

ଥରେ ସତ୍ୟବାଦୀ ସ୍କୁଲର ଜଣେ ମେଧାବୀ ଛାତ୍ର ଚନ୍ଦ୍ରଶେଖର ଓ ବାମଦେବଙ୍କ ମନରେ ଭକ୍ତକବି ମଧୁସୂଦନଙ୍କ 'ବୁଦ୍ଧଦେବ' ଶୀର୍ଷକ ପ୍ରବନ୍ଧ ଅଧ୍ୟୟନ କରି ବୈରାଗ୍ୟ ଜାତ ହେଲା । ସେମାନେ ସନ୍ନ୍ୟାସୀ ହେବା ଉଦ୍ଦେଶ୍ୟରେ ସ୍କୁଲଛାଡ଼ି ସତ୍ୟବାଦୀରୁ କଟକ ଯାଏ ଚାଲି-ଆସିଲେ । ଅକସ୍ମାତ୍ ସେମାନେ କାଠଯୋଡ଼ି ନଦୀ କୂଳରେ ଶ୍ରୀ ବାସୁଦେବ ମହାପାତ୍ରଙ୍କ ଦୃଷ୍ଟିରେ ପଡ଼ିଗଲେ । ସେତେବେଳେ ଶ୍ରୀ ମହାପାତ୍ର ମେସ୍‌ରେ ଥାଇ ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେଉଥାନ୍ତି । ସଂସାରରେ ରହି ଈଶ୍ୱରୋପାସନା ଓ ନିର୍ଲିପ୍ତ କର୍ମସାଧନାର ଉପଯୋଗିତା ସମ୍ପର୍କରେ ସେ ବହୁତ କଥା ବୁଝାଇବା ପରେ ପଳାତକ ଦୁଇଛାତ୍ରଙ୍କ ହୃଦାନ୍ତର ଜାତ ହେଲା । ସେମାନେ ବିଦ୍ୟାଳୟକୁ ଫେରି ଆସିଲେ ।

ସେମାନଙ୍କ ପଳାୟନ ବିଦ୍ୟାଳୟରେ ଯେପରି ଏକ କରୁଣ ଗାମ୍ଭୀର ବାତାବରଣ ସୃଷ୍ଟି କରିଥିଲା ସେମାନଙ୍କ ଆଗମନ ସେହିପରି ଆନନ୍ଦ ଓ ବିସ୍ମୟ ସୃଷ୍ଟି କଲା । ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ସେଦିନ ଏକ ସଭାର ଆୟୋଜନ ହେଲା । ସେଦିନ ଶନିବାର । ଆଗରୁ ଶନିବାର ଅପରାହ୍ନରେ ଆଲୋଚନା ସଭା ପ୍ରଥା ପ୍ରଚଳିତ ଥିଲା । ସେଦିନ

ପଳାତକ ଛାତ୍ରଙ୍କ କଥା ବୁଝାଯିବ ବୋଲି ପ୍ରସ୍ତାବିତ ହୋଇଗଲା ।

ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ନୀଳକଣ୍ଠ ବାବୁ ତାଙ୍କ ବକ୍ତବ୍ୟ ଆରମ୍ଭ କଲେ । ସେ କହିଲେ—"ମୋର ପ୍ରାଣରେ ଅପାର ଆନନ୍ଦ ଯେ ଆମ ବିଦ୍ୟାଳୟର ଶିକ୍ଷା ପ୍ରାଣସ୍ପର୍ଶୀ ହେଉଛି । ପୁସ୍ତକଗତ ବିଷୟମାନ ଶିକ୍ଷକମାନେ ସୁନ୍ଦରଭାବରେ ପଢ଼ାଉଛନ୍ତି ଏବଂ ବାଳକମାନେ ଯଥାର୍ଥ ଗ୍ରହଣ ମଧ୍ୟ କରୁଛନ୍ତି; ମାତ୍ର ଈଶ୍ୱର ତତ୍ତ୍ୱ ଓ ସାଧନାର ପନ୍ଥା ଲୋକେ ଠିକ୍ ଧରି ପାରନ୍ତିନାହିଁ । ସଂସାର କ୍ଷେତ୍ରରେ ନିଷ୍କାମ କର୍ମଯୋଗ ହିଁ ପ୍ରକୃତ ଈଶ୍ୱର ଉପାସନା । ଦୁଇଖଣ୍ଡ କାଷ୍ଠର ଘର୍ଷଣରେ ଉତ୍ପନ୍ନ ଅଗ୍ନିକଣା ଭଳି ଏ ଜୀବନ ପ୍ରଜ୍ଜ୍ୱଳିତ ହୋଇ ମୁହୂର୍ତ୍ତକରେ ନିର୍ବାଣପ୍ରାପ୍ତ ହୁଏ ।" ଏକଥା ଦୁଇ ଛାତ୍ରଙ୍କ ମନରେ ପ୍ରବେଶ କଲା, ମାତ୍ର ଏଇଠାରେ ବୁଝିବାକୁ ହେବ "ନିରନ୍ନ ଅସହାୟ ପରିବାରରେ ଆଶ୍ରିତମାନଙ୍କୁ ତ୍ୟାଗକରି ଈଶ୍ୱରୋପାସନା କଲେ ମନୁଷ୍ୟ ସ୍ୱର୍ଗ ବା ଈଶ୍ୱର କିଛି ପାଏ ନାହିଁ । ସେ ନରକକୁ ଯାଏ । ଯେଉଁ ଭଗବାନଙ୍କ ସୃଷ୍ଟି କର୍ମପ୍ରବାହରେ ସଜୀବ ଓ ଶୃଙ୍ଖଳିତ ରହିଅଛି—ସେଥିରେ ନିଷ୍କର୍ମାର ସ୍ଥାନ ନାହିଁ ।"

ସେ କହିଲା ପରେ ଗୋପବନ୍ଧୁ ବାବୁ ସ୍ୱଭାବସୁନ୍ଦର ସରସ ଭାଷାରେ କ୍ଷୁଦ୍ର ଭାଷଣ ଦେଇ ସତ୍ୟବାଦୀ ବିଦ୍ୟାଳୟର ଗଠନ ଓ ଅଭିବୃଦ୍ଧି ଆଦିରେ ଜୀବନପାତ କରିବାରେ ସେ ଜୀବନର ସାର୍ଥକତା କଳ୍ପନା କରନ୍ତି ବୋଲି ବୁଝାଇଦେଲେ । ଉଦାହରଣ ସ୍ଥଳରେ କହିଲେ—"ଜଣେ ଧନୀ ଗୃହସ୍ଥର ଦୁଇଜଣ ମୂଲିଆ ବିଲକୁ ହଳ ନେଲେ । ଜଣେ ଅତିମାତ୍ରାରେ ପ୍ରଭୁଭକ୍ତ, ସେ ହିଡ଼ ଉପରେ ବସି କେବଳ ନିଜ ଖାମିନ୍ଦର ଅଜସ୍ର ପ୍ରଶଂସା କଲା । ତାଙ୍କ ଦୟା, ସ୍ନେହଶୀଳତାର ଜୟକାର କଲା । ଆଦୌ ବିଲ ନ ଚଷି ଫେରି ଆସିଲା । ଅପର ହଳିଆ ଖାମିନ୍ଦ ଭଲ କି ମନ୍ଦ ଆଦୌ ସ୍ତୁତି ନ କରି ସମସ୍ତ ସମୟ ନିଜ ଦେହରୁ ଝାଳ ବୁହାଇ ହଳ କରି ଫେରି ଆସିଲା । ଶେଷରେ ଦୁହେଁ ମଜୁରି ମାଗିଲେ ।"

ଗୋପବନ୍ଧୁ ଏଠାରେ କୌତୁକ କରି ପଚାରିଲେ—"ପ୍ରଭୁ କାହାକୁ ଆନନ୍ଦରେ ମଜୁରି ଦେବ ?"

ପଳାତକ ଛାତ୍ର ଜଣେ ଉତ୍ତର ଦେଲେ—"ଯେ କାମ କରିଥିବ ।" ଗୋପବନ୍ଧୁ ସେତିକରେ ବକ୍ତୃତା ସାରି ବସିଲେ । ଆଉ ତାଙ୍କର କହିବାର କିଛି ନଥିଲା । ସବୁକଥା ସୂଚନାରେ ସେ ଭାବିବାକୁ ଛାଡ଼ିଗଲେ । ଛାତ୍ରଙ୍କ ମୁଣ୍ଡରେ ଚିନ୍ତାର ହାତୁଡ଼ି ପିଟି ଏହିପରି ବାରମ୍ବାର ସେ କର୍ତ୍ତବ୍ୟପରାୟଣତାର ଆହ୍ୱାନ ଦେଉଥିଲେ । ଏ ଦେଶରେ ମଣିଷ ଗଢ଼ିବାର ବ୍ୟାପକ ପରିକଳ୍ପନାରେ ସତ୍ୟବାଦୀ ଏକ ଖିଆଲ ନଥିଲା—ଏହା ଓଡ଼ିଶାର ଜଣେ ଜନନାୟକର ଚିନ୍ତାରେ ଜୀବନ୍ୟାସ ନେଇଥିଲା । ପ୍ରାଣର ପ୍ରବାହରେ, କର୍ତ୍ତବ୍ୟର ସାଧନାରେ ଏ ପୀଠ ପରିବର୍ଦ୍ଧିତ । କର୍ଣ୍ଣଧାର ସ୍ୱୟଂ ଗୋପବନ୍ଧୁ, କର୍ମବୀର ଉତ୍କଳମଣି ଗୋପବନ୍ଧୁ ।

ଆଉଦିନେ ଏଇ ଶନିବାରିଆ ବଡ଼ ସଭା । ଗୋପବନ୍ଧୁ ବରାବର ଆସି ପିଲାଙ୍କ ସହିତ

ଭଳମନ୍ଦରେ ଯୋଗ ଦେଉଥିଲେ । ସେଦିନ ଗୋପବନ୍ଧୁ ଇଂରାଜୀରେ "Bad habits" ସମ୍ପର୍କରେ ବକ୍ତୃତା ଦେଲେ । ନିଜର ଯାବତୀୟ ଦୋଷ ଦୁର୍ବଳ ଅକୁଣ୍ଠିତ ଭାବରେ ସ୍ୱୀକାର କରି ସେ ସବୁ ସେ କିପରି ଅଭ୍ୟାସ କରି ତ୍ୟାଗ କରିଛନ୍ତି—ତାହା କହିଲେ । ଗୀତାରୁ ସାତ୍ତ୍ୱିକ, ତାମସିକ ଓ ରାଜସିକ ଗୁଣଭେଦ ଶ୍ଲୋକାବୃତ୍ତି କରି ଚମତ୍କାର ଭାବରେ ବୁଝାଇଦେଲେ । ସତ୍ୟବାଦୀ ବିଦ୍ୟାଳୟର ଲକ୍ଷ୍ୟ ପୁନରାଲୋଚନା କରି ପ୍ରାଣସ୍ପର୍ଶୀ ଭାବରେ 'ବାଳଚପଳତା' ପ୍ରତି ଅନୁକମ୍ପା ଓ ସ୍ନେହ ଥିବା ପ୍ରକାଶ କରି କହିଲେ—'ପ୍ରବୃତ୍ତି ରେଷା ଭୂତାନାଂ ନିବୃତ୍ତିସ୍ତୁ ମହାଫଳା ।" ସେ ସମ୍ପର୍କରେ ଜଣେ ଋଷିଙ୍କ ଉଦାହରଣ ଦେଇ କହିଲେ ଯେ—'ଜଣେ ଋଷିଙ୍କ ଘରେ ସୁନା ଓ ରୂପାର ଦୁଇଟି ବଡ଼ ରୁଖା ଥିଲା । ଋଷିଙ୍କ ଘରେ ଚୋର ପଶି ରୂପା ରୁଖାଟି ନେବା ଋଷି ଜାଣି ପାରିଲେ । ସେ ଚୋରକୁ ଡକାଇ କହିଲେ – 'ଭାଇ ତୋର ଅଭାବ ଅଛି ବୋଲି ରୂ ଲୁଚାଇ କରି ନେଉଛୁ । ଏ ସୁନା ରୁଖାଟି ନେଇଯା । ଏହା'ର ମୂଲ୍ୟ ଢେର ବେଶି ହେବ ।" ସେହିଦିନୁ ସେ ଚୋର ଋଷିଙ୍କର ଜଣେ ବଡ଼ ଶିଷ୍ୟରେ ପରିଣତ ହୋଇଥିଲା । ବକ୍ତୃତା ଶେଷ କରି ଛାତ୍ରମାନଙ୍କ ମନରୁ ଗୁରୁ ଚିନ୍ତା ଦୂର କରିବା ନିମନ୍ତେ ସ୍କୁଲରୁ ଆସିବା ମାତ୍ରେ ପୁଣି ଆନନ୍ଦ ଉତ୍ସବ ସୃଷ୍ଟି କରିଦେଲେ । ସେଦିନ ସରସ୍ୱତୀ ମେଢ଼ ବିସର୍ଜନ ହେବାର ଥାଏ । ଗୋପବନ୍ଧୁ ପିଲାଙ୍କ ସାଙ୍ଗରେ ପିଲା ହୋଇ ମିଶିଗଲେ ।

ଗୋଟିଏ ପିଲାର ଅଭ୍ୟାସରୁ ଏକ ପ୍ରବୃତ୍ତି ଦୋଷକୁ ଦୂର କରିବା ପାଇଁ ଗୋପବନ୍ଧୁ ଥରେ ଅଭ୍ୟାସହୀନ ଏକ ପରୀକ୍ଷାର କଷ୍ଟ ସହିଥିଲେ । ସେଦିନ ଶ୍ରୀପଞ୍ଚମୀ । ସତ୍ୟବାଦୀ ବିଦ୍ୟାଳୟରେ ବାଣୀ ଆରାଧନା ଅତି ଉପଭୋଗ୍ୟ ହୁଏ । ନୀଳେ ଆଚାର୍ଯ୍ୟ ମହାଶୟ ବରଣୀ ହୋଇ ବସନ୍ତି । ସାତ୍ତ୍ୱିକତାରେ ତାଙ୍କ ମୁଖମଣ୍ଡଳ ଦୀପ୍ତିମୟ । ପୂଜା ସରିବା ପର୍ଯ୍ୟନ୍ତ ସେ ପାନ ଖାଆନ୍ତି ନାହିଁ, ଅନ୍ନ ଜଳ ସ୍ପର୍ଶ କରନ୍ତି ନାହିଁ । ପୂଜା ଶେଷରେ ପିଲମାନେ ଅତି ଆଦରରେ ତାଙ୍କୁ ପୂଜା ପଇଡ଼ ଓ ପାନ ଯୋଗାଇ ଦିଅନ୍ତି । ସେଦିନ ଜଣେ ଛାତ୍ର ଆଚାର୍ଯ୍ୟଙ୍କୁ ପାନ ଖଣ୍ଡେ ଦେଇ ନିଜେ ଖଣ୍ଡେ ଖାଇଦେଲା । ନୀଳକଣ୍ଠ ବାବୁ ଏହା ଦେଖି ପାରିଲେ । ସେ ପିଲାକୁ ପାଖକୁ ଡକାଇ ତା'ପ୍ରତି ଅତି କ୍ରୁଦ୍ଧ ହେଲେ ଓ ତାକୁ ପାନ କାଢ଼ି ଦେବାକୁ ହେଲା । ଟିକିଏ କୋଳାହଳ ହେବାରୁ ଗୋପବନ୍ଧୁ ଆସି ପହଞ୍ଚିଲେ । ସେ ସେହି ଛାତ୍ରକୁ ଡକାଇ ନେଲେ ଏବଂ ନିଜ ଚାକର 'ରାମା'କୁ ପଠାଇ ମସଲାଦିଆ ୮ଖଣ୍ଡ ପାନ ମଗାଇ ଆଣିଲେ । ନିଜେ ଖଣ୍ଡେ ଖାଇ ସେ ପିଲାକୁ ସାତ ଖଣ୍ଡ ପାନ ଦେଲେ । ହଠାତ୍ ଚୋବାଇ ପକାଇବାରୁ ଗୁଣ୍ଡିର ମାଦକତା ସମ୍ଭାଳି ନପାରି ସେ ଅଘୂନକ ବାନ୍ତିକଲେ । ସେ ପିଲା ନିର୍ବାକ୍ । ସେ ତାଙ୍କ ଗୋଡ଼ତଳେ ଲମ୍ବ ହୋଇ ପଡ଼ିଗଲେ, ସେହିଦିନୁ ସେ ଆଉ କେବେ ପାନ ଛୁଇଁ ନଥିଲା ।

ସ୍ନେହର ଅନୁଶାସନରେ ମନ ବଦଳାଇବା ରହସ୍ୟ ଗୋପବନ୍ଧୁଙ୍କୁ ବେଶ ଜଣା ଥିଲା । ଯେଉଁଠି କ୍ରୋଧ ଓ ଦଣ୍ଡ ହାର ମାନୁଥିଲା ସେଇଠି ସ୍ନେହଶୀଳ ପଦେ କଥା ଓ

ଆଚରଣରେ ସେ ବହୁ ଅସାଧ୍ୟ ସାଧନ କରୁଥିଲେ । ଜଣେ ମହାନ୍ ମନୀଷୀର ତାଙ୍କର ଗ୍ରନ୍ଥମାନଙ୍କୁ ଉଦ୍‌ବୁଦ୍ଧ କରୁଥିଲା । ସେମାନଙ୍କ ଅନ୍ତରରେ ପ୍ରତିଧ୍ୱନି ସୃଷ୍ଟି କରୁଥିଲା । ଅନନ୍ତ ସାଗରର ବେଳାରେ ବାଲିବନ୍ତର ଚୂଳେ ଚୂଳେ କର୍ତ୍ତବ୍ୟ ଓ ତ୍ୟାଗର ସେ ମନଭରି ଡାକରି ଆଜି ସତେ ଓଡ଼ିଶାରେ କଣ ଶୁଭିବ ନାହିଁ ?

## କଟିଡ଼ମ୍ବର ଆଚରଣ ଓ ବେଶଭୂଷା

କଟକରେ ଓକିଲାତି ପଢ଼ିଲାବେଳେ ନୟାଗଡ଼ ରାଜାଙ୍କ ଭଣଜା ଗୋବିନ୍ଦ ସୁରଦେଓଙ୍କୁ ଗୋପବନ୍ଧୁ ଟିଉସନ୍ କରୁଥିଲେ । (ହରିହର ଏହାଙ୍କ ସାନଭାଇ ଦାଶରଥି ସୁରଦେଓଙ୍କୁ ପଢ଼ାଉଥିଲେ) । ଗୋବିନ୍ଦ ସୁରଦେଓ ସେତେବେଳେ ବି. ଏ. ପଢ଼ୁଥାନ୍ତି । (ଦୁର୍ଭାଗ୍ୟ-ବଶତଃ ସେ ନୟାଗଡ଼ ରଜା ହୋଇ ପାରିଲେ ନାହିଁ, ନଚେତ୍ ରାଜଗାଦୀରେ ତାଙ୍କର ପୂର୍ଣ୍ଣ ଦାବୀ ଥିଲା ) । ହରିହର ସେତେବେଳେ ଷ୍କୁଲବୋର୍ଡିଂ ଗ୍ରାଣ୍ଡ କାର୍ଲାଇଲଠାରୁ ନିମଚୌଡ଼ି ଯାଇଥିବା ରାସ୍ତା ପାଖରେ ଗୋଟିଏ ଭଡ଼ାଘରେ ଗୋପବନ୍ଧୁଙ୍କ ସହିତ ରହୁଥାନ୍ତି । ଗୋପବନ୍ଧୁଙ୍କ ଜନ୍ମଦିନ ପଡ଼ିଲା । ହରିହରଙ୍କୁ ଖଣ୍ଡେ ଲୁଗା କିଣି ଆଣିବା ପାଇଁ ଗୋପବନ୍ଧୁ କହିଲେ । ସେ ବରାବର ହାତବନା ବୁଣା ଲୁଗା ପିନ୍ଧନ୍ତି; କିନ୍ତୁ ହରିହର ଧୋତି ସୁନ୍ଦର ମିଣା ହେଲେ ସରୁ ରଣପୁରୀ ଲୁଗା କିଣିଆଣିଲେ । ସେତେବେଳେ ମୂଲ୍ୟ ଅନୁସାରେ ତାର ଦାମ୍ ତିନି ଟଙ୍କା ମଧ୍ୟରେ । ଏ ଲୁଗାକୁ ଦେଖି ଗୋପବନ୍ଧୁ ବିରକ୍ତ ହେଲେ । ସରୁଲୁଗା ପିନ୍ଧିବା ତାଙ୍କର ଅଭ୍ୟାସ ବିରୁଦ୍ଧ ଥିଲା । ହରିହର ବାଧ୍ୟ ହୋଇ ଏ ଲୁଗା ବଦଳାଇ ପୁଣି ମୋଟାଲୁଗା କିଣି ଆଣିଲେ । ତାଙ୍କ ଗ୍ରାମ ନିକଟବର୍ତ୍ତୀ କଳାପାହାଡ଼ ତନ୍ତଲୁଗା ସେ ପିଲାବେଳୁଁ ପିନ୍ଧୁଥିଲେ ।

ଏ ଲୁଗାକୁ ଧୋଇ ଚପୁଡ଼ିଲାବେଳେ ବଡ଼ କଷ୍ଟ ହୁଏ । ଆଚାର୍ଯ୍ୟ ମହାଶୟ କୁହନ୍ତି ସେତେବେଳେ ପ୍ରଥମଥର ପାଇଁ ପ୍ରଫେସର ଅନନ୍ତ ମିଶ୍ରଙ୍କ ବଡ଼ଭାଇ ମଧୁ ମିଶ୍ରେ ମିଲ୍ ଧୋତି ପିନ୍ଧି କଟକ ଆସିଲେ । ମିଲ୍ ଧୋତି ଖୁବ୍ ସୁନ୍ଦର ଦେଖାଯାଉଥିଲା । ଏଥିରେ ହରିହରଙ୍କ ସମେତ ବହୁ ତରୁଣ ଗ୍ରାମ ବଡ଼ ଆଗ୍ରହ ପ୍ରକାଶ କଲେ; କିନ୍ତୁ ନିରୁପାୟ ହୋଇ ମନକୁ ସଙ୍କୁଚିତ କରି ରହିବାକୁ ହେଉଥିଲା । କାରଣ ବାପ ମା'ମାନେ କେବଳ ଖଦି ପିନ୍ଧିବାକୁ ଦେଉଥିଲେ । ପରେ ହରିହର ବୃତ୍ତି ଟଙ୍କା ପାଇ ପୂଜାରେ ସରୁଧୋତି କିଣି ପିନ୍ଧିବାର ପରିକଳ୍ପନା କରିଥିଲେ । କିନ୍ତୁ ପୂଜା ଆସିବା ପରେ ଗୋପବନ୍ଧୁଙ୍କୁ ଖଦି ପିନ୍ଧୁଥିବାର ଦେଖି ତାଙ୍କ ଲାଲସା ସବୁଦିନ ପାଇଁ ମରିଗଲା ।

ଆଉଥରେ ଗୋପବନ୍ଧୁ ସତ୍ୟବାଦୀ ବିଦ୍ୟାଳୟ ଛାତ୍ରାବାସରେ ରହୁଥିଲେ । ସକାଳୁ ଉଠି ଦେଖିଲେ ଧୋବା ଦେଇଯାଇଥିବା ଖଦି ଖଣ୍ଡିକ ସମ୍ପୂର୍ଣ୍ଣ ଚିରିଯାଇଛି । ତାଙ୍କର

କୌଣସି ବଂଧୁଙ୍କୁ ଲୁଗାଟିଏ କିଣିବାକୁ କହିଲେ । ସେ କିନ୍ତୁ ସତ୍ୟବାଦୀ ବଜାରରୁ ସରୁଧୋତିଟିଏ କିଣି ଆଣିଲେ । ସେ ଭାବିଥିଲେ ଗୋପବନ୍ଧୁ ଖୁସିହେବେ ।

କିନ୍ତୁ ଫଳ ଓଲଟା ହେଲା । ଗୋପବନ୍ଧୁ ଅତି ବିରକ୍ତ ହୋଇ କହିଲେ—"ଏ ଦେଶର ଲୋକେ ପଇସା ଅଭାବରୁ ଚିରିକନା ଖଣ୍ଡେ ଲଜ୍ଜା ନିବାରଣ ପାଇଁ ପାଉନାହାନ୍ତି । ସେଇ ଗରିବ ଦେଶର ଲୋକ ହୋଇ ମୁଁ ଏତେ ଦାମିକା ଲୁଗା ପିନ୍ଧିବି ?" ସଙ୍ଗେ ସଙ୍ଗେ ବଜାରରୁ ମୋଟା ଅଣ୍ଡିଓସାରିଆ ଲୁଗା ମଗାଇ ପିନ୍ଧିଲେ ।

## ଅନାବିଳ ହୃଦୟର କାହାଣୀ

ସମସ୍ତ ଠିକ୍ କହି ହେଉନି । ଆଚାର୍ଯ୍ୟ ହରିହର ଓ ଗୋପବନ୍ଧୁ ବୋର୍ଡିଂରେ ଶୋଇଥାନ୍ତି । ସତ୍ୟବାଦୀ ବିଦ୍ୟାଳୟର ପିଲାମାନେ ନିଜ ନିଜ ପ୍ରକୋଷ୍ଠରେ ଗଭୀର ନିଦ୍ରାରେ ଥିଲେ । ଆଚାର୍ଯ୍ୟ ମହାଶୟ ବାରଣ୍ଡାରେ ଶୁଅନ୍ତି ଓ ସେଠାରୁ ସେ ଶୋଇଥିବା ପିଲାମାନଙ୍କୁ ଦେଖିପାରନ୍ତି । ତାଙ୍କ ରୁମ୍ ବଗଲର ରୋଗୀଗ୍ରସ୍ତଙ୍କ ରହିବା ଘର ହୋଇଥାଏ । ସେଦିନ ରାତିରେ ଭୀଷଣ ବର୍ଷା ହେଲା । ସେଇ ବର୍ଷା ରାତିରେ ଜଣେ କେହି ଅତି ଅଧୀର ହୋଇ କାନ୍ଦୁଥିବାର ଶବ୍ଦ ବେଶ୍ ବାର ହୋଇ ପଡ଼ିଲା । ଆଚାର୍ଯ୍ୟ ମହାଶୟ ବଡ଼ ବିବ୍ରତ ହୋଇ ଲଣ୍ଠନ ଜାଳିଲେ । ତାଙ୍କ ଧାରଣା ହେଲା ବେମାରରେ ପଡ଼ି କୌଣସି ଛାତ୍ର କାନ୍ଦୁଛି । ଶେଷକୁ ସେ ଆସି ଦେଖିଲେ ଗୋପବନ୍ଧୁ ବାବୁହିଁ ଏପରି କହିକହି ହୋଇ କାନ୍ଦୁଛନ୍ତି ।

ଆଚାର୍ଯ୍ୟ ମହାଶୟ ବଡ଼ ବ୍ୟସ୍ତହୋଇ କାନ୍ଦିବାର କାରଣ ଗୋପବନ୍ଧୁଙ୍କୁ ପଚାରିଲେ । ଦୁଇ ତିନିଥର ଜଗରଜର ପଚାରିବାରୁ ଗୋପବନ୍ଧୁ କହିଲେ—"ହଁ, ତୁମେମାନେ ନିଶ୍ଚିନ୍ତରେ ନ ଶୋଇବ କାହିଁକି ?"

କିଛି ଦୁର୍ଘଟଣା ଘଟିଥିବା କଥା ଆଚାର୍ଯ୍ୟ ମହାଶୟ ଆଶଙ୍କା କଲେ । ଗୋପବନ୍ଧୁ ବାବୁ ତା'ପରେ କହିଲେ ଯେ ସେ ତିନିମାସ ତଳେ ବଢ଼ି ଅଞ୍ଚଳର ଗୋଟିଏ ଗ୍ରାମକୁ ଯାଇଥିଲେ । ସେଠାରେ କାହାଘରେ ଛପର ନଥିଲା । ଏଇ ବର୍ଷାରେ ସେମାନେ ଜୁଡ଼ୁଜୁଡ଼ୁ ହୋଇ ଯାଉଥିବେ । ଆଚାର୍ଯ୍ୟ ମହାଶୟ ଆଶ୍ଚସ୍ତ ହେଲେ । ମନେ ମନେ ଭାବିଲେ ଏ ଲୋକ ଦେଶପାଇଁ ପାଗଳ ହୋଇଯିବ । ପ୍ରକୃତରେ ତାହାହିଁ ହୋଇଥିଲା । ସ୍ୱପ୍ନରେ ମଧ୍ୟ ସେ ଦେଶର ଦୁରବସ୍ଥା ଦେଖି ବିବ୍ରତ ହେଉଥିଲେ । ନିଜ ବ୍ୟକ୍ତିଗତ ଜୀବନର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଯେ ଦେଶପାଇଁ ଓଜାଡ଼ି ଦେଇଥିଲା, ନିଜକୁ ଜନତାର ସେବାରେ ଆହୁତି ଦେଇଥିଲା—ତାର ନିଜର ବୋଲି ଆଉ କଣ ରହିଲା ? ଦେଶହିଁ ତାର ସବୁ । ଦେଶର ସୁଖଦୁଃଖକୁ ସେ ଆପଣାର ଭାବୁଥିଲା । ଦେଶବାସୀଙ୍କ ପ୍ରାଣରେ ଦୁଃଖ ଉପୁଜିଲେ ତା

ଗ୍ରନ୍ଥରେ କୁଳର ଆଘାତ ଲଗୁଥିଲା । ସେ ଅନାବିଲ ହୃଦୟର ଅସରନ୍ତି କାହାଣୀ ଆଜି ତେଣୁ ଏ ଦେଶର ଇତିହାସ ରୂପେ ଠିଆ ହୋଇଛି ।

## ସତ୍ୟବାଦୀରେ କୁଳବୃଦ୍ଧ ମଧୁସୂଦନ

୧୯୧୩ ମସିହା ଗ୍ରୀଷ୍ମଛୁଟି ପୂର୍ବଦିନ ଗୋପବନ୍ଧୁ ମିଃ ଦାସଙ୍କୁ ଧରି ସତ୍ୟବାଦୀ ଆସିଲେ । ଜଗବନ୍ଧୁ ସିଂହ ମଧ୍ୟ ସାଙ୍ଗରେ ଆସିଥା'ନ୍ତି । ସେଦିନ ମି. ଦାସଙ୍କ ପାଇଁ ଗୋଟାଏ ସଭାର ଆୟୋଜନ ହେଲା । ନିଜର ସ୍ୱଭାବସୁଲଭ ଗୁରୁଗମ୍ଭୀର ଭାଷାରେ ମି. ଦାସ କହିଲେ—"ଏ ବିଦ୍ୟାଳୟ ଧନରେ ଗଢ଼ା ହେଉନାହିଁ ; ରକ୍ତ, ମାଂସ ଓ ମସ୍ତିଷ୍କରେ ଗଢ଼ା ହେଉଛି । ଗୋପବନ୍ଧୁ, ନୀଳକଣ୍ଠ, ହରିହର—ପୁଣି ଏ ବିଦ୍ୟାଳୟକୁ ଆସିବେ ଗୋଦାବରୀଶ ଓ କୃପାସିନ୍ଧୁ । ଏମାନେ ସମସ୍ତେ ପରାଧୀନ ଭାରତ ଓ ଖଣ୍ଡ ବିଖଣ୍ଡିତ ଓଡ଼ିଆ ଜାତିର ମୁକ୍ତି-ସାଧନ ପାଇଁ ପ୍ରାଣପାତ କରୁଛନ୍ତି । ତୁମେ ପିଲମାନେ ଏମାନଙ୍କ ପାଖରେ ବସି ଶୋଇ ପାଠପଢ଼ି ମଣିଷ ହେଲେ ଉତ୍କଳଜନନୀ ସାହସ ପାଇବେ । ଘର ପୋଡ଼ିଗଲା, ଇଟାର କାନ୍ଥ ବତାସରେ ଭାଙ୍ଗିଗଲା—ବିଦ୍ୟାଳୟ ଶୁଦ୍ଧ ରକ୍ତ ଆଉ ମାଂସରେ ଗଢ଼ା ହୋଇଛି । ସରକାର ସନ୍ଦେହ ଦୃଷ୍ଟିରେ ଦେଖୁଛନ୍ତି । ସି. ଆଇ. ଡି. ଗୋଡ଼େ ଗୋଡ଼େ ଜଗିଛନ୍ତି । ମାତ୍ର ସରକାର ଜାଣିବେ ଏଠାରେ ତୋପ, କମାଣର ଯୁଦ୍ଧ ପାଇଁ ଯୋଦ୍ଧା ତିଆରି ହେଉ ନାହାନ୍ତି । ନୀରବ ଯୋଦ୍ଧା ଗଢ଼ା ହେଉଛନ୍ତି । ସ୍ୱାଧୀନ ମଣିଷର ସାଧୁ ଚିନ୍ତା ବିଫଳ ହୁଏ ନାହିଁ । ଆଗକୁ ପାଦ ପକାଅ । ଜୀବନ ଯୁଦ୍ଧରେ ଝାସ ଦିଅ । ଦେଶମାତୃକାପାଇଁ ପ୍ରାଣବଳି ଦିଅ । ପୁଣି ଉଦାହରଣ ଦେଇ କହିଲେ—"ଦେଖ, ନଈ ବଢ଼ି ଭୁଣପାଆ ହୋଇଛି, ଲୋକେ ପାରି ହେଉଛନ୍ତି, ନାଉରୀକୁ ପଇସା ନ ଦେଲେ ସେ ତୁମକୁ ପାରି କରାଇ ଦେବ ନାହିଁ । ଧରି ତୁମ ପାଖରେ ପଇସା ନାହିଁ । ତଥାପି ତୁମର ଲୋକସେବା ପାଇଁ ଆରପାରିକୁ ଯିବାର ଅଛି । ତୁମେ ନାଉରୀକୁ ଖୋସାମତ ନ କରି ନଈକୁ ଡେଇଁପଡ଼, ପହଁରିବାକୁ ଚେଷ୍ଟାକର । ବେକାରୁ ହେବା ଆଗରୁ ଲୋକେ ତୁମ କଥା ଭାବିବେ । ନାଉରୀ ଆପେ ଆପେ ନାଆକୁ ଡୋଳି ନେବ । ଆଜି ନିଃସମ୍ବଳ ଉଦ୍ୟୋକ୍ତା ତୁମ ଶିକ୍ଷକମାନେ ଆଉ କର୍ଣ୍ଣଧାର ଗୋପବନ୍ଧୁ ନଈକୁ ଡେଇଁଛନ୍ତି । ଆମ୍ଭେମାନେ ସେମାନଙ୍କୁ ବେକାରୁ ହେବାକୁ ଦେବୁ ନାହିଁ ।

ଧନର ଅଭାବ କାର୍ଯ୍ୟ ସାଧନରେ ଅନ୍ତରାୟ ହୋଇ ଠିଆ ହୁଏ ନାହିଁ । ମନ ହିଁ ସକଳ କାର୍ଯ୍ୟର ସାରଥି । ଏକଥା ଗୋପବନ୍ଧୁ ବୁଝିଥିଲେ । ବୁଲଙ୍କାର ଜୀବନରେ ଝୁଲିମୁଣି ଧରି ନିଃସମ୍ବଳ ସନ୍ନ୍ୟାସୀ ଭିକ୍ଷାମାଗି ବୁଲୁଥିଲା—ସେ ଥାଳ ମଣିଷପଣିଆର ପଥଆଗରେ ଆପେଇ ପୂର୍ଣ୍ଣ ହୋଇ ଯାଉଥିଲା । ବହୁ ବଦାନ୍ୟ ବ୍ୟକ୍ତି ସେ ଥାଳରେ ଭିକ ଦେଇ

ଆପଣାକୁ ଧନ୍ୟ ମଣୁଥିଲେ । ସେ ଭିକାରିର ପାଦ ଛୁଇଁ ଧୂଳି ଘେନୁଥିଲେ । ସନ୍ନ୍ୟାସୀର ସେହି ବିପୁଳ ଉଜ୍ଜ୍ୱଳ ବପୁରେ ଏକ ନୂତନ ଓଡ଼ିଶାର ନାମାବଳୀ ଜଡ଼ି ରହିଥିଲା । ଅନାଗତର ଅଶେଷ ସ୍ୱପ୍ନ ମଥା ପିଟୁଥିଲା ।

## ମଣିଷ ତିଆରି କାରଖାନା

ଗୋପବନ୍ଧୁ ସତ୍ୟବାଦୀ ବିଦ୍ୟାଳୟର ଟିକିନିଖି ସକଳ ବିଷୟରେ ଉତ୍ସାହ ପ୍ରକାଶ କରୁଥିଲେ, ଭାଗ ନେଉଥିଲେ । ଗଣତାନ୍ତ୍ରିକ ଭିତ୍ତି ଉପରେ ବିଦ୍ୟାଳୟସ୍ଥ ଛାତ୍ରମାନଙ୍କ ମନୋଭାବକୁ ଗଢ଼ିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେଥିପାଇଁ ମେସ୍ ପରିଚାଳନା, ଛାତ୍ରାବାସର ଜୀବନ ଗଠନ—ସବୁଥିରେ ପିଲାମାନଙ୍କ ଦାୟିତ୍ୱ ନିଜ ନିଜ ଉପରେ ସେ ଛାଡ଼ି ଦେଇଥିଲେ । ଶିକ୍ଷକମାନେ କେବଳ ପର୍ଯ୍ୟବେକ୍ଷକ; ନିୟମ ଲଙ୍ଘନ ଓ ଅବୈଧ ଆଚରଣ ପାଇଁ ଅଙ୍କୁଶ ପରି ରହୁଥିଲେ । ଏ ସବୁରେ ଗୋପବନ୍ଧୁଙ୍କ ଦୂରଦୃଷ୍ଟି ବେଶ୍ ସ୍ପଷ୍ଟ ହେଉଥିଲା । ସେଥିପାଇଁ ଓଡ଼ିଶାର ସବୁଆଡ଼ୁ ଶହ ଶହ ଛାତ୍ର ସତ୍ୟବାଦୀ ଧାଇଁ ଆସୁଥିଲେ । ସତ୍ୟବାଦୀର ଅନ୍ୟ ନାମ ଥିଲା 'ମଣିଷ ତିଆରି କାରଖାନା' । ନିଜେ ଗୋପବନ୍ଧୁବାବୁ ଗରିବ ଓ ମେଧାବୀ ପିଲାମାନଙ୍କୁ ଦୂରଦୂରାନ୍ତରରୁ ଖୋଜି ଖୋଜି ଏଠାକୁ ନେଇ ଆସୁଥିଲେ । ଏହିପରି ଗଞ୍ଜାମରୁ ଗୋଟିଏ ବାଳକକୁ ଗୋପବନ୍ଧୁ ଆଣି ସତ୍ୟବାଦୀରେ ଛାଡ଼ିଲେ । ଅଳ୍ପଦିନ ପରେ ସେ ଜଳୋଦର ରୋଗରେ ମରିଗଲା । ତାହା ପାଇଁ ଏକ ଶୋକ ସଭାର ଆୟୋଜନ ହୋଇଥିଲା । ନିଜେ ଗୋପବନ୍ଧୁ ବଡ଼ ଅଧୀର ହୋଇ କବିସୁଲଭ ଭଙ୍ଗୀ ଓ କବିତାମୟ ଭାଷାରେ ଏକ ଆବେଗପୂର୍ଣ୍ଣ ଭାଷଣ ଦେଇଥିଲେ । ସମସ୍ତଙ୍କ ଆଖିରୁ ଲୁହର ଧାର ଛୁଟିଲା ।

ଆଉଥରେ କଳାହାଣ୍ଡିର ଜଣେ ବୁଦ୍ଧିମାନ ଛାତ୍ର କଲେରାରେ ପଡ଼ି ମରିଗଲା । ଶୋକସଭାରେ ଏକ ପ୍ରାଣସ୍ପର୍ଶୀ ବକ୍ତୃତା ଦେଇ ଗୋପବନ୍ଧୁ ଛାତ୍ରମାନଙ୍କୁ ଅଭିଭୂତ କରି ଦେଇଥିଲେ । ସତେ ଯେପରି ଏହି ଛାତ୍ରର ମୃତ୍ୟୁରେ ସେ ନିଜ ପୁତ୍ରବିୟୋଗର ବ୍ୟଥା ଅନୁଭବ କରିଥିଲେ । ତଥାପି କଷ୍ଟକୁ ସହିନେବାକୁ ତାଙ୍କ ମନରେ ଅସରନ୍ତ ଦୃଢ଼ତା ସ୍ପଷ୍ଟ ଜଣାଯାଉଥିଲା ।

ଓଡ଼ିଶାରେ ଆଜି ହାଇସ୍କୁଲ ସଂଖ୍ୟା ପ୍ରାୟ ହଜାର ପାଖାପାଖି । କେଉଁ ସମ୍ପାଦକ ଗୋପବନ୍ଧୁଙ୍କ ପରି ଛାତ୍ରମାନଙ୍କର ସବୁ ବିଷୟରେ ଏତେ ଆପଣାର ହୋଇ ଭାଗ ନେବାର ଦେଖା ଯାଉନାହିଁ । ବେଳେ ବେଳେ କ୍ଲାସ୍‌କୁ ଯାଇ ପିଲାଙ୍କୁ ପାଠ ପଢ଼ାଇବାଠାରୁ ବକ୍ତୃତା ଶିକ୍ଷାଦେବା ପର୍ଯ୍ୟନ୍ତ ସବୁ କାମରେ ସେ ନେଉଳବାଇ ପରି ମିଶି ରହୁଥିଲେ । ଅଧିକାଂଶ ସମୟ ପିଲାମାନଙ୍କ ଶନିବାରିଆ ଆଲୋଚନା ସଭାରେ ସେ ଯୋଗଦେଇ ପିଲାମାନଙ୍କ ଚରିତ୍ର ଗତି ପରୀକ୍ଷା କରୁଥିଲେ । ଅବରେ ବକ୍ତୃତା କରି ଶିଖିବା ସମ୍ପର୍କରେ ଏଇ ସଭାରେ

ସେ ପିଲାଙ୍କୁ ବୁଝେଇ କହିଲେ ଯେ ଗ୍ରୀସ୍‌ର ସୁନାମ ପ୍ରସିଦ୍ଧ ବକ୍ତା ଡେମୋସ୍ଥିନିସ୍‌ଙ୍କର ଜିଭ ଲାଗୁଥିଲା । ବାର୍ଣ୍ଣୀଡ଼ 'ର' ମଧ୍ୟ ସ୍ପଷ୍ଟ ଉଚ୍ଚାରଣ କରି ପାରୁନଥିଲେ । ତେଣୁ ସେପରି ବକ୍ତାମାନେ ଏକାକୀ ସମୁଦ୍ରକୂଳରେ ପାଟିରେ ବାଲିଗରଡ଼ା ରଖି କହିବାକୁ ଅଭ୍ୟାସ କରୁ କରୁ ବଡ଼ ବକ୍ତା ହୋଇ ପାରିଥିଲେ । ତିନି ଚାରିଜଣ ସପ୍ତାହରେ ଥରେ ଥରେ ଏକତ୍ର ବସି ସେଇଠାରେ ପ୍ରଗଲ୍‌ଭ ଭାବରେ ବକ୍ତୃତା କରିବାପାଇଁ ଅଭ୍ୟାସ କରନ୍ତୁ ।" ଗୋପବନ୍ଧୁଙ୍କ ସରଳ ଉପଦେଶ ଛାତ୍ରମାନଙ୍କ ହୃଦୟରେ ରେଖାପାତ କରୁଥିଲା । ସେମାନେ ସେହି ମର୍ମରେ ନିଜକୁ ଗଢ଼ି ନେଉଥିଲେ । ସତ୍ୟର ମହିମା ସଙ୍ଗେ ସଙ୍ଗେ ଗୋପବନ୍ଧୁଙ୍କ ଧର୍ମଜ୍ଞାନ, ନିର୍ଭୀକତା, ଅଣା ପ୍ରଫୁଲ୍ଲିତ ଜୀବନ ଛାତ୍ରମାନଙ୍କ ହୃଦୟରେ ମହନୀୟ ଭାବ ସୃଷ୍ଟି କରୁଥିଲା । ଦୋଷକୁ ବୁଝି ଅନୁଧ୍ୟାନ ଓ ପ୍ରତ୍ୟାଖ୍ୟାନ କରିବାରେ ବୀରତ୍ୱ ଅଛି—ଏକଥା ଗୋପବନ୍ଧୁ ବରାବର ପିଲାମାନଙ୍କୁ ଶିକ୍ଷା ଦେଉଥିଲେ । ତାଙ୍କର ଗୌରବପୂ, ନିରାଡ଼ମ୍ବର ବେଶ, ହାସ୍ୟ ପୁଲକିତ ଶୁଭ୍ରୋଳ ମୁଖମଣ୍ଡଳ, ମାର୍ଜିତ ରୁଚି, ସଂଯତ ଆଚରଣ ପିଲାମାନଙ୍କୁ ଅଭୟ ଦେଉଥିଲା । ତାଙ୍କ ଉପସ୍ଥିତିରେ ସତ୍ୟବାଦୀର ଛାତ୍ରମାନେ ଆପଣାର ଅତି ଆତ୍ମୀୟ ମଣିଷର ସାନ୍ନିଧ୍ୟ ପାଇବାପରି ଅନୁଭବ କରୁଥିଲେ ।

ଥରେ ସତ୍ୟବାଦୀ ସ୍କୁଲକୁ ଶିକ୍ଷା ବିଭାଗ ପରିଦର୍ଶକ ଆସିଥାନ୍ତି । ଗୋରା ସାହେବ ସେ ଇନସ୍‌ପେକ୍‌ଟର ସେ ବି ଡିରେକ୍‌ଟର । ତାଙ୍କ ଆସିବା ସେଥର ବଡ଼ ଗୁରୁତ୍ୱପୂର୍ଣ୍ଣ ଥାଏ । କାରଣ ସ୍କୁଲର ମଞ୍ଜୁରୀ ଏହି ପରିଦର୍ଶକ ମନ୍ତବ୍ୟ ଉପରେ ନିର୍ଭର କରେ । ସହଜେ ତ ସତ୍ୟବାଦୀ ପ୍ରତି ଇଂରେଜ ସରକାରଙ୍କ କୋପଦୃଷ୍ଟି । ପୁଣି ଗୋରା ହାକିମମାନଙ୍କ ଶାସନ କାଳ ।

ଗୋପବନ୍ଧୁ ସେଦିନ ଛାତ୍ରମାନଙ୍କୁ ଏକ ସଭାରେ ଏକାଠି କରି କହିଲେ, "ତୁମ୍ଭର ଶିକ୍ଷକମାନେ ଓ ମୁଁ ଦେଶରେ ପ୍ରକୃତ ମଣିଷ ଗଢ଼ିବା ପାଇଁ ଏ ବିଦ୍ୟାଳୟର ପରିକଳ୍ପନା କରିଥିଲୁ । ତୁମ୍ଭେମାନେ ଏଠାରେ କିପରି ମନୁଷ୍ୟ ହେବ, ଜୀବନର ମୂଲ୍ୟ ବୁଝି ବ୍ୟବହାର କରିବ ସେଥିପାଇଁ ଏହାକୁ ଦେଶର ଆଉ ଆହି ସାଧାରଣ ବିଦ୍ୟାଳୟ ପରି ଗଢ଼ାଯାଇ ନାହିଁ । ତୁମ୍ଭେମାନେ ସମସ୍ତେ ପରସ୍ପର ଭାଇ । ଉପର ଶ୍ରେଣୀର ଛାତ୍ରମାନଙ୍କୁ ବାବୁ ନ ଡାକି ଭାଇ ବା ଭାଇନା ଡାକିବ । ନିୟମ ମାନିବାକୁ ହେଉଛି ବୋଲି ଆମ୍ଭେମାନେ ବିବେକ ବିରୁଦ୍ଧରେ ସ୍ଥାନେ ସ୍ଥାନେ ହୁଏତ ମିଥ୍ୟାର ଆଶ୍ରୟ ନେଉଛୁ । ମାତ୍ର ମିଥ୍ୟାଚାର ଓ କପଟତା ଅତି ଜଘନ୍ୟ ପାପ । ଆମ୍ଭେମାନେ ତୁମ୍ଭମାନଙ୍କୁ ଆଦେଶ ଦେଇ କାମ କରାଇ ନଥିଲୁ । ମାତ୍ର ବିଦ୍ୟାଳୟ ଗଣତାନ୍ତ୍ରିକ ଚେତନା ଉପରେ ଭିତ୍ତି କରି ଠିଆ ହୋଇଛି, ଜନସେବା ବ୍ରତରେ ବ୍ରତୀ ହୋଇଛି ।" ଏହାପରେ କୌଣସି ଶ୍ରେଣୀରେ ପ୍ରକୃତରେ ଥିବା ୮୬ ଛାତ୍ରଙ୍କ ମଧ୍ୟରୁ ୮୦ ଜଣ ଅଛି ଆଉ ଛ'ଜଣ ସ୍ୱେଚ୍ଛାରେ ଅନୁପସ୍ଥିତ ରହିବାକୁ ସେ ଅନୁରୋଧ କଲେ । କାରଣ ଶିକ୍ଷାବିଭାଗ ନିୟମାନୁସାରେ ଦୁଇଟି ସେକ୍‌ସନରେ ମାତ୍ର ୮୦ ଜଣ ଛାତ୍ର ରହିବା କଥା । ତା'ପରେ ହୃଦୟର ଆବେଗରେ ସେ କହିଲେ—"ଅବଶ୍ୟ

ମିଥ୍ୟାଘରର ଭଲ ନୁହେଁ, ଠକବାର ମହତ୍ତ୍ୱ ନାହିଁ କନ୍ତୁ ଏ ଅବୁଝାମଣା ସରକାର ସତ୍ୟକଥା ବୁଝେ ନାହିଁ । ଗଛ ମୂଳରେ ତୁମ୍ଭେମାନେ ପଢ଼ି ପାରୁଛ; କନ୍ତୁ ତାଙ୍କ ନିୟମ ଅନୁସାରେ କୋଠାଘର ନ ହେଲେ ଚଳବ ନାହିଁ । ମାତ୍ର ଭାରତୀୟ ଖାଢରେ ଏ ଦେଶର ଲୋକେ ଶିକ୍ଷିତ ହେବେ । ସରକାର ଅମ୍ଭମାନଙ୍କ ଜାତ ନିଶ୍ଚୟ ଦନେ ଗ୍ରହଣ କରବ ।'' ତା'ପରେ ତାଙ୍କ ଜୀବନର ଏକ ଖଣ୍ଡିତ ଅନୁଭୂତ ବ୍ୟାନ କର କହିଲେ, "ଆମ୍ଭେମାନେ କଲେଜରେ ପଢ଼ୁଥିଲ ବେଳେ ତୁମ୍ଭର ଶିକ୍ଷକମାନଙ୍କ ମଧ୍ୟରୁ କେତେକଙ୍କୁ ନେଇ ମୁଁ ଦୁର୍ଭିକ୍ଷ କାମରେ ଯାଇଥିଲ । ଅଧ୍ୟକ୍ଷଙ୍କ ଅନୁମତ ନେଇ ନ ଥିବାରୁ ତୁମ୍ଭ ଶିକ୍ଷକମାନଙ୍କୁ ଦଣ୍ଡ ହେଲ । ମାତ୍ର ଆମେ ସତ୍ ଉଦ୍ଦେଶ୍ୟରେ ଯାଇଥିଲୁ—ଏହା ବୁଝି କେବଳ ଅନୁମତ ନେଇ ଯିବାପାଇଁ ତାଗିଦ୍ କର ଦେଇଥିଲେ ।'' ବିଦ୍ୟାଳୟ ସମ୍ପର୍କୀୟ କୌଣସି କଥା ମିଛ କହି ନ ଘୋଡ଼େଇବା ପାଇଁ ସେଦନ ସେ ଛାତ୍ରମାନଙ୍କୁ ଉପଦେଶ ଦେଲେ ।

ତା' ପରଦନ ଡିରେକ୍ଟର ଆସିଲେ । ସତ୍ୟବାଦୀ ସ୍କୁଲରେ ସେତେବେଳେ ଛାତ୍ରମାନେ ତାଳପତ୍ର ବା ନଡ଼ିଆ ପତ୍ର ଛୁପାରେ ତଳେ ବସୁଥିଲେ ଓ ଗ୍ଲେଟ ଡେକ୍ସରେ ବହିପତ୍ର ରଖି ପଢ଼ୁଥିଲେ । ଆଜିକାଲ ନମ୍ନ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଏହି ପଦ୍ଧତ ପ୍ରାୟ ଅନୁସୃତ ହେଉଅଛି । ଶିକ୍ଷାବିଭାଗ ନର୍ଦ୍ଦେଶକ ଏ ପଦ୍ଧତ ଦେଖି କ୍ଷିପ୍ତ ହେଲେ । ପୁଣି ପ୍ରତ୍ୟେକ ଶ୍ରେଣୀପାଇଁ ଆବଶ୍ୟକୀୟ ଡେକ୍ସ ନ ଥାଏ । ମାଗି ଅଣାହୋଇଥିବା ବେଞ୍ଚଗୁଡ଼ିକୁ ଏହି ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥାଏ ।

ଡାଇରେକ୍ଟର ଏହା ଦେଖି କହିଲେ ଯେ ଏଥିରେ ଛାତ୍ରମାନଙ୍କୁ ଟେକହୋଇ ପଢ଼ିବାକୁ ପଡ଼ୁଛି । ବେକଟାକୁ ସବୁବେଳେ ଟେକିବା ଦ୍ୱାରା Physical uneasiness ବଢ଼ିବା କଥା । ଏ ଡେକ୍ସରେ ସ୍ଲୋପ୍ ନିହାତ ହେବା ଦରକାର ।

ଗୋପବନ୍ଧୁ ବାବୁ ପ୍ରତ୍ୟୁତ୍ପନ୍ନମତତାର ସହିତ କହିଲେ, "ଅନ୍ୟ ଘରମାନଙ୍କରେ ସେହିପରି ହୋଇଅଛି ।'' ସେ ଡେକ୍ସଗୁଡ଼ିକର ଆଗ ଦୁଇ ଗୋଡ଼କୁ ମାଟିତଳେ କଛି ଅଂଶ ପୋତ ଦେବାକୁ ଠାରଦେଲେ । ଅନ୍ୟ ଶ୍ରେଣୀମାନଙ୍କୁ ଡାଇରେକ୍ଟର ଆସିଲ ବେଳକୁ ଡେକ୍ସଗୁଡ଼ା କ୍ରମାବନତ ଦେଖାଯାଉଥିଲ । ଡାଇରେକ୍ଟର ତାରଫ୍ କଲେ ।

ସେତେବେଳେ ସତ୍ୟବାଦୀ ସ୍କୁଲର ଛାତ୍ର ସଂଖ୍ୟା କ୍ରମେ ଅଧିକରୁ ଅଧିକ ହେବାରୁ ଛାତ୍ରାବାସ ପାଇଁ ନୂଆ ହୋଇ ଘରକଣ ପଚାଶ ଜଣ ରହିବା ଭଳି ବ୍ଲକ୍‌ଟିଏ ଆଜିର ସମାଧି ନକଟରେ ତଆର ହୋଇଥାଏ । ମାଟିଖୋଳ କାନ୍ଥ କରାଯାଇ ଥିବାରୁ ବର୍ଷା ପାଣି ବହୁ ପରମାଣରେ ଜମାହୋଇ ରହିଥାଏ । ଏହା ପିଲମାନଙ୍କ ସ୍ୱାସ୍ଥ୍ୟ ପକ୍ଷରେ କ୍ଷତକାରକ । ତେଣୁ ଡାଇରେକ୍ଟର ମହୋଦୟ ଏଥିପ୍ରତ ବିରକ୍ତ ପ୍ରକାଶ କଲେ ।

ଗୋପବନ୍ଧୁ ବାବୁ ବିଚକ୍ଷଣତାର ସହିତ ଉତ୍ତର ଦେଲେ—"No sir, that is for the agriculture purpose'' (ସେଠାରେ ଖତ ଓ ଶସ୍ୟ ନମନ୍ତେ ପାଣି ଜମା ହୋଇ ଅଛି) । ଏଥିରେ ଡାଇରେକ୍ଟର ଖୁବ୍ ଖୁସି ହୋଇଥିଲେ । ଏହିପରି ଗ୍ଲେଟ

ଶ୍ରେଷ୍ଠ କଥାଗୁଡ଼ିକରେ ଗୋପବନ୍ଧୁଙ୍କ ପ୍ରତ୍ୟୁତ୍ପନ୍ନମତିତା ଓ ସ୍କୁଲର ସିଦ୍ଧାନ୍ତର ବହୁ ପରିଚୟ ମିଳିଥିଲା । ପିଲାମାନେ ଏସବୁ ବେଶ୍ ଉପଭୋଗ କରୁଥିଲେ ।

ଆଉଥରେ ଜଣେ ଗୋରାସାହେବ ପରିଦର୍ଶକଙ୍କୁ ଗୋପବନ୍ଧୁ ସତ୍ୟବାଦୀ ସ୍କୁଲର ସରଳ ନିରାଡ଼ମ୍ବର ଜୀବନ ଯାତ୍ରାର ଆଭିମୁଖ୍ୟ ଓ ଉଦ୍ଦେଶ୍ୟ ବୁଝାଇ କହିଲେ—"ଏ ସ୍କୁଲରୁ ଯେଉଁମାନେ ମାଟ୍ରିକ୍ ପାସ୍ କରିବେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଗରିବ । ଉଚ୍ଚଶିକ୍ଷା ପାଇଁ ସେମାନଙ୍କର ସମ୍ବଳ ନାହିଁ । ଚାକିରି ଛଡ଼ା ଅନ୍ୟ ଉପାୟ ତାଙ୍କର ନାହିଁ । କି ଚାକିରି ବା ସେମାନଙ୍କୁ ମିଳିବ ? ଖଣ୍ଡେ ଅଧେ କିରାଣି ଚାକିରି । ଦରମା ତିରିଶ ଟଙ୍କା ମାତ୍ର । ଏକ ଟଙ୍କାରେ ପିଲାଛୁଆଙ୍କୁ ଚଳାଇ ଦୁଇଓଳି ପେଟପୁରା ମୁଠାଏ ଖାଇବାକୁ ଅଣ୍ଟିବ ନାହିଁ । ପିତୃପିତାମହଙ୍କ ଦ୍ୱାରା ତିଆରି ଜୀର୍ଣ୍ଣ ବାସଘର ଖଣ୍ଡିକ ମରାମତି କରିପାରିବେ ନାହିଁ । ଏପରି ସ୍ଥଳେ ଏଠାରେ ଯଦି ଆପଣ କହିବା ଅନୁସାରେ ବଡ଼ କୋଠାଘର ତିଆରି ହୁଏ ଓ ସେମାନେ ରହନ୍ତି ତେବେ ଏ ବିଳାସ ଭିତରେ ସେମାନଙ୍କ ଭବିଷ୍ୟତ ଜୀବନ ଦୁଃଖମୟ ହୋଇ ଉଠିବ । ପୈତୃକ ଚାଳଘର ସେମାନଙ୍କୁ ଭଲ ଲାଗିବ ନାହିଁ । ନିଜ ଅବସ୍ଥାରେ ସେମାନେ ଅତୃପ୍ତ ଓ ଅସନ୍ତୁଷ୍ଟ ହୋଇ ରହିବେ । ଏଣେ ହୁଏତ ନିଜ ରୁଚି ଅନୁସାରେ ଚଳିବାରେ ସାମର୍ଥ୍ୟ ନଥିବ । ଫଳରେ ଅନ୍ୟ କୌଣସି ଉପାୟ ନ ଦେଖି ଚୋରି କରିବେ । ଏଇ ତ ହେବ ଏମାନଙ୍କର ପରିଣାମ । ମତେ ତ ଏହା ଜଳଜଳ ଦିଶୁଛି । ସାହେବ, ତେବେ ଛାତ୍ରାବାସ ପାଇଁ ବଡ଼ ବଡ଼ କୋଠାଘରର ଆବଶ୍ୟକତା କେଉଁଠି ?"

ଏକା ନିଃଶ୍ୱାସରେ ଗୋପବନ୍ଧୁ ପରିଦର୍ଶକ ସାହେବଙ୍କୁ ଏ କଥା କହିଗଲେ । କହିଲାବେଳେ ଦେଶର ଦରିଦ୍ର ଜନସାଧାରଣଙ୍କ ଦୁରବସ୍ଥା ଓ ଦୁର୍ଭାଗ୍ୟର କରୁଣ ଛବି ତାଙ୍କ ମାନସପଟରେ ଅଙ୍କିତ ହେଉଥାଏ । ଚକ୍ଷୁ ଦୁଇଟି ଦୀପ୍ତିମନ୍ତ ଅଥଚ ଅଶ୍ରୁସିକ୍ତ ହୋଇ ଉଠୁଥାଏ ।

ସାହେବ ନୀରବ, ଗମ୍ଭୀର ଓ ବିସ୍ମୟାଭିଭୂତ ହୋଇ ପଡ଼ିଲେ । ଦେଶପାଇଁ ଏ ଆନ୍ତରିକତା ତାଙ୍କୁ ବିମୁଗ୍ଧ କଲା । ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କ ପାଇଁ ଗୋପବନ୍ଧୁଙ୍କ ହୃଦୟରେ ଏ ଯେଉଁ ଅକପଟ ସ୍ନେହ ଓ ଅଗାଧ ମମତା ତା' ସେ ସମୟର ଇଂରେଜ ସାହେବଙ୍କ କଠୋରତାକୁ ମଧ୍ୟ ଊଣା କରି ଦେଇଥିଲା । ଗୋପବନ୍ଧୁଙ୍କ ନିଷ୍ଠାକୁ ଲକ୍ଷ୍ୟକରି ଗୋଦାବରୀଶ ବାବୁ ଲେଖିଛନ୍ତି—

"ସେହି ସତ୍ୟବାଦୀ ଗୁପ୍ତ ବୃନ୍ଦାବନ
ବକୁଳ ତମାଳ ତଳେ
କଳିଯୁଗେ ଆଜ ଦ୍ୱାପର ବିଧିଲେ
ଦିଶୁଛି ଆବର ଥରେ ।

ଦାସ ଗୋପବନ୍ଧୁ          ଗୋପ ବାଳମାଳା
କରନ୍ତୁ ଭିଆଣ ପୁଣି,
କହ ଜମ୍ବୁଦ୍ୱୀପେ          କେ ନାହିଁ ନାଆଁ ନେ
ସେ ଦାସ ପୁଅର ଶୁଣି ।
ନିଜ ଘର ସୁଖ          ନ ଜାଣେ ନିଜର
ବାଳୁତେ ନାହିଁଛୁ ଦେଖି
କେତେ ପରସିଲ          ପିଅର ପ୍ରାଏନେ
ବଢ଼ାଏ କୁଟନେ ରଖି ।”

## ବିବାହ ପ୍ରତ୍ୟାଖ୍ୟାନ

ପତ୍ନୀ ବିୟୋଗ ବେଳକୁ ଗୋପବନ୍ଧୁଙ୍କ ଦାର ୧୮ବର୍ଷ ହୋଇଥିଲା । ଏ ବୟସରେ ଦ୍ୱିତୀୟ ବିବାହ ଏକ ସ୍ୱାଭାବିକ ବ୍ୟାପାର ଥିଲେ ବି ଗୋପବନ୍ଧୁ ସେଥିପାଇଁ ମନ ବଳାଇ ନଥିଲେ । ତାଙ୍କ ବଡ଼ ଭାଇ ନାରାୟଣ ଦାସେ ବିବାହ ପ୍ରସ୍ତାବ ନେଇ ଗୋପବନ୍ଧୁଙ୍କ ପାଖରେ ପହଞ୍ଚିଲେ । ସେତେବେଳେ ଭକ୍ତକବି ମଧୁସୂଦନ ରାଓଙ୍କ ଭଣଜା ଗୋପବନ୍ଧୁଙ୍କ ବନ୍ଧୁ ଶ୍ରୀ ରଘୁନାଥ ରାଓ ଗୋପବନ୍ଧୁଙ୍କ ପାଖରେ ଥା'ନ୍ତି । ବଡ଼ ଭାଇଙ୍କ ସକଳ ଅନୁରୋଧ ସତ୍ତ୍ୱେ ଗୋପବନ୍ଧୁ ଅତି ନିର୍ବିକାର ଓ ଗମ୍ଭୀର ରହୁଥାନ୍ତି । ଶେଷକୁ ରଘୁନାଥ ତାଙ୍କଠାରୁ ଶେଷ ଜବାବ ଆଣା କରିବାରୁ ଗୋପବନ୍ଧୁ ଉତ୍ତର ଦେଲେ—“ମୁଁ ଆଜ ମରଯାଇଥିଲେ ତୁମେ ମୋ ସ୍ତ୍ରୀକୁ ଦ୍ୱିତୀୟ ବିବାହ ପାଇଁ ପରାମର୍ଶ ଦେଇ ପାରଥା'ନ୍ତ କି ?”

ରଘୁନାଥ ଉତ୍ତର ଦେଲେ—“ତା କିପରି କଥା ?”

ଗୋପବନ୍ଧୁ ଏଥର ଅଧିକ ଉଦାସୀନ ଓ ଗମ୍ଭୀର ଭାବରେ ଉତ୍ତର ଦେଲେ—“ଯଦି ତା' ପାଇଁ ପୁନର୍ବିବାହ ସମ୍ଭବ ନୁହେଁ, ମୋ ପ୍ରଶ୍ନ ଉଠୁଛି କାହିଁକି ?”

ନାରାୟଣ ଫେରି ଆସିଲେ । ଗୋପବନ୍ଧୁଙ୍କ ଦୃଢ଼ତାକୁ ଭାଙ୍ଗିବା ତାଙ୍କ ପକ୍ଷେ ଅସମ୍ଭବ ବ୍ୟାପାର ଥିଲା । ଏ ବୋଧହୁଏ ୧୯୦୭ ବା ୧୯୦୮ ମସିହାର କଥା ।

ପୁଣି ଏଇ ପ୍ରଶ୍ନ ଗୋପବନ୍ଧୁ ମୟୂରଭଞ୍ଜରେ ଥିଲାବେଳେ ସ୍ନ ୧୯୧୧ରେ ଆଉଥରେ ଉଠିଥିଲା । ବହୁ ବନ୍ଧୁ ଓ ହିତାକାଂକ୍ଷୀ ତାଙ୍କ ପୁନର୍ବିବାହ ପାଇଁ ପ୍ରବର୍ତ୍ତାଉ ଥିଲେ । କିନ୍ତୁ ସକଳ ଉଦ୍ୟମ ପାହାଡ଼ରେ ଟେକା ବସିଲା ପରି ବୃଥା ହୋଇଯାଉଥିଲା । ଥରେ ମେଦିନୀପୁରର ଓଡ଼ିଆ ଓକିଲ ଶ୍ରୀଯୁକ୍ତ ରାଧାନାଥ ପତିଙ୍କ ଝିଅ ସହିତ ତାଙ୍କର ବିବାହ ପ୍ରସ୍ତାବ ଉଠିଲା । ବନ୍ଧୁମାନେ ଗୋଟିଏ ଯୁକ୍ତି ବାଢ଼ିଲେ । ମେଦିନୀପୁର ଓ ସିଂହଭୂମ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ହୋଇଥିଲେ ମଧ୍ୟ ଏ ଦୁଇଟି ଅଞ୍ଚଳ କ୍ରମେ ଓଡ଼ିଶାରୁ ବିଚ୍ଛିନ୍ନ ହୋଇ ପଡ଼ୁଛି ।

କୁଳୀନ ଲୋକମାନେ ଏ ଅଞ୍ଚଳ ସହିତ ବୈବାହିକ ସମ୍ପର୍କ ପ୍ରତିଷ୍ଠା ନ କରିବା ଫଳରେ ଏଠାରେ ଓଡ଼ିଆ ଭାଷା ଓ ପରମ୍ପରାର ବିକାଶ ହୋଇ ପାରୁନାହିଁ । ଏହିପରି ପରିସ୍ଥିତିରେ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲେ ଏ ଦୁଇଟି ଅଞ୍ଚଳ ପୁରୀପୁରି ବାଦ ଯିବାର ସମ୍ଭାବନା ଓ ଆଶଙ୍କା ମଧ୍ୟ ରହିଛି । ଯଦି ଗୋପବନ୍ଧୁ ଏକ ଜାତୀୟ ଆଦର୍ଶ ପାଇଁ ଏଠାରେ ପ୍ରଥମେ ନିଜେ ବିବାହ କରନ୍ତେ କ୍ରମେ କ୍ରମେ ତାହା ଅନ୍ୟମାନଙ୍କୁ ଆକୃଷ୍ଟ କରନ୍ତା । ସାମାଜିକ ବନ୍ଧନ ଅଧିକରୁ ଅଧିକ ପରିବ୍ୟାପ୍ତ ହୁଅନ୍ତା ଓ ଭବିଷ୍ୟତରେ ଏହି ଦାବୀ ନେଇ ଓଡ଼ିଶା ସହିତ ମିଶିବାର ବାଟ ବି ଫିଟିଯାନ୍ତା ।

ଗୋପବନ୍ଧୁ କିନ୍ତୁ ଏ ଯୁକ୍ତିକୁ ପ୍ରତ୍ୟାହତ କରି କହିଲେ—"ଜାତିପାଇଁ ଏହା ଏକ ଉନ୍ନତ ପଦକ୍ଷେପ ହେଲେହେଁ ବ୍ୟକ୍ତିଗତ ଭାବରେ ମୁଁ ଦ୍ୱିତୀୟବାର ବିବାହ କରି ପାରିବି ନାହିଁ । ଏ ଦେଶରେ ବ୍ରାହ୍ମଣ ଘର ଝିଅ ବିଧବା ହେଲେ ସେ ଯଦି ଦ୍ୱିତୀୟବାର ସ୍ୱାମୀ ଗ୍ରହଣ କରିବାକୁ ସମର୍ଥ ନୁହେଁ, ମୁଁ କିପରି ଦ୍ୱିତୀୟ ପତ୍ନୀ ଗ୍ରହଣ କରିବି ? ପୁରୁଷର ଏକପତ୍ନୀବ୍ରତ ଏକାନ୍ତ ଅନୁସରଣୀୟ ।"

ଗୋପବନ୍ଧୁଙ୍କ ଏ ସିଦ୍ଧାନ୍ତ ପଛରେ ପ୍ରାଣତମା ପିଜୁସୀ ବାଳବିଧବା କମଳା ଜାଣିଙ୍କ ସ୍ମୃତି ଉଜ୍ଜୀବିତ ଥିଲା । ସେ ଏ ମର୍ମରେ କେବଳ କବିତା ଲେଖିନଥିଲେ, ଜୀବନରେ ତାର ପରୀକ୍ଷା ଓ ସାଧନା ପ୍ରକଟିତ କରିଥିଲେ । "ପ୍ରେମେ ପ୍ରଣୟୀ ସହିତ ସ୍ୱର୍ଗେ ହେବ ଦେଖା" ତାଙ୍କ କବିତାର ଭାଷା ନଥିଲା, ଥିଲା ଜୀବନର ସାଧନା ସାମଗ୍ରୀ । ଏଥିରୁ ବିଚଳିତ ହେବା ସାଧକ ଗୋପବନ୍ଧୁଙ୍କ ପକ୍ଷେ ଅସମ୍ଭବ ଥିଲା ।

## କନ୍ୟାଦାନ (୧୯୧୪)

ଗୋପବନ୍ଧୁଙ୍କ ଏକମାତ୍ର ପୁଅ ମରିଯାଇଥିବା କଥା ଆଗରୁ କୁହାଯାଇଛି । ଦୁଇଟି ମାତ୍ର ଝିଅ ବଞ୍ଚି ରହିଥିଲେ । ବଡ଼ ସାରଙ୍ଗିଣୀ, ସାନ କେତକୀ । ସ୍ତ୍ରୀ ବିୟୋଗ ପରେ ଏମାନେ ଜନ୍ମଭୂମି ଦଦେଇ ନାରାୟଣଙ୍କ ପାଖରେ ରହିଥିଲେ । ପୁରୀରେ ଗୋପବନ୍ଧୁ ଓକିଲାତି କଲାବେଳେ କେବେ କେବେ ପୁରୀରେ ରହୁଥିଲେ । ବାରିପଦାରୁ ଆସିବା ପରେ ସେ ସାକ୍ଷୀଗୋପାଳ ଓ ପୁରୀକୁ ନିଜର ସାଧନା କ୍ଷେତ୍ର ଭାବରେ ବାଛିନେଲେ ।

ଶ୍ରୀଯୁକ୍ତ ରତ୍ନାକର ପତି ସେତେବେଳେ ବି ଏ. ପରୀକ୍ଷା ଦେଇଥା'ନ୍ତି । ୧୯୧୪ ମସିହା କଥା । ତାଙ୍କ ବନ୍ଧୁ ବାସୁଦେବ ମହାପାତ୍ର ପୁରୀ ଯିବାପାଇଁ ତାଙ୍କୁ ଏକ ପ୍ରକାର ଭିଡ଼ିକରି ନେଇ ଆସିଲେ । ଶ୍ରୀ ପତି ଗୃହ ଜୀବନରେ ବଡ଼ ଅଭାବ ଅସୁବିଧା ଭିତରେ ଚଳୁଥା'ନ୍ତି । ଦୁଇଖଣ୍ଡି ମାତ୍ର ଲୁଗା । ଗୋଟିଏ ଧୋବା ଘରେ ପଡ଼ିଲେ ଗୋଟିଏ ପିନ୍ଧି ଥା'ନ୍ତି । ଏକକାନିଆ ହୋଇ ଯିବାକୁ ସେ ଇଚ୍ଛା କରୁ ନଥିଲେ ବି ବାସୁଦେବଙ୍କ ସହିତ

ଯିବାକୁ ବାଧ୍ୟ ହେଲେ । ପିଲାବେଳେ କେବେ ବାପମାଆଙ୍କ ସାଙ୍ଗରେ ହୁଏତ ପୁରୀ ଯାଇଥିବେ । ତେଣୁ ପୁରୀର ସ୍ମୃତି ତାଙ୍କପାଇଁ କିଛି ନଥିଲା । ଅତି ଆକସ୍ମିକ ଭାବରେ ବାସୁଦେବ ତାଙ୍କୁ ଗୋପବନ୍ଧୁଙ୍କ ସହିତ ସାକ୍ଷାତ କରେଇ ଦେବାପାଇଁ ହେରେଗୋହିରୀ-ସାହିର ରହଣି ସ୍ଥାନକୁ ନେଇଗଲେ । ସେତେବେଳେ ଗୋପବନ୍ଧୁ ତାଙ୍କ ଦି'ହିଅଙ୍କ ସହିତ ପୁରୀରେ ରହୁଥା'ନ୍ତି । ଏଇ ବିରାଟ ବ୍ୟକ୍ତିତ୍ୱର ଝଲକ ସେତେବେଳକୁ ଆରମ୍ଭ ହେଉଥାଏ । ପତିଙ୍କ ସହିତ ମହାପାତ୍ରେ ପହଞ୍ଚିଲା ବେଳକୁ ଗୋପବନ୍ଧୁ ବାହାରକୁ ଯାଇଥିଲେ । ଦି'ହିଅ ଶାଗ ବାଛୁଥିଲେ । ସେମାନଙ୍କ ପାଇଁ ଚଉକି ପକେଇବାକୁ ବସିବ ଦେଇ ମହାପାତ୍ରେ ବଅଁ ଦର୍ଶନକୁ ଆସିଲେ । ଫେରୁ ଫେରୁ ଦିନ ସାତେବାର । ସେତେବେଳେ ଶ୍ରୀ ପତିଙ୍କୁ ଖୁବ ଭୋକ ଲାଗୁଥାଏ । ଗୋପବନ୍ଧୁ ଫେରିଥାନ୍ତି । ପରିଚୟ ପାଇ ଖୁସି ହେଲେ । ଶ୍ରୀ ପତିଙ୍କୁ ପରୀକ୍ଷା କରିବା ପାଇଁ (ବୋଧହୁଏ) ଅତି ମାମୁଲି ଭାବରେ ପଚାରିଲେ, "ତୁମର ଜଳଖିଆ, ଛତା, ଜୋତା କାହିଁ ?"

"ମୁଁ ଜୋତା ପିନ୍ଧେନି । ମୋର ତ ମାତ୍ର ଦି'ଖଣ୍ଡ ଲୁଗା । ଖଣ୍ଡେ ଧୋବା ଘରେ । ଦିନେ ଅଧେ ପାଇଁ ବୁଲି ଆସିଲି ।" ଶ୍ରୀ ରତ୍ନାକର ପ୍ରତି ଉତ୍ତର ଦେଲେ ।

ଗୋପବନ୍ଧୁ ବିସ୍ମିତ ହୋଇ ପଚାରିଲେ—"ତୁମେ ଜୋତା ପିନ୍ଧନି, ଅଥଚ ବି. ଏ. ପରୀକ୍ଷା ଦେଲଣି ?"

"ବି. ଏ. ପରୀକ୍ଷା ଦେବାରେ ବା ବହିରେ ଜୋତା ପିନ୍ଧିବା ଏକ ବାଧ୍ୟବାଧ୍ୟକତା ବୋଲି ତ କେଉଁଠି ଲେଖା ନାହିଁ ।" ପତି ମହାଶୟ ନିଃସଙ୍କୋଚରେ ଉତ୍ତର ଦେଲେ ।

ଗୋପବନ୍ଧୁ ଟିକିଏ ମୁରୁକି ହସିଲେ । ପୁଣି ପଚାରିଲେ—"ଆଚ୍ଛା, ରତ୍ନାକର, ତୁମେ Millଙ୍କ Utitarianism ବିଷୟରେ ମୋତେ ସ୍ପଷ୍ଟ ଧାରଣା ଦେଇପାରିବ । ମୁଁ ପଢ଼ିଥିଲେ ମଧ୍ୟ ସେ କଥାଟା ଆଚ୍ଛା କରି ବୁଝି ପାରିନାହିଁ ।"

ଶ୍ରୀ ପତି ଜଣେ ବିଚକ୍ଷଣ ଛାତ୍ର ଥିଲେ । ଇଂରାଜୀରେ ଛୋଟ ଭାଷଣଟିଏ ଦେଇ ହିତବାଦ ନୀତି ବିଷୟରେ ବେଶ୍ ବୁଝାଇ ଦେଲେ ।

ଗୋପବନ୍ଧୁ ଆନନ୍ଦର ସହିତ କହିଲେ—"ଏବେ ବୁଝିଗଲି । ଚାଲ ଖାଇବା ।"

ଖାଇବା ତ ନିହାତି ନିରାଡ଼ମ୍ବର ଥିଲା । ଶାଗ ସହିତ ସବୁଦିନେ ଗୋଟିଏ ଠା ତର୍କାରି ହୋଇଥାଏ । ସେ ଦିନ ସନ୍ଧ୍ୟାରେ ଶ୍ରୀ ପତି କଟକ ଫେରି ଆସିଲେ । କଲେଜ ଖୋଲିବା ପରେ କଲିକତା ବିଶ୍ୱବିଦ୍ୟାଳୟରେ ଏମ୍. ଏ. ଫିଲୋସଫିରେ ନାମ ଲେଖାଇଲେ ।

ସେ ଥରେ ପୂଜା ଛୁଟିରେ କଲିକତାରୁ ଫେରିଥାନ୍ତି । ପଢ଼ାପଢ଼ିର ସୁବିଧା ପାଇଁ ଗ୍ରାମକୁ ନ ଯାଇ କଟକରେ ଗୋଟିଏ ଛୋଟ ବଖରିଆ ଭଡ଼ା ଘରେ ରହୁଥା'ନ୍ତି । ଦିନେ ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ମହାଶୟ, ପଣ୍ଡିତ ବାସୁଦେବ

ମହାପାତ୍ରଙ୍କୁ ଧରି କଟକ ବସାରେ ପହଞ୍ଚିଲେ । ଏତେ ଲୋକଙ୍କୁ ପୁଣି ସେ ସମୟର ବିଖ୍ୟାତ ମନୀଷୀମାନଙ୍କୁ ଦେଖି ରତ୍ନାକର ହଠାତ୍ ଇତସ୍ତତଃ ହୋଇ ପଡ଼ିଲେ । ଯାହା ହେଉ ଗୋଦାବରୀଶ ପ୍ରଥମେ ଆସିବା ଉଦ୍ଦେଶ୍ୟ ପରୋକ୍ଷ ଭାବରେ ଆରମ୍ଭ କଲେ । ଶ୍ରୀ ପତି ତରୁଣ ଗ୍ରନ୍ଥ—ପୁଣି ତର୍କଶାସ୍ତ୍ର ଓ ଦର୍ଶନଶାସ୍ତ୍ର ତାଙ୍କର ଅଧ୍ୟୟନର ସାମଗ୍ରୀ । ସେ ଯୁକ୍ତି ପ୍ରବଣ ଭାବରେ ଉତ୍ତର ମଧ୍ୟ ଦେଉଥିଲେ । ଆଚାର୍ଯ୍ୟ ମହାଶୟ କିନ୍ତୁ ଖୋଲା ହୃଦୟର ଲୋକ । ଅତି ସ୍ପଷ୍ଟ ଭାବରେ ସେ କହିଲେ—"ଆହେ ରତ୍ନାକର, ଆମେ ଆସିବାର ଉଦ୍ଦେଶ୍ୟ ହେଲା ତାସଆପଣଙ୍କର ଦୁଇଟି ଝିଅ ଅଛନ୍ତି । ସେ ତାଙ୍କ ବଡ଼ ଝିଅର ବିବାହ ତୁମ ସହିତ ଦେବାକୁ ସ୍ଥିର କରି ଆମକୁ ପଠାଇଛନ୍ତି । ଏକରକମ କଥା ତ ସ୍ଥିର ସରିଛି । କୁହ, ବର୍ତ୍ତମାନ କପରି ସମ୍ପନ୍ନ ହେବ ?"

ଆଚାର୍ଯ୍ୟ ମହାଶୟ ପ୍ୟାରୀମୋହନ ଏକାଡେମୀରେ ଶ୍ରୀ ରତ୍ନାକର ପତିଙ୍କ ଶିକ୍ଷକ ଥିଲେ । ଶିକ୍ଷକଙ୍କ ଏ ଆଦେଶକୁ ସେ କପରି ପ୍ରତ୍ୟାଖ୍ୟାନ କରିବେ ବାଟ ପାଇଲେନି । କେବଳ କହିଲେ—"ସମାନ ସ୍ତରରେ ବନ୍ଧୁତା ହେବା ଶାସ୍ତ୍ର କୁହେ । ମୁଁ ଅତି ଗରିବ ଘରର ପିଲା । ଗାଆଁରେ ରହିବା ପାଇଁ ଭଲ ଘର ଖଣ୍ଡେ ବି ନାହିଁ । ପୁଣି ପାଠ ପଢ଼ୁଛି । କପରି ଦାୟିତ୍ୱ ତୁଲାଇ ପାରିବି ? ପୁଣି ପଣ୍ଡିତ ଗୋପବନ୍ଧୁଙ୍କ ସମାନ ଲୋକ ଆମେ ନୋହୁଁ । ତାଙ୍କ ଝିଅ ହଇରାଣରେ ପଡ଼ି ଯାଇପାରେ ।"

ଆଚାର୍ଯ୍ୟ ମହାଶୟ ଯୁକ୍ତି ଦେଇ କଥାଟା କାଟିଲା ପରେ ଶ୍ରୀ ପତି ପୁଣି କହିଲେ—"ଘରେ ବୋଉ, ବିଧବା ଭାଉଜ, ଜଣେ ମୁରବି ଭାଇ ଅଛନ୍ତି । ସେମାନଙ୍କ ମତ ନ ନେଇ ମୁଁ କି ଜବାବ ଦେଇ ପାରିବି ?" ପ୍ରସ୍ତାବଟାକୁ କାଳକ୍ଷେପ କରି ଗଡ଼ାଇ ଦେବା ଉଦ୍ଦେଶ୍ୟରେ ଶ୍ରୀ ପତି ଏ ସାମାଜିକ ଯୁକ୍ତି ବାଢ଼ି ବସିଲେ । ସେଇଠି ପୁଣି ପ୍ରସ୍ତାବ ହେଲା ବିରିବାଟୀ (ପତିଙ୍କ ଘର) ଯାଇ କଥା ସ୍ଥିର କରିବାକୁ ହେବ । ଡେରି ନାହିଁ । ସମସ୍ତେ ପ୍ରାୟ ବସିଲା ସ୍ଥାନରୁ ଉଠିବାକୁ ପ୍ରସ୍ତୁତ ହୋଇପଡ଼ିଲେ ।

ଶ୍ରୀ ପତି ବଡ଼ ଅଡୁଆରେ ପଡ଼ିଲେ । "ଏଇଠୁ ଆସୁଛି" କହି ତାଙ୍କର ଜଣେ ଓକିଲ ସାଙ୍ଗ ପାଖକୁ ଧାଇଁଯାଇ ପରାମର୍ଶ ନେଇଲେ । ଓକିଲ ମହାଶୟ ଓ ଶ୍ରୀ ପତି କିଛି ଖାଦ୍ୟ ଜିନିଷ କିଣି ଗୋଟିଏ ଘୋଡ଼ା ଗାଡ଼ିରେ ଆଗେ ଆଗେ ଗଲେ । ପଛରେ ଆଉ ଗୋଟିଏ ଘୋଡ଼ା ଗାଡ଼ିରେ ଅନ୍ୟମାନେ ଆସିଲେ ।

ଗ୍ରାମରେ ଏ ପ୍ରସ୍ତାବ ଶୁଣି ଘର ଲୋକେ ଓ ଜ୍ଞାତିମାନେ ବଡ଼ ଖୁସି । ଦାଣ୍ଡେ ଅପଣେ ଗୁହିଁଛନ୍ତି । ଏ କଥାକୁ ମନା କରିବାକୁ ସାଧ କାହାର ଅଛି ?

ଶ୍ରୀ ପତି ଏକାନ୍ତରେ ତାଙ୍କ ବୋଉଙ୍କୁ ଏ ପ୍ରସ୍ତାବ ଭାଙ୍ଗି ଦେବାକୁ ଶିଖେଇଲେ । "ସେ ବଡ଼ଲୋକ ଘର ଝିଅ । ତୋ ସେବା ଶୁଶ୍ରୂଷା ମୋଟେ କରିବନି । ତୁ ହଇରାଣ ହେବୁ ।"

ଶେଷକୁ ବୋଉ ଉପରେ ଯେତେବେଳେ କଥା ଠାକଲା, ଆଚାର୍ଯ୍ୟ ମହାଶୟ ସରଳ

ତରଳ ଭାଷାରେ ଏପରି ଭୁଲାଇ ଦେଲେ ଯେ ପୂର୍ବର ସବୁ ଜିଗର ଓ ପରାମର୍ଶ ଭୁଲିଯାଇ ସ୍ନେହଶୀଳା ଜନନୀ ହୃଦ ଗଦଗଦ୍ ହୋଇ ରାଜି ହୋଇଗଲେ । ପତିଙ୍କ ବାପା ସେତେବେଳକୁ ମରିଯାଇଥାନ୍ତି । କଥା ସ୍ଥିର ହୋଇ ମଧ୍ୟ ଦିନ ନିର୍ଘଣ୍ଟ ହୋଇ ନ ଥାଏ ।

କଥା ସ୍ଥିର କରି ସମସ୍ତେ ଫୁଲ ଫେରିଲେ । ଗୋପବନ୍ଧୁ ଅପେକ୍ଷା କରିଥାଆନ୍ତି । ସେମାନେ ସମସ୍ତେ ଘର ଦେଖିବାକୁ ଯାଇଥିଲେ ଜାଣି ପ୍ରାଣ ଉଚ୍ଛୁଳା ଆନନ୍ଦରେ ଗୋପବନ୍ଧୁ କହିଲେ—"ଆହେ, ମୁଁ ତୁମ୍ଭମାନଙ୍କୁ କ'ଣ ଘର ଦେଖିବା ପାଇଁ କହିଥିଲି । ଘରରୁ କଣ ମିଳିବ ହେ । ପିଲାଟି ଦେଖି ତ ମୋ ମନ ପରମ ତୃପ୍ତି ପାଇଛି । ତା' ସହିତ ତ ସବୁ ଠିକଣା କରି ଆସିଥା'ନ୍ତି ?"

ମାସେ ଦି'ମାସ ପରେ ପୁଣି ପଣ୍ଡିତ ବାସୁଦେବ ମହାପାତ୍ର ଦାସ ଆପଣଙ୍କ ସମନ୍ଧ ଆଣି ଶ୍ରୀପତିଙ୍କୁ ପୁଅ ନେଇ ଆସିଲେ ।

ରତ୍ନାକର ବାବୁଙ୍କୁ ଦେଖି ବିହ୍ୱଳ ହୋଇ ଗୋପବନ୍ଧୁ ପ୍ରାୟ କୁଣ୍ଢାଇ ପକାଇଲେ । ଆଖିର ଲୁହ ଜମି ଅସୁଥାଏ । କହିଲେ—"ତୁମ ହାତରେ ମୋ ଝିଅକୁ ଦେଲେ ମୁଁ ପରମ ତୃପ୍ତି ପାଇବି । ତୁମେ କଣ ମୋ ତୃପ୍ତି ପାଇଁ ଏତିକ କରି ପାରିବନି ?"

ରତ୍ନାକର ପତି ସେତେବେଳକୁ ପ୍ରାୟ ଅଭିଭୂତ ହୋଇ ପଡ଼ିଥାଆନ୍ତି । ଉତ୍ତର ଦେଲେ—"ଆପଣଙ୍କ କଥାରେ ମୁଁ ବାଧ୍ୟ । ମୋର ଅନ୍ୟ ଉପାୟ ନାହିଁ ।"

ସେତିକରେ କଥା ସରିଲା । ବିଭାଘର ଅତି ନିରାଡ଼ମ୍ବର ଭାବରେ ସମ୍ପନ୍ନ ହେଲା । ଗୋପବନ୍ଧୁ ଝିନା କନ୍ୟା ସମ୍ପ୍ରଦାନ କଲେ, କିନ୍ତୁ ବଡ଼ଭାଇ ନାରାୟଣ—ସବୁ ସଜାଡ଼ି ଦେଲେ । ବାଇଶି ଖଣ୍ଡ ଶଗଡ଼ରେ ଧାନ ସୁଆଲଠାରୁ ହାଣ୍ଡି କୁଣ୍ଢେଇ ଯାଏ ସୁଆଣ୍ଡରୁ ଭାର୍ଗବୀ ନଈ ବନ୍ଧରେ ବରବାଟୀ ଆସିଲା; କିନ୍ତୁ ବର ଆସିଲା ବେଳକୁ ବାଣ ଫୁଟି ନଥିଲା କି ବରକୁ ଯଣ୍ଡା' ସାଇକେଲ ଆଦି ଯୌତୁକ ଦିଆ ହୋଇନଥିଲା । ଦାସେ ଆପଣେ ଯୌତୁକ ପ୍ରଥାର ବିରୋଧୀ ଥିଲେ ।

ଆନ୍ତରିକତା ଓ ଆଗ୍ରହକୁ ଲୌକିକ ମାୟା ଭିତରେ ସେ କେବେ ଦେଖାଇ ନାହାନ୍ତି । ଏପରିକି କଟକ ଆସିଲେ ଅଧ୍ୟାପକ ପତିଙ୍କ ଘରକୁ ଆସି ବଡ଼ ଝିଅକୁ ଦେଖିଯିବାକୁ ସେ ମନ ବଳାନ୍ତି ନାହିଁ । ଥରେ ପତିଙ୍କ ପଡ଼ୋଶୀ ଘରକୁ ଗୋପବନ୍ଧୁ ଆସିଥାଆନ୍ତି । ରେଭେନ୍‌ସା କଲେଜ ସଂସ୍କୃତ ଅଧ୍ୟାପକ ସେ ଘରେ ରୋଗ ଶଯ୍ୟାରେ ପୀଡ଼ିତ । ତାଙ୍କୁ ଦେଖି ଗୋପବନ୍ଧୁ ବାଟେ ବାଟେ ଫେରିଗଲେ । ଝରକାବାଟେ ପାଖ ଘରୁ ଝିଅ ହାତଠାରି ଡାକୁଥାଏ । ଏକଥା ଆଗ୍ରହୀ ମହାଶୟ ଗୋପବନ୍ଧୁଙ୍କୁ ସୂଚେଇ ବି ଦେଲେ । କିନ୍ତୁ ଗୋପବନ୍ଧୁ ମୁହୂର୍ତ୍ତେ ଅଟକିଲେନି । କେବଳ ଉତ୍ତର ଦେଲେ—"ହଇଏ, ସେ ତ ତା' ଭାଗ୍ୟ ନେଇ ରହିବ । ମୋତେ ଦେଖି ଲାଭ କଣ ?"

ଆଗକୁ ଚାଲିଲେ ତ୍ୟାଗ ସାଧକ ଗୋପବନ୍ଧୁ । ପଛରେ ମାୟାଚ୍ଛନ୍ନ ମଣିଷର କାତର

ଅଶ୍ରୁ ଗବାକ୍ଷ ଧାରରେ ନିଭିଗଲେ । ମୋ ଘର, ମୋ ବାପା, ମୋ ସ୍ତ୍ରୀ, ମୋ ପିଲ ଝିଲର ଏଇ ବିରାଟ ସଂସାରଟା ତାଙ୍କୁ ବାନ୍ଧି ପାରିନଥିଲା । ଏହି ଅବନ୍ଧନହିଁ ତାଙ୍କୁ ବଡ଼ କଲା । ମହାନ କଲା । ସଂସାରର ସମସ୍ତେ ହେଲେ ତାଙ୍କ ପୁତ୍ର କନ୍ୟା । କେହି ଊଣା ଅଧିକ ନୁହନ୍ତି । କେହି ଆପଣା ପର ନୁହନ୍ତି ।

## ସାନଝିଅ କେତକୀ

ସାନଝିଅ କେତକୀ । ଗୋପବନ୍ଧୁ ନିଜ ଚିନ୍ତାରୁ ଟିକେ ବିଚଳିତ ହେଉନଥିଲେ । ବଡ଼ଲୋକଙ୍କର ଅହମିକା ପାଖରେ ଆତ୍ମସମର୍ପଣ କରୁନଥିଲେ । କେତକୀ ଦେବୀଙ୍କ ପାଇଁ ଆଗେ ଜଣେ ଧନୀଲୋକର ପୁଅ ସାଙ୍ଗରେ ବିଭାଘର ପଡ଼ିଥିଲା । ପାତ୍ର ଆଇ. ଏ. ପାଶ କରିଥିଲା, ବାପ ଓକିଲାତି କରୁଥିଲେ ।

ବିବାହ ପ୍ରସ୍ତାବ ଆଲୋଚନା ବେଳେ ବର ବାପା ଦାସେ ଆପଣଙ୍କୁ ପଚାରିଲେ— "ଦିଆନିଆ କଣ ହେବ ?"

ଦାସେ ଆପଣେ ଉତ୍ତର ଦେଲେ—"ତୁମର ତ ଏତେ ଅଛି, ଆଉ ଦେବି କ'ଣ ?"

ବର ବାପ କହିଲେ, "ଆମେ ସାମନ୍ତ ବ୍ରାହ୍ମଣ, ତୁମେ ଦାସ ବ୍ରାହ୍ମଣ । ନ ଦେଲେ କେମିତି ହେବ ?"

ଗୋପବନ୍ଧୁ କହିଲେ, "ମୁଁ ପଛେ ଗୋଟିଏ ଗରିବ ପିଲାକୁ ଝିଅ ବିଭା ଦେବି, ଦିଆ ନିଆ କରି ବାହା କରିବି ନାହିଁ" । ପ୍ରସ୍ତାବ ଭାଙ୍ଗିଗଲା ।

ତା ପରେ ପ୍ରସ୍ତାବ ପଡ଼ିଲା ପୁରୀ ଜିଲ୍ଲାର ବୀରପ୍ରତାପପୁର ଶାସନ ନାରାୟଣ ମିଶ୍ରଙ୍କ ଘରେ । ଶ୍ରୀ ନାରାୟଣ ମିଶ୍ର ସତ୍ୟବାଦୀର ଛାତ୍ର ଥିଲେ । ତାଙ୍କ ସହିତ କେତକୀ ଦେବୀଙ୍କ ବିବାହ ସମ୍ପନ୍ନ ହେଲା । ବିବାହ ଭୋଜି ଖୁବ୍ ବଡ଼ ଆକାରରେ ହୋଇଥିଲା । ଗୋପବନ୍ଧୁଙ୍କ ବଡ଼ଭାଇ ନାରାୟଣ ଦାସ ଦାଣ୍ଡିକୁ ମାମଲତକାର ଥିଲେ । ତାଙ୍କର ମହାଜନୀ ବି ଥିଲା । ସହଜେ ଗୋପବନ୍ଧୁ ଦେଶସେବୀ । ଦୁନିଆଁ ସାରା ଚିହ୍ନା ପରିଚୟ । ତେଣୁ ହଜାରରୁ ଅଧିକ ଲୋକଙ୍କ ପରିଚର୍ଯ୍ୟା ହେଲା । ଦସ୍ତୁର ମତରେ ଝିଅ ସହିତ ଜିନିଷପତ୍ର ଦିଆହୋଇଲା; କିନ୍ତୁ ବରକୁ ଠିକ୍ ପୂର୍ବପରି ଯୌତୁକ ଦେବା ଗୋପବନ୍ଧୁ ବାରଣ କରିଥିଲେ । ବାଣ ଫୁଟିବା ବା ରୋଷଣି ଇତ୍ୟାଦିର ସେ ପକ୍ଷପାତୀ ନ ଥିଲେ ।

## 'ଦୟା'—ଏକ ଦାର୍ଶନିକ ବକ୍ତବ୍ୟ

୧୯୧୫ ମସିହା ବୈଶାଖ ମାସରେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରାବାସରେ ଗୋପବନ୍ଧୁ 'ଦୟା' ବିଷୟରେ ଏକ ଭାବ-ଉଦ୍‌ବେଳ ବକ୍ତୃତା ଦେଇଥିଲେ । ଏହି ବକ୍ତୃତା ମଧ୍ୟରେ ଗୋପବନ୍ଧୁ ତଥା ତାଙ୍କ ସହକର୍ମୀମାନଙ୍କର ସାଂସ୍କୃତିକ ଆଦର୍ଶ ଓ ଉପାସ୍ୟ ଭାବଧାରା ସୁପ୍ରକଟିତ । ଏହି ବକ୍ତୃତାଟି ୧୩୨୨ ସାଲ 'ସତ୍ୟବାଦୀ'ର ୧ମ ଭାଗ ୧ମ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏହାର ଉପସଂହାରରେ ଛାତ୍ରମାନଙ୍କୁ ଆବେଗ କମ୍ପିତ କଣ୍ଠରେ ବଳିଷ୍ଠ ଉଦ୍‌ବୋଧନ ଦେଇ ଗୋପବନ୍ଧୁ କହିଥିଲେ—"ପ୍ରିୟ ଛାତ୍ରଗଣ, ବୁଝି ରଖ, ମଙ୍ଗଳମୟ ବିଶ୍ୱବିଧାତାଙ୍କ ଅପାର କରୁଣାର ଏହି ବିଶ୍ୱରୂପ ଥରେ ହୃଦୟଙ୍ଗମ କରିପାରିଲେ ନିଶ୍ଚୟ ପ୍ରକୃତ ମଣିଷ ହେବ । ତାହା ନ ହେଲେ ତୁମେ ଜଡ଼, ଏ ଜଡ଼ତ୍ୱ ଛାଡ଼ି ନିଜ ଭିତରକୁ ଚାହିଁ । ସଂସାରକୁ ଦେଖି ଥରେ ସେହି ପ୍ରକୃତ ମନୁଷ୍ୟତା ଲାଭ କରିପାରିଲେ ତୁମ୍ଭର ଜୀବନ ଦୟାମୟ ହେବ । ତୁମ୍ଭଙ୍କୁ ଦୟା ଅଭ୍ୟାସରେ ଶିଖିବାକୁ ହେବନାହିଁ । ଦୟାମୟଙ୍କ ସେହି ଅନନ୍ତ ଦୟା ଫଳରେ ଆମ୍ଭେମାନେ ଜୀବନ ଧାରଣ କରିଅଛୁଁ । ସେହି କରୁଣାମୟଙ୍କ ବିଚିତ୍ର ବିଧାନରେ ଆମ୍ଭମାନଙ୍କୁ ଅନ୍ୟପ୍ରତି ଦୟା କରିବାକୁ ହେବ । ସେ ବିଶ୍ୱମୟ କରୁଣା ହେତୁରୁ ଆମ୍ଭର ଜୀବନ, ସେହି କରୁଣାକୁ ନିଜ ମଧ୍ୟରୁ ବିଶ୍ୱମୟ ବିସ୍ତୀର୍ଣ୍ଣ କରିବାକୁ ହେବ । ନିଜର ଅଭାବ ଆଦିକୁ ବୁଝି ପରପ୍ରତି କର୍ତ୍ତବ୍ୟ ଶିଖିବାକୁ ହେବ । ଯେ ଭିତରକୁ ଦେଖିଅଛି ସେ ସଂସାରକୁ ଦେଖିଅଛି । ଆମ୍ଭେମାନେ ଅନ୍ୟର ଦୟାରେ ବଞ୍ଚିଅଛୁ ଏବଂ ବାଧ୍ୟ ହୋଇ ଆମ୍ଭମାନଙ୍କୁ ଅନ୍ୟପ୍ରତି କେତେକ କର୍ତ୍ତବ୍ୟ କରିବାକୁ ହେବ । ଅତଏବ, ଜାଣିକରି ସେହି କର୍ତ୍ତବ୍ୟକୁ ଅନୁଭବ କରି ନିଜ ଦୁଃଖ କଷ୍ଟରେ ପରର ଦୁଃଖ କଷ୍ଟ ତଉଲି ଯେ ପର ପ୍ରତି କର୍ତ୍ତବ୍ୟ ଶିଖିଅଛି, ସେହି ଏକା ପ୍ରକୃତ ମନୁଷ୍ୟ ।"

"ଏହିପରି ସଂସାରକୁ ଯେ ଦୟାକରି ଶିଖିଅଛି, ଯେ ଏହିପରି ଈଶ୍ୱରଙ୍କ ଦୟାର ମୂର୍ତ୍ତି ଚତୁର୍ଦ୍ଦିଗରେ ଦେଖି ସେହି ଦୟା ଧର୍ମରେ, ସେହି ଈଶ୍ୱର ଭାବରେ ପ୍ରାଣକୁ ପରିପ୍ଲାବିତ କରିଅଛି, ସେହି କେବଳ ପ୍ରକୃତ ଈଶ୍ୱର ସେବା କରି ଶିଖିଅଛି । ସେହି କେବଳ ବୁଝିଛି—"ଜନସେବା ହିଁ ଈଶ୍ୱର ସେବା । ଜୀବେ ଦୟାହିଁ ବିଧାତାଙ୍କର ପୂଜା ।"

ଏହି ବକ୍ତୃତାରେ ଯେଉଁ ଈଶ୍ୱରସେବାର ତତ୍ତ୍ୱ ନିହିତ ଅଛି, ସତ୍ୟବାଦୀ ସଂସ୍କୃତିର ପ୍ରାଣପିଣ୍ଡ (ଗୋପବନ୍ଧୁଙ୍କ ପରିକଳ୍ପନା ଅନୁଯାୟୀ) ସେହିଠାରେ, ଜନସେବା ହିଁ ଈଶ୍ୱରସେବା—ଏହି ଉଦାର ଜୀବନ ଧର୍ମରେ କେବଳ ଏହି ବକ୍ତୃତାଟି ରସାଣିତ ନୁହେଁ, ସତ୍ୟବାଦୀ ଛାତ୍ରାବାସରେ ପ୍ରଦତ୍ତ 'ଚରିତ୍ରଂ ହି ପରଂ ବଳଂ' ଶୀର୍ଷକ ବକ୍ତୃତାରେ ମଧ୍ୟ ଆମ ସଂସ୍କୃତିର ମୌଳିକ ଭିତ୍ତି ସେହି ଧର୍ମଭାବ, ଅଧ୍ୟାତ୍ମଚେତନା ଓ ପାରମାର୍ଥିକତା

ପ୍ରକାଶ ପାଇଛୁ । ଏହି ବକ୍ତୃତାର ବକ୍ତା ଗୋପବନ୍ଧୁ ଶିକ୍ଷକ ଓ ଛାତ୍ରମାନଙ୍କୁ ଉପଦେଶ ଦେଇ କହିଅଛନ୍ତି—"ସେହି ଅନନ୍ତ କରୁଣାମୟ ପ୍ରୀତିମୟ ବିଧାତା ହିଁ ତେଣୁ ଆମ୍ଭର ଆଦର୍ଶ । ବିଧାତାଙ୍କର ପ୍ରେମ ଦେଖି ମୁଗ୍ଧ ହୁଅ ଏବଂ ଜୀବନରେ ସେହି ପ୍ରେମର ଯଥାସାଧ୍ୟ ଅନୁସରଣ କର । ମହାପୁରୁଷମାନେ ତାହାହିଁ କହିଥାଆନ୍ତି । ତୁମ୍ଭେମାନେ ମହାପୁରୁଷଙ୍କ ଜୀବନରୁ ତାହାହିଁ ଶିଖିବ । ସେମାନେ ଅନନ୍ତ ପ୍ରେମରେ ଜୀବନ ବୁଡ଼ାଇ ରଖିଥିଲେ । ତୁମ୍ଭମାନଙ୍କୁ ମଧ୍ୟ ଶିକ୍ଷାଦିଆଯାଏ "ତୁମ୍ଭେ ଅନ୍ୟଠାରୁ ଯେ ବ୍ୟବହାର ପାଇବାକୁ ଇଚ୍ଛା କର, ଅନ୍ୟପ୍ରତି ସେହିପରି ବ୍ୟବହାର କର," ବରଂ ଆହୁରି ଟିକିଏ ଭଲକରି କହିଲେ ବୁଝାଯିବ—"ବିଧାତାଙ୍କଠାରୁ ଯାହା ତୁମେ ପାଉଅଛ, ଜଗତ ପାଉଅଛି, ତୁମ୍ଭ ଜୀବନରେ ସେହିଭାବ ବ୍ୟକ୍ତ କର । ପରପାଇଁ ଜୀବନଧାରଣ କର । ପରର ଦୁଃଖ ଅନୁଭବ କର । ତୁମ୍ଭର ଆତ୍ମା ପ୍ରସାରିତ ହେଉ, ଜଗତରେ ବିସ୍ତୀର୍ଣ୍ଣ ହେଉ ।"

ଆତ୍ମାର ଏହି ସଂପ୍ରସାରଣଶୀଳତା ଓ ବିସ୍ତୀର୍ଣ୍ଣତାର ଆଭାସ ଗୋପବନ୍ଧୁଙ୍କ ପ୍ରତ୍ୟେକ ବକ୍ତବ୍ୟରେ, ଚିନ୍ତାରେ, କଥାପ୍ରସଙ୍ଗରେ ଫୁଟି ଉଠୁଥିଲା । ବାରମ୍ବାର ସତ୍ୟବାଦୀର ଛାତ୍ରମାନଙ୍କୁ ଭେଟି ଏହିପରି ମାନବ ଧର୍ମ ପ୍ରଚ୍ଛରିତ କରିବାଦ୍ୱାରା ସେମାନଙ୍କ ମନରେ ଧର୍ମଭାବ, କର୍ତ୍ତବ୍ୟଜ୍ଞାନ, ଦେଶପ୍ରୀତି ଜାଗରୂକ ହେଉଥିଲା । ବସ୍ତୁତଃ ସତ୍ୟବାଦୀ ଓଡ଼ିଶାର ଏକ ସାଧନାପୀଠ, ଭାବ ଓ କର୍ମର ମିଳନକ୍ଷେତ୍ରରେ ପରିଣତ ହୋଇଗଲା । ଏଠାରୁ ତାଲିମ ପାଇ ଯେତେ ଛାତ୍ର ବାହାରିଲେ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ସେମାନେ ଆଗୁଆ ହେଲେ । ଜାତି-ପ୍ରେମର ଉଗ୍ରବହ୍ନି ସେମାନଙ୍କ ମନ ଓ ହୃଦୟରେ ପ୍ରଜ୍ଜ୍ୱଳିତ ହୋଇ ରହିଲା । ଗୋପବନ୍ଧୁ ଏହିପରି ଏକ ସଚ୍ଚା ମନୁଷ୍ୟ-ଗଠନକାରୀ ସଂସ୍ଥା ଖୋଜୁଥିଲେ । ଅନେକଦିନ ଧରି ସତ୍ୟବାଦୀର ବନବିଦ୍ୟାଳୟ ତାଙ୍କର ଏହି ଆଶା ଆକାଙ୍‌କ୍ଷା ପୂର୍ତ୍ତି କରିପାରିଥିଲା ।

ଉତ୍କଳୀୟ ସଂସ୍କୃତିର ବୈଶିଷ୍ଟ୍ୟ ବିଶ୍ଳେଷଣ କରି ଏବଂ ଉଦାର ବିଶ୍ୱଜନ ମନୋଭାବରେ ଅନୁପ୍ରାଣିତ ହୋଇ ଭାରତୀୟ ଆଶା ଆକାଙ୍‌କ୍ଷା ସହିତ ଉତ୍କଳୀୟ ଜାତୀୟ ଜୀବନର କ୍ଷୀଣପ୍ରଭାବକୁ ମିଶାଇ ଦେବା ନିମନ୍ତେ ଗଭୀର ଉତ୍କଣ୍ଠା ପ୍ରକାଶ କରି ସେ ଉତ୍କଳ ସମ୍ମିଳନୀର ଜାତୀୟ ପୀଠରେ ଉଦ୍‌ବୋଧନ ଦେଇ କହିଥିଲେ—"ମନେରଖିବାକୁ ହେବ ଆମ୍ଭେମାନେ ପ୍ରଥମେ ମନୁଷ୍ୟ । ପରେ ଭାରତୀୟ, ସର୍ବଶେଷରେ ଓଡ଼ିଆ । ଏହି ଭାବ ମନରେ ନ ରଖିଲେ ଜାତୀୟ ସମ୍ପ୍ରସାରଣ ଅସମ୍ଭବ । ପ୍ରତ୍ୟେକ ବ୍ୟକ୍ତିର ସ୍ୱାତନ୍ତ୍ର୍ୟ ଅଛି, ମାତ୍ର ସାମାଜିକ ଭିତ୍ତି ବ୍ୟତୀତ ସେ ସ୍ୱାତନ୍ତ୍ର୍ୟ ପ୍ରକଟିତ ହୁଏ ନାହିଁ । ସେହିପରି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଫୁଟିବ ପ୍ରଶସ୍ତତର ଭାରତୀୟ ଜାତୀୟତା କ୍ଷେତ୍ରରେ ଏବଂ ଉଦାର ସାର୍ବଜନୀନ ମାନବିକତାରେ × × × । ଜାତୀୟତାର ଲକ୍ଷ୍ୟ ଯେ ଉଦାର ମାନବିକତା, ସମସ୍ତ ଭାରତରେ ତାହା ଓଡ଼ିଆହିଁ ବୁଝିଥିଲେ । ବିଶ୍ୱପ୍ରୀତି ହିଁ ଓଡ଼ିଆର

ଜାତୀୟତା, ପୂର୍ଣ୍ଣପ୍ରାଣ ଓଡ଼ିଆର ମନୁଷ୍ୟତା । ଓଡ଼ିଆର ଏ ଜାତୀୟତା, ଦେଶାନୁରାଗ କେବେ ଜଡ଼, ନିର୍ଜୀବ, ନୀରସ ଓ ସ୍ୱାର୍ଥପ୍ରଣୋଦିତ ନୁହେଁ । ରାଜ୍ୟ ଲାଭ ବା ରକ୍ତପାତରେ ଏହାର ପ୍ରତିଷ୍ଠା ନୁହେଁ । ଗଭୀର ଧର୍ମଭାବ ଏବଂ ଦୃଢ଼ବିଶ୍ୱାସ ଏହାର ଭିତ୍ତି । ସାମ୍ୟ, ମୈତ୍ରୀ ଓ ସ୍ୱାଧୀନତା ଏହାର ବିଗ୍ରହ ।"

ଉତ୍କଳୀୟ ସଂସ୍କୃତିର ସାର୍ବଜନୀନ ପ୍ରାଣତାର ଚିତ୍ର ଉପସ୍ଥାପନ କରିବାକୁ ଯାଇ ଗୋପବନ୍ଧୁ ଏହି ବକ୍ତୃତାରେ ପୁଣି କହିଥିଲେ—"ସାର୍ବଜନୀନ ମାନବସମାଜ ଭଗବାନଙ୍କ ଅଭିବ୍ୟକ୍ତି । ମାନବସେବା ହିଁ ଭଗବତ୍‌ ସେବା । ମାତ୍ର ବ୍ୟକ୍ତି ବିଶେଷର ଶକ୍ତି କ୍ଷୀଣ, ବହୁକ୍ଷୁଦ୍ର, ଦୃଷ୍ଟି ସଙ୍କୀର୍ଣ୍ଣ, ଗତି ସୀମାବଦ୍ଧ । ସୁତରାଂ ବିଶ୍ୱଜନୀନ ସମଗ୍ର ମାନବସମାଜର ସେବା ତା ପକ୍ଷେ ଅସମ୍ଭବ । ସେ ଯେଉଁ ନିର୍ଦ୍ଦିଷ୍ଟ ଦେଶରେ ଓ ନିର୍ଦ୍ଦିଷ୍ଟ ଜାତି ମଧ୍ୟରେ ବାସ କରନ୍ତି, ସେହି ଦେଶ ତାଙ୍କର ପୂଜାପୀଠ ଏବଂ ସେହି ଜାତିର ସେବା ହିଁ ତାଙ୍କର ମାନବସେବା ।"

"ସର୍ବଦେବ ନମସ୍କାର କେଶବଂ ପ୍ରତିଗଚ୍ଛତି ।"

ଏହିପରି ବହୁ ବକ୍ତୃତାରେ ଗୋପବନ୍ଧୁଙ୍କ ଆତ୍ମାର ଓ ଦାର୍ଶନିକ ବ୍ୟକ୍ତିତ୍ୱର ପରିଚୟ ମିଳିଅଛି ।

## ଭାଗବତପ୍ରାଣ ଗୋପବନ୍ଧୁ

ପିଲାଟିବେଳୁ କୃଷ୍ଣଙ୍କ ପ୍ରତି ଗୋପବନ୍ଧୁଙ୍କ ମନରେ ଭକ୍ତି ଓ ତନ୍ମୟତା ସୃଷ୍ଟି ହୋଇଥିଲା । ନିଜଘରେ ପ୍ରତିଷ୍ଠିତ ରାସବିହାରୀଙ୍କ ପୂଜା ଆରାଧନା ପ୍ରତି ନନା ଓ ବୋଉଙ୍କ ଏକାନ୍ତ ଆସକ୍ତିଭାବ ଦେଖି ହେଉ ପାଇବାଦନୁ ସେ ମୁଗ୍ଧ ହୋଇଥିଲେ । ପୁଣି ଗ୍ରାମ ଠାକୁରଙ୍କ ପାଖରେ ଭାଗବତ ପାରାୟଣ ତାଙ୍କ ଅନାବିଲ ହୃଦୟରେ ରେଖାପାତ କରିଥିଲା । ତାଙ୍କ ଦଦେଇ ଜଣେ ବୈଷ୍ଣବ ଥିଲେ ଓ ସନ୍ନ୍ୟାସୀ ଭାବରେ ଜୀବନଯାପନ କରୁଥିଲେ— ଏସବୁ ଗୋପବନ୍ଧୁଙ୍କ ଅତି ପିଲାବେଳୁ ହବିଷ୍ୟାନ୍ନ ଖାଇ ଭାଗବତ ପାରାୟଣ କରୁଥିଲେ । ସତ୍ୟବାଦୀରେ ତାଙ୍କର ସାଧନାର ଆଶ୍ରମ ସବୁବେଳେ ଧର୍ମ, ସାହିତ୍ୟ, ରାଜନୀତି, ସମାଜ-ସେବା ଆଦି ଆଲୋଚନାରେ ମୁଖରିତ ହେଉଥାଏ । ପ୍ରତିଦିନ ବଡ଼ି ସକାଳୁ ଉଠି ସାକ୍ଷୀଗୋପାଳ ଚନ୍ଦନ ପୋଖରୀରେ ସ୍ନାନ କରି ଖଣ୍ଡିଏ ମଠାପିନ୍ଧି ଓ କଂଠାଉ ମାଡ଼ି ଧୀରେ ଧୀରେ ସେ ସାକ୍ଷୀଗୋପାଳ ମନ୍ଦିରରେ ପ୍ରବେଶ କରନ୍ତି । ଧ୍ୟାନ ଦର୍ଶନ ସାରି ନିଶ୍ଚଳ ଭାବରେ କିଛି ସମୟ ଭାଗବତ ଓ ଗୀତା ଅଧ୍ୟୟନ କରି କାମରେ ଲାଗନ୍ତି ।

ବେଳେ ବେଳେ ପଣ୍ଡିତ ମହାଶୟ ଶ୍ରୀ ଭୁବନେଶ୍ୱର ରଥଙ୍କୁ ଡାକି ସଂସ୍କୃତ ଭାଗବତ ଓ ଉପନିଷଦ ଚର୍ଚ୍ଚା କରୁଥିଲେ । ଧର୍ମମୂଳକ ଚର୍ଚ୍ଚାରେ ତାଙ୍କର ବିଳାସ ଥିଲା ।

ବେଳେ ବେଳେ ସେ ମନକୁ ମନ ଗୋଟିଏ ଗୋଟିଏ ଉପାସନା ଗୀତ ଗାଇ ଯାଉଥିଲେ । ସେଥିରେ ଏକ ମହତ୍ ଧର୍ମପ୍ରାଣ ହୃଦୟର ଅକପଟ ଭାବଧାରା ସ୍ୱତଃ ପ୍ରକାଶ ପାଉଥିଲା; କିନ୍ତୁ ପ୍ରାଣରେ ଆକୁଳ ଭକ୍ତି ଦେବତାଠାରେ ନିବେଦନ କରି ଏକ କର୍ମୀରୁ ଦୁର୍ବଳ ବ୍ୟକ୍ତିତ୍ୱର ପରିଚୟ ଦେବାକୁ ସେ ଅତି ଘୃଣା କରୁଥିଲେ । ଦେବତାର ପ୍ରୀତି ସହ ମଣିଷ ସେବାର ଆଦର୍ଶ ମିଶି ଗୋପବନ୍ଧୁଙ୍କ ଧର୍ମପ୍ରାଣ ବ୍ୟକ୍ତିତ୍ୱକୁ ପ୍ରଚଣ୍ଡ ଦୀପ୍ତିରେ ଗଢ଼ିଥିଲା । କର୍ତ୍ତବ୍ୟ ଓ ଧର୍ମଭାବ ତେଣୁ ପରସ୍ପରର ପରିପୂରକ ତାଙ୍କୁ ଦୀପ୍ତି ଓ ପ୍ରାଣପ୍ରାଚୁର୍ଯ୍ୟ ଦେଇଥିଲା । ଶିବରାତ୍ରି ଉପଲକ୍ଷେ କର୍ମଶ୍ରୀରୁ ଯାତ୍ରୀମାନଙ୍କ ଅକୁଣ୍ଠ, ଆକୁଳ ନିବେଦନକୁ ଓଡ଼ିଶାର ପରିସ୍ଥିତି ସହିତ ଲକ୍ଷ୍ୟ କରି ସେ 'ଶିବରାତ୍ରି' କବିତାରେ ଲେଖିଥିଲେ—

"ଦିନକର ଉଜାଗରେ କିବା ପ୍ରୟୋଜନ
ନିଦ୍ରା ବିମୋହିତ ଯହିଁ ସକଳ ଜୀବନ ।"

୧୯୧୫ ମସିହା ଜନ୍ମାଷ୍ଟମୀ । ସକାଳୁ ସନ୍ଧ୍ୟାଯାଏ ଗୋପବନ୍ଧୁ ପ୍ରାୟ ଧ୍ୟାନମଗ୍ନ ଥାଆନ୍ତି । ଦିନ ପ୍ରାୟ ତିନିଟାବେଳେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କୁ ଏକତ୍ରିତ କରାହେଲା । ହିନ୍ଦୁମାନଙ୍କ ଉତ୍ସବ ଓ ପର୍ବଦିନମାନଙ୍କର ମହତ୍ତ୍ୱ ବୁଝାଇ ଗୋପବନ୍ଧୁ ନିଜେ ଏ ଭାବପୂର୍ଣ୍ଣ ବକ୍ତୃତା ଦେଲେ । ସେଦିନ ତ ସହଜେ କୃଷ୍ଣଜନ୍ମତିଥି । କବିପ୍ରାଣ ଗୋପବନ୍ଧୁଙ୍କ ଶରୀର ଓ ମନ ମୂର୍ତ୍ତିମୟୀ କବିତାପରି ଜଣାଯାଉଥାଏ । ତାଙ୍କ ଆଖିରେ ଅଶ୍ରୁବିନ୍ଦୁ ଦେଖାଗଲା । ସେ ସମ୍ପୂର୍ଣ୍ଣଭାବେ ତଦ୍‌ଗତ ପ୍ରାଣ ହୋଇଯାଇଥା'ନ୍ତି । ଶ୍ରୀକୃଷ୍ଣଙ୍କ ଲୀଳା, ମହତ୍ତ୍ୱ ବର୍ଣ୍ଣନା କରୁ କରୁ ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ସେ ବିଶ୍ୱଶୃଙ୍ଖଳାର ମୂଳାଧାର ପରଂବ୍ରହ୍ମଙ୍କ ବ୍ୟାଖ୍ୟା କବିତ୍ୱପୂର୍ଣ୍ଣ ଭାଷାରେ କରିବସିଲେ । ସେଦିନ ସନ୍ଧ୍ୟାରେ ସମସ୍ତ ଛାତ୍ର ଓ ଶିକ୍ଷକ ସାକ୍ଷୀଗୋପାଳ ମନ୍ଦିର ବେଢ଼ାରେ ଝୁଲଣମଣ୍ଡପ ଚତ୍ୱରରେ ଏକତ୍ରିତ ହେଲେ । ଗୋପବନ୍ଧୁ ଜଗନ୍ନାଥ ଦାସଙ୍କ ଭାଗବତ ନିଜେ ଆବୃତ୍ତି କଲେ । ତାଙ୍କର ସୁନ୍ଦର ଭଙ୍ଗୀ, ଛନ୍ଦମୟ ଗାନ ଶୁଣି ସମଗ୍ର ଦେବାଳୟ ନିସ୍ତବ୍ଧ ହୋଇଗଲା । ତାଙ୍କ ଭକ୍ତିରସାପ୍ଳୁତ ପ୍ରସନ୍ନ ଉଜ୍ଜ୍ୱଳ ନେତ୍ରଦ୍ୱୟରୁ ଆନନ୍ଦାଶ୍ରୁ ମଝିରେ ମଝିରେ ଝରିପଡ଼ୁଥାଏ । ସମଗ୍ର ଜନତା ଭାବାବିଷ୍ଟ । ପ୍ରାୟ ତିନିଘଣ୍ଟା ପାରାୟଣ ପରେ ସେ କୃଷ୍ଣଜନ୍ମ ଓ ବାଳଲୀଳା ଶେଷ କରିଥିଲେ । ସେହି ବର୍ଷଠାରୁ ସତ୍ୟବାଦୀ ବିଦ୍ୟାଳୟରେ 'ଜନ୍ମାଷ୍ଟମୀ' ଏକ ପର୍ବଦିବସ ଭାବରେ ପାଳିତ ହେଲା । ସାରାଦିନ ଉପବାସ ପରେ ଭାଗବତ ପାଠ ଶେଷରେ ପିଲମାନେ ପ୍ରସାଦ ସେବନ କରନ୍ତି । ଗୋପବନ୍ଧୁ ନିଜ ହାତରେ ପ୍ରସାଦ ପରିବେଷଣ କରିଦିଅନ୍ତି ।

ଛାତ୍ରମାନଙ୍କ ଗଣେଶ ଚତୁର୍ଥୀ ଓ ଶ୍ରୀପଞ୍ଚମୀରେ ଗୋପବନ୍ଧୁ ବରାବର ଯୋଗ ଦିଅନ୍ତି । ସେଦିନ ତାଙ୍କର ପରିଧାନ ମଠା ଓ କାନ୍ଧରେ ଗାମୁଛା । ପାଖଆଖ ବନ୍ଧୁ ଭଦ୍ରବ୍ୟକ୍ତି, ବିଦ୍ୟାଳୟର ପୃଷ୍ଠପୋଷକ ନିମନ୍ତ୍ରିତ ହୋଇ ଆସନ୍ତି । ସେମାନଙ୍କୁ ଆଦର ଅଭ୍ୟର୍ଥନା ଓ ଆଳାପ ଆଲୋଚନାରେ ଗୋପବନ୍ଧୁ ଦିନ କଟାଇ ଦିଅନ୍ତି । ମଫସଲ ଲୋକଙ୍କ ସହିତ ଠିକ୍ ମଫସଲୀ ଢଙ୍ଗ, ବୁଢ଼ାଙ୍କ ସହିତ ବୁଢ଼ା, ଟୋକାଙ୍କ ସହିତ ଟୋକା—ମଧୁର ଓ

ରହସ୍ୟପୂର୍ଣ୍ଣ ଆଳାପରେ ସେ ସମସ୍ତଙ୍କ ମନ କିଣି ନିଅନ୍ତି । ତା'ପରେ ସଂକ୍ରାନ୍ତିଭୋଜନ ହୁଏ । ଗୋପବନ୍ଧୁ ବୁଲି ବୁଲି ପିଲଙ୍କ ଖାଇବା ଖବର ବୁଝନ୍ତି । ଯେଉଁପିଲି ବେଶି ଖାଇ ପାରେ ନାନାପ୍ରକାର ହାସ - କୌତୁକରେ ତାକୁ ଅଧିକ ପରସି ବସନ୍ତି । ଗ୍ରାମର ବୟସ୍କ ଓ ଗୁରୁଜନ ସ୍ଥାନୀୟ ବ୍ୟକ୍ତିମାନଙ୍କ ପାଖରେ ସେ ଅତି ଗମ୍ଭୀର, ଶାଳୀନ ଓ ସତର୍କ ହୋଇ ପଡ଼ନ୍ତି । ଜଣେ ପ୍ରବୃଦ୍ଧ ବ୍ୟକ୍ତିଙ୍କ ସ୍ୱରରେ ସେମାନଙ୍କ ସହିତ ସମ୍ପୂର୍ଣ୍ଣ ମଫସଲୀ ଓ ପୁରୁଣା-କାଳିଆ ଢଙ୍ଗରେ ମିଶିଯାଆନ୍ତି । ପୁଣି ପରସି ବସିଲେ ପିଲମାନଙ୍କ ଭିତରେ ଗୁପ୍ତ ହସର ଢେଉ ଖେଳିଯାଏ । କାରଣ ପରିବେଷଣ ପରିପାଟୀ ତାଙ୍କୁ ଜଣା ନଥାଏ । ଅତି ଶିଶୁସୁଲଭ ଢଙ୍ଗରେ ସେ ପରସି ଥାଆନ୍ତି ।

ସତ୍ୟବାଦୀର ବିଶିଷ୍ଟ ମହାଜନ ଶ୍ରୀ ବିହାରୀ ହୋତା ଜଣେ ଅଚ୍ଛା ମଣିଷ ଥିଲେ । ସତ୍ୟବାଦୀ ସ୍କୁଲର ସେ ପୃଷ୍ଠପୋଷକ । ଗୋପବନ୍ଧୁ ତାଙ୍କୁ ଖୁବ୍ ସୁଖ ପାଉଥିଲେ । ଥରେ ଶ୍ରୀପଞ୍ଚମୀ ଦିନ ସଂକ୍ରାନ୍ତିଭୋଜନ ପରେ ଖାଇବାରେ ଜିଦ୍ ରଖାଗଲା । କିଏ କେତେ ଅମାଲୁ ଖାଇପାରିବ ପରୀକ୍ଷା ହେଲା । ଶ୍ରୀଯୁକ୍ତ ହୋତା ପ୍ରତିଯୋଗିତାରେ ଯୋଗ ଦେଲେ । ଗୋପବନ୍ଧୁ ବାବୁ ନାନା ରହସ୍ୟ କରି ଅଧିକ ଭୁଞ୍ଜାଉଥାନ୍ତି । ସମଗ୍ର ସତ୍ୟବାଦୀ ବିଦ୍ୟାଳୟରେ ସତେ ଯେପରି ସେଦିନ ହସ ଓ ଆନନ୍ଦର ଝରଣା ଫିଟି ପଡ଼ୁଥାଏ ।

୧୯୧୬ କିମ୍ବା ୧୯୧୭ ମସିହା ହେବ । ଗୋପବନ୍ଧୁ ଓ ନୀଳକଣ୍ଠ ସସ୍ତୁତ ମହାଭାରତ ଶୁଣିବାପାଇଁ ଆୟୋଜନ କରିଥାଆନ୍ତି । ସସ୍ତୁତ ପଣ୍ଡିତ ଶ୍ରୀ ଭୁବନେଶ୍ୱର ରଥ ମହାଭାରତ ପଢ଼ି ଶୁଣାଉଥାନ୍ତି । ବେଳେବେଳେ ଆଚାର୍ଯ୍ୟ ହରିହର ଓ ବାସୁଦେବ ମହାପାତ୍ର ଆଦି ବି ଯୋଗ ଦିଅନ୍ତି । ଥରେ ଦଶ ପନ୍ଦର ଦିନ ମହାଭାରତ ପଢ଼ା ହେବା ପରେ ଗୋପବନ୍ଧୁ ପଚାରିଲେ—"କିଓ ନୀଳକଣ୍ଠ, କିପରି ଲାଗୁଚି ?"

ନୀଳକଣ୍ଠ ସହଜେ ଭକ୍ତିଧର୍ମର ବିରୋଧୀ, ପୁଣି ଦାର୍ଶନିକ । ସେ କହିଲେ—"ଏ ମହାଭାରତରେ କୃଷ୍ଣଙ୍କ ଚରିତ୍ର ଯେ ଖଞ୍ଜି ଦେଇଛି ସେ ଜଣେ ବଡ଼ ବିଚକ୍ଷଣ ବୈଷ୍ଣବ । ସେଥିପାଇଁ ଲାଗୁଛି କୃଷ୍ଣ ନ ଥିଲେ ଯେପରି ମହାଭାରତ ବି ନ ଥାନ୍ତା; କିନ୍ତୁ ଯଥାର୍ଥରେ ସମସ୍ତ କୃଷ୍ଣବିଷୟକ ମହାଭାରତରୁ କାଢ଼ିନେଲେ ମହାଭାରତର ଯେ 'ଜୟ' ନାମଟି ଅଛି ତାହା ଖଣ୍ଡିତ ହେବ ନାହିଁ । ମତେ ଏଇଆ ଲାଗୁଛି ।"

ଏହିପରି କେତେକ ଦାର୍ଶନିକ କଥା କହିବା ପରେ ଗୋପବନ୍ଧୁବାବୁ ନୀଳକଣ୍ଠଙ୍କୁ ସ୍ଥିର ଦୃଷ୍ଟିରେ ଚାହିଁଲେ । ତା'ପରେ କହିଲେ—"ନୀଳକଣ୍ଠ, ଏପରି ଚିନ୍ତାକରିବ ନାହିଁ । ପାପ ହେବ ।"

ଗୋପବନ୍ଧୁ 'ମହାଭାରତ' ଚରିତ୍ରୀ ବୈଦିକ ଶ୍ରୀକୃଷ୍ଣ ଆଉ ଭାଗବତରେ କଂସନାଶନ କୃଷ୍ଣଙ୍କ ଭିତରେ ପ୍ରଭେଦ ଦେଖୁନଥିଲେ । ସେ "ସତ୍ୟବାଦୀ ବା ସାକ୍ଷୀଗୋପାଳ" ଶୀର୍ଷକ ଧାରାବାହିକ ପ୍ରବନ୍ଧରେ ଏହି କୃଷ୍ଣତତ୍ତ୍ୱ ଆଲୋଚନା କରୁଥିଲେ । ସତ୍ୟବାଦୀ ମାସିକ ପତ୍ରିକାରେ ତାହା ପ୍ରକାଶ ପାଇଛି । ସମସାମୟିକ କୌଣସି ରାଜନୈତିକ ନେତା ଓ

ସମାଜସେବୀ କର୍ମୀ ସମସ୍ତ ମନ ଓ ହୃଦୟକୁ ଏପରି ବିଭୂପ୍ରୀତିରେ ଅନୁପ୍ରାଣିତ କରିଥିବାର ଦୃଷ୍ଟାନ୍ତ ନାହିଁ ।

## ଅନ୍ଧ ଅପର୍ତ୍ତି ପରିଚ୍ଛା

ସତ୍ୟବାଦୀ ବିଦ୍ୟାଳୟସ୍ଥ ଛାତ୍ରଙ୍କୁ ସବୁ ଦିଗରେ ପ୍ରବୀଣ କରିବାକୁ ଗୋପବନ୍ଧୁବାବୁ ସବୁବେଳେ ସଚେତନ ଥାଆନ୍ତି । ୧୯୧୭ ସାଲରେ ସେ ପାରଳାଖେମୁଣ୍ଡିରୁ ଫେରିଲା ବେଳକୁ ସାଙ୍ଗରେ ସଙ୍ଗୀତ ଶାସ୍ତ୍ର ପ୍ରବୀଣ ଅନ୍ଧ ଅପର୍ତ୍ତି ପରିଚ୍ଛାକୁ ଧରି ଆସିଲେ । ସେ ସତ୍ୟବାଦୀ ବିଦ୍ୟାଳୟର ଛାତ୍ରମାନଙ୍କୁ ସଙ୍ଗୀତ ଶିକ୍ଷା ଦେବାପାଇଁ ପାରଳାଖେମୁଣ୍ଡି ମହାରାଜାଙ୍କଠାରୁ ଅପର୍ତ୍ତିଙ୍କୁ ଉଧାର ଆଣିଥାଆନ୍ତି । ସେ ତିନିମାସ ରହି ସତ୍ୟବାଦୀ ଛାତ୍ରମାନଙ୍କୁ ସଙ୍ଗୀତ ଶିକ୍ଷା ଦେବେ । ତାଙ୍କ ଆଗମନ ଉପଲକ୍ଷେ ଗୋଟିଏ ସଭାର ଆୟୋଜନ ହେଲା । ଗୋପବନ୍ଧୁ ବାବୁ ସଭାପତି ହେଲେ । ନୀଳକଣ୍ଠ ବାବୁ ସଙ୍ଗୀତ ଶାସ୍ତ୍ର, ଶାସ୍ତ୍ରୀୟ ସଙ୍ଗୀତ, ଜୀବନ ଉପରେ ସଙ୍ଗୀତର ଭୂମିକା ସମ୍ପର୍କରେ ଭାଷଣ ଦେଇ ଛାନ୍ଦ ସଙ୍ଗୀତର ସୌନ୍ଦର୍ଯ୍ୟ ଓ ଉପଯୋଗିତା ବିଷୟରେ ବୁଝାଇ ଦେଲେ । ଉଦାହରଣରେ ସେ ଯେଉଁ ଯେଉଁ ଛାନ୍ଦକଥା ଉଲ୍ଲେଖ କଲେ ସେ ସବୁ ବୋଲି ଶୁଣାଇଦେବାକୁ ଅପର୍ତ୍ତିଙ୍କୁ ଅନୁରୋଧ କରାଗଲା । ସେ ଦୃଷ୍ଟିହରା, ମାତ୍ର ବସିଥିବା ସ୍ଥଳରେ ସେ କବିତାରେ ନବରସର ଉପାଦେୟତା ବୁଝାଇ କରୁଣ ସ୍ୱରରେ ବେହେଲା ଧରି ବିଚିତ୍ର ରାମାୟଣରୁ "ଆହେ ଧନୁର୍ଦ୍ଧର ବୀରବର" ଛାନ୍ଦଟି ବୋଲି ବସିଲେ । ଗୋପବନ୍ଧୁଙ୍କ ସମେତ ସମସ୍ତ ଛାତ୍ରଙ୍କ ଆଖିରେ ଲୁହର ଗତିରୋଧ କରି ହେଲାନି । ଭାବପ୍ରବଣ ଗୋପବନ୍ଧୁ ଆଉ ଅଧିକ ଧୈର୍ଯ୍ୟ ଧରି ଶୁଣି ନପାରି ବିଭିନ୍ନ ରସରେ ଲିଖିତ "ବିନାଶ ନାସା ଶ୍ରବଣ ସୂର୍ପଣଖା ପ୍ରବେଶ ଲଙ୍କାର" ଏହି ଗୀତଟି ବୋଲିବାକୁ କହିଲେ । ଶ୍ରୀ ଅପର୍ତ୍ତି ଜଳତରଙ୍ଗ ଯନ୍ତ୍ରକୁ ଗୋଡ଼ ଆଙ୍ଗୁଠିରେ ଓ ବେହେଲାକୁ ହାତରେ ଧରି ସେହି ଛାନ୍ଦର ଭଙ୍ଗୀ ବଦଳାଇ ଗୀତଟିକୁ ଖୁବ୍ ଉପଭୋଗ୍ୟ କରିଥିଲେ ।

ଶ୍ରୀ ଅପର୍ତ୍ତିଙ୍କ ଯନ୍ତ୍ର-ସଙ୍ଗୀତ ଗାନ ଶୁଣି ସମସ୍ତ ବିଦ୍ୟାଳୟ ଉଚ୍ଛ୍ୱସିତ ହୋଇ ଉଠିଥିଲା । ଏଥିରେ ବେଳେ ବେଳେ ଛାତ୍ରମାନେ ଏତେ ମୁଗ୍ଧ ହୋଇ ପଡ଼ୁଥିଲେ ଯେ ପ୍ରଧାନ ଶିକ୍ଷକ ନୀଳକଣ୍ଠଙ୍କୁ ସାମ୍ନାରେ ଦେଖି ବି ପ୍ରକୃତିସ୍ଥ ହୋଇ ପାରୁନଥିଲେ । ଶେଷକୁ ଯନ୍ତ୍ର-ସଙ୍ଗୀତ ନ ଶିଖାଇ କଣ୍ଠ ସଙ୍ଗୀତ ଓ ବୋଲିବା ଭଙ୍ଗୀ ଶିଖାଇ ଦେବାକୁ ଗୋପବନ୍ଧୁ ଆଦେଶ ଦେଲେ । ଛାନ୍ଦମାନଙ୍କ ନିୟମ, ଶୃଙ୍ଖଳା, ଉଦାତ୍ତ ଓ ଅନୁଦାତ୍ତ ସ୍ୱରରେ ଗୀତ ବୋଲିବାର ପ୍ରଣାଳୀ ଆଦି ଶ୍ରୀ ପରିଚ୍ଛା ଚମତ୍କାର ଭାବରେ ବୁଝାଇ ଦେଉଥିଲେ । ଗୋପବନ୍ଧୁ ବୁଝାଇ ଦେଲେ ଯେ—ସଙ୍ଗୀତ ଓ ଗାନ କେବଳ ଶିକ୍ଷାପ୍ରଦ ନୁହେଁ, ମନୁଷ୍ୟର ଏକ ସ୍ୱଭାବ ସହଜ ଗୁଣ—ଯହିଁ ଜୀବନ ତହିଁ ସଙ୍ଗୀତ । ପଶୁପକ୍ଷୀ, କୀଟ ପତଙ୍ଗ, ମନୁଷ୍ୟ ସମସ୍ତେ ଜାଣି ବା ନ

ଜାଣି ସଙ୍ଗୀତ ବୋଲନ୍ତି । ଆନନ୍ଦରେ, ଦୁଃଖରେ, ଶୋକରେ, ବିରହରେ, ମିଳନରେ ମନୁଷ୍ୟ ସଙ୍ଗୀତ ବୋଲେ । ଶିଶୁହରା ଜନନୀର ହୃଦୟବିଦାରକ ଶୋକ ପ୍ରକାଶ ଭଙ୍ଗିମାମୟ, ତାହା ସ୍ୱର, ଲୟ, ତାନ, ଯତି ବିରାମଯୁକ୍ତ ହୋଇ ହୃଦୟତନ୍ତ୍ରୀରୁ ବାହାରିଥାଏ । କେବଳ ସଂସାର ଭାର ବହନ କରି କଣ୍ଟକପଟପୂର୍ଣ୍ଣ କର୍ମରେ ବ୍ୟାପୃତ ରହି, ଅତ୍ୟନ୍ତ ଦୁଶ୍ଚିନ୍ତାପୂର୍ଣ୍ଣ ହୃଦୟ ମନୁଷ୍ୟମାନେ ଶୁଷ୍କ ନୀରସପ୍ରାଣ ହୋଇ ଯାଆନ୍ତି । ପୁଣି ଯନ୍ତ୍ର ବାଦ୍ୟରେ ସୁଲଳିତ ଓ ସୁନ୍ଦର ଗୀତ ଗାନ କରିବାର ଅଭ୍ୟାସ ମନୁଷ୍ୟ ପକ୍ଷରେ ଗୋଟିଏ ଭୟାବହ କ୍ଷତିକାରକ ବ୍ୟାପାର । ଯେ ନିଜର ସ୍ୱର ଓ ନିଜର ଅନୁଭବମୂଳକ ସହଜ ଗାନଭଙ୍ଗୀକୁ ଅସୁନ୍ଦର ମନେକରି ଯନ୍ତ୍ର ସ୍ୱରରେ ତାହା ସୁନ୍ଦର କରିବାକୁ ଚେଷ୍ଟାକରେ ସେ ନିଜ ଉପରୁ ନିଜର ବିଶ୍ୱାସ ହରାଏ । ସେହିପରି ଯେ ଘର ଭିତରେ, ପଶୁପକ୍ଷୀ, ଜୀବଜନ୍ତୁ, ପାହାଡ଼ ପର୍ବତ, ଆକାଶ ଆଦିର ଚିତ୍ର ଟାଙ୍ଗି ଆନନ୍ଦ ଅନୁଭବ କରେ ସେ ଶବ-ଉପାସନା କରେ । ଜୀବନ୍ତ ବୃକ୍ଷଲତା, ସୁବିଶାଳ ବିଚିତ୍ର ଗଗନର ଜୀବନ୍ତ ତାରା-ଚନ୍ଦ୍ର-ସୂର୍ଯ୍ୟର ବିଳାସରେ ଯେ ବିଳାସ କରିପାରେ ସେ ବିଶ୍ୱଜୀବନର ଅପରିବର୍ତ୍ତନୀୟ ମହାପ୍ରାଣରେ ପ୍ରାଣବନ୍ତ । କଳା ମନୁଷ୍ୟର ସହଜାତ ଗୁଣ; କିନ୍ତୁ କଳା-ବିଳାସରେ ଜୀବନକୁ କ୍ଷୁଦ୍ର ଓ ସୀମିତ କରି ଦେବାକୁ କେହି ଉପଦେଶ ଦେଇ ନପାରେ ।

ସବୁ ଦିଗରେ ଛାତ୍ରମାନଙ୍କ ବ୍ୟକ୍ତିତ୍ୱକୁ ଗଢ଼ିବାକୁ ଏ ମହାପ୍ରାଣର ଡାକରା ଆଜି ଆଉ ବିଦ୍ୟାୟତନମାନଙ୍କରେ ଶୁଣା ଯାଉନାହିଁ । ଆତ୍ମଦର୍ଶନ ପରିବର୍ତ୍ତେ ସଙ୍କୀର୍ଣ୍ଣ ବୈଷୟିକ ଓ ବ୍ୟାବହାରିକ ବୁଦ୍ଧିରେ ଆଜି ଛାତ୍ର ଜୀବନ ଓ ବିଦ୍ୟାଳୟ କଳଙ୍କିତ ।

## ଶନିବାର ରାତି ଆନନ୍ଦରେ ମାତ

ସତ୍ୟବାଦୀ ବିଦ୍ୟାଳୟ ଜୀବନରେ ଏ ଶନିବାର ରାତି ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ପାଞ୍ଚଦିନର କର୍ମଜଞ୍ଜାଳ ଓ କର୍ତ୍ତବ୍ୟପରାୟଣତା ପରେ ଏଇ ରାତିରେ ସମସ୍ତେ ଏକାଠି ହୋଇ ସଭା କରନ୍ତି । ଗୋପବନ୍ଧୁ ଏପରି ସଭା ଆରମ୍ଭ କରାଇ ପ୍ରଥମ ଶନିବାର ଦିନ "Saturday night must be delight" ସମ୍ପର୍କରେ ଏକ ସରସ ଓ ହାସ୍ୟରସପୂର୍ଣ୍ଣ ବକ୍ତବ୍ୟ ଦେଇଥିଲେ । ଛାତ୍ରମାନଙ୍କୁ ହସାଇ ହସାଇ ହଠାତ୍ ଏକ ଗମ୍ଭୀର ପରିବେଶ ଆଡ଼କୁ ଅତି ଧୀରେ ଆଗେଇ ନେଲେ । ନିଜ ଉଦ୍ଦେଶ୍ୟକୁ ଗୋପବନ୍ଧୁ ଅଗଣିତ ଛାତ୍ର ଓ ଜନତାର ହୃଦୟରେ ଏହିପରି ଭିଜାଇ ଦିଅନ୍ତି । 'ରାମାୟଣ' ଶୁଣିଶୁଣି ଲାବଣ୍ୟବତୀ ଚନ୍ଦ୍ରଭାନୁକୁ ଦେଖିବା ପରି ହସଉ ହସଉ ଦେଶର ଅଗଣିତ ଜନତାର ସେବା ଆଡ଼କୁ ସେ ଛାତ୍ରମାନଙ୍କୁ ଆସକ୍ତ କରିପକାନ୍ତି । ଦେଶହିଁ ତାଙ୍କ ବକ୍ତବ୍ୟର ଶେଷ ସୀମାରେଖା ହୋଇଯାଏ । ସେଦିନ ଗୋପବନ୍ଧୁ କହିଲେ, "ଆନନ୍ଦ ଅର୍ଥ ଆଳସ୍ୟ ନୁହେଁ । ନିରର୍ଥକ କ୍ରୀଡ଼ାରେ ଆନନ୍ଦ ନାହିଁ ।

ଆନନ୍ଦ କର୍ମପ୍ରବାହରେ ଅଛି । ଗୋଟିଏ କାମ କରୁ କରୁ ବିରକ୍ତ ଆସିଲେ ଅନ୍ୟ କାମରେ ଲାଗିଗଲେ ବିରକ୍ତି ରହେ ନାହିଁ । ଆତ୍ମବିସ୍ମୃତିରେ ଆନନ୍ଦ ଜନ୍ମେ । କ୍ଲାସପଢ଼ା ଯେତେ କଷ୍ଟକର ନୁହେଁ ତାହାଠାରେ ରଫୁଣ ଜାକି ଖରାରେ ଠିଆ ହୋଇ ଜରଜରି ହୋଇ କ୍ଲାସରୁ ଅନୁପସ୍ଥିତ ରହିବା ଅଧିକ କଷ୍ଟକର । ତେଣୁ ପ୍ରତି ଶନିବାର ରାତିରେ ତୁମେମାନେ ଏ କ୍ଲବ ମିଟିଂ କରିବ । ତାହାର ଶୁଭ ମୁଁ ଆଜି ଦେଉଛି । ତୁମ୍ଭେମାନେ ଦେଶପ୍ରାଣ ହେବ, ଅନ୍ୟମାନଙ୍କ ଉପକାର କରି ଆନନ୍ଦ ପାଇବ । ବନ ଉପବନର ତରୁଲତାଗୁଡ଼ିକ ଫୁଲବାସରେ ଦଶଦିଗ ଆମୋଦିତ କରୁଛନ୍ତି । ତାହା ନିଜପାଇଁ ନୁହେଁ, ବିଶ୍ୱର ସମସ୍ତଙ୍କ ପାଇଁ । ସେଥିଲାଗି ପୁଷ୍ପର ଆନନ୍ଦ । ସେଥିପାଇଁ ପାଠପଢ଼ା ସଙ୍ଗରେ ରୋଗୀ ସେବା କରିବାରେ, କଲେରା, ଦୁର୍ଭିକ୍ଷ, ଘରପୋଡ଼ିବେଳେ ଲୋକଙ୍କୁ ସାହାଯ୍ୟ କରିବାରେ, ବିଦ୍ୟାଳୟ ଘର ଗଢ଼ିବାରେ ଏ ଅନୁଷ୍ଠାନ ଆପେ ଆପେ ଦାୟିତ୍ୱ ନେଇଛି । ତୁମ୍ଭମାନଙ୍କ- ଠାରେ ଏସବୁ ସଦ୍‌ଗୁଣ ଫୁଟାଇବାପାଇଁ ସ୍କୁଲରେ ପାଠ ନାହିଁ । ତୁମ୍ଭମାନଙ୍କ ଏହି କଳ୍ପିତ ଅନୁଷ୍ଠାନରୁ ତୁମ୍ଭେମାନେ ମାନବିକତା ଶିଖିବ । ଆଜି ଠାରୁ ପ୍ରତି ଶନିବାର ରାତିରେ ଏ ସଭା ହେବ । ତୁମ ଶିକ୍ଷକମାନେ ଓ ବାହାରର ବହୁ ବିଶିଷ୍ଟ ବ୍ୟକ୍ତି ତୁମ୍ଭମାନଙ୍କୁ ବହୁକଥା ଶିଖାଇବେ । ଏହାଦ୍ୱାରା ତୁମର ଚିନ୍ତାର ପରିଧି ପ୍ରସାରିତ ହେବ, ଜ୍ଞାନର ଦିଗ୍‌ବଳୟ ବ୍ୟାପକ ହେବ ।"

ଗୋପବନ୍ଧୁଙ୍କ ଯୋଜନା ଓ ପରିକଳ୍ପନା ଅନୁସାରେ ଏହି ସଭାରେ ଶନିବାର ଦିନ ଯୋଗଦେବାକୁ ଓଡ଼ିଶାର ବହୁ ଉଚ୍ଚ ବ୍ୟକ୍ତି ନିମନ୍ତ୍ରିତ ହୋଇ ଆସିଲେ । ବାହାରୁ କେହି ଆସି ନ ପାରିଲେ ନିଜେ ଗୋପବନ୍ଧୁ ଓ ଶିକ୍ଷକ ମୁଖ୍ୟବକ୍ତା ଭାବରେ ସଭା ତୁଲାଇ ନେଉଥିଲେ । ନୈତିକ ଜୀବନକୁ ଗଢ଼ିବାପାଇଁ ଏହି ବକ୍ତୃତାଗୁଡ଼ିକ ଅଭିପ୍ରେତ ଥାଏ । ଥରେ ଗୋପବନ୍ଧୁ "ପାଶ୍ଚାତ୍ୟ ଶିକ୍ଷା ଓ ଭାରତୀୟ ଜୀବନରେ ତାର ଉପାଦେୟତା" ବିଷୟରେ ଆଲୋଚନା କରିବାକୁ ଯାଇ ସେଥିରେ ଭାରତୀୟ ବର୍ଣ୍ଣାଶ୍ରମ ଧର୍ମର ନୀତି, ରୀତି, ଗତି ଓ ବିକାଶ ସମ୍ପର୍କରେ ବୁଝାଇ ଭାରତୀୟ ପରମ୍ପରା ଧର୍ମରେ ଅନ୍ତରରେ ଫୁଟାଇପାରିଲେ ଶିକ୍ଷା ଓ ଜୀବନ ସାର୍ଥକ ହେବ ବୋଲି ମନ୍ତବ୍ୟ ଦେଇଥିଲେ । ଭୀଷ୍ମଙ୍କ ପ୍ରତିଜ୍ଞା ପାଳନ, ରାମଙ୍କ ବନଗମନ, ସାବିତ୍ରୀଙ୍କ ନିଷ୍ଠା, ଦଧିଚୀଙ୍କ ତ୍ୟାଗ ଆଦି ବହୁଦୃଷ୍ଟାନ୍ତ ଦେଇ ବର୍ଣ୍ଣାଶ୍ରମ ଧର୍ମ ଅନୁଯାୟୀ ଜୀବନର ଏକତୃତୀୟାଂଶ ଗ୍ରାମେ ଗ୍ରାମେ ଜନସେବା ଓ ତ୍ୟାଗର ମହାନ୍ ଆଦର୍ଶରେ ବିତାଇବାକୁ ଆହ୍ୱାନ କରିଥିଲେ ।

ଏହି ଶନିବାରଗୁଡ଼ିକରେ ହେଉଥିବା ଶୋକସଭାରେ ଶୋକପ୍ରସ୍ତାବ ଆଣିବାକୁ ଯାଇ ଗୋପବନ୍ଧୁ ଅତି ଅଧୀର ହୋଇ କାନ୍ଦୁଥିଲେ । ମହାତ୍ମା ଗୋଖେଲଙ୍କ ମୃତ୍ୟୁରେ ଏହିପରି ଏକ ଶନିବାରିଆ ସଭାରେ ଗୋପବନ୍ଧୁ ଅତି ବିଚଳିତ ହୋଇ ପଡ଼ିଥିଲେ । ଭାରତର ଜାତୀୟ ଦୁର୍ଗତି, ପରାଧୀନତା ବିରୁଦ୍ଧରେ ମୁକ୍ତିସଂଗ୍ରାମର ସିପାହିମାନଙ୍କ ଜୀବନ କାହାଣୀ କହୁ କହୁ ଛାତ୍ର ସମସ୍ତଙ୍କୁ କନ୍ଦାଇଥିଲେ ।

## ବ୍ୟାସକବି ଫକୀରମୋହନ

ଏମିତି ଏକ ଶନିବାର ସଭାରେ ଫକୀରମୋହନ ନିମନ୍ତ୍ରଣକ୍ରମେ ଯୋଗ ଦେଲେ । ସେତେବେଳକୁ ତାଙ୍କ ଜୀବନ ପ୍ରଦୀପ ନିଭି ନିଭି ଆସୁଥାଏ । ସମୟ ୧୯୧୭ ମସିହା । ତାଙ୍କର ଠିଆ ହୋଇ ପାରିବାର ଶକ୍ତି ନ ଥାଏ । ଗୋପବନ୍ଧୁ ତାଙ୍କ ପରିଚୟ ଦେଇ ସାରିବା ପରେ ଠିଆ ହୋଇ ବକ୍ତୃତା ଦେବା ତାଙ୍କ ପକ୍ଷେ ସମ୍ଭବ ହେଲା ନାହିଁ । ମାତୃଭାଷା ଓ ସାହିତ୍ୟର ସେବାପାଇଁ ସେ ଛାତ୍ରମାନଙ୍କୁ ଆହ୍ୱାନ କରିଥିଲେ ।

ସେଦିନ ରାତିରେ କଚେରୀ ବଙ୍ଗଳାରେ ତାଙ୍କର ରହଣି ହେଲା । ତା'ପର ଦିନ ଗୋଟିଏ ମେହେନାରେ ବସାଇ କେତେକ ଛାତ୍ର ତାଙ୍କୁ ସ୍କୁଲକୁ ଆଣୁଥାନ୍ତି । ହଠାତ୍ ସେ ଜଣେ ବାଳକର ମୁଣ୍ଡରେ ହାତ ବୁଲାଇ କହିଲେ, "ଆରେ ଲଣ୍ଡାଗୁଡ଼ାକ, ମତେ କାନ୍ଧେଇ ନେଉଛ, ରଖ, ରଖ, ନଇଲେ ମୁଁ ତଳେ ପଡ଼ିବି । ତୁମକୁ ହତ୍ୟା ଦୋଷ ଲାଗିବ । ଏହା କହି ମେହେନାର ଆସନରୁ ଉଠିବାକୁ ଉଦ୍ୟତ ହେଲେ । ତା'ପରେ ଦୁଇଜଣ ପିଲାଙ୍କ କାନ୍ଧରେ ହାତ ଦେଇ ଚାଲି ଚାଲି ଆସିଲେ । ଗୋଟି ଗୋଟି କରି ସବୁ ଛାତ୍ର-ଲେଖକଙ୍କ ମୁଣ୍ଡରୁ ଗୋଡ଼ଯାଏ ଆଉଁସି ସାହିତ୍ୟ ସାଧନାର ଉପକାରିତା ବିଷୟରେ ବୁଝାଇଲେ । ଏତେ ଆଦର, ଏତେ ମମତା, ଏତେ ସାହିତ୍ୟପ୍ରୀତି—ପୁଣି ଜୀବନର ଶେଷ ପାଦରେ କ୍ୱଚିତ୍ ଦେଖାଅଛି । ଓଡ଼ିଆ ସାହିତ୍ୟର ଜାଗ୍ରତ ପ୍ରହରୀ, ସାରଥୀ, ସେନାପତି ତା'ପର ବର୍ଷ ଇହଧାମ ତ୍ୟାଗ କଲେ । ସତ୍ୟବାଦୀରେ ତାଙ୍କ ବିୟୋଗ ଶୋକର ଘନ କଳାଛାଇ ଘେରିଇ ଦେଲା । ସେଦିନ ୧୯୧୮ ମସିହା ଜୁନ୍ ମାସ ୧୪ ତାରିଖ । ତାଙ୍କ ବିୟୋଗ ଉପଲକ୍ଷେ ସତ୍ୟବାଦୀରେ ତା'ପରଦିନ ଏକ ଶୋକସଭା ଅନୁଷ୍ଠିତ ହୋଇଥିଲା ।

## ଅଗ୍ନିଶର୍ମା ଆପଣେ

ସତ୍ୟବାଦୀ ବିଦ୍ୟାଳୟ ଛାତ୍ରାବାସରେ ମଣିଷପଣିଆର ତାଲିମ ଦିଆଯାଉଥିଲା—ଏକଥା ଆଗରୁ ଆଲୋଚିତ ହୋଇଅଛି । ଯୌନଗତ ଅବୈଧ ଆଚରଣ ପାଇଁ ସମ୍ପୃକ୍ତ ଛାତ୍ରକୁ କଠିନ ଆତ୍ମ-ପ୍ରାୟଶ୍ଚିତ୍ତ (Self penance) କରିବାକୁ ହେଉଥିଲା । ତା ଉପରେ ନୈତିକ ଛାପ ପକାଇବା ପାଇଁ ବିଭିନ୍ନ ବ୍ୟବସ୍ଥା ଥିଲା । ସମ୍ପୃକ୍ତ ଛାତ୍ରକୁ ଅନ୍ୟମାନଙ୍କ ଠାରୁ ବାଛିକି କରିଯାଇ ଅଲଗା ଏକ କୋଠରିରେ ରହିବାକୁ ହେଉଥିଲା । ଏଥିପାଇଁ ତାକୁ ହବିଷ୍ୟାନ୍ନ ଭୋଜନ କରିବାକୁ ମଧ୍ୟ ହେଉଥିଲା ।

କଟକ ଜିଲ୍ଲାର କୌଣସି ଗ୍ରାମ ଏହିପରି ଏକ ଦୂଷିତ ଅପରାଧରେ ଦୋଷଯୁକ୍ତ ହୋଇଥିଲା । ତା ଉପରେ ନୈତିକ ଚାପ ଦେବାପାଇଁ ଗୋପବନ୍ଧୁଙ୍କ ପରାମର୍ଶକ୍ରମେ ଏକ ସଭାର ଆୟୋଜନ ହେଲା । ଏହି ସଭାରେ ଗୋପବନ୍ଧୁ ଗ୍ରାମଟିର ଅଭ୍ୟାସ ଓ ହୃଦୟ ପରିବର୍ତ୍ତନ ପାଇଁ ଏକାନ୍ତ ଆତ୍ମୀୟ ଭାବରେ ବହୁ ଉପଦେଶ ଦେଇଥିଲେ; କିନ୍ତୁ ଲଜ୍ଜା ଓ ଓ ଅପମାନ, ଅନୁତାପ ଓ ଅବସାଦରେ ପରେ ଗ୍ରାମଟି ଅଫିମ ଖାଇ ଆତ୍ମହତ୍ୟା କରିଥିଲା ।

ସେତେବେଳେ ସତ୍ୟବାଦୀ ଉପରେ ସରକାରଙ୍କର ସନ୍ଦେହପୂର୍ଣ୍ଣ ଦୃଷ୍ଟି କେନ୍ଦ୍ରୀଭୂତ ହୋଇଥାଏ । ସତ୍ୟବାଦୀ ସରକାରଙ୍କ ବିରୁଦ୍ଧରେ ଏକ ମନ୍ତ୍ରଣାପୀଠ ବୋଲି ବହୁ ହାକିମ-ହୁକୁମାଙ୍କର ଧାରଣା ଜନ୍ମିଥାଏ । ବିହାର ଓଡ଼ିଶା ବ୍ୟବସ୍ଥା ପରିଷଦରେ ଗୋପବନ୍ଧୁ ସଭ୍ୟ ଥାଆନ୍ତି । ସେଠାରେ ତାଙ୍କ ବକ୍ତୃତା ଜାତୀୟତାକୁ ବେଶ୍ ପ୍ରକଟିତ କରୁଥାଏ । ତେଣୁ ତାଙ୍କ ଗଢ଼ା ଅନୁଷ୍ଠାନ ପ୍ରତି ସରକାର ସତର୍କ ଦୃଷ୍ଟି ରଖିଥାନ୍ତି । ଏପରିକି ବହୁ ସମୟରେ ରାତିରେ ଲୁଚି ଲୁଚି ସି. ଆଇ. ଡି., ଗୋଇନ୍ଦା ଆଦି ସତ୍ୟବାଦୀ ବିଦ୍ୟାଳୟର କାର୍ଯ୍ୟକଳାପ ଲକ୍ଷ୍ୟ କରନ୍ତି ।

ଏହି ଆତ୍ମହତ୍ୟା ଘଟଣା ଜଣାପଡ଼ିଯିବା ପରେ ସ୍କୁଲ ସମ୍ପାଦକ ଦାସ ଆପଣ ଓ ହେଡ୍‌ମାଷ୍ଟରଙ୍କ ବିରୁଦ୍ଧରେ ପୁରୀ ଜିଲ୍ଲା ହାକିମଙ୍କ ଠାରୁ ଗିରଫ ପରୱାନା ଆସିଥିଲା । ପୁଲିସ ସୁପରିଣ୍ଟେଣ୍ଡେଣ୍ଟଙ୍କ ସମେତ ଇନସ୍‌ପେକ୍ଟର ଓ ଅଧସ୍ତନ କେତେଜଣ ପୁଲିସ କର୍ମଚାରୀ ସତ୍ୟବାଦୀ ବିଦ୍ୟାଳୟରେ ଆସି ପହଞ୍ଚିଲେ । ପରୱାନା ଆସିଥିବା ଶୁଣି ଗୋପବନ୍ଧୁ ସେଦିନ ଅଗ୍ନିଶର୍ମା ହୋଇ ଉଠିଲେ । ସହଜେ ବିହାର-ଓଡ଼ିଶା କାଉନସିଲର ସଦସ୍ୟ, ଦ୍ୱିତୀୟରେ ଘଟଣା ସମ୍ପୂର୍ଣ୍ଣ ଏକ ବ୍ୟକ୍ତିଗତ ବ୍ୟାପାର; ଦାସ ଆପଣେ ପ୍ରଚଣ୍ଡ ରାଗରେ କଥା କହିପାରୁ ନ ଥାଆନ୍ତି । ଅନ୍ତରର ଅନାବିଳତାରେ ତାଙ୍କ ମୁଖ ଓ ଚକ୍ଷୁରୁ ସତେ ଯେପରି ଅଗ୍ନିର ତେଜ ଛୁଟୁଥାଏ । ରାଗରେ ସେ ଲାଲ ପଡ଼ିଯାଇଥାନ୍ତି ।

ତାଙ୍କ କ୍ରୋଧ ଦେଖି ପୋଲିସ ଅଫିସରମାନେ ଫେରି ଆସିଲେ । ପରେ ପୁରୀ କଲେକ୍ଟର ଘଟଣାର ସତ୍ୟତା ବୁଝି ଗୋପବନ୍ଧୁଙ୍କ ସହିତ ମିଳାମିଶା କରିବାକୁ ସତ୍ୟବାଦୀ ଆସିଥିଲେ । ଗୋପବନ୍ଧୁଙ୍କୁ ସେମାନେ ସେମାନଙ୍କ ଭ୍ରମ ପାଇଁ ଶେଷରେ କ୍ଷମା ମାଗିଥିଲେ ।

## ବେନୁମାଧବ ଆଗୁରୀ

ସତ୍ୟବାଦୀ ବିଦ୍ୟାଳୟକୁ ଶ୍ରୀ ବେନୁମାଧବ ଆଗୁରୀ ବିଜ୍ଞାନ ଶିକ୍ଷକ ହୋଇ ଆସିଥାଆନ୍ତି । ଅତି ନିରଳସ ନିରାଡ଼ମ୍ବର ଜୀବନ । ଶ୍ରୀକୃଷ୍ଣ ପ୍ରୀତିରେ ତନ୍ମୟ ହୋଇ ଘଣ୍ଟା ଘଣ୍ଟା ଧରି ସେ ଆରାଧନା କରନ୍ତି । ବହୁ ଆଗରୁ ବୈଷ୍ଣବ ଧର୍ମ ଗ୍ରହଣ କରି ତାଙ୍କ ମୂଳ ତାମିଲ୍ ନାମ

ଶଙ୍କରନ୍ ଆସ୍ଥାରକୁ ବଦଳାଇ ସେ ବେନୁମାଧବ ନାମ ଧରିଥା'ନ୍ତି । ଗୋପବନ୍ଧୁ ବାବୁ ସତ୍ୟବାଦୀ ସ୍କୁଲରେ ଶିକ୍ଷକତା କରିବା ପାଇଁ ତାଙ୍କୁ ଆଣିଥା'ନ୍ତି । କର୍ତ୍ତବ୍ୟ ଆଗରେ ବେନୁମାଧବ ନିଜର ନିତାନ୍ତ ବ୍ୟକ୍ତିଗତ ଆବଶ୍ୟକତାକୁ ମଧ୍ୟ ବଡ଼ ମନେକରୁନଥିଲେ । ସମ୍ଭବତଃ ସେଥିପାଇଁ ଗୋପବନ୍ଧୁଙ୍କ ସହିତ ତାଙ୍କର ଅଧିକ ଘନିଷ୍ଠ ହୋଇଥାଏ । ତାଙ୍କ ଚରିତ୍ର, ବୈଷ୍ଣବ ପ୍ରୀତିରେ ତାଙ୍କର ନିଷ୍ଠା—ଏ ସବୁରେ ଗୋପବନ୍ଧୁ ବାବୁ ଖୁବ୍ ମୁଗ୍ଧ ହୋଇଥାନ୍ତି ।

ବେନୁମାଧବ ନିୟମାନୁବର୍ତ୍ତିତାରେ କେବେ ବ୍ୟତିକ୍ରମ କରିନଥିବା ଶୁଣାଯାଏ । ଥରେ ଦିନ ୧୦ ଘଣ୍ଟାରେ ପୁରୀ ଯାତ୍ରା ପାଇଁ ଗୋପବନ୍ଧୁଙ୍କ ସହିତ ତାଙ୍କର କାର୍ଯ୍ୟକ୍ରମ ସ୍ଥିର ହେଲା । ଶ୍ରୀ ଆଚାର୍ଯ୍ୟ ସପ୍ତାହକର କାର୍ଯ୍ୟକ୍ରମ ଏକୋଦିକ୍ରମେ ଆଗରୁ ସ୍ଥିର କରିଥା'ନ୍ତି; କିନ୍ତୁ ପୁରୀ ଯିବାପୂର୍ବରୁ ହଠାତ୍ ଗୋପରେ ବନ୍ୟା ହେବାରୁ ଗୋପବନ୍ଧୁ ବନ୍ୟାଞ୍ଚଳକୁ ଯିବାକୁ ସ୍ଥିର କରିଦେଲେ । ପୁରୀ ଯିବା କଥା ଓ ଆଚାର୍ଯ୍ୟଙ୍କ ସହିତ ତାଙ୍କ କାର୍ଯ୍ୟକ୍ରମ ସେ ସମ୍ପୂର୍ଣ୍ଣ ଭୁଲିଯାଇଥାଆନ୍ତି । ଠିକ୍ ଦଶଟାବେଳେ ବେନୁମାଧବ ଆସି ପହଞ୍ଚି ଦେଖିଲେ—ଗୋପବନ୍ଧୁ ପ୍ରସ୍ତୁତ ହୋଇନାହାନ୍ତି । ସେ ବଡ଼ ବିରକ୍ତିରେ ଗୋପବନ୍ଧୁଙ୍କୁ ପଚାରିବାରୁ ଗୋପବନ୍ଧୁ କହିଲେ, "ଆଜି ମୁଁ ଗୋପ ଯିବାକୁ ସ୍ଥିର କରିଦେଇଛି । ପୁରୀ ଯାଇହେବନି ।" ଏଥିରେ ଆଚାର୍ଯ୍ୟ ଅତି କ୍ଷୁବ୍ଧ ହୋଇ କହିଲେ—"Then you are a lier" । ଗୋପବନ୍ଧୁ ବିନୟର ସହିତ କ୍ଷମା ମାଗି କହିଲେ—"ମୁଁ ନିଜେ ମୋ ଆସ୍ଥାରେ ଅନେକ ସମୟରେ ନାହିଁ । ଦେଶପାଇଁ ଏହିପରି ବହୁ ମିଥ୍ୟା କୁଏନ୍ତ ମୋତେ ବେଳେବେଳେ କହିବାକୁ ହୋଇଛି । ସେଥିରେ ମୋର ବ୍ୟକ୍ତିଗତ ସ୍ୱାର୍ଥ ନାହିଁ । ଆପଣଙ୍କ ଅସୁବିଧା ପାଇଁ କ୍ଷମା ଦେବେ ।"

ସତ୍ୟବାଦୀର ଛାତ୍ରମାନଙ୍କ ମଧ୍ୟରୁ ଏ କଥୋପକଥନ କେହି ଶୁଣିଥିଲେ । କଥାଟା ପ୍ରଚାର ହୋଇଯିବାକୁ ବେଶି ବେଳ ଲାଗିଲା ନାହିଁ । ପିଲାମାନଙ୍କ ମଧ୍ୟରେ ଏହି ଘଟଣାରେ ତୀବ୍ର ଅସନ୍ତୋଷ ଦେଖାଗଲା । ଅନେକ ଛାତ୍ର ବିଭିନ୍ନ ମନ୍ତ୍ରଣାରେ ଲାଗିଗଲେ । ବେନୁମାଧବଙ୍କ ପ୍ରତି ପିଲାମାନଙ୍କ ରାଗ ପୁଞ୍ଜୀଭୂତ ହେଲା । ଶିକ୍ଷକମାନେ ଏ କଥା ଜାଣନ୍ତିନି । ଶେଷକୁ ଦିନେ ବେନୁମାଧବ ବସି ପଢ଼ୁଥା'ନ୍ତି । ସେତେବେଳେ ତାଙ୍କର Study ପ୍ରୋଗ୍ରାମ ଥାଏ । ତାଙ୍କ ପ୍ରୋଗ୍ରାମର ମହତ୍ତ୍ୱ ପରୀକ୍ଷା କରିବାପାଇଁ ରାଗ ଓ ବିଦ୍ରୂପରେ ଛାତ୍ର କେତେଜଣ ତାଙ୍କ ଘରେ ନିଆଁ ଲଗାଇଦେଲେ । ନିଆଁ ଲାଗିବା ଜାଣି ବି ବେନୁମାଧବ ଉଠୁନଥା'ନ୍ତି । ଶେଷରେ ଶିକ୍ଷକ ଓ ଛାତ୍ରମାନେ ମିଳି ନିଆଁ ଲିଭାଇ ଦେଲେ ।

ଗୋପବନ୍ଧୁ ଏକଥା ଜାଣି ଓ ପିଲାମାନଙ୍କ କ୍ରୋଧରେ ଅତି ବିଚଳିତ ହୋଇ ସେମାନଙ୍କୁ କହିଲେ—"ସେ ନିଜ ଜୀବନଠାରୁ ବି ନିଜର କର୍ତ୍ତବ୍ୟକୁ ବଡ଼ ମନେକରୁଛନ୍ତି । ତେଣୁ ତାଙ୍କ ଉପରେ ତୁମର ରାଗ ଓ ଆକ୍ରୋଶ କାହିଁକି ? ସେ ଜଣେ ମହାନ୍ ମଣିଷ । ମୁଁ ଜାଣିଶୁଣି ମୋ ଭୁଲ୍‌ପାଇଁ କ୍ଷମା ମାଗିଥିଲି । ତୁମେ ଏ ଭୁଲ କରି ବିଦ୍ୟାଳୟର ମର୍ଯ୍ୟାଦା

କ୍ଷୁଣ୍ଣ କରୁଛ । ମୋର ଅପମାନ କରୁଛ ।”

ପିଲମାନେ ନିଜ ଆଚରଣ ପାଇଁ ବଡ଼ ଲଜ୍ଜିତ ହେଲେ ।

## ଛେନା ବନାମ ଘସି

ଥରେ ଗୋପବନ୍ଧୁ ବାବୁ ସମ୍ବଲପୁରକୁ କୌଣସି ସମ୍ମିଳନୀରେ ଯୋଗ ଦେବାକୁ ଯାଇଥାଆନ୍ତି । ସାଙ୍ଗରେ ପଦ୍ମମଣି ମଙ୍ଗରାଜ ଓ ସତ୍ୟବାଦୀ ବିଦ୍ୟାଳୟର କେତେକ ଛାତ୍ର ମଧ୍ୟ ଥା'ନ୍ତି । ସମ୍ବଲପୁରର ଶ୍ରୀ ଅଶ୍ୱିନୀକୁମାର ପୁଝାରୀଙ୍କ ଘରେ ତାଙ୍କର ଆତିଥ୍ୟ ଗ୍ରହଣ କରିବାର ଥାଏ ।

ଗୋପବନ୍ଧୁ ବାବୁ ତଥା ପିଲମାନଙ୍କୁ ପ୍ରବଳ ଭୋକ ହେଉଥାଏ । ସମସ୍ତେ ଖାଇ ବସିଲେ । ଘର ମାଲିକ ଚାକରାଣୀକୁ ଦୁଇଅଣା ପଇସା ଦେଇ ଛେନା କିଣି ଆଣିବାକୁ ବଜାରକୁ ପଠାଇଲେ । ଦାସେ ଆପଣେ ପିଲଙ୍କ ମନରେ ଛେନା କଥାଟାର ସ୍ପଷ୍ଟ ପ୍ରଲୋଭନ ଲକ୍ଷ୍ୟକରି, ଟିକିଏ ରସିକତା କରିବାକୁ ଚାହିଁଲେ । ସେତେବେଳେ ପିଲମାନେ ଭାବୁଥା'ନ୍ତି ଯେ “ସେମାନେ ତ ଏତେ ଲୋକ ଖାଉଛନ୍ତି; ମାତ୍ର ଦୁଇ ଅଣାର ଛେନା କଣ ସମସ୍ତଙ୍କୁ ଅଣ୍ଟିବ ?”

ସେମିତି ସମସ୍ତେ ଖାଉଥା'ନ୍ତି । ଦାସେ ଆପଣେ ଖାଇଲାବେଳେ ବହୁ ସମୟ ଗପସପ ଯୋଡ଼ି ଦିଅନ୍ତି । ଏହି ସମୟରେ ଚାକରାଣୀ କିଛି ଘସି ଆଣି ବଜାରରୁ ଫେରିଲା । ଦାସେ ଆପଣେ ଜାଣିଲେ ଠିକ୍ ସମୟ ହୋଇଗଲା । ସେ ଅତି ଗମ୍ଭୀର ହୋଇ ଚାକରାଣୀକୁ କହିଲେ—“ଟିକିଏ ଟିକିଏ ପିଲଙ୍କ ପତ୍ରରେ ଲଗାଇ ଦେଇ ଆଉତକୁ ଘରକୁ ନେଇଯା ।” ପିଲମାନେ କିଛି ବୁଝି ନ ପାରି ବିସ୍ମିତ ହୋଇ ଚାହିଁଥାଆନ୍ତି । ଆଗରେ କେତେ ଫଡ଼ା ଘସି ଧରି ଚାକରାଣୀ ଠିଆ ହୋଇଛି । ତା'ପରେ ସେ ଧୀରେ ଅପସାରିତ ହୋଇଗଲା ।

ଅଶ୍ୱିନୀବାବୁ ଆସିବାରୁ ଦାସେ ଆପଣେ କହିଲେ—“ପିଲାଏ ଛେନା ଖାଇବେ ବୋଲି ଚାହିଁଥିଲେ ଯେ ସେଇ କଥା ମୁଁ କହିଥିଲି ।” ଏଥିରେ ଭାରି ହସଟାଏ ହେଲା । ପିଲମାନେ ଛେନା ଅର୍ଥ ବୁଝିବା ପରେ ଏ ହସ ଆହୁରି ବଢ଼ିଉଠିଲା ।

## ଜୀବନର ବିକାଶ ଓ ପରୀକ୍ଷା

ପୁଆଣ୍ଡୋରୁ ସତ୍ୟବାଦୀ ପ୍ରାୟ ୫ ମାଇଲ ବାଟ । ଆଚାର୍ଯ୍ୟ ମହାଶୟ ଓ ଗୋପବନ୍ଧୁ ଦିନେ ଏକାଠି ଆସୁଥା'ନ୍ତି । ବାଟରେ ବଟଲ ଗ୍ରାମ । ସେଠାରେ କୌଣସି ଦଳୀୟ ବିବାଦ ନେଇ ଖୁବ୍ କଳିକଜିଆ ଲାଗିଥାଏ; ଗାଁ ଦାଣ୍ଡ ଫାଟି ପଡ଼ୁଥାଏ । ଗୋପବନ୍ଧୁ

ଅନାହୂତ ଭାବରେ ସେଠାରେ ପହଞ୍ଚି ପ୍ରାୟ ତିନଘଣ୍ଟା ଲାଗି କଳିକଜିଆ ମୀମାଂସା କରିଦେଲେ । ସୁତରାଂ ଡେରି ହେବାରୁ ନିଆଁପରେ ବସିଥିବାବେଳେ ମୁଢ଼ି ମାଗି ଖାଉଥାଆନ୍ତି ।

ବଗଲକୁ ନିଷ୍ପତ୍ତି ସାର ବାଲ ବାଟରେ ଆସିଲା ବେଳେ ବାଲରେ କୌଣସି ସାଆନ୍ତ ଓ ହଳିଆର କଳିକଜିଆ ଲାଗିବାର ଦେଖିଲେ । ସେଠି ତାଙ୍କର ସେଦିନ ପୁଣି ଦୁଇଘଣ୍ଟା ବିତିଗଲା । ଜିଦ ଧରିଲେ କଳିକଜିଆ ନିଷ୍ପତ୍ତି ନ ହେଲେ ସେ ଯିବେ ନାହିଁ । କଳି ନିଷ୍ପତ୍ତି ହେଲା । ସାଆନ୍ତ ଓ ହଳିଆ ଖୁସି ହୋଇ ନିଜ ନିଜ କାମରେ ଗଲେ ।

ସେଠାରୁ ଆସି ଭଣ୍ଡପୁର ଗ୍ରାମରେ ପହଞ୍ଚିଲା ବେଳକୁ ସେଠି ମଧ୍ୟ ଦୁଇଟି ପରିବାର ମଧ୍ୟରେ ଖୁବ୍ କଳିକଜିଆ ଲାଗିଥାଏ । ସେଠାରେ ମଧ୍ୟ ଦାସେ ଆପଣେ ଏକଘଣ୍ଟା ସମୟ ବିତାଇ କଳି ନିଷ୍ପତ୍ତି କରିଦେଲେ । ସତ୍ୟବାଦୀରେ ଆସି ପହଞ୍ଚିଲା ବେଳକୁ ଦିନ ଗଡ଼ିଗଲା । ଖାଇବା ଭିତରେ ମୁଢ଼ି ଗଣ୍ଡାଏ ।

ଏମିତି ବହୁ ସମୟ ତାଙ୍କର ବାଟରେ ମଣିଷର ସୁଖ ଦୁଃଖରେ ଭାଗୀଦାର ହେଉ ହେଉ କଟିଯାଏ । ଦିନେ ଦିନେ ମାତ୍ର ୪।୫ ମାଇଲ ରାସ୍ତା ଅତିକ୍ରମ କରିବାକୁ ୮।୧୦ ଘଣ୍ଟା ଲାଗିଯାଏ । ରାସ୍ତାରେ ହିଁ ଏ ଜୀବନର ପରୀକ୍ଷା ଓ ବିକାଶ । ଏଥିରେ ଗୋପବନ୍ଧୁଙ୍କର ଭାରି ବିଶ୍ୱାସ ଥାଏ । ଗ୍ରାମ ଓ ପଲ୍ଲୀ ହିଁ ସେଥିପାଇଁ ତାଙ୍କର ଏଡ଼େ ପ୍ରିୟ କର୍ମକ୍ଷେତ୍ର ହୋଇଥାଏ ।

ତାଙ୍କର ଗୋ-ସେବା ପ୍ରତି ବଡ଼ ସଉକ ଥିଲା । ଗୋ-ଜାତି ପ୍ରତି ହିନ୍ଦୁଧର୍ମର ସମସ୍ତ ଧାରଣାକୁ ସେ ବ୍ୟାବହାରିକ ଦୃଷ୍ଟିରୁ ଗ୍ରହଣ କରିଥିଲେ । ନିତ୍ୟ ପ୍ରତିଦିନ ନିଜ ହାତରେ ଗୋରୁ ସେବା କରନ୍ତି । ସତ୍ୟବାଦୀ ଗୁରୁବାସରେ ଗୋରୁ ପାଳିତ ହେଉଥିଲେ । ସେମାନଙ୍କ ସେବା କରିବା ଗୋପବନ୍ଧୁଙ୍କର ଏକ ପ୍ରାତ୍ୟହିକ ବ୍ୟାପାର ଥିଲା । ଗୋରୁଗାଈଙ୍କୁ କେହି ପିଟିବାର ଦେଖିଲେ ବା ଶଗଡ଼ରେ ବହୁତ ବୋଝ ଲଦି ପାଟିରୁ ଫେଣ ବାହାର କରି ହାଲିଆ ବଳଦ ଯାଉଥିବାର ଦେଖିଲେ ତାଙ୍କୁ ଭାରି କଷ୍ଟ ହେଉଥିଲା । ସେ ଶଗଡ଼ିଆକୁ ବହୁତ ଅନୁନୟ ବିନୟ ହୋଇ ବୁଝାଉଥିଲେ । କାହା ଗୋରୁ କଂସେଇଖାନାକୁ ନିଆ ହେବାର ଦେଖିଲେ ସେ ଭାରି ବ୍ୟାକୁଳ ହେଉଥିଲେ । ଏପରିକି ବହୁ ସମୟପରେ ସେ ପଠାଣ କଂସେଇ ଠାରୁ ଗୋରୁଗାଈ ମୁକୁଳେଇ ଆଣୁଥିଲେ । ହିନ୍ଦୁଧର୍ମରେ ଏପରି ବିଶ୍ୱାସ ଓ ନିଷ୍ଠା କ୍ୱଚିତ ଅନ୍ୟ ମହାତ୍ମାମାନଙ୍କଠାରେ ପ୍ରକାଶ ପାଇଛି ।

ଗ୍ରେଷ୍ଟ ପିଲାଙ୍କ ପ୍ରତି ତାଙ୍କର ବଡ଼ ଆଦର ଥିଲା । ସାନ ସାନ ପିଲାଙ୍କୁ ଦେଖିଲେ ସେ କାଖେଇ କୋଳକରି ପକାଉଥିଲେ । ଜାତି ବାଛ ବିଚାର ତ ନ ଥିଲା । ଅଜ୍ଞାନ ନିର୍ବିକାର ଶିଶୁଠାରେ ସେ ଧରଣୀର ନିର୍ଲିପ୍ତତାକୁ ସନ୍ଧାନ କରୁଥିଲେ । 'କଣ ଖାଇଚୁ', 'କୁଆଡ଼େ ଯାଉଚୁ'—ଏ କଥିଁ ଲ ପ୍ରଶ୍ନରେ ଶିଶୁକୁ ଆପଣାର କରୁଥିଲେ । ଅଯାଚିତ ଆଦର ତାଙ୍କ

ହିନ୍ଦୁତ୍ୱର ପୁଲକ ନିଜେ ବି ଅନୁଭବ କରୁଥିଲେ ।

ସାଧାରଣ ନୀଚ ଜାତି ବୋଲି ଯେଉଁ କୁଳୀନମାନେ ଯାହାକୁ ଘୃଣା କରନ୍ତି—ଗୋପବନ୍ଧୁ ସେଇଠି ନିଜର ଆସନ ପାରି ଦେଉଥିଲେ । ସେଇମାନଙ୍କ ଜାତିଆଣ ସଭା, ଭୋଜି ଭାତରେ ଯୋଗଦେଇ ମଣିଷ ଜାତି ବିଷୟରେ ବ୍ୟାପକ ଅଭିଜ୍ଞତା ସାଉଁଟୁ ଥିଲେ । ମଣିଷ ଜାତିର ମହାପୁରାଣରୁ ସେ ବହୁ ଅଲେଖା ତଥ୍ୟ ଖୋଜୁଥିଲେ ।

ଥରେ ବାଉରି (ଶିଆଳ) ମାନଙ୍କ ଜାତିଆଣ ସଭା ବସିଥାଏ । ଦାସେ ଆପଣେ ଏକ ଉଦ୍ଦେଶ୍ୟ ନେଇ ସଭାରେ ଯୋଗ ଦେଇଥା'ନ୍ତି । ନିଶାପାଣି ନେଇ ନିଶା ଖାଉଥିବା କୌଣସି ବାଉରି ଓ ଶିଆଳ ମଧ୍ୟରେ ଝଗଡ଼ା ଲାଗିଥାଏ । ଶିଆଳ ଅପମାନିତ କରି କହୁଥାଏ—"ମଦ କଣ, ମୂତି କରି ଦେଲେ ବି ତୁମେ ପିଇଯିବ ।" ଗୋପବନ୍ଧୁ ଶିଆଳର ସେହି ଭାଷାକୁ ସଭା ଆଗରେ ଥୋଇ ସମସ୍ତଙ୍କୁ କହିଲେ—"କଣ କହୁଚ ? ଶିଆଳ ମଦରେ ମୂତି କରି ଦେଲେ ତାକୁ ତୁମେ ପିଇବଟି ?"

ବାଉରିମାନେ ଅତି ଲାଜ ପାଇଲେ । ତାଙ୍କ ଭିତରୁ କେତେଜଣ କହିଲେ—"ଆଜିଠୁ ଆଉ ମଦ ପିଇବୁ ନାହିଁ ।"

ଗୋପବନ୍ଧୁ ପଚାରିଲେ—"ଖାଲି ତୋ'ରେ କହୁଦେଉଛ ନା ଏହା ତୁମର ମନକଥା ?"

"ସ୍ୱେ ସତ, ତିନିବାର ସତ"—ବାଉରି ଦଳ ପ୍ରତିଜ୍ଞା କଲା । ବାଉରିମାନଙ୍କ ଜାତିଆଣ ସର୍ଦ୍ଦାରଙ୍କୁ ଲୋକେ ଏ ଶପଥ କାର୍ଯ୍ୟକାରୀ କରୁଛନ୍ତି କି ନାହିଁ ଜଗିବା ଦାୟିତ୍ୱ ଦିଆଗଲା । ଭାଇମାନେ ତାଙ୍କ କଥା ରଖିଲେ । ନିଶାପାଣି କାରବାର ସେଠାରେ ବନ୍ଦ ହେଲା ।

## ନାଳନ୍ଦାର ଗୁରୁ

୧୯୧୮ ମସିହା ଉତ୍କଳ ସମ୍ମିଳନୀ କଟକରେ ହେବାର ଥାଏ । କଟକରେ ଯେଉଁ ଛାତ୍ରମାନେ ଉତ୍କଳ ସମ୍ମିଳନୀରେ ସ୍ୱେଚ୍ଛାସେବକ ହେବାର ଥିଲି ମିଃ ଦାସଙ୍କ ସହିତ ଅପଡ଼ ହୋଇ ସେମାନେ ସ୍ୱେଚ୍ଛାସେବକ ନ ହେବା ପାଇଁ ଆଗରୁ ଜଣାଇଦେଲେ । ମିଃ ଦାସ ଗୋପବନ୍ଧୁଙ୍କ ପାଖକୁ ଖଣ୍ଡେ ଚିଠି ଲେଖି ବ୍ରଜସୁନ୍ଦର ଦାସଙ୍କ ହାତରେ ସତ୍ୟବାଦୀ ପଠାଇଲେ । ସେତେବେଳେ ସତ୍ୟବାଦୀର ଛାତ୍ରମାନେ ନୀଳମାଧବ ଓ ଖଣ୍ଡପଡ଼ା ଭ୍ରମଣରେ ଯାଇଥା'ନ୍ତି । ଗୋପବନ୍ଧୁ ସ୍ୱେଚ୍ଛାସେବକ ନେଇ ଯିବେ ବୋଲି ଟେଲିଗ୍ରାମ କରି ଖୋର୍ଦ୍ଧା ଚାଲି ଆସିଲେ । ସତ୍ୟବାଦୀର ଛାତ୍ରମାନେ ସେଦିନ ଖୋର୍ଦ୍ଧା ଫେରି ଆସିବାର କଥା ଥିଲା । ନୀଳକଣ୍ଠ ଓ ଗୋଦାବରୀଶଙ୍କ ସହିତ ଷାଠିଏ ଜଣ ଛାତ୍ର ସ୍ୱେଚ୍ଛାସେବୀଙ୍କୁ ଧରି ଗୋପବନ୍ଧୁ କଟକ ଚାଲିଆସିଲେ । କଟକ ଷ୍ଟେସନ ପାଖରେ ମିଃ ଦାସ ଓ ତାଙ୍କର କେତେକ ବନ୍ଧୁ

ଘୋଡ଼ା ଗାଡ଼ିଟିଏ ରଖି ବସିଥାନ୍ତି । ଗୋପବନ୍ଧୁଙ୍କୁ ମିଃ ଦାସ କୁଣ୍ଢାଇ ନିବିଡ଼ ଆଲିଙ୍ଗନ କଲେ ଓ କହିଲେ—"ଆସ ନାଳନ୍ଦାର ଗୁରୁ, ଆଜି କର୍ମୀ ଅଭାବ ହେବେ ନାହିଁ । ମଙ୍ଗରାଜ ଆଉ ମଙ୍ଗ ମୋଡ଼ି ପାରିବେ ନାହିଁ ।"

ସତ୍ୟବାଦୀର ଛାତ୍ରମାନେ ଜୀବନ କ୍ଷେତ୍ରରେ, ସମାଜ କ୍ଷେତ୍ରରେ ସତ୍ତୋଟ ସିପାହି ଥିଲେ । ତେଣୁ ଅତି ସୁସ୍ପୃଙ୍ଖଳିତ ଭାବରେ ସେମାନେ ଦାୟିତ୍ୱ ତୁଲାଇ ନେଲେ । ଏହି ସମୟରେ ଗୋଟିଏ କୌତୁକପ୍ରଦ ଘଟଣା ଘଟିଲା । ପ୍ରଧାନ ଫାଟକ ବାଟେ ଜଣେ ଭଦ୍ରବ୍ୟକ୍ତି ବିନା ଟିକଟରେ ପଶି ଆସୁଥିଲେ । ସ୍ୱେଚ୍ଛାସେବକମାନେ ତାଙ୍କୁ ଆସିବାକୁ ଦେଲେ ନାହିଁ । ପରେ ମିଃ ଦାସ ଓ ଗୋପବନ୍ଧୁ ପ୍ରଧାନ ଫାଟକ ପାଖ୍ୟ ଆସି ଦେଖିଲେ ପ୍ରବେଶ ପାଇଁ ଆଶାୟୀ ହୋଇ ଅଟକି ରହିଛନ୍ତି ନିଜେ କବି ଗଙ୍ଗାଧର ମେହେର । ଗୋପବନ୍ଧୁବାବୁ କହିଲେ—"ସେ ପରା ମେହେର କବି; ତାଙ୍କୁ ଛାଡ଼ିଦିଅ ।" ସ୍ୱେଚ୍ଛାସେବକମାନେ ଆଗନ୍ତୁକଙ୍କୁ ନମସ୍କାର କଲେ, ମାତ୍ର ତଥାପି ଛାଡ଼ିଲେ ନାହିଁ । ଖଣ୍ଡେ ବିଶିଷ୍ଟ ଅତିଥି ଟିକଟ ଆଣିବାକୁ ସ୍ୱେଚ୍ଛାସେବକମାନେ ଜିଦ୍ ଧରିଲେ । ମିଃ ଦାସ କହିଲେ ନ ଆଣିଲେ କ'ଣ ଚଳିବ ନାହିଁ, ତାଙ୍କୁ ଛାଡ଼ିଦିଅ ।" କିନ୍ତୁ ଏକମାତ୍ର ପ୍ରବେଶ ପଥରେ ଶୃଙ୍ଖଳା ରକ୍ଷା ନହେଲେ ସବୁ ବିଭାଟ ଉପୁଜିବ ବୋଲି କୌଣସି ଛାତ୍ର ଯୁକ୍ତି କରିବାରୁ ଗୋଟିଏ ଟିକେଟ ସଂଗ୍ରହ ହୋଇ ଆସିଲା ଓ କବି ଗଙ୍ଗାଧର ଭିତରକୁ ଗଲେ । ମିଃ ଦାସ ପ୍ରଶଂସା କରି କହିଲେ, "Gopabandhu, your boys are fires" । ସେହିଠାରେ ଠିଆ ଠିଆ ସେ ପ୍ରାୟ ଗୋଟିଏ ବକ୍ତୃତା ଦେଲେ । ନେପୋଲିୟନଙ୍କ ଜୀବନରେ ନିଜ ବିଶ୍ୱସ୍ତ ପ୍ରହରୀଠାରୁ ମିଳିଥିବା ଏହିଭଳି ଏକ ଅନୁଭୂତି ସମ୍ପର୍କରେ ସେ କହିଲେ—"ନେପୋଲିୟନ ସମ୍ରାଟ ଥିବାରୁ ପ୍ରହରୀକୁ ଯଥେଷ୍ଟ ପୁରସ୍କାର ଦେଇଥିଲେ । ଆମେ ସବୁ କାଙ୍ଗାଳ । କି ପୁରସ୍କାର ଦେବୁ ?" ଏତିକିବେଳେ ଜନତା ମଧ୍ୟରୁ ଆନନ୍ଦଧ୍ୱନି ଉଠିଲା ଏବଂ ମିଃ ଦାସଙ୍କୁ "Uncrowned king of Orissa" ଧ୍ୱନିରେ ଜନତା ସ୍ୱାଗତ ଜଣାଇଲେ ।

ସେଦିନ ନାଳନ୍ଦାର କୁଳପତି ଗୋପବନ୍ଧୁଙ୍କୁ ଦେଶ ମିଶ୍ରଣ ସମ୍ପର୍କରେ ବକ୍ତବ୍ୟ ଦେବାକୁ ଜନତାର ବିପୁଳ ଅନୁରୋଧ ହୋଇଥିଲା । ମିଃ ଦାସ ଗୋପବନ୍ଧୁଙ୍କ କାନ୍ଧରେ ହାତ ପକାଇ ତାଙ୍କୁ ବକ୍ତୃତା ମଞ୍ଚରେ ଆଣି ଠିଆ କରାଇଲେ ଓ କହିଲେ—"ଗୋପବନ୍ଧୁ ଆଉ ଗୋପ୍ୟ ହୋଇ ରହିନପାରେ । ଏ ସମ୍ପର୍କରେ ତାର କହିବାର ନଥିଲା । ମାତ୍ର ଲୋକ ପ୍ରାଣରେ ମୋ ଗୋପବନ୍ଧୁ ସ୍ଥାନ ପାଇଛି । ସଭାପତିଙ୍କ ଅନୁମତି ହେଉ ।"

ଗୋପବନ୍ଧୁ ବିଚ୍ଛିନ୍ନ ଅଞ୍ଚଳର ଦୁରବସ୍ଥା ବର୍ଣ୍ଣନା କରି ଯେଉଁ ବକ୍ତୃତା ଦେଲେ ସେଥିରେ ସେ ଜନତାକୁ କନ୍ଦାଇ ଦେଲେ । ବ୍ରିଟିଶ୍ ସରକାରଙ୍କୁ ଏପରି ନିର୍ଭୀକ ଓ ତୀବ୍ର ସମାଲୋଚନା ଉତ୍କଳ ସମ୍ମିଳନୀ ମଣ୍ଡପରେ ତାଙ୍କ ପୂର୍ବରୁ କେହି କରି ନଥିଲେ । ଏଥିରେ ଗୋପବନ୍ଧୁଙ୍କ ପ୍ରତି ସରକାରଙ୍କ ସ୍ୱାଭାବିକ ସତର୍କ ଦୃଷ୍ଟି ରହିଲା । ପରେ ୧୯୨୦ ମସିହାରେ ବିଧିବଦ୍ଧ ଭାବରେ ସେ କଂଗ୍ରେସରେ ଯୋଗ ଦେଇ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର

ସମ୍ପାଦକ ପଦରେ ଅଧିଷ୍ଠିତ ହେବାରୁ ତାଙ୍କ ପ୍ରତି ସରକାରଙ୍କ ସନ୍ଦେହ କ୍ରମେ ଘନୀଭୂତ ହେବାକୁ ଲାଗିଲା ।

## ଉତ୍କଳ ସମ୍ମିଳନୀ ଓ ଗୋପବନ୍ଧୁଙ୍କ ଦାବୀ

ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶକରେ 'ଉତ୍କଳ ସମ୍ମିଳନୀ' ଓଡ଼ିଶାର ସର୍ବୋଚ୍ଚ ରାଜନୈତିକ ସଂସ୍ଥା ଭାବରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳରେ ଏକୀକରଣ ଓ ପ୍ରଦେଶ ଗଠନ ପାଇଁ ଦାବୀ କରି ଆସୁଥିଲା । ଏହି ମିଳନ ମଣ୍ଡପରେ ଓଡ଼ିଶାର ସମସ୍ତ ଚିନ୍ତାନାୟକ ଜାତୀୟ ବୀର ସଙ୍ଗଠିତ ହେଉଥିଲେ । ସାହିତ୍ୟିକ ଓ ସମାଜସେବୀମାନଙ୍କ ଗହଳରେ ସମ୍ମିଳନୀ ମଣ୍ଡପ ପୂରି ଉଠୁଥିଲା ।

୧୯୧୮ ମସିହାରେ 'ଉତ୍କଳ ସମ୍ମିଳନୀ' କଟକରେ ଆୟୋଜିତ ହୋଇଥିବା କଥା ଆଗରୁ କୁହାଯାଇଛି । ସତ୍ୟବାଦୀର ବହୁ ସ୍ୱେଚ୍ଛାସେବୀ ଛାତ୍ରଙ୍କ ସହିତ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ ଓ ଆଚାର୍ଯ୍ୟ ହରିହର ଏ ସମ୍ମିଳନୀରେ ଯୋଗ ଦେଇଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଦାବୀ କରି ଗୋପବନ୍ଧୁ କହିଥିଲେ—"ଏଇ ସମ୍ମିଳନୀରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦାବୀ ଦୀର୍ଘ ୧୭ ବର୍ଷ ଧରି ହୋଇ ଆସୁଛି ଏବଂ ତିରିଶ ବର୍ଷ ଧରି ଗଞ୍ଜାମର ଜନସାଧାରଣ ଏ ଦାବୀ କରି ଆସୁଛନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ ଏହାର କୌଣସି ଫଳାଫଳ ପ୍ରକାଶ ପାଇନାହିଁ । ଆମ ଆନ୍ଦୋଳନ ମନ୍ଥର ଗତିରେ ଚାଲିଥିବାରୁ ଅନେକଙ୍କ ମତ ଯେ ଆମେ କିଛି ହାସଲ କରିପାରିବା ନାହିଁ । ଆମେ ତଳଠାରୁ ଉପର ପର୍ଯ୍ୟନ୍ତ ସମସ୍ତଙ୍କୁ ବାରମ୍ବାର ଅନୁଯୋଗ ଓ ଆବେଦନ କରିଛେ । ଏପରିକି ଗଭର୍ଣ୍ଣର ଜେନେରାଲଙ୍କ ପାଖରେ ମଧ୍ୟ ଆମ ଆବେଦନ ପେଶ୍ କରାଯାଇଛି; କିନ୍ତୁ କିଛି ଫଳ ମିଳିନାହିଁ । ମହାଦେବଙ୍କୁ ଦର୍ଶନ ପୂର୍ବରୁ ବାସୁଆ ବଳଦକୁ ଓ ଜଗନ୍ନାଥଙ୍କୁ ଦର୍ଶନ ପୂର୍ବରୁ ଗରୁଡ଼ ସ୍ତମ୍ଭରେ ମୁଣ୍ଡିଆ ମାରିବାକୁ ହୁଏ । ବର୍ତ୍ତମାନ ମହାମାନ୍ୟ ଇଂରେଜ ସରକାରଙ୍କ ଭାରତ ଶାସନ ନିମନ୍ତେ ନିଯୁକ୍ତ ସେକ୍ରେଟାରୀ ଭାରତ ଭ୍ରମଣରେ ଆସିଛନ୍ତି । ସେ ହେଉଛନ୍ତି ଆମ ପାଇଁ ଇଂରେଜ ସରକାର । ତାଙ୍କୁହିଁ ଜଣାଇଲେ ବୋଧହୁଏ ଆମର ସୌଭାଗ୍ୟ ଆସିଯିବ । ଅନେକ ଲୋକଙ୍କ ମତ ଯେ ଭାରତୀୟ ସ୍ୱରାଜ୍ୟ ସଂଗ୍ରାମରେ ଓଡ଼ିଶା ଯୋଗ ଦେଇନାହିଁ । ସେମାନଙ୍କ ମତରେ ଓଡ଼ିଶାର ଏହି ସ୍ୱତନ୍ତ୍ର ପ୍ରଦେଶ ଗଠନ ଦାବୀ ମଧୁବାବୁ ଓ ବ୍ରଜସୁନ୍ଦରଙ୍କ ପରି କେତେଜଣ ଉଚ୍ଚ ଇଂରାଜୀ ଶିକ୍ଷିତ ବ୍ୟକ୍ତିଙ୍କ ନିକଟରେ ସୀମାବଦ୍ଧ । ସେମାନଙ୍କର ଏ ଧାରଣା ଦୂର କରିବା ପାଇଁ ଆମ୍ଭମାନଙ୍କୁ ସାଧାରଣ ନିରକ୍ଷର ଚାଷୀ, ତଳ ଜାତିର ପତିତଠାରୁ ଉଚ୍ଚ ସମାଜସେବୀ ଓ ନେତାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ନେଇ ଏକ ବ୍ୟାପକ ଆନ୍ଦୋଳନର ସୂତ୍ରପାତ କରିବାକୁ ହେବ । ଆବାଳ-ବୃଦ୍ଧ-ବନିତା ସମସ୍ତେ ଏଥିରେ ମାତି

ଉଠିବେ । ତା'ହେଲେ ସରକାର ଅମର ଗୁରୁତ୍ୱ ଉପଲବ୍ଧି କରିବେ ଓ ଆମ ଦାବୀର ମର୍ମ ବୁଝି ପାରିବେ ।"

ଭାଇମାନେ, ଗତ କେତେବର୍ଷ ମଧ୍ୟରେ କଟକ, ଗଞ୍ଜାମ, ସମ୍ବଲପୁର, ପୁରୀ, ସିଂହଭୂମ—ବହୁସ୍ଥାନରେ ଏ ସମ୍ମିଳନୀ ଓ ସଭା ହୋଇଗଲା । ପୁରୀରେ ପାଞ୍ଚହଜାର, ସତ୍ୟବାଦୀରେ ଚାରିହଜାର, କଟକରେ ପ୍ରାୟ ସାତହଜାର, ଏହିପରି ବହୁ ସଂଖ୍ୟାରେ ଲୋକ ଉପସ୍ଥିତ ହୋଇ ଏକ ସ୍ୱରରେ ଏଥିପାଇଁ ଦାବୀ ଜଣାଇଲେ । ଏହି ସଭା ତରଫରୁ ସରକାରଙ୍କ ପାଖକୁ ତାରବାର୍ତ୍ତାମାନ ପଠାଗଲା । ମୋତେ ସତ୍ୟବାଦୀ ସଭାରେ ଲୋକେ ଉତ୍କଣ୍ଠାର ସହିତ ପୁରୀ ସଭାପରେ ପଠାହୋଇଥିବା ତାରବାର୍ତ୍ତାର ଫଳାଫଳ କଣ ହେଲା ବୋଲି ପଚାରୁଥିଲେ । ମୁଁ ଉତ୍ତର ଦେଲି—"ସରକାର ଆମ ତାର ପାଇଥିଲେ ମଧ୍ୟ ଆମ ମନ୍ତ୍ରୀମାନେ ଏଥିପାଇଁ ପାଟି ଫିଟାଇ ନାହାନ୍ତି ।" ଏଥିରୁ ସାଧାରଣ ଲୋକଙ୍କ ଦେଶ ମିଶ୍ରଣ ଆଗ୍ରହ ସହଜରେ ଅନୁମେୟ । ସରକାର ଯଦି ଏଥିରୁ ଜନତାର ଉଦ୍‌ବେଗ ନବୁଝନ୍ତି, ତେବେ ଆଉ କଣ କରାଯାଇ ପାରିବ ମୋତେ ଜଣାନାହିଁ । ଯଦି ଆମ ପାଖରେ ଗୋଟିଏ ଗ୍ରାମୋଫୋନ ଥାଆନ୍ତା, ତା'ହେଲେ ଅବା ସେଥିରେ ସମସ୍ତଙ୍କ ମିଳିତ ଧ୍ୱନିକୁ ରେକର୍ଡ କରାଯାଇ ମନ୍ତ୍ରୀମାନଙ୍କ ଆଗରେ ବଜାଯାଇ ପାରନ୍ତା । ଭାଇମାନେ, ଓଡ଼ିଶା ପ୍ରେମ, କରୁଣା ଓ ମୈତ୍ରୀ ଦେଶ । ଏଠାରେ ଅନ୍ୟ କୌଣସି ଆନ୍ଦୋଳନ ସମ୍ଭବ ନୁହେଁ । ଓଡ଼ିଆମାନେ ଅଧିକ ଆଉ କଅଣ କରିପାରିବେ ? ସେମାନେ ତାଙ୍କ ଆନ୍ଦୋଳନକୁ ଧାରାବାହିକ ଭାବରେ ଶେଷଯାଏ ନେଇଆସିଛନ୍ତି । ସରକାର ଯଦି ଅନ୍ୟ କୌଣସି ପ୍ରକାର ଆନ୍ଦୋଳନ ଚାହୁଁଥାନ୍ତି, ତେବେ ଆମକୁ ଇଙ୍ଗିତ ଦେଲେ ଆମେ ତାହାହିଁ କରିବା, ଯହିଁରେ ସେମାନେ ଖୁସି ହେବେ । ଏଣିକି ଆମ ଆନ୍ଦୋଳନ ଭଗବାନଙ୍କଠାରେ ଛାଡ଼ିଦେବା । ମୁଁ ଅତି ଗଭୀର କ୍ଷୋଭରେ ଏକଥା କହୁଛି । କାକର ବିନ୍ଦୁପରି ଆମର ଆଶା ସୂର୍ଯ୍ୟକିରଣରେ ଶୁଖିଯାଇଛି । ଆମ ଲୁହ ଓ ଆକୁଳତା ଆଜି ଏକାକାର ହୋଇଛି । ଦୁର୍ବଳର ଏହାଠାରୁ ବଳି ବଡ଼ ଅସ୍ତ୍ର କିଛି ନାହିଁ । ଦୀର୍ଘଶ୍ୱାସ ଏବଂ ପ୍ରାର୍ଥନା ହିଁ ଏଣିକି ଆମର ସମ୍ବଳ । ଆମେ ଆଜି ଉତ୍ତର ପାଇଁ ଅପେକ୍ଷା କରିବା । ସେମାନେ "ହଁ ବା ନାହିଁ"—ଗୋଟିଏ ନିର୍ଦ୍ଦିଷ୍ଟ ଜବାବ ଦିଅନ୍ତୁ । ଆମେ ଦେଖିବା—ଏ ସରକାର ଏହି ଦାବୀକୁ ଗ୍ରହଣ କରୁ ବା ନକରି ଭାଙ୍ଗିଯାଉ । ଯଦି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ନ ହୁଏ, ତେବେ ଏ ସରକାର ସହିତ ମୋର ଆଜୀବନ ଆଉ କୌଣସି ସମ୍ପର୍କ ରହିବ ନାହିଁ । ସରକାର ଜନମତ ଦ୍ୱାରା ଚାଳିତ ବୋଲି କୁହନ୍ତି । ସେମାନେ ତାଲୁକ, ଜିଲ୍ଲାବୋର୍ଡ ଓ ସମ୍ବିଧାନ ସଭା ଗଠନ କରିଛନ୍ତି, ଶାସନର ସୁବିଧା ପାଇଁ । ଏହି ସଂସ୍ଥାମାନଙ୍କୁ ଯେଉଁମାନେ ନିର୍ବାଚିତ ହୋଇଛନ୍ତି, ଯଦି ତାଙ୍କ କଥାରେ ସରକାରଙ୍କର ଭରସା ନ ଥାଏ, ତେବେ ଏ ସବୁ ପ୍ରତାରଣା

ମାତ୍ର । ମୁଁ ଆଉ ଅଧିକ କଣ କରିପାରିବି । ମୋ ଛିନ୍ନମସ୍ତା ଉତ୍କଳ ଜନନୀ ପାଖରେ ନିଜକୁ ମୁଁ ଆଜି ଏଥିପାଇଁ ଉତ୍ସର୍ଗ କରୁଛି । ମା, ଯଦି ଏ ଜୀବନରେ ତୋର ସୁନ୍ଦର ସୁଶ୍ରୀ ବଦନ ଦେଖି ପାରିବି ନାହିଁ, ତା ହେଲେ ତୋର ଛିନ୍ନମସ୍ତା କଦାକାର ରୂପର ହିଁ ପୂଜା କରିବି ।''

ଗୋପବନ୍ଧୁଙ୍କ ଆଖିରୁ ଲୁହର ଲହଡ଼ି ଛୁଟିଲା । କଣ୍ଠ ହେଲା ବାଷ୍ପରୁଦ୍ଧ । ସେ ଆଉ କହି ପାରିଲେ ନାହିଁ । ଏହି ସମ୍ମିଳନୀରେ ପରବର୍ତ୍ତୀ ସମ୍ମିଳନୀ ପାଇଁ ଗୋପବନ୍ଧୁ ସଭାପତି ଭାବରେ ନିର୍ବାଚିତ ହେଲେ ।

## ଉତ୍କଳ ସମ୍ମିଳନୀର ସଭାପତି

୧୯୧୯ ଅପ୍ରେଲ ମାସ ୧୯ ତାରିଖରେ କଟକ ମ୍ୟୁନିସିପାଲିଟି ପଡ଼ିଆରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ଗୋପବନ୍ଧୁ ସଭାପତି ହୋଇଥିଲେ । ସଭାପତି ଭାବରେ ସେ ଯେଉଁ ବକ୍ତୃତା ଦେଇଥିଲେ ତାହା ବିଚ୍ଛିନ୍ନାଞ୍ଚଳ ସମେତ ସମଗ୍ର ଓଡ଼ିଶାରେ ଅପୂର୍ବ ଉନ୍ମାଦନା ସୃଷ୍ଟି କରିଥିଲା । ଭାରତୀୟ ଜାତୀୟତାରେ ଓଡ଼ିଆ ଜାତୀୟଜୀବନର ସମ୍ମିଶ୍ରଣ ଓ ଓଡ଼ିଶାର ଜାତୀୟ ଚେତନା ଭାରତୀୟ ଜାତୀୟତାର କିପରି ପରିପୂରକ ହେବା ଉଚିତ ସେସବୁ ବିଷୟରେ ସେ ଏକ ସାରଗର୍ଭକ ବକ୍ତବ୍ୟ ଦେଇଥିଲେ ।

"ଆଜି ଓଡ଼ିଆ ଜାତିର ଏହି ସମ୍ମିଳନୀରେ ଆପଣମାନେ ମୋତେ ନାୟକ ପଦରେ ବସାଇଛନ୍ତି, ସେଥିପାଇଁ ମୁଁ ଧନ୍ୟବାଦ ଦେଉଅଛି । କେବଳ ଏତିକି କହିଲେ ବିଧି ରକ୍ଷାହେଲା, ମାତ୍ର ମୋ ପ୍ରାଣର କଥା ପ୍ରକାଶ ପାଇଲା ନାହିଁ । ମୋର ଅକିଞ୍ଚନତା ଯେବେ ଜୀବନରେ କେବେ ବୁଝିଥାଏଁ; ଏ ଘଟଣାରେ ଆଜି ତାହା ବିଶେଷ ରୂପେ ବୁଝୁଅଛି । ସେଥିସଙ୍ଗେ ସଙ୍ଗେ ଦେଶବାସୀ ମୋତେ ଯେଉଁ ସମ୍ମାନ ଦେଇଛନ୍ତି, ତାହାର ଗୁରୁତ୍ୱ ମଧ ବୁଝୁଅଛି । ବସ୍ତୁତ, ବିଷୟବୋଧ ଦୃଷ୍ଟିରେ ମୁଁ ଯେ ଏ ସମ୍ମାନର ଏକାନ୍ତ ଅଭାଜନ, ଏହା ମୋର ବିଶ୍ୱାସ । ଏ ସମ୍ମାନ ଯେ କାହାରି ପକ୍ଷରେ ପରମ ଗୌରବ । ଉତ୍କଳ ମାତାଙ୍କର ଯେତେ ସ୍ନେହ ଆଦର ଥିଲା, ସେ ଆଜି ମୋତେ ତାହା ସବୁ ଦେଇ ଅଛନ୍ତି । ଓଡ଼ିଆ ଜାତିର ହାତରେ ଯେ ସମ୍ମାନ ଦେବାର ଥିଲା, ତାହା ମୁଁ ସମୁଦାୟ ପାଇଅଛି । ମାତ୍ର ଆମ୍ଭମାନଙ୍କର ଯେ ସମସ୍ତ ଜାତୀୟ ସମସ୍ୟା ରହିଅଛି, ଜାତିର ଯେ ଶତଶତ, ସହସ୍ର ସହସ୍ର ଅଭାବ, ଦୂର କରିବାର ଦାୟିତ୍ୱ ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଅଧୀନ, ତାହା ସବୁ ଭାବ ଥରେ ମୁଁ ଜଡ଼ପ୍ରାୟ ହୋଇଯାଏ । ଯଥାର୍ଥରେ ପ୍ରାୟ ମାସକତଳେ ସମ୍ମିଳନୀର ମନ୍ତ୍ରଣା ସଭା ଯେତେବେଳେ ସମ୍ବାଦପତ୍ରମାନଙ୍କରେ ସଭାପତି ନିର୍ବାଚନୀୟ ପ୍ରସ୍ତାବ ପ୍ରକାଶ କରେ, ମୋ ନାମର ପ୍ରସ୍ତାବ ଉଠାଇ ଦେବାଲାଗି ଲେଖିବି ବୋଲି ଭାବିଲି; ମାତ୍ର ପରେ ବିଚାରିଲି ମୋ

ପର୍ଯ୍ୟନ୍ତ ଆସିବ ନାହିଁ । ଦେଖୁ ଦେଖୁ ଆଜକୁ ଠିକ୍ ଏକ ସପ୍ତାହ ପୂର୍ବେ ହଠାତ୍ ସମ୍ମିଳନୀର ଦୂତ ମୋ ଦ୍ୱାର ଦେଶରେ ଉପସ୍ଥିତ । ଅବାକ୍ ହେଲି; କ୍ଷଣେ କିଛି କରି ନ ପାରିଲି ଭଳି ହୋଇଗଲି । ତେଣେ ଶୁଣି ମୁଁ ଆଜି କେତେଗୁଡ଼ିଏ ଉପସ୍ଥିତ ଜଞ୍ଜାଳରେ ଉଦ୍‌ବ୍ୟସ୍ତ । ସେ ଦୂତ ସମ୍ମିଳନୀ ପକ୍ଷରୁ ଯେ ଅନୁରୋଧ ପତ୍ର ନେଇଆସିଥିଲେ ତାକୁ ବାରମ୍ବାର ପଢ଼ିଲି । ସେ ମୋତେ ମା'ଙ୍କ ଡାକ ପରି ଲାଗିଲା । ସେ ଡାକ ଏଡ଼ିବ କିଏ ? ଟିକିଏ ଇତସ୍ତତଃ ହୋଇ ହଁ ଭରିଲି ।

"ମା ଉତ୍କଳ ଜନନୀ, ଏ ଅଧମ ସନ୍ତାନଠାରେ ଯଦି ତୁମର ଏତେ ଦୟା, ଏହାର କର୍ତ୍ତବ୍ୟ ପଥରେ ତୁମେ ହିଁ ସହାୟ ହୁଅ । ମା, ମୁଁ ଉପସ୍ଥିତ ଘଟଣାରେ ଦେଶର ନାୟକ ନୁହେଁ । ତାହା ମୋର କେବେ ବାଞ୍ଛା ନୁହେଁ; ତୁମର ନିଯୁକ୍ତ ସେବକ ହେବା ହିଁ ମୋ ଜୀବନରେ ଚିର ଆକାଙ୍କ୍ଷା । ଆଜି ବିଶେଷଭାବେ ସେ ସେବା କରିବାକୁ ମୋତେ ସୁଯୋଗ ଦେଉଅଛ; ତହିଁରେ ମୁଁ ଧନ୍ୟ ଓ ପୁଣ୍ୟ ହୋଇଅଛି । ମା, ଏ ଅଧମ ଅଜ୍ଞାନ ସନ୍ତାନ ତୋର କି ସେବା କରିବ ? ତତେହିଁ ତୁହି ରକ୍ଷା କର, ମୁଁ କ୍ଷୁଦ୍ର ମନୁଷ୍ୟ ମାତ୍ର ।"

ଭାଇମାନେ, ସ୍ୱଦେଶ ସେବା ହିଁ ପ୍ରକୃତରେ ମନୁଷ୍ୟ ପକ୍ଷରେ ଭଗବତ୍ ସେବା । ଏହି ପୁଣ୍ୟ ଜାତୀୟ ପୀଠରେ ସେହି ସେବା କାର୍ଯ୍ୟରେ ମୋତେ ଆପଣମାନେ ପ୍ରଧାନ ପୂଜକର ଭାର ଦେଇଅଛନ୍ତି । ଆପଣମାନଙ୍କ ସାହାଯ୍ୟ, ସହାନୁଭୂତି, ସୁଦୟା ଓ ସହଯୋଗିତା ବିନା ତାହା ନିର୍ବାହ କରିବା ମୋର ସାଧ୍ୟ ନୁହେଁ ।

ଭାଇମାନେ, ଏହି ଆସନରେ ବସିବା ସଙ୍ଗେ ସଙ୍ଗେ ସର୍ବପ୍ରଥମେ ମୋର ମନେପଡ଼ୁଛି ସରସ୍ୱତୀ ଫକୀର ମୋହନ ଆରବର୍ଷ ଠିକ୍ ଏହି ସମୟରେ ଏହିଠାରେ ବସିଥିଲେ । ସେ ଆଜି ନାହାନ୍ତି । ଓଡ଼ିଆର ପ୍ରାଣର କଥା, ହୃଦୟର ଗୀତ, ସାହିତ୍ୟ ଭୂମିରେ ଆଉ ଶୁଣା ଯାଉନାହିଁ । କ୍ରମେ ଆମ୍ଭମାନଙ୍କର ପ୍ରବୀଣ ନେତା ଓ କର୍ମୀ ଗୋଟିଏ ଗୋଟିଏ ଏହିପରି ଚାଲିଯାଉଛନ୍ତି । ଗତବର୍ଷ ମଧ୍ୟରେ ଓଡ଼ିଶାର ରାଜକୁଳରେ ଯେ ବିପତ୍ତି ଘଟିଅଛି, ତାହା ଭାବିଲେ ଦାରୁଣ ଦୁଃଖ ଲାଗେ । ପ୍ରବୀଣ, କିଶୋର ରାଜା, ରାଣୀ, ଯୁବରାଜମାନେ ଚାହୁଁ ଚାହୁଁ କେତେଗୁଡ଼ିଏ ଚାଲିଗଲେ । ଏହି ସମ୍ମିଳନୀର ଭୂତପୂର୍ବ ସଭାପତି ଆଠଗଡ଼ର ରାଜା ବାହାଦୁର ଏବଂ ପ୍ରଜାବତ୍ସଳ ଧର୍ମପ୍ରାଣ ଶୂରପ୍ରତାପଙ୍କ ବିୟୋଗ ସମ୍ମିଳନୀକୁ ବିଶେଷ ଭାବରେ ବାଧିବ । ଉତ୍କଳ ନାରୀ ସମାଜରେ ସୁପରିଚିତ ବିଦୁଷୀ ରାଣୀ କନକମଞ୍ଜରୀଙ୍କ ସ୍ଥାନ ଅନେକ ଦିନ ଖାଲି ରହିବ । ଏହାଛଡ଼ା ଦେଶର କେଉଁ ଅଜ୍ଞାତ କୋଣରେ ଅଭାବ ଅନ୍ନକଷ୍ଟରେ କାତର, ରୋଗବ୍ୟାଧିରେ ଜର୍ଜରିତ ହୋଇ ନିଃସ୍ୱ ଓ ନିରାଶରେ କେତେଜଣ ଲୋକ ପ୍ରତିଦିନ ଅସମୟରେ ଚାଲିଯାଉଛନ୍ତି; ସବଳ ସୁସ୍ଥ ଶରୀରରେ ଦୀର୍ଘଜୀବୀ ହୋଇ ରହିଥିଲେ ସେମାନେ ଏ ଦେଶର କେତେକ ଶକ୍ତି ବଢ଼ାଇ ପାରିଥାଆନ୍ତେ, ସେମାନଙ୍କ ମଧ୍ୟରେ କାହାଠାରେ କି ପ୍ରତିଭା ଲୁଚି ରହିଥିଲା, ଯଥା ସମୟରେ ବିକାଶ ପାଇଥିଲେ ମାନବ ସମାଜର କି କଲ୍ୟାଣ ସାଧିତ ହୋଇଥା'ନ୍ତା, କିଏ କହିପାରେ ? ଆଜି ଉତ୍କଳର

ସେହି ସମସ୍ତ ଅନାଶ୍ରିତ, ଅଜ୍ଞାତ, ମୃତବ୍ୟକ୍ତିଙ୍କ ନିମନ୍ତେ ଆମ୍ଭମାନଙ୍କ ପ୍ରାଣରେ ଗଭୀର ଶୋକ ହେଉଅଛି । ସେମାନଙ୍କ ମୃତ୍ୟୁରେ ଉତ୍କଳ ଯେ ବଳହୀନ ହୋଇଅଛି ବୋଲିବା ବାହୁଲ୍ୟ । ସେମାନେ ପ୍ରତ୍ୟେକେ ମୁଖ୍ୟ ଭାବରେ ହେଉ ବା ଗୌଣ ଭାବରେ ହେଉ ଆମ୍ଭମାନଙ୍କର ଏହି ଜାତୀୟ ସମ୍ମିଳନୀର ଶକ୍ତି । ଏହି ସମ୍ମିଳନୀ ଓଡ଼ିଆ ଜାତିର ।

ଆମ୍ଭେମାନେ ଯେ କେତେଜଣ ଏଠାରେ ଉପସ୍ଥିତ ଥାଇ କିମ୍ବା ଯେଉଁମାନେ ଆସି ନ ପାରି ସହାନୁଭୂତି ପତ୍ର ଲେଖିଛନ୍ତି, ସମ୍ମିଳନୀ କେବଳ ସେଇମାନଙ୍କର ନୁହେଁ । ଏମନ୍ତ କି ବର୍ତ୍ତମାନ ଓଡ଼ିଆ ଜାତିର ଆବାଳ-ବୃଦ୍ଧ-ବନିତା ସମଗ୍ର ଜୀବିତ ବ୍ୟକ୍ତିଙ୍କର କେବଳ ଏ ସମ୍ମିଳନୀ ନୁହେଁ । ଅଦ୍ୟାପି ଯେଉଁମାନେ ଜନ୍ମ ହୋଇନାହାନ୍ତି, ଶତ ଶତ ବର୍ଷ ପରେ ଯେଉଁମାନେ ଆମର ଉତ୍ତରାଧିକାରୀ ହେବେ, ସେମାନଙ୍କର ମଧ୍ୟ ଏହି ସମ୍ମିଳନୀ । ଓଡ଼ିଆ ଜାତିର ଏହା ନିରବଚ୍ଛିନ୍ନ ପ୍ରାଣପ୍ରବାହ । ସମ୍ମିଳନୀକୁ ଏହି ଭାବରେ ନ ଦେଖିଲେ ଏହା ସମ୍ମିଳନୀ ନୁହେଁ । ଏ କେବଳ କନ୍‌ଫରେନ୍‌ସ ମାତ୍ର; ଅର୍ଥାତ୍ ଓଡ଼ିଶାର ବା ଓଡ଼ିଆ ଜନସାଧାରଣଙ୍କର ହିତାହିତ ବିଚାର କରିବା ଲାଗି କେତେଜଣ ଜାଣିବା ଶୁଣିବା ଲୋକଙ୍କର ଏକ ବୈଠକ ମାତ୍ର; ଏହା ଧାରଣା କଲେ ମିଳନର ପବିତ୍ର ଭାବ, ଜାତୀୟତାର ଅଖଣ୍ଡ ମୂର୍ତ୍ତି ଏଥିରେ ପ୍ରକାଶ ପାଏ ନାହିଁ ।

ମୋର ଆଶଙ୍କା ହୁଏ ଆମ୍ଭମାନଙ୍କ ମଧ୍ୟରୁ ଅନେକେ ସମ୍ମିଳନୀର ସ୍ୱରୂପ ଏ ପର୍ଯ୍ୟନ୍ତ ବୁଝିନାହାନ୍ତି—ଏହାକୁ କେବଳ କନ୍‌ଫରେନ୍‌ସ ବୋଲି ମନେକରନ୍ତି; ତେଣୁ ସମୟେ ସମୟେ ପଚାରିଥାନ୍ତି, "ସମ୍ମିଳନୀ ଏତେଦିନ ହେଲା କ'ଣ କଲା ?" ସେମାନେ ମନେକରନ୍ତି, ସମ୍ମିଳନୀ ଯେପରିକି ଏକ ପ୍ରକାର ସମବାୟ ଋଣ ସମିତି ବା ଯୌଥ ଭଣ୍ଡାର; ଦୁଇବର୍ଷ ବା ପାଞ୍ଚବର୍ଷ ପରେ ସମସ୍ତ ଦେଶବାସୀଙ୍କ ହାତରେ କିଛି କିଛି ଲାଭ ଦିଅନ୍ତା ।

"ସମ୍ମିଳନୀ ଆମ୍ଭମାନଙ୍କ ଜାତିର କି କଲ୍ୟାଣ ସାଧନ କରିଅଛି, ତାହା କହିବା ପୂର୍ବରୁ ସମ୍ମିଳନୀର ଉଦ୍ଦେଶ୍ୟ, ପ୍ରକୃତି, ପ୍ରକ୍ରିୟା, କ୍ଷେତ୍ର, ଲକ୍ଷ୍ୟ, ଭିତ୍ତି ଆଦିର ଆଲୋଚନାର ପ୍ରୟୋଜନ ବୋଲିବା ବାହୁଲ୍ୟ । ସମ୍ମିଳନୀର ଲକ୍ଷ୍ୟ ଲକ୍ଷଣମାନ ନିରୂପିତ ହୋଇ ନ ଥିବାରୁ ତାହା ଆଶାନୁରୂପେ କାର୍ଯ୍ୟ କରିପାରି ନାହିଁ ଏବଂ ତହିଁ ସମ୍ବନ୍ଧେ ଅନେକ ସମୟରେ ଅନେକ ପ୍ରକାର ମତଭେଦ ଘଟୁଅଛି । ସମ୍ମିଳନୀର ପରିଚାଳନା ନିମନ୍ତେ ନିୟମମାନ ପ୍ରଣୀତ ହୋଇଅଛି, ପୁଣି ତାହା ଭାଙ୍ଗିଅଛି । କାର୍ଯ୍ୟର ପନ୍ଥା ଏବଂ ପ୍ରଣାଳୀରେ ବାରମ୍ବାର ପରିବର୍ତ୍ତନ ଘଟିଅଛି । ଏଥିଲାଗି ଅନେକଙ୍କର ଆପତ୍ତି । ଏ ଆପତ୍ତି ଅସଙ୍ଗତ ନ ହୋଇପାରେ, ମାତ୍ର ବୁଝି ରଖିବାକୁ ହେବ ଯେ ଅନେକ ଭଙ୍ଗାଗଢ଼ା ମଧ୍ୟରେ ଓ ପରିବର୍ତ୍ତନ, ପ୍ରତ୍ୟାବର୍ତ୍ତନ ମଧ୍ୟରେ ଯେ କୌଣସି ବ୍ୟକ୍ତି ବା ଜାତିକୁ ପୂର୍ଣ୍ଣତା ଆଡ଼କୁ ଯିବାକୁ ହୁଏ । ମତଭେଦ ଅବଶ୍ୟ ଘଟିବ । ସମ୍ମିଳନୀ ଅଦ୍ୟାପି ଅଳ୍ପଦିନର ଅନୁଷ୍ଠାନ, ଏହା ଏକାଦିନକେ କୌଣସି ସୁଚିନ୍ତିତ ପଥ ଧରି ପାରିବ ନାହିଁ; କିନ୍ତୁ ତାହା ବୋଲି ଯଦି କେହି କେହି ସମ୍ମିଳନୀରୁ ଅନ୍ତର ହୁଅନ୍ତି ଏବଂ ସମ୍ମିଳନୀର ଅନ୍ୟାନ୍ୟ କର୍ମୀମାନଙ୍କ ବ୍ୟତି

ବିଦ୍ରୂପ ଭାବରେ କଟାକ୍ଷ କରନ୍ତି, ତାହା ଅତ୍ୟନ୍ତ ପରିତାପର ବିଷୟ ଏବଂ ଆମ୍ଭମାନଙ୍କ ଜାତୀୟ କଲ୍ୟାଣ ପକ୍ଷରେ ଅନ୍ତରାୟ । ଏ ଅଧିବେଶନରେ ସମ୍ମିଳନୀର ଗଠନ ଏବଂ କାର୍ଯ୍ୟ ପରିଚାଳନା ବିଷୟରେ ନିୟମମାନ ଆଲୋଚିତ ହୋଇ ଧାର୍ଯ୍ୟ କରାଯିବ । ମାତ୍ର ସମ୍ମିଳନୀର ଉଦ୍ଦେଶ୍ୟ ଓ ଆକାଂକ୍ଷା ଉତ୍ତମରୂପେ ସର୍ବପ୍ରଥମେ ନିରୂପିତ ନ ହେଲେ କେବଳ କାର୍ଯ୍ୟ ପରିଚାଳନାରେ ନୀରସ ନିୟମରେ କିଛି ଫଳ ହେବ ନାହିଁ ।

ଅନେକେ ମନେକରନ୍ତି, ବିଚ୍ଛିନ୍ନ ଓଡ଼ିଆଭାଷୀ ପ୍ରଦେଶମାନଙ୍କର ମିଳନ ଘଟାଇବା ସମ୍ମିଳନୀର ଲକ୍ଷ୍ୟ । ଓଡ଼ିଆଭାଷୀ ପ୍ରଦେଶର ମିଳନ ସମ୍ମିଳନୀର ଅବାନ୍ତର କ୍ରିୟା । ଖଣ୍ଡ ବିଖଣ୍ଡିତ ହେଲେ ସୁଦ୍ଧା ଓଡ଼ିଆ ଜାତି ବର୍ତ୍ତମାନ ବିଦ୍ୟମାନ ରହିଅଛି । ରାଜନୈତିକ ବିଚ୍ଛେଦ ତାହାର ବାହ୍ୟ କଳେବରର ବିଭଙ୍ଗ ଘଟାଇ ଅଛି ମାତ୍ର; କିନ୍ତୁ ଜାତୀୟ ଆତ୍ମା ଅଦ୍ୟାପି ଅକ୍ଷୁର୍ଣ୍ଣ । ମୁଁ ଅନ୍ୟାନ୍ୟ ଘଟଣାରେ କହିଥାଏ, ଆଜି ମଧ୍ୟ କହୁଅଛି, ବ୍ୟକ୍ତିଗତ ଆତ୍ମା ଯେପରି ଅବିନଶ୍ୱର, ଜାତୀୟ ଆତ୍ମା ସେହିପରି । ଜାତୀୟ ଆତ୍ମା ରାଜନୈତିକ ବା ଅନ୍ୟ ଯେ କୌଣସି ପ୍ରକାର ବାହ୍ୟ ଅସ୍ୱାଭାବିକ ପ୍ରଭାବରେ ସହଜରେ ଲୋପ ପାଏ ନାହିଁ । ଉତ୍କଳ ସମ୍ମିଳନୀ ଓଡ଼ିଆ ଜାତିର ଏହି ଅବିନଶ୍ୱର ଆତ୍ମାର ଇନ୍ଦ୍ରିୟ ଗ୍ରାହ୍ୟମୂର୍ତ୍ତି; ସୁତରାଂ ଆମ୍ଭମାନଙ୍କ ଜାତୀୟ ଆକାଙ୍କ୍ଷାର ପ୍ରକାଶକ ।"

"ଭଗବାନ୍ ଏକ ଏକ ଜାତି ନିମନ୍ତେ ସ୍ୱତନ୍ତ୍ର ଏକ ଏକ ଦେଶ ନିରୂପଣ କରିଥିଲା ପରି ଜଣାଯାଏ; ମାତ୍ର ଏକ ଦେଶ ବା ପ୍ରଦେଶର ଜାତିବିଶେଷ କାଳକ୍ରମେ ଅନ୍ୟ ଜାତିର ସଂସ୍ରବରେ ଆସିଲେ ସେହି ଦେଶର ଭାଷା, ଆଶା, ଶିକ୍ଷା, ସଭ୍ୟତାରେ ପରିବର୍ତ୍ତନ ଘଟିବା ସ୍ୱାଭାବିକ । ଏହି ନବ ପରିବର୍ତ୍ତିତ ସଭ୍ୟତା ସେ ଦେଶର ତଥା ସେ ଦେଶର ନୂତନ ଏବଂ ପୁରାତନ ଅଧିବାସୀଙ୍କର ସଭ୍ୟତା ହୁଏ ।

ପ୍ରାକୃତିକ ଅବସ୍ଥାନ ଦ୍ୱାରା ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ; ଆଜିକାଲିର ରାଜନୈତିକ ଓଡ଼ିଶା ନୁହେଁ । ସ୍ୱାଧୀନ ଓଡ଼ିଶା ଯେଉଁ ପର୍ଯ୍ୟନ୍ତ ବିସ୍ତୃତ ଥିଲା—ଗଙ୍ଗାନଦୀଠାରୁ ଗୋଦାବରୀ ପର୍ଯ୍ୟନ୍ତ । ମହୋଦଧିଠାରୁ ମଧ୍ୟପ୍ରଦେଶର ପର୍ବତଶ୍ରେଣୀ ପର୍ଯ୍ୟନ୍ତ ସେହି ବିଶାଳ ରାଜ୍ୟ ଯେ ଏକ ସ୍ୱତନ୍ତ୍ର ପ୍ରାକୃତିକ ଭୂଖଣ୍ଡ—ଏହା ଦେଖିବା ମାତ୍ରେ ଯେ କେହି ସ୍ୱୀକାର କରିବାକୁ କୁଣ୍ଠିତ ହେବନାହିଁ । ଓଡ଼ିଆମାନେ ଏଠାରେ ବାସକରି ନିଜର ଏକ ସ୍ୱତନ୍ତ୍ର ସଭ୍ୟତା ଗଠନ କରିଥିଲେ । କାଳକ୍ରମେ ଅନ୍ୟାନ୍ୟ ଧର୍ମ ଓ ଜାତିର ଲୋକେ ସ୍ଥାନାନ୍ତରରୁ ଆସି ସେମାନଙ୍କ ସଙ୍ଗରେ ଏକତ୍ର ବାସ କରିଅଛନ୍ତି । ଏହି ବିଭିନ୍ନ ଶ୍ରେଣୀର ସମ୍ମିଳନରେ ଆଜି ଓଡ଼ିଆ ସଭ୍ୟତା ପ୍ରଭାବିତ ହୋଇଅଛି—ଏହା ବୋଲିବା ବାହୁଲ୍ୟ ।"

ଉପସଂହାରରେ ଗୋପବନ୍ଧୁ କହିଥିଲେ—"ଭାଇମାନେ, ମୁଁ ମୋର ବକ୍ତବ୍ୟ ପ୍ରାୟ ଶେଷ କରିଅଛି । ଜାତୀୟ ଜୀବନର ବିଭାଗ ଅନେକ, କାର୍ଯ୍ୟ ଅସୀମ । ସେ ସବୁର ବିସ୍ତୃତ ଆଲୋଚନା ଏଠାରେ ଅସମ୍ଭବ । ଏକ କଥାରେ ଏହା ଆମ୍ଭମାନଙ୍କ ଜାତୀୟ ଆତ୍ମାର ବିରହ, ଜାତୀୟ ଆକାଙ୍କ୍ଷାର ବିକାଶ । ଜାତୀୟ ଉନ୍ନତି ଏହାର କାର୍ଯ୍ୟ; ସାମ୍ୟ,

ମୈତ୍ରୀ, ସ୍ୱାଧୀନତା ଏହାର ମନ୍ତ୍ର । ସ୍ୱାର୍ଥତ୍ୟାଗ ଏବଂ ଧର୍ମ ବିଶ୍ୱାସ ଏହାର ଭିତ୍ତି । ପୂର୍ଣ୍ଣପ୍ରାଣ ମାନବିକତା ଏହାର ଲକ୍ଷ୍ୟ । ଆମ୍ଭମାନଙ୍କ ଜାତୀୟ ପ୍ରବୃତ୍ତି ଏବଂ ଜାତୀୟ ଇତିହାସ ଏହି ଦିଗରେ ଅଙ୍ଗୁଳି ନିର୍ଦ୍ଦେଶ କରି କର୍ତ୍ତବ୍ୟ ଦେଖାଇ ଦେଉଅଛି । ଏ ସାଧନ ପଥରେ ଆମ୍ଭମାନଙ୍କ ପ୍ରଥମ କାର୍ଯ୍ୟ ଶିକ୍ଷା ଓ ସଂଘ । ନାନା କ୍ଷେତ୍ରରେ ଓ ନାନା ଉପାୟରେ ଶିକ୍ଷା ପ୍ରଚାର କରି ଜାତୀୟ ହୃଦୟରେ ନୂତନ ଭାବ ଜଗାଇବାକୁ ହେବ । ସକଳ ପ୍ରକାର ଜାତୀୟ କାର୍ଯ୍ୟ ସାଧନ ନିମନ୍ତେ ସଂଘ ଗଠନ କରିବାକୁ ହେବ । ଏଥିରେ କେହି କଡ଼ଛଡ଼ା ଦେଇ ରହିଲେ ଚଳିବ ନାହିଁ । ଯେ କୌଣସି କାରଣ ଘଟି ପଛକେ; ଏହି ସମ୍ମିଳନୀରୁ ଦୂରରେ ରହିବା ଉତ୍କଳ ସନ୍ତାନ ମାତ୍ରର ଅକର୍ତ୍ତବ୍ୟ । ଉତ୍କଳମାତା ପ୍ରତ୍ୟେକ ସନ୍ତାନଠାରୁ ତାଙ୍କ କର୍ତ୍ତବ୍ୟ ଆଶା କରନ୍ତି । କାର୍ଯ୍ୟକ୍ଷେତ୍ରରେ ନାନା ଘଟଣାରେ ମତାନ୍ତର ଘଟିପାରେ; ଏମନ୍ତ କି ମନାନ୍ତର ମଧ୍ୟ ଘଟିପାରେ । ତା'ବୋଲି ମା'ଙ୍କର ଓ ପୂଜାପୀଠରୁ କେହି ଅନ୍ତର ହେଲେ ତାହା ଉତ୍କଳମାତାଙ୍କ ପକ୍ଷରେ ଦାରୁଣ ଆଘାତ ହେବ । ତୁମ୍ଭେ ଛାଡ଼ିପାର, ମାତ୍ର ମନେରଖ ମା' ତୁମକୁ ଛାଡ଼ିବେ ନାହିଁ । ନନ୍ଦିଘୋଷ ରଥ ନିଶ୍ଚୟ ଲକ୍ଷ୍ୟ ସ୍ଥାନକୁ ଯିବ । ବର୍ଣ୍ଣ, ଧର୍ମ, ଜାତିଭେଦ ଭୁଲି, ବ୍ୟକ୍ତିଗତ ଅଭିମାନ, ଅହଂକାର ପଛକୁ ପକାଇ ଆସ ଭାଇ, ସମସ୍ତେ ଏ ରଥ ଦଉଡ଼ି ପ୍ରାଣପଣେ ଟାଣିବା ।

ଆମ୍ଭମାନଙ୍କ ସମ୍ମୁଖରେ ଅସଂଖ୍ୟ କାର୍ଯ୍ୟ ରହିଅଛି । ଜୀବନର ଯେକୌଣସି ଦିଗକୁ ଦେଖିଲେ ତାହା ବିସ୍ତୃତ ପତିତପ୍ରାନ୍ତର ପରି ପଡ଼ିଅଛି । ଢେଲା ଶୋଧ କରିବାକୁ ହେବ । ଭୂମି ଚଷିବାକୁ ହେବ, ଖତ ଦେବାକୁ ହେବ, ପରେ ମଞ୍ଜି ବୁଣିବାକୁ ହେବ । ଏଥିରେ ପୁଣି କେତେକ ବାଧା ବିପତ୍ତି ଅଛି—ସେ ସବୁ ସହିବାକୁ ହେବ । ଏଥିରେ ବିଶ୍ରାମ ନାହିଁ, କର୍ମର ବିରାମ ନାହିଁ । ଜାତୀୟ କାର୍ଯ୍ୟ ପଥରେ ସାଧନା ସହଜ ନୁହେଁ । "ଦୁର୍ଗମ ପଥ ଏ ଭଜନ, ଭୟେ ଭଜିଲେ ଯୋଗୀଜନ ।" କିନ୍ତୁ ଏହାବୋଲି ଅବିଶ୍ୱାସ, ଅବସାଦ, ନିରାଶାରେ ବିଜଡ଼ିତ ହେବାର ନୁହେଁ । ଭାଇ, ବହୁ ଦୂରରେ ଏ ଯେ ନୀଳଚକ୍ର ଉପରେ ଧ୍ୱଜା ଉଡ଼ୁଅଛି; ତାହାରି ଉପରେ ଲକ୍ଷ୍ୟ ରଖି ଚାଲିବାକୁ ହେବ । ପଥ ଅନେକ ସ୍ଥଳେ ଦୁସ୍ତର ଓ ଦୁର୍ଗମ । "ଗଲେ ପଛେ ଯାଉ ଜୀବ, ଯାହା ହେବ ଦେଖାଯିବ ।"

ଏହି ପଣ ରଖିବାକୁ ହେବ । ଏ ଦୁସ୍ତର କର୍ମ ପଥରେ କେତେ କର୍ମୀଙ୍କୁ ଆତ୍ମବଳି ଦେବାକୁ ହେବ । ଏହାହିଁ ଆମ୍ଭମାନଙ୍କର ଆତ୍ମଲଭର ଉପାୟ । ଭୟ ନାହିଁ, ନିରାଶା ନାହିଁ, 'ମାଭୈ ମାଭୈ' ନାଦରେ ଉତ୍କଳ ଜନନୀ ଆମ୍ଭମାନଙ୍କୁ ଆଶୀର୍ବାଦ କରୁଛନ୍ତି । ବିଶ୍ୱାସ କର, ଓଡ଼ିଆ ଜାତି ବହୁ ଅତ୍ୟାଚାର, ନାନା ବାଧାବିଘ୍ନ ଭିତରେ ଆଜ ଯେ ବଞ୍ଚିଅଛି—ଏହା ନିରର୍ଥକ ନୁହେଁ । ମହାଭାରତର ସମସ୍ୟାରେ ଏହାର ଗୁରୁ କର୍ତ୍ତବ୍ୟ ଅଛି । ଭାରତର ସିଦ୍ଧ ସାଧକ ପ୍ରଚ୍ଛନ୍ନ ମହାପୁରୁଷମାନେ ଏହି ଉତ୍କଳ ଭୂମିରେ ଯେଉଁ ତତ୍ତ୍ୱ ଅନୁସନ୍ଧାନ କରିଅଛନ୍ତି ତାହା ଏପର୍ଯ୍ୟନ୍ତ ପୂର୍ଣ୍ଣ ପ୍ରକଟିତ ହୋଇନାହିଁ । ଉତ୍କଳ

ସନ୍ତାନ, ବର୍ତ୍ତମାନ ତୁମ୍ଭର ପ୍ରଚାରର ପାଳି ଆସିଅଛି; ସେବାର ସମସ୍ତ ଉପସ୍ଥିତ ହୋଇଅଛି । ଯାଅ, ଗ୍ରାମେ ଗ୍ରାମେ ବୁଲ, ଦେଶେ ଦେଶେ କହ, ଲୋକ କାନେ କାନେ ଉତ୍କଳର ଶୁଭ ସମାଚାର । କେତେ ସାଧୁ ସନ୍ନ୍ୟାସୀଙ୍କୁ ଏ ପୁଣ୍ୟଭୂମି ଯୁଗେ ଯୁଗେ ଆକର୍ଷଣ କରିଆଛି । ବର୍ତ୍ତମାନ ଏହାର ସନ୍ତାନମାନଙ୍କର ସନ୍ନ୍ୟାସୀ ହେବାର ବେଳ ଆସିଅଛି । ସନ୍ନ୍ୟାସୀର ସାଧନା ଏବଂ ତପସ୍ୟା ବିନା ଜଗତରେ କେବେ କୌଣସି ଗୁରୁକର୍ତ୍ତବ୍ୟ ସାଧିତ ହୋଇ ପାରିନାହିଁ । ସନ୍ନ୍ୟାସୀର ସାଧନାରେ ହିଁ ଆମ୍ଭମାନଙ୍କ ଜାତିର ମୁକ୍ତି ।"

ଏହି ବକ୍ତବ୍ୟରେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱର ଏକ ମହାନ ଦିଗ ପ୍ରକଟିତ ହୋଇ ପାରିଛି । ଏ ଦେଶ ପାଇଁ ସେ ଯେ କେତେ ନିବିଡ଼ ଭାବରେ ଭାବୁଥିଲେ—ତାହା ତାଙ୍କ ଭାଷଣରୁ ସ୍ପଷ୍ଟ । ସେ ଯାହା ଶେଷ ବାକ୍ୟରେ କହିଥିଲେ ସନ୍ନ୍ୟାସ ଜୀବନ ଯାପନ କରି ଦେଶର ସେବା ନକଲେ ଦେଶ ଓ ଜାତିର ଉଦ୍ଧାର ସମ୍ଭବ ନୁହେଁ; ଏହା ସେ ନିଜ ଜୀବନରେ ଓ କାର୍ଯ୍ୟରେ ଦେଖାଇ ଦେଇଛନ୍ତି । ଏପରିକି ନିଜ ସ୍ତ୍ରୀ ସହିତ ମିଳନରେ ଗୋପବନ୍ଧୁ ସମସ୍ତ ବୈଦିକ ଓ ଶାସ୍ତ୍ରୀୟ ସଂଯମ ମଧ୍ୟ ରକ୍ଷା କରୁଥିଲେ । ସେ ଉଚ୍ଛୃଙ୍ଖଳ ନ ଥିଲେ ବା ଜୀବନରେ ସ୍ତ୍ରୀ ଓ ସଂସାରକୁ ବଡ଼ ମନେ କରିନଥିଲେ । ବର୍ଷେ ଛ' ମାସରେ କେବେ ଥରେ ଘରକୁ ଆସିଲେ ଆସନ୍ତି ସାଙ୍ଗସାଥୀଙ୍କ ସହିତ । ଦେଶ କଥା ଆଲୋଚନା ହେଉ ହେଉ ରାତି ତିନି ପହର ହୁଏ । ଘରେ ଶୋଇବାକୁ ମାତୃପ୍ରତିମା କମଳାନାମ୍ନୀ ବାରମ୍ବାର ଆସି ବାଧ୍ୟ ନ କଲେ ସେ ସହଜେ ବନ୍ଧୁମେଳ ଓ ଆଲୋଚନାରୁ ଉଠି ଆସନ୍ତି ନାହିଁ । (ଏକଥା ବହୁ ଦିନଯାଏ ତାଙ୍କ କମଳାନାମ୍ନୀ ଅନ୍ୟମାନଙ୍କୁ କହୁଥିଲେ ।) ଏ ଦେଶର ବହୁ ମହାତ୍ମାଙ୍କ ସମ୍ପର୍କରେ ଏହିପରି ସାଧନାର ବାଣୀ ଶୁଣାଯାଏ । ଆଜି ଓଡ଼ିଶାର ସ୍ୱାତନ୍ତ୍ର୍ୟ ଓ ଭାରତର ସ୍ୱାଧୀନତା ଏହିପରି ବହୁ ତ୍ୟାଗୀ ସନ୍ନ୍ୟାସୀ ଓ ଆଦର୍ଶବାଦୀ ସାଧକଙ୍କ ସାଧନାପୂତ ଜୀବନର କରୁଣ କାହାଣୀର ପରିଚ୍ଛେଦ ମାତ୍ର । ଗାନ୍ଧି, ତିଲକ, ଲଜପତ, ଅରବିନ୍ଦ ପ୍ରମୁଖ ଯେଉଁଭଳି ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ ଗୋପବନ୍ଧୁ ସେହିପରି ସାଧନାର ଆଲୋକ-ବର୍ତ୍ତିକା ଓଡ଼ିଶାରେ ଜାଳିଥିଲେ । ଓଡ଼ିଶାରୁ ଭାରତ ଆଡ଼କୁ, ଓଡ଼ିଆ ପରିବାରରୁ ସମଗ୍ର ହିନ୍ଦୁ ଜାତି ଆଡ଼କୁ ତାଙ୍କ ସାଧନାର ପ୍ରାଣବାନ୍ ବନ୍ୟା ପ୍ରବାହିତ ହୋଇଥିଲା । ବିଶ୍ୱବ୍ୟାପକତାରେ ଏବଂ ଏକ ମହାନ୍ ମାନବ ସମାଜର ସେବାରେ ସେ ନିଜକୁ ଉତ୍ସର୍ଗ କରିଥିଲେ । ସେଥିରେ ସଙ୍କୀର୍ଣ୍ଣ ପ୍ରାଦେଶିକତା ବା ତୀବ୍ର ଏକଦେଶଦର୍ଶିତା ନ ଥିଲା । ତାଙ୍କ ବ୍ୟକ୍ତିତ୍ୱର ଏହି ଦିଗ ଧର୍ମ ଓ ସେବାର ପୂଜାପୀଠରେ ମହିମାନ୍ୱିତ । ତେଣୁ ସମଗ୍ର ଓଡ଼ିଆ ଜାତି ସେ ଅବିନାଶୀ ଆତ୍ମାର ଆଜି ଜୟକାର କରୁଅଛି ।

## ବନ୍ୟା, ବନ୍ୟା ପ୍ରଳୟର ବନ୍ୟା !

ଓଡ଼ିଶା ବଢ଼ି ମରୁଡ଼ିର ଦେଶ । ନଦୀମାତୃକ ଦେଶରେ ଏ ବିପତ୍ତି ଚିରନ୍ତନ । ବର୍ଷା ପ୍ରବଳ ହେଲେ ନଈରେ ଆସେ ବଢ଼ି—ନଦୀ ସ୍ଫୀତ ହୋଇଉଠେ । ଧନ ଜୀବନ ନାଶକରି ଅତଳ ଦରିଆରେ ଓଡ଼ିଶାର ସମ୍ପଦଶ୍ରୀକୁ ଅଜାଡ଼ିଦିଏ । ପୁଣି ବର୍ଷା ନ ହେଲେ ଓଡ଼ିଶାର ଗଡ଼ଜାତ ଅଞ୍ଚଳ ଗଛପତ୍ର ନିଆଁରେ ଲୁହା ତାତି ନାଲି ହେଲାପରି ପାଚିଯାଏ, ଜଳିଯାଏ ବିଲରୁ ଶସ୍ୟର ସମ୍ପଦ । ସବୁଜଶ୍ରୀ ହୁଏ ପଳାତ । ଯୌବନ ହୁଏ ହୃଦ୍‌ଗତ । ତା'ପରେ ସ୍ୱାଭାବିକ ଭାବରେ ଆସେ ଦୁର୍ଭିକ୍ଷ । ଲୋକ ପେଟ ବିକଳରେ ଭିଟାମାଟି ଛାଡ଼ନ୍ତି, ଜୀବନ ହାରନ୍ତି । ଏମିତି ଶହେ ବର୍ଷ ତଳେ ଏ ଦେଶକୁ ଗ୍ରାସ କଲା ନଅଙ୍କ ଦୁର୍ଭିକ୍ଷ । ୧୮୬୬ ମସିହା । ଖାଇବାକୁ ନ ପାଇ ମାଳ ମାଳ ଲୋକ ମଲେ । ମାଆର ମାଟି ଛାଡ଼ି ଛତରରେ ପଶିଲେ, ବିଦେଶ ଭୂଇଁରେ ନିଖୋଜ ହେଲେ । ଅନେମା ଅପମୃତ୍ୟୁରେ ଜୀବନ ହାରିଲେ । ତାର ହିସାବ ନାହିଁ । ଉତ୍କଟ ଜଠରର ଆର୍ତ୍ତନାଦରେ ମଣିଷ ଶିଶୁ ମୁହଁରୁ ଖାଦ୍ୟ ମଣିଷ ଅପହରଣ କଲା । କଅଁଳ ଆସୁଥିବା ଗଛପତ୍ର ବି ବାଦ ଗଲାନି । ଶେଷକୁ ମଣିଷ ମାଂସ ମଣିଷ ଖାଇ କ୍ଷୁଧା ପ୍ରଶମିତ କରିବାକୁ ଚେଷ୍ଟା କଲା । ଓଡ଼ିଶାର ଅର୍ଥନୀତି ଭୁଶୁଡ଼ି ପଡ଼ିଲା । ଜୀବନଲୋଭୀ ମଣିଷର ମରଣ-ଯନ୍ତ୍ରଣାରେ ଆକାଶ ପବନ କାରୁଣ୍ୟରେ ଭରିଗଲା । ଜାତିର ଭାଗ୍ୟରେ ସେ ବନ୍ୟାମରୁଡ଼ିର ଆର୍ତ୍ତନାଦ ଆଉ କାହିଁ ଶୁଣା ନାହିଁ । ପ୍ରଳୟର ବନ୍ୟାପରି ବଢ଼ି ପଛେ ପଛେ ମରୁଡ଼ି । ଶାଗପଟାଳି ପରି ମାଟିର ମଣିଷ ମରି ଶୋଇଲେ ।

ଆଜି ପରିସ୍ଥିତିର ଚେହେରା ବଦଳିଛି । ଆଜି ଧୋଇମରୁଡ଼ିରେ ସରକାରୀ ତତ୍ପରତା ଅଧିକ ବଢ଼ିଛି । କେହି ମରିପଡ଼ିବା ପୂର୍ବରୁ ଗୋପବନ୍ଧୁଙ୍କ ଚେତାବନୀ—"ରାଜ୍ୟର ପାତକ ରାଜା ମୁଣ୍ଡରେ" ଶାସକଙ୍କୁ ବିବ୍ରତ କରୁଛି । ସାହାଯ୍ୟର ସୁଅ ଛୁଟୁଛି; କିନ୍ତୁ ଗୋପବନ୍ଧୁଙ୍କ ଜୀବନକାଳରେ ପରିସ୍ଥିତି ଅଲଗା ଥିଲା । ଏକେତ ବିଦେଶୀ ସରକାର ଦେଶୀଲୋକଙ୍କ ଦାବୀ ପ୍ରତି ବୀତସ୍ପୃହ, ଉଦାସୀନ । ଦ୍ୱିତୀୟରେ ରାଜ୍ୟରେ ଯୋଗାଯୋଗପାଇଁ ଗମନାଗମନର ଘୋର ଅଭାବ । ବିଚରା ଦୀନଦୁଃଖୀ ବନ୍ୟାପ୍ରପୀଡ଼ିତଙ୍କୁ ଆଖି ତରିଟି ଆକାଶକୁ ଯୋଡ଼ହାତରେ ଚାହିଁବାକୁ ହେଉଥିଲା । ଗୋପବନ୍ଧୁଙ୍କ ପରି କେହି ବଦାନ୍ୟ ସମାଜସେବୀ ସେ ଆର୍ତ୍ତଚିତ୍କାର ହୁଏତ ଶୁଣୁଥିଲେ । ଶକ୍ତିମତେ ଆଗେଇ ଆସୁଥିଲେ । ଗୋପବନ୍ଧୁଙ୍କ ଜୀବନର ଅର୍ଦ୍ଧେକ ଭାଗ ଏଇ ବନ୍ୟାଦୁଃଖ ବିରୁଦ୍ଧରେ ସଂଗ୍ରାମଶୀଳ । ଜାତିର ଇତିହାସରେ ବନ୍ୟାର ଏ ନିଷ୍ଠୁର ଆରଣ୍ୟ କ୍ଷୁଧାର ଅନ୍ତ ନାହିଁ । ସଂଗ୍ରାମୀ ସୈନିକ ପୁଣି ବେପରୁଆ ଭାବରେ ଜୀବନ-ଯୁଦ୍ଧରେ ମରୁଆଲି । ହସକାନ୍ଦ, ହା-ହୁତାଶ, ବାଧା ବିସମ୍ବାଦ, ବ୍ୟଥା ଅବସାଦର ସେ କୋଡ଼ିଏଟି ବର୍ଷ ଭୁଲିବାର ନୁହେଁ । ଓଡ଼ିଶା ଇତିହାସରେ ବନ୍ୟା ପ୍ରତିରୋଧର ସୁବର୍ଣ୍ଣ ତାରିଖ ଲେଖିଯାଇପାରେ;

କିନ୍ତୁ ଦାସ ଗୋପବନ୍ଧୁଙ୍କର ସେ କାରୁଣ୍ୟ, ସେ ଆର୍ତ୍ତି ନିଭିବାର ନୁହେଁ ।

୧୯୦୭ ମସିହା ବର୍ଷାକାଳ । ବ୍ରାହ୍ମଣୀରେ ପ୍ରବଳ ବଢ଼ି ଆସିଲା; କିନ୍ତୁ ଖରସ୍ରୋତା ଧରିଲା ପ୍ରଳୟଙ୍କରୀର ରୂପ । ସବୁବର୍ଷ ଗ୍ରୀଷ୍ମ ଋତୁ ବେଳକୁ ବର୍ଷା ଆସିଲେ ମହାନଦୀ ତଥାପି ତାର ଉପର ସିକତାଳ ଗ୍ରୀବ ଦେଖାଇ ଦାନ୍ତନିକୁଟି ପଡ଼ିଥାଏ । ବ୍ରାହ୍ମଣୀ ଦୁଇକୂଳ ଖାଇ ନ ଥାଏ, କିନ୍ତୁ ଧ୍ୱଂସ ହୋଇଉଠେ ଖରସ୍ରୋତା । ପ୍ରଖର ବେଗରେ ଜଳସ୍ରୋତ ବନ୍ଧବାଡ଼ ଭାଙ୍ଗି ମାଡ଼ିଗଲେ । ହଜାର ହଜାର ଏକର ଜମିର ଗଛ ଫସଲ କୋହ୍ଲମାଣ, ପଟୁମାଟିର ପୃଷ୍ଠତଳେ ଆତ୍ମହତ୍ୟା କରେ । ଏ ପ୍ରତିବର୍ଷର କଥା । ଖରସୁଆଁ ପ୍ରଖରକ୍ଷୁଧିତା । ବିସ୍ମୟହୀନ ଏ ନଦୀର ଯାତ୍ରା ।

ସେ ବର୍ଷ ଯାଜପୁର ଓ କେନ୍ଦ୍ରାପଡ଼ା ସବ୍‌ଡିଭିଜନ ବ୍ରାହ୍ମଣୀ ଓ ଖରସୁଆଁ ବଢ଼ିରେ ବୁଡ଼ିଲା । ବଢ଼ି ପଛେ ପଛେ ଦୁର୍ଭିକ୍ଷ ଆସିଲା । ପୁଣି ଫସଲ ଫଳେଇବା ପାଇଁ ବିହନର ଅଭାବ । ଗରିବ ଦୁଃଖୀ ଚାଷୀ ବର୍ଷରେ ଛ'ମାସ ପେଟପୂରି ଖାଇବାକୁ ପାଏ ନାହିଁ । ପୁଣି ବଢ଼ି ଆସିଲେ ହାତ-ଗୋଡ଼ ବାନ୍ଧି ଘରଦ୍ୱାର ସମସ୍ତ ସମ୍ବଳ ସେ ନିଃଶେଷ କରେ । ଗୋପବନ୍ଧୁ ଏ ସମୟରେ ମାତ୍ର ଓକିଲାତି ପାଶ୍ କରି କଟକରେ ଓକିଲାତି କରୁଥା'ନ୍ତି । କର୍ମମୟ ଜୀବନର ଏ ଉଦ୍‌ଯୋଗ ପର୍ବ । ମଗାଯାଇ କରି ଚୂଡ଼ା ଚାଉଳ ସଂଗ୍ରହ କଲେ । କଲେଜଛାତ୍ରଙ୍କୁ ସାଙ୍ଗରେ ନେଇ ଏ ଅଞ୍ଚଳରେ ସାହାଯ୍ୟଦାନ କାମ ଆରମ୍ଭ କଲେ । ନିଜେ ଗାଁକୁ ଗାଁ ବୁଲି ନିଜ ହାତରେ ବାଣ୍ଟିଲେ ସାହାଯ୍ୟ । ଯାଜପୁରର ନୂଆହାଟ, ବରୁଆଁ, ହରିପୁର ଅଞ୍ଚଳ ଜଳମଗ୍ନ । ଗୋପବନ୍ଧୁ ବେପରୱା । ବନ୍ୟାପ୍ରଳୟ ବିରୁଦ୍ଧରେ ତାରୁଣ୍ୟର ଏ ଯୁଦ୍ଧଘୋଷଣା ଅପ୍ରତିହତ ରହିଲା । ବନ୍ୟା ଏ ଥର ହାର ମାନିଲା । କେନ୍ଦ୍ରାପଡ଼ା ଅଞ୍ଚଳ ଏ ବନ୍ୟାଦ୍ୱାରା ଅତ୍ୟନ୍ତ କ୍ଷତିଗ୍ରସ୍ତ ହୋଇଥିଲା । କେତେକ କଲେଜଛାତ୍ରଙ୍କୁ ନେଇ 'କେନ୍ଦ୍ରୁ ୟଙ୍ଗ୍ ଉତ୍କଳ ଆସୋସିଏସନ' ନାମକ ଗୋଟିଏ ଅନୁଷ୍ଠାନ ଗଢ଼ି ତରୁଣ ଆଇନଜୀବୀ ଗୋପବନ୍ଧୁ କଟକରେ ଘର ଘର ବୁଲି ଭିକ୍ଷା ମାଗିଲେ । ଏହି ସାହାଯ୍ୟ ପାଣ୍ଠି ଚୂଡ଼ା, ଚାଉଳ, ଲୁଗା ଧରି କେନ୍ଦ୍ରାପଡ଼ା ଯାଇଥିଲେ । ତାଙ୍କ ଆହ୍ୱାନରେ ତତ୍କାଳୀନ ଉତ୍କଳର ବିଶିଷ୍ଟ ନେତା ଶ୍ରୀ ମଧୁସୂଦନ ଦାସ ଏହି ଅଞ୍ଚଳ ପରିଦର୍ଶନ କରିଥିଲେ ।

ଏହି ସମୟରେ ବଙ୍ଗ-ବିହାର-ଓଡ଼ିଶା ସମ୍ମିଳିତ ପ୍ରଦେଶର ଲେଫଟେଲାଣ୍ଟ ସାର୍ ଏଣ୍ଡ୍ରୁ ଫ୍ରେଜର କଟକକୁ ଆସିଥିଲେ ଓ ମଧୁବାବୁ ତାଙ୍କୁ ସାକ୍ଷାତକରି ବିପନ୍ନ ଲୋକଙ୍କ ସକାଶେ ସରକାରଙ୍କ ସାହାଯ୍ୟ ପାଇଁ ଦାବୀ ଜଣାଇଥିଲେ; କିନ୍ତୁ ପରିସ୍ଥିତିକୁ ଅଯଥା ଅତିରଞ୍ଜିତ କରିଯାଇଛି ବୋଲି ଅଭିଯୋଗ କରି ଫ୍ରେଜର୍ ସାହେବ କିଛି ପ୍ରତିକାର କଲେନାହିଁ । କଟକ ମ୍ୟୁନିସିପାଲିଟି ପଡ଼ିଆରେ ସରକାରଙ୍କ ଉଦାସୀନତାର ପ୍ରତିବାଦପାଇଁ ଏକ ସାଧାରଣ ସଭା ଡକା ହୋଇଥିଲା । ଘଟଣାକ୍ରମେ ବିଲାତ ପାର୍ଲିଆମେଣ୍ଟର ସଭ୍ୟ ମି. ନେଭିନ୍‌ସନ୍ ଏହି ସଭାରେ ଉପସ୍ଥିତ ଥିଲେ । ବନ୍ୟାବିପନ୍ନ ଅଞ୍ଚଳରୁ କେତେଜଣ

ଅସ୍ଥିକଙ୍କାଳସାର ଅନାହାରୀ ଲୋକଙ୍କୁ ଏ ସବୁକୁ ଅଣାଯାଇଥିଲା । ଗୋପବନ୍ଧୁ ସେମାନଙ୍କୁ ଦେଖି ଦୀର୍ଘ ଦୁଇଘଣ୍ଟା କାଳ ଏଡ଼େ କରୁଣ ସ୍ୱରରେ କ୍ରନ୍ଦନ କରିଥିଲେ ଯେ, ସଭାସ୍ଥ କେହି ଅଶ୍ରୁରୋଧ କରି ପାରିଲେ ନାହିଁ । ସ୍ୱୟଂ ନେଭିନ୍‌ସନ୍ ସାହେବ ରୁମାଲରେ ଆଖି ପୋଛୁଥିଲେ । ତଥାପି ଫ୍ରେଜର୍ ସାହେବଙ୍କ ପାଷାଣ ହୃଦୟ ତରଳିଲା ନାହିଁ । ସରକାରଙ୍କ ପକ୍ଷରୁ କୌଣସି ପ୍ରକାର ସାହାଯ୍ୟ ମିଳିଲା ନାହିଁ । ଦେଶବାସୀଙ୍କ ଅଯାଚିତ ଦାନ ଏହି ସମୟରେ ବିପନ୍ନ ଲୋକଙ୍କ ପାଇଁ ଏକମାତ୍ର ଭରସା ଥିଲା ।

୧୯୦୯ରେ ଗୋପବନ୍ଧୁ ସତ୍ୟବାଦୀରେ କର୍ମମୟ ଜୀବନଯାତ୍ରା ଆରମ୍ଭ କଲେ । ଦେଶ ସେବାର ମହାନ୍ ବର୍ତ୍ତିକା ଏଠାରେ ଜଳିଉଠିଲା । ସେବା ଓ ତ୍ୟାଗର ମନ୍ତ୍ରରେ ସେ ନିଜେ ସାରଥି ଓ ପରେ ସତ୍ୟବାଦୀ ଶିକ୍ଷକଗଣ ସମସ୍ତେ ଦୀକ୍ଷିତ ହେଲେ । ଛାତ୍ରମାନେ ଏଇ ବାଟର ପଥିକ ମାତ୍ର । ବିରାମହୀନ ଯାତ୍ରା ପଥରେ ସତ୍ୟବାଦୀ ସମୟର ସମସ୍ତ ଖଣ୍ଡିତ ବିଦ୍ରୂପକୁ ଉପହାସ କରି ଏ ଜାତିପାଇଁ ଏକ ନୂଆ ଖସଡ଼ା ପ୍ରସ୍ତୁତ କଲା । ବ୍ୟଥା ଓ ବିଭବର ବିଭିଣୀକୁ ଆପଣାର କରି ମଣିଷ ପଣିଆର ପରୀକ୍ଷା ଦେଲା ।

ପୁଣି ସେହି ବନ୍ୟା । ୧୯୧୧-୧୨ ମସିହା । ସତ୍ୟବାଦୀ ନିକଟବର୍ତ୍ତୀ ପୁରୀ ଜିଲ୍ଲାର ଶ୍ରେଷ୍ଠ ବଡ଼ ଗାଁ ଦଣ୍ଡା ଭାର୍ଗବୀ ସ୍ରୋତଧାରରେ ବିପନ୍ନ ହେଲା । ଗୋପବନ୍ଧୁଙ୍କ ନେତୃତ୍ୱରେ ସତ୍ୟବାଦୀର ଛାତ୍ରମାନେ ଗାଁ ଗାଁ ବୁଲି ଚୂଡ଼ା ଗୁଡ଼ୁଲ ବାଣ୍ଟିଲେ । ପୁରୀ ଜିଲ୍ଲାର କୋଠଦେଶ ଅଞ୍ଚଳରେ ତିନି ବର୍ଷ ଧରି ଏଇ ଦୁରବସ୍ଥା ।

ସତ୍ୟବାଦୀ ବିଦ୍ୟାଳୟର ଛାତ୍ରାବାସରେ ରାତିରେ ତାଙ୍କ ଅଧୀର କାନ୍ଦଣା ଶୁଭେ । ଅବୋଧ ଶିଶୁଟିପରି କଇଁକଇଁ ହୋଇ ସେ କାନ୍ଦୁଥାନ୍ତି । ବର୍ଷାର ସ୍ୱରରେ ତାଙ୍କ କାରୁଣ୍ୟ ମିଶିଯାଉଛି । କେଉଁଠି କେଉଁ ଜାଗାରେ ସେ ବନ୍ୟା ପ୍ରପୀଡ଼ିତ କେଉଁ ଦୁଃଖୀ ଦରିଦ୍ରକୁ ଦେଖି ଆସିଥିଲେ । ଘରେ ଚାଳ ଥିଲା ନଥିଲା । କିଏ ପଡ଼ିଥିଲା ଗଛମୂଳେ । ଆହା – ସେମାନେ ଏ ବର୍ଷାରେ ତିନ୍ତିବୁଡ଼ି ଯାଉଥିବେ । ଛୁଆଟିମାନେ ମା' କୋଳରେ ଥାଇ ବର୍ଷାରେ ହେଉଥିବେ ଜଡ଼ସଡ଼ । ହେମଶୀତଳ । ଆଖିକୁ ତନ୍ଦ୍ରା ଆସେନା । ଗରିବ ଦୁଃଖୀର ଆର୍ତ୍ତିରେ ତାଙ୍କ ପେଟ ଗୋଳେଇ ଯାଉଥାଏ ।

୧୯୧୮ ମସିହା । ସେ ବର୍ଷ ଚିଲିକା ଭିତରେ ଜନବସତି ଅଞ୍ଚଳ ପାରିକୁଦ ଓ ମାଲୁଦରେ ଦୁର୍ଭିକ୍ଷ ପଡ଼ିଲା । ସେତେବେଳେ ବର୍ଷାଋତୁ; ଅଥଚ ଆକାଶରେ ମେଘର ଚିହ୍ନ ନାହିଁ । ବିଲରେ ଧାନଗଛ ଠିଆ ହୋଇଥାଏ । ପୋକ ଖାଇ ଯାଉଥାନ୍ତି । ସେ ବର୍ଷ ଏପରି ଅକାଳ ପଡ଼ିଥାଏ ଯେ, ଲୋକେ କହୁଥାନ୍ତି – "ଏ ବର୍ଷ ଚିଲିକାରେ ଆମେ ମାଛର ରୂପ ବି ଦେଖୁନାହୁଁ" । ଅସ୍ଥି କଙ୍କାଳସାର ହୋଇ ଲୋକେ ଦୋହଲୁଥା'ନ୍ତି । ଶେଷରେ ଘାସ ଓ କଅଁଳ ପତ୍ର ସିଝେଇ ଖାଇଲେ । ଗାଁ ଗୁଡ଼ିକ ଯୁବକ ଭେଣ୍ଡାମାନେ ବିଦେଶ ପଳାଇଲେ । ଗାଁରେ ଖାଲି ସ୍ତ୍ରୀଲୋକ, ଶିଶୁ, ଅକର୍ମଣ୍ୟ ବୃଦ୍ଧ ଓ ବୃଦ୍ଧା । ତେରଦିନ ଦିନକାଳ ଗୋପବନ୍ଧୁ ସେଠାରେ ବୁଲି ବୁଲି ଲୋକଙ୍କ ଅବସ୍ଥା ଦେଖିଲେ । ଲୋକମାନେ ଲୁଣମାରି ଜୀବିକା

ରକ୍ଷିବାକୁ ଜଗର କଲେ । ପାରକୁଦ ରାଜା ବ ସେଥିରେ ସାହାଯ୍ୟ କଲେ । ଗୋପବନ୍ଧୁ ସେତେବେଳେ ବିହାର-ଓଡ଼ିଶା କାଉନସିଲର ସଦସ୍ୟ, ସରକାରଙ୍କୁ ସେ ଏ ସମ୍ବନ୍ଧରେ ବହୁ ପ୍ରଶ୍ନ ପଚାରିଥିଲେ ଓ ସାହାଯ୍ୟ ବ୍ୟବସ୍ଥା କରାଇଥିଲେ ।

## ଇତିହାସର କରୁଣ ଉପହାସ-୧୯୧୯

୧୯୧୯ ମସିହା ଆଷାଢ଼ ମାସରେ ଓଡ଼ିଶାର ଉପକୂଳ ଅଞ୍ଚଳରେ ଘୋର ବର୍ଷା ହେଲା । ବିଶେଷତଃ ପୁରୀଜିଲ୍ଲାର ନଦୀଗୁଡ଼ିକ ୧୯୧୮ର ବୃଷ୍ଟିହୀନ ବରଷ ପରେ ଭୟଙ୍କର ରୂପ ଧାରଣ କଲେ । ଭାର୍ଗବୀ ଓ କୁଶଭଦ୍ରାରେ ପ୍ରବଳ ବନ୍ୟା ମାଡ଼ିଆସିଲା । ଗାଁ ଗଣ୍ଡା ବଢ଼ିରେ ବୁଡ଼ିଲା । ଗତବର୍ଷର ଅନାବୃଷ୍ଟି, ପୁଣି ଏ ବର୍ଷର ଅତିବୃଷ୍ଟିରେ ଲୋକଙ୍କ ସଞ୍ଚିତ ସମ୍ବଳ ଶେଷ ହୋଇଗଲା । କଟକଜିଲ୍ଲା ଅନ୍ତର୍ଗତ କେନ୍ଦ୍ରାପଡ଼ା ଓ ଅଳି ଥାନାର ୩ନମ୍ବର ଇଉନିୟନ ଅନ୍ତର୍ଗତ କେତେକ ଗ୍ରାମର ଅଧିବାସୀଙ୍କ ମିଳିତପତ୍ର (ଗୋପବନ୍ଧୁଙ୍କ ପାଖକୁ) ଏ ଚିଠି ଲେଖିଲେ—"ଆମ୍ଭେମାନେ ସନ ୧୩୩୬ ସାଲ ଆପଣଙ୍କ ଚରଣ ଓ ସକ୍ରରେ ବସି ରହିଗଲୁ । ଏଠାରେ ଦୁର୍ଭିକ୍ଷ ଓ ଆଷାଢ଼ ମାସରୁ ଜମି ଜଳପୂର୍ଣ୍ଣ ହୋଇ ରହିଥିବାରୁ ମଜୁରୀ ମିଳୁନାହିଁ । ଆମ୍ଭେ ଗରିବ ଲୋକମାନେ କଂସାବାସନ ବିକଯାକ ଏଣିକି ନିରୁପାୟ ହୋଇ ଅନ୍ନ ଅଭାବରେ ଦୁଇ ତିନିଦିନ ଉପବାସ ରହି ମରିବା ଅବସ୍ଥାରେ ପଡ଼ିଛୁ । ଏ ଅବସ୍ଥା ସରକାର ତରଫରୁ କେହି ଦେଖୁନାହାନ୍ତି । ଆପଣଙ୍କୁ ଜଣାଇଲୁ । ଥରେ ଆସି ଦେଖ । ଆପଣଙ୍କୁ ଚାହିଁ ଚାହିଁ ଅମ୍ଭେମାନେ ମରିଯାଉଅଛୁ ।" ତା ୨୬ । ୮ । ୧୯ । କଟକ ଜିଲ୍ଲାର ଏ ଚିଠିଠାରୁ ପୁରୀ ଜିଲ୍ଲାର ଚିତ୍ର ଆହୁରି ଭୟଙ୍କର, ଆହୁରି ମର୍ମନ୍ତୁଦ । ଗୋପବନ୍ଧୁଙ୍କ ଏକାନ୍ତ ବିଶ୍ୱସ୍ତ ଅନୁଚର ଶ୍ରୀ ରାମ ଦାସଙ୍କ ସ୍ମୃତିର ଏକ ଛିନ୍ନପୃଷ୍ଠାରୁ ଓଡ଼ିଆ ସାହିତ୍ୟର ବରେଣ୍ୟ ଔପନ୍ୟାସିକ ଶ୍ରୀ ଗୋପିନାଥ ମହାନ୍ତି ସେ ଚିତ୍ରର ରୂପ ଦେଇଛନ୍ତି । "କ'ଣ ସେ କୋଠଦେଶ ବଢ଼ି; ସେମିତିକ ମାଟିର ପତ୍ତା ନାହିଁ । ଯୁଆଡ଼େ ଚାହିଁଲେ ଖାଲି ପାଣି । ଆଖି ଯେତେଦୂର ଯିବ ଖାଲି ପାଣି । ଖିଲଟ ପଟାପରି ପାଣି ଲମ୍ବିଛି । ଆକାଶରେ ଚଢ଼େଇ ଉଡ଼ି ଉଡ଼ି ଯିବ । ପକ୍ଷୀ ଘୋଳହେଲେ ବସିବାକୁ ସ୍ଥାନ ନାହିଁ । ଘର ଭାଙ୍ଗି-ପଡ଼ି ଚଡ଼ିହୋଇ ଯାଇଛି । କେତେଗଛ ଉପୁଡ଼ି ଯାଇଛି । ବିଲ, ବାଡ଼, ସଡ଼କ, ଦାଣ୍ଡସବୁ ବୁଡ଼ି ରହିଛି । କେତେ ଗୋରୁ, ଗାଈ, ଛେଳି, ମେଣ୍ଢା ଭାସିଯାଉଛନ୍ତି ତାର କଳନା ନାହିଁ । କେଉଁ ମଣିଷ କେଉଁଠି ପଡ଼ି ରହିଛି, ପାଣିରେ ଭାସୁଛି କି କାଦୁଅରେ ଲାଗିଛି ତାର ଲେଖା ନାହିଁ । ମଡ଼ା ଖାଇବାକୁ ବିଲୁଆ କୁକୁର ନାହାନ୍ତି । ସେମାନେ ବି ପାଣିରେ ବୁଡ଼ି ମରିଛନ୍ତି । ମୁର୍ଦ୍ଦାର ଭାସୁଛି, ପଚୁଛି; ସଢ଼ୁଛି । ସେହି ଚେତାବୁଡ଼ା ପାଣିର ପ୍ରଳୟ ଭିତରେ ଦୂରରେ ଦୂରରେ ଦିଶିବ ଅଗାଏ ଟାପୁ କଳାକଳା ଗୁଳିପରି । ପାଖକୁ

ଗଲେ ବାଣ ହେଉଥିବ । ବେକଯାକେ ବୁଡ଼ି ରହିଥିବା ଚୋଟା; ସେ କରେ ଢିପ, ଢିପ ଗାଆଁରୁ ଫାଳେ ଫାଳେ । ଅତଡ଼ାରେ ଆଉଜି ରହିଥିବ ସେଆ ଖଇରିଆ ପାଣି । ପୋଚକା ଟୋଲକା ମୁର୍ଦ୍ଦାରଗୁଡ଼ିକ ମଣିଷଙ୍କର, ଗୋରୁଗାଈଙ୍କର । ହାତଗୋଡ଼ ଫୁଲି ଫୁଲି ଗଛ ଡାହ୍ନ ମୋଟ । ଚହ୍ନି ହେବନାହିଁ ଯେ ପ୍ରାଣୀ ଦିନେ ମଣିଷ ହୋଇ ଚାଲି ଚଳୁଥିଲା, ଘର କରୁଥିଲା । ଯେ କେଇଟି ଜୀବନ ଯେବେ ରହିଥିବେ, ସେ କେଉଁ ନଡ଼ିଆ ଗଛ ଉପରେ, ବାଙ୍କି ଭୁସୁଡ଼ି ପଡ଼ିଥିବା ଘର ଚାଳ ଉପରେ, ଢିପ ଉପରେ । ଯେତୁ ପଡ଼ିଥିବ, ପାଟି କରିବାକୁ ଜୁ' ନାହିଁ । ଡଙ୍ଗାଟିଏ ଦେଖିଲେ ସେମାନେ ବେକେ ଗୁଡ଼ାଏ ପାଣିଯାଏ ପଶି ମାଡ଼ି ଆସନ୍ତି । ପହଁରି ପହଁରି ମାଡ଼ିଆସନ୍ତି, ଅନ୍ତ ବୁଦ୍ଧି ସବୁ ଶକ୍ତି ଠୁଳକରି ପାଟିକରି କାନ୍ଦି କାନ୍ଦି ଡାକ ପାରନ୍ତି । ରଖ, ରଖ, ଆସ, ଆସ । ଉପରୁ ଦଇବର ବରଷା । ରୁହାକୁ ରୁହା । ପବନ ଗାଉ ଗାଉ ଗରଜେ । ମଣ୍ଡ ଅରିଯାଏ । ଯେମିତିକି ଯାହା ଯେଉଁଠି ଟିକିଏ ଟିକିଏ ଜୀବନ ଅଛି, ମଣିଷ ଜନ୍ତୁଙ୍କ ଦେହ ଭିତରେ ଉଷୁମ ଅଛି, ସେତିକ ବି ଶେଷ ନ ହେଲେ ବଢ଼ି ବରଷାର ମନ ଶାନ୍ତ ହେବନାହିଁ । ପାଣି ଯେପରିକି ମାଟି ଗୋବର ଗୋଳା ଗୋଳ । ପବନରେ ନାକଫଟା ସଢ଼ା ଗନ୍ଧ । ପେଟରୁ ଭାତ ଉଠି ଆସୁଛି । ଆଖି ଆଗରେ ଜଳାଶ୍ରୁବ । କେଉଠି ଥିରି ଶୋଇଛି, କେଉଁଠି କୁଦାମାରି ଡେଇଁଛି ଧାଉଁଛି, ଟାପୁ ଉପରେ ଓଲଟ ପାଲଟ ହୋଇ ପଡ଼ିଥିବା ଆଉଜିଥିବା ଚାଳଗୁଡ଼ାକ, ପଞ୍ଜରା ହାଡ଼ ପରି ବାଉଁଶ ଗୁନ୍ଥା ଗୁନ୍ଥି । ଫୁଲାଏ ଫୁଲାଏ ନଡ଼ା । କୁଢ଼ କୁଢ଼ ଭୁସୁଡ଼ାକାନ୍ଥ । ତା ତଳେ କେଉଁ ଅନ୍ଧ-ସନ୍ଧରେ କାଦୁଅ ଉପରେ, କେଉଁଠି ଘର ଚଟାଣରେ ଚେର ଦେଇ ମାଡ଼ିଥାଏ ପୋଖରୀକୁ ଖସି ଆସିଥିବା ବାଳଡ଼ି ଦଳ, କେଉଁଠି ଜୀବନ ବଞ୍ଚାଇବା ଲାଗି ସାପ ବିଲୁଆ ବି ମୁଣ୍ଡ ଗୁଞ୍ଜି ଥା'ନ୍ତି; ତଥାପି ସେଠି ବଞ୍ଚିରହିଥାଏ ମଣିଷ । କିଏ ସୁକୁସୁକୁ ହୋଇ ମରୁଥାଏ । ଜର କାଶରେ ଧଇଁସଇଁ, ବୋହିଯାଉଥିବା ହଇଜାରେ କିଏ ନିସ୍ପନ୍ଦ, କିଏ କାଦୁଅ ପାଣିରେ ପିଲା ଜନ୍ମ କରିଛି, କେଉଠି ମରିପଡ଼ିଥିବା ମା'ଥନରେ ଓଠଦେଇ ଚୂଚୂମୁଛି ଛୁଆଟିଏ । ଆଉ ଆଖିରୁ ଲୁହ ମରିଛି, ଖନ ବାଜିଛି; ହାଉ ହାଉ ହୋଇ କାନ୍ଦିବାକୁ ଥାଆନ୍ତି ହାଡ଼ ଚମର ମଣିଷ ପଲ ପଲ । ତାଙ୍କର ଧୈର୍ଯ୍ୟ ନାହିଁ, ଆଶା ନାହିଁ, ବଳ ନାହିଁ । ଖାଲି ମରଣକୁ ଅପେକ୍ଷା । ସେ ମରଣ ଆସି ଓଟାରି ନେବ ପାଣି ଆଉ ଟିକିଏ ବଢ଼ିଲେ; ବରଷା ଆଉ ଦି ଦିନ ଗାଳିଲେ ।" ଭୋକ ଉପାସ ଦେହକୁ ହଇଜା ଆକ୍ରମଣ କରେ । ଲୋକେ ଟଳିପଡ଼ୁଥା'ନ୍ତି—ଗଛ କାଟିଲାପରି—ଦପୁ ଦପୁ, ଗୁହୁଁ ଗୁହୁଁ ।

ସେଇଠି ଗୋପବନ୍ଧୁଙ୍କ ଡଙ୍ଗା ଲାଗେ । ଦୁଃଖୀ ଦରିଦ୍ରର ପ୍ରାଣର ସାଥୀ ଗୋପବନ୍ଧୁ ଡହଳ ବିକଳ ହୁଅନ୍ତି । ମଡ଼ାପାଖକୁ ଧାଇଁ ଯା'ନ୍ତି । ସୁକୁ ସୁକୁ ହେଉଥିବା ମନ୍ତୁକୁ ଆଦରରେ ଠାକୁରଙ୍କୁ ଡାକିବାକୁ ବୁଝାଇ ଚୂଡ଼ା ଗଣ୍ଡିଏ ଦିଅନ୍ତି । ସୁଜି ଦି'ଟା ଦିଅନ୍ତି । ସବୁବେଳେ ତାଙ୍କ ଆଖିରୁ ଲୁହଧାର ଛୁଟୁଥାଏ । ଭଗବାନଙ୍କୁ ଡାକୁଥା'ନ୍ତି । ଚୂଡ଼ା-ଚାଉଳ, ଲୁଗାପଟା ଯାହା ଯେଉଁଠି ସଂଚୟ କରିଥାଆନ୍ତି, ବାଣ୍ଟନ୍ତି । ସାଙ୍ଗରେ ଥା'ନ୍ତି ନୀଳକଣ୍ଠ,

ହରିହର ଓ ସତ୍ୟବାଦୀର କେତେକ ଗ୍ରନ୍ଥ । ନୀଳକଣ୍ଠ ହଇଜା ରୋଗୀଙ୍କୁ ହୋମିଓପ୍ୟାଥି ଔଷଧ ଦିଅନ୍ତି । ପାରୁ ପର୍ଯ୍ୟନ୍ତ ଲାଗିପଡ଼ି ଅଭିଯାନ କାମ କରନ୍ତି । ନିଜର ଦେହପା' ଭୁଲି, ରୋକ ଉପାସରେ ଲାଗିଥା'ନ୍ତି ସେଇ କାମରେ । ଖିଆପିଆ ପଚ୍ଛରେ କିଏ ? ଗୋଟିଏ ଗୋଟିଏ ରାତି, ଗୋଟିଏ ଗୋଟିଏ ଦିନ, ମୁଢ଼ି କନ୍ଦମୂଳ ଖାଇ ବେଳ କଟିଯାଏ । ସବୁବେଳେ ତାଙ୍କ ମନ ଉଚ୍ଚାଟ । ଆଗକୁ ଆଗକୁ ଯିବେ । କେଉଁଠି ପାଟି ଶୁଭୁଛି । ସେଠାରେ କିଏ ସାହାଯ୍ୟପାଇଁ ଡାକ ଛାଡ଼ୁଛି । କେଉଁଠି ଘରଗୁଡ଼ା ଭାସିଯାଇ ଗଛରେ ଲାଗିଛି । ସେ ଚାଳ ଉପରେ ଲୋକେ ବସି ନାରାୟଣଙ୍କୁ ଡାକନ୍ତି । କେଡ଼େ କେଡ଼େ ଗାଈ ଭାସି ଯାଉଛି । ଜୀଅନ୍ତା ମଣିଷ ଗଛ ଡାଳକୁ ଜୀବନ ବିକଳରେ ଧରି ଭାସିଯାଉଛି । ଗୋପବନ୍ଧୁ ସେଠାରେ ଡଙ୍ଗା ଲଗାନ୍ତି । ପ୍ରାଣର ବ୍ୟସ୍ତତାରେ ଅଥୟ ସବୁବେଳେ । ମୁହୂର୍ତ୍ତେ ବିଶ୍ରାମ ନାହିଁ । ବଢ଼ି ପାଣିରେ ନାହା ଚାଲୁଥାଏ । ଦିନଯାକ ବର୍ଷା । ତଳ ଉପର ପାଣି ଏକାକାର ହେଉଥାଏ । ଗୋପବନ୍ଧୁ ଡଙ୍ଗାର ଚାଳ ଉପରେ ବସି ପାଖ ଓ ଦୂର ସବୁ ଅଞ୍ଚଳକୁ ନିରୀକ୍ଷଣ କରନ୍ତି । କାଳେ କେଉଁଠି କିଏ ସାହାଯ୍ୟ ପାଇଁ ହାତ ଠାରୁଥିବ । ଦେହରେ ଖଣ୍ଡେ ଚଦର । ମୁଣ୍ଡରେ ଖଣ୍ଡେ ସାଦା ଗାମୁଛା । ଓଦା ଜୁଡ଼ୁବୁଡ଼ୁ । ସାହାଯ୍ୟ ଧନ ସରିଗଲେ ପୁଣି ଫେରନ୍ତି ସତ୍ୟବାଦୀ । ବେଳେବେଳେ ଜର ଓ ଦେହ ବଥାରେ ଦିନେ ଦି'ଦିନ ପଡ଼ିଯା'ନ୍ତି । ସ୍ୱପ୍ନ, ଶୟନ ଓ ଚେତନାରେ ସବୁବେଳେ ବିପନ୍ନ ଲୋକଙ୍କ କଥା ଚିନ୍ତା । ଲେଖାଲେଖି କରନ୍ତି ଉପରକୁ, ସରକାରଙ୍କ ପାଖକୁ । ଖବରକାଗଜରେ ବିପନ୍ନ ଲୋକଙ୍କ କଥା ଲେଖି ଛାପନ୍ତି । ଦେହଟିକେ ଭଲ ହେଉଣୁ ନ ହେଉଣୁ ପୁଣି ବାହାରନ୍ତି ବଢ଼ି ଅଞ୍ଚଳକୁ । ଏହା ମଧ୍ୟରେ ସତ୍ୟବାଦୀରେ ବେସରକାରୀ ସାହାଯ୍ୟ ସବୁ ଠୁଳ ହୋଇ ଯାଇଥାଏ । ଗୋପବନ୍ଧୁ ଅନ୍ୟ ଏକ ଅଞ୍ଚଳକୁ ଯିବାକୁ ସଜ ହୁଅନ୍ତି । ଦିନଯାକ ରାତିଯାକ ବଢ଼ିବେଳେ କାଦୁଅ ପାଣିରେ ବୁଲୁଥାଆନ୍ତି; କେତେବେଳେ ଡଙ୍ଗାରେ, କେତେବେଳେ ପାଣି କାଦୁଅରେ ଚାଲି ଚାଲି । ରାତି ଅନ୍ଧାର ଭୟଙ୍କର । ଅନ୍ଧାର ବିଜବିଜି । ଆକାଶ ମେଘାଚ୍ଛନ୍ନ । ତାରା ଦିଶେ ନାହିଁ । ଦିଗ ବାରି ହୁଏ ନାହିଁ; ଠାସୁକୁ ମାରି ବାଟ ଚାଲିହୁଏ । ଠାଏ ଠାଏ ଭୂତପରି ବଡ଼ ବଡ଼ କଳା କଳା ଛାଇ ଆଉ ପବନ ହୁଲୁପା, ଅସରାକୁ ଅସରା ବର୍ଷା । ବେଳେବେଳେ କେତେ କେତେ ଦୂରରୁ ମିଞ୍ଜି-ମିଞ୍ଜି ଆଲୁଅ ହଲି ହଲି ଦେଖାଯାଏ । ଧାଇଁମୁହଁ ପାଣିରେ ଗୁଡୁ ଗୁଡୁ ଗର୍ଜନ; ସବୁବେଳେ ପଚାସଢ଼ା ଦୁର୍ଗନ୍ଧ । ଘାସ ପତର ଜୀବଜନ୍ତୁ ସବୁ ପଚି ସଢ଼ି ପାଣିରେ ଗୋଳିହୋଇ ଯାଇଛନ୍ତି । ଦେହ ଓଦା ଜଡ଼ସଡ଼ । ସବୁଠି ଓଦା ସନ୍ତସନ୍ତିଆ । ଦିନବେଳେ କେବେ କ୍ୱଚିତ୍ ଶୁଖିଲରେ ନାଆ ଲାଗିଲେ କାହା ଚୁଲିରେ ରୋଷେଇ ବସେ, ନହେଲେ ନାଇଁ । ଚୂଡ଼ା ମୁଢ଼ିରେ ଚଳିଯାଆନ୍ତି । ସାଥୀ ଅନୁଚର ରାମ ବିଶ୍ରାମ ନେବାକୁ ଜିଗର କଲେ ସେ କୁହନ୍ତି—"ରାମା ରୁ ବୁଝୁନୋଉଁ । ଏ ଦେହଟା କ'ଣ ମୁଁ ? ଏଇଟା ମୋ ବାହନ, ଯେମିତି ଗୋଟାଏ ଘୋଡ଼ା । ଯାକୁ ମନେ ଭଗବାନ ଦେଇଛନ୍ତି କାମ କରେଇବ

ବୋଲି । ତାକୁ ଗୃହ୍ଣାଟାରେ ସୁଷ୍ଟିରେ ପୋଷୁଥିବ କାହିଁକି ? କାମ କରି ନ ପାରିଲେ ସେ ବଳେ ଅଚଳ ହୋଇଯିବ । କଥାରେ ଅଛି—"କାର୍ଯ୍ୟଂ ବା ସାଧୟେତ୍, ଶରୀରଂ ବା ପାତୟେତ ।"

ଅଖିଆ ଅପିଆରେ ବୁଲି ବୁଲି ଅନିୟମିତ ଖିଆପିଆରେ ବେଳେ ବେଳେ ଡାଇରିଆ ପୁଣି ଉପସ୍ଥିତ ହୁଏ । ହଠାତ୍ ତ ଅର୍ଶ ବେମାରି । ଅତି ଦରିଗଣ୍ଡ କରି କଷ୍ଟ ଦିଏ । ବାଲୁକେଶ୍ୱର ଆୟୁର୍ବେଦ କବିରାଜଙ୍କ ଔଷଧ ଖାଇଚାଲନ୍ତି । ନୀଳକଣ୍ଠ ବାବୁ, ଗୋଦାବରୀଶ ବାବୁ, ଆଚାର୍ଯ୍ୟ ହରିହର ଆସି ବ୍ୟସ୍ତ ହୁଅନ୍ତି । ତାଙ୍କର କିନ୍ତୁ ଦେହପାଇଁ ଖାତିର ନଥାଏ । ଖାଲି ବ୍ୟସ୍ତ ହୋଇ କୁହନ୍ତି – "ଏତେଦିନ ହୋଇଗଲା । କୁଆଡ଼େ ବାହାରି ପାରିଲି ନାହିଁ । କେତେକାମ ବାକି ପଡ଼ି ରହିଲା ।"

ବର୍ଷା କମିଲା; କିନ୍ତୁ ଦୁର୍ଭିକ୍ଷର ଆଁ ଭିତରୁ ଲୋକେ ଆତ୍ମରକ୍ଷା କରି ପାରିଲେ ନାହିଁ । ସ୍ଥାନେ ସ୍ଥାନେ ଅନ୍ନଛତ୍ର ଖୋଲିଲା; କିନ୍ତୁ ଏସବୁ ସମୁଦ୍ରକୁ ଶଙ୍ଖେ ପାଣି ପରି । ଲୋକଙ୍କ ଦୁରବସ୍ଥାର ସୀମା ନାହିଁ । ଜନତାର ଦାବୀକୁ ବଳିଷ୍ଠ ଭାବରେ ଉପସ୍ଥାପିତ କରିବା ପାଇଁ ଓ ପ୍ରଦେଶର ବଦାନ୍ୟ ଧନୀ ଲୋକଙ୍କ ଉପରେ ପ୍ରଭାବ ପକାଇ ବନ୍ୟା ଓ ମରୁଡ଼ି କାମରେ ସାହାଯ୍ୟ ଲୋଡ଼ିବା ପାଇଁ ସେ ୧୯୧୯ ମସିହା ଅକ୍ଟୋବର ୪ ତାରିଖ ବିଜୟାଦଶମୀ ଦିନ 'ସମାଜ' ନାମରେ ଖଣ୍ଡିଏ କ୍ଷୁଦ୍ର ସାପ୍ତାହିକ ପ୍ରକାଶ କଲେ । ସେଥିରେ ଧାରାବାହିକ ଭାବରେ ଦୁର୍ଭିକ୍ଷର କରାଳ ଚିତ୍ର ପ୍ରକାଶ ପାଇଲା । ନିଜେ ଗୋପବନ୍ଧୁ ସମ୍ପାଦକୀୟ ଶିରୋନାମାରେ ନିଜ ଅନୁଭୂତ ଜନିତ କରୁଣ ଦୃଶ୍ୟ ବର୍ଣ୍ଣନା କଲେ । ସରକାର ସେତେବେଳେ ଅନାହାର ଦୁର୍ଭିକ୍ଷ ଜନିତ ମୃତ୍ୟୁକଥା ସ୍ୱୀକାର କରିବାକୁ ପରାଙ୍ମୁଖ । ସରକାରୀ କର୍ମଚାରୀ, ପୋଲିସ କର୍ମଚାରୀମାନେ ମଧ୍ୟ ଅନାହାରେ ମୃତ୍ୟୁକୁ ଘୋଡ଼ାଇ ମିଥ୍ୟା ରିପୋର୍ଟ ଦେଉଥାଆନ୍ତି । ଅନ୍ନଛତ୍ରରେ ଅନ୍ନ ନପାଇ କାନ୍ଦି କାନ୍ଦି ଲୋକେ ଫେରୁଥିଲେ ମଧ୍ୟ ସାହାଯ୍ୟ କାମ ଠିକ୍ ଚାଲୁଛି ଓ ଅସୁବିଧା ହେଉନାହିଁ ବୋଲି ରିପୋର୍ଟ ଦିଅନ୍ତି । ଗୋପବନ୍ଧୁଙ୍କୁ ଏ ସବୁ ବଡ଼ ବିବ୍ରତ କରେ । ସେ ନିଜର କ୍ଷୁଦ୍ର କାଗଜଟିରେ ଯାହାସମ୍ଭବ ଦେଶର ପ୍ରକୃତ ଚିତ୍ର ଥୋଇ ସରକାରୀ ସାହାଯ୍ୟ ଅଧିକରୁ ଅଧିକ ଆଣିବାର ଉଦ୍ୟମରେ ଥା'ନ୍ତି । ୧୯୧୯ ମସିହା ଅକ୍ଟୋବର ୧୧ ତାରିଖ 'ସମାଜ'ରେ ଦୁର୍ଭିକ୍ଷ ଶିରୋନାମାରେ ପଣ୍ଡିତ ଗୋପବନ୍ଧୁ ଲେଖିଥିଲେ—"ଅନେକ ସ୍ଥାନରେ ଲୋକଙ୍କ ଅବସ୍ଥା ଶେଷ । ଯାହା ଆଶଙ୍କା କରାଯାଉଥିଲା ତାହାହିଁ ହେଲା । ପୁଅଠାରୁ ଛଡ଼ାଇ ମା' ଖାଇଯିବାର ଦେଖାଗଲା । କଆଁକନ୍ଦା, କଦଳୀଗଛର ମୂଳ, ବିଲୁଆଁତିପତ୍ର ସିଝା ଆଦି ଅଖାଦ୍ୟ ପେଟ ବିକଳରେ ଲୋକେ ଖାଇଲେ । ସେ ବି ଆଉ ମିଳୁ ନାହିଁ । ମଫସଲରେ ଅନେକ ସ୍ଥାନରେ ବିଶେଷତଃ ଧୋଇଆ ମୁଲକରେ ରାସ୍ତା ବାଟଘାଟ ସବୁଆଡ଼େ କେବଳ କଙ୍କାଳ ନେଇ ଲୋକମାନେ ଟଳମଳ ହେଉଛନ୍ତି । ସେମାନଙ୍କୁ ଦେଖିଲେ ଡର ମାଡ଼ୁଛି । ଜଣେ ଜଣେ ପଡ଼ି ମରି-ଯାଉଛନ୍ତି । ଜେଲଖାନାକୁ ଗଲେ ଖାଇବାକୁ ପାଇ ପ୍ରାଣ ବଞ୍ଚାଇବେ ବୋଲି ଜାଣିଶୁଣି

ଅନେକ କ୍ଲେଶ କରୁଛନ୍ତି । କିଣିବାକୁ ଧାନ ଚାଉଳ ମିଳୁନାହିଁ । ମଜୁରି ମିଳୁନାହିଁ । ଗ୍ରେଟ ପିଲାକୁ ମାଆ ଛାଡ଼ିଦେଇ, ସ୍ତ୍ରୀକୁ ସ୍ୱାମୀ ଛାଡ଼ିଦେଇ କିଏ କେଉଁଆଡ଼େ ଜୀବନ ବଳିଲରେ ପଳାଇଲେଣି । କେତେ ଅନାଥ ପିଲା ଏଠାଇ ସେଠାଇ ପଡ଼ି ଛଟପଟ ହେଉଛନ୍ତି । ଆଉ ଅବସ୍ଥା ଅଧିକ କଣ ହୁଅନ୍ତା ? ଭୟଙ୍କର ଦୃଶ୍ୟ ସ୍ଥାନେ ସ୍ଥାନେ ଲୋକେ ଦେଖିଲେ । ତେବେ ସୁଦ୍ଧା ଦୁର୍ଭିକ୍ଷ ହୋଇଛି ବୋଲି କହିବା ସରକାର ନାରାଜ । ସ୍ଥାନୀୟ ମା' ବାପାମାନେ ତ କେବେହେଲେ ମାନିବେ ନାହିଁ । × × × ଖଣ୍ଡେ କେଉଁଠି ବଳିଆ ଧାନ ହୋଇଛି କି ନାହିଁ, ଠାଏ ଠାଏ ଯାହା ମୁଠାଏ ଚାଉଳ ବଣ୍ଟା ହେଉଥିଲା, ତାହା ବନ୍ଦ ହେବାକୁ ବସିଲାଣି । ବସ୍ତାଠାରେ ଯେ ଅନ୍ନଛତ୍ର ପାଣ୍ଠି ଖୋଲା ହୋଇଥିଲା ତା ୨୪ । ୯ । ୧୯୧୯ ତାରିଖଠାରୁ ବନ୍ଦ ଅଛି । କାରଣ କିଛି ଜଣା ଯାଉନାହିଁ । କୌଣସିମତେ ଲୋକେ ଯଦି ବାରଣା ଚାରିଅଣା ଉଆଇଲେ ଦିନେ ଦୁଇଦିନ ବୁଲି ସେରେ ଚାଉଳ ପାଇବା ଦୁଷ୍କର । ମାଗିଖିଆଙ୍କ କଥା ବା କିଏ ପଚାରେ ?"

ଧୋଇ ପରେ ପରେ ପୁଣି ମରୁଡ଼ିର ଭୟ । ବର୍ଷା ନାହିଁ । ଏ ସମୟରେ ଗଡ଼ଜାତ ଅଞ୍ଚଳମାନଙ୍କରୁ ଅନାବୃଷ୍ଟି ନେଇ ବହୁ ପତ୍ର ଗୋପବନ୍ଧୁ ପାଇଛନ୍ତି । ଏସବୁ ପରିସ୍ଥିତିରେ ମହାଜନମାନେ ଧାନଚାଉଳ ବି ବଜାରକୁ କାଢ଼ିବାକୁ ନାରାଜ । ପୁରୀ ଜିଲ୍ଲାର କୌଣସି କୌଣସି ହାଟରେ ମୋଟା ପାଣିପଶା ଚାଉଳ ସେର ଛ' ଅଣା ସାତ ଅଣାରେ ବି ବିକ୍ରୀ ହେଲା ।

ଏସବୁ ଖବର ମଫସଲରୁ ପାଇ ଗୋପବନ୍ଧୁ ଅତି ବିଚଳିତ ହୋଇ ଲାଟଙ୍କୁ ଲେଖନ୍ତି, ମାଜିଷ୍ଟ୍ରେଟଙ୍କୁ ଲେଖନ୍ତି । ପୁଣି ଦଉଡ଼ନ୍ତି ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳକୁ । ଦେହପାଇଁ ବିଶ୍ରାମ ଲୋଡ଼ା ହେଲେ ବି ମିଳେ ନାହିଁ ।

## ବିପର୍ଯ୍ୟସ୍ତ କୋଠଦେଶ

ଥରେ କୋଠଦେଶର ଗ୍ରାମଗୁଡ଼ିକ ବୁଲିବାକୁ ବାହାରିଥା'ନ୍ତି । ଶୂନଶାନ୍ ଖାଁ ଖାଁ ବାଟ । ବାଟରେ ଏଠି ସେଠି କାଁ ଭାଁ ମଡ଼ା ବି ପଡ଼ିଥାଏ । ବଡ଼ାପଣ ସବୁ ସବୁ ହାଡ଼ ଚାରିଖଣ୍ଡ । ଚମ ଧୂଡ଼ୁକା କୋଟର ଭିତରେ ଆଖି ନିଷ୍ପ୍ରଭ । ତାସେ ଆପଣେ ଗୋଟିଏ ମଡ଼ା ପାଖରେ ଅଟକି ଯାଆନ୍ତି । ବିକଳ ହୋଇ ଚାହାନ୍ତି । ଆଖିରୁ ଅବାରିତ ଲୁହଧାର ଛୁଟେ । ବାଟରେ ପଡ଼ିଥିବା ମଡ଼ାକୁ ନିଜ ହାତରେ ଯତ୍ନରେ ଆଡ଼େଇ ଦିଅନ୍ତି । ସେଥିରେ ବିକାର ନ ଥାଏ । ସାଥିରେ ଥାଏ ରାମ ବାରିକ । ସେ ବି ସାହାଯ୍ୟ କରେ । ଗୋପବନ୍ଧୁ କହିଁ କହିଁ ହୋଇ କାନ୍ଦୁଥା'ନ୍ତି । ମଡ଼ାକୁ କଷ୍ଟ ନ ହେଲାପରି ଅତି ଧୀରେ ବାଡ଼ରେ ଆଡ଼େଇ ଥୋଇ ଦିଅନ୍ତି ।

କେଉଁଠି ଚୂଡ଼ା ଚାଉଳ ବଣ୍ଟା ହୁଏ । ଉତ୍ତରରେ ପଣ୍ଡିତ ନୀଳକଣ୍ଠ ଅଗରୁ ଗ୍ରାମଙ୍କୁ ଧରି କ୍ୟାମ୍ପ କରି ରହିଥା'ନ୍ତି । ଗୋପବନ୍ଧୁ ଆସି ତଦାରଖ କରନ୍ତି । ସାହାଯ୍ୟ ଦ୍ରବ୍ୟଧରି ଦୁଃଖୀର ଦୁଆରେ ଠିଆ ହୁଅନ୍ତି । "ମା', ଭଉଣୀ" ସମ୍ବୋଧନ କରି ସାହାଯ୍ୟ ନେବାକୁ ଡାକ ଛାଡ଼ନ୍ତି, କିନ୍ତୁ ବିବସ୍ତ୍ର ଦରିଦ୍ର ନାରୀମାନେ, ସାତସିଆଁ କୋରଟ ପିନ୍ଧିଥିବା ଗୃହିଣୀମାନେ ଆସି ପାରନ୍ତିନି । କବାଟ କଣରୁ ଉତ୍ତର ଦିଅନ୍ତି । ଦାଣ୍ଡ ପିଣ୍ଡାରେ ଦାସେ ଆପଣେ ସାହାଯ୍ୟ ଥୋଇଦେଇ ଯାଆନ୍ତି । ସତ୍ୟବାଦୀରେ ପରିଷ୍ଟ ସେମାନଙ୍କ ପାଇଁ ଲୁଗା ସଂଗ୍ରହ କରନ୍ତି । ପୁଣି ଲୋକବାକ ଧରି ଆସନ୍ତି ଲୁଗା ବାଣ୍ଟିବାକୁ । ସମସ୍ତଙ୍କ ପାଇଁ ହୃଦୟରୁ କରୁଣାର ଅମୃତକଣା ଗଳିପଡ଼େ । କେତେ କଅଁଳ ଆଶାଭରା ବାଣୀ । ଗରିବ ଦୁଃଖୀମନରେ ପଢ଼ିଆରି ଆସେ । ସେ ଭରସା ପାଏ । ସମସ୍ତେ ତାଙ୍କ ମାଆ ଭଉଣୀ ପିଲାକବିଲା । ବାଛ ବିଚାର ନାହିଁ । ପାତର ଅନ୍ତର ନାହିଁ ।

ଉତ୍ତର ଶାଖା ଲେନ୍ତ୍ରରଉର ଶ୍ରୀ ଗୌରାଙ୍ଗ ଚରଣ କାନଗୋଇ ସେ ଅଞ୍ଚଳର ନାମଜାଦା ଲୋକ । ଦାସ ଆପଣଙ୍କ ସହିତ ସେ ସାହାଯ୍ୟ ବଣ୍ଟନ କାମରେ ଯୋଗ ଦିଅନ୍ତି । ଘୋଡ଼ାରେ ଚଢ଼ି ନାଉରୀମାନଙ୍କୁ ତଗାଦା କରିଦିଅନ୍ତି । ତାଙ୍କ ଡରରେ ନାଉରୀମାନେ ଲୁଚି ପାରନ୍ତିନି । ଯେଉଁ ଆଡ଼କୁ ଦାସେ ଆପଣେ ଯିବାକୁ ଇଚ୍ଛା କରନ୍ତି ସେ ଆଡ଼କୁ ନାଆ ବାହି ନିଅନ୍ତି । ଆଉ ଜଣେ ଶ୍ରୀରାମ ଦାସ—ମଠ ମହନ୍ତ । ସେ ହଲେ ବଳଦ, ଗାଡ଼ି ଓ ଯୋଡ଼ାଏ ଲୋକ ଦେଇଥାନ୍ତି । ସାହାଯ୍ୟ କାମ ସୁରୁଖୁରୁରେ ଚାଲେ ।

## ସୃତସଜଳ ଉତ୍ତର

୧୯୧୯ ମସିହା ବନ୍ୟାରେ ପୁରୀ ଜିଲ୍ଲାର ଏହି କୋଠଦେଶ ମୂଳକ ଅନ୍ତର୍ଗତ ଉତ୍ତର ସବୁଠାରୁ ଅଧିକ ବିପନ୍ନ ହୋଇଥିଲା । ଏକଦା ନାମଜାଦା ଚାଷୀ ପରିବାରରେ ବହୁ ମଧ୍ୟବିତ୍ତ ଶ୍ରେଣୀର ଲୋକେ ମଧ୍ୟ ଖାଇବା ବିନା ଜୀବନ ହରାଇଲେ । ଗୋପ ଥାନାର ଉତ୍ତର—ଧୋଇଆ ଅଞ୍ଚଳର କେନ୍ଦ୍ରସ୍ଥଳୀ । ଏ ଅଞ୍ଚଳ ସମ୍ପର୍କରେ ଗୋପବନ୍ଧୁ ଅକ୍ଟୋବର ୧୧ ତାରିଖ ସମାଜରେ ଲେଖିଥିଲେ—"ଲୋକଙ୍କ ବଳରେ କିଛି ନାହିଁ । ଘରେ କିଛି ନାହିଁ । ପୁରୀ ଦୁର୍ଭିକ୍ଷ ସାହାଯ୍ୟ କମିଟି ତରଫରୁ ଏ ଗାଁରେ ସପ୍ତାହେ ଥରେ ମୁଠାଏ ମୁଠାଏ ଚାଉଳ ବଣ୍ଟା ଯାଉଛି । ରୋଗ ବ୍ୟାଧି କିଛି ନାହିଁ; ମାତ୍ର ବାଡ଼ି ବସନ୍ତରେ ମଲାପରି ଖାଇବା ବିନା ପ୍ରତିଦିନ ଜଣେ ଦୁଇଜଣ ମରୁଛନ୍ତି । ବହିରି ବୋଲି ଗୋଟିଏ ଅନାଥ ପିଲା—ଏହିପରି ଅନାହାରରେ ମଲା । ଚୌକିଦାର ମୃତ୍ୟୁ ରେଜିଷ୍ଟରରେ ମୃତ୍ୟୁର କାରଣ ଅନାହାର ବୋଲି ଲେଖିଥିଲା । ଥାନାରେ ପୋଲିସ ଧରିଲେ । କାଟି ଅନ୍ୟ କିଛି

ଲେଖିବାକୁ ଖବର ଚୌକିଦାର ଥାନାରେ କହିଲା । ମାତ୍ର ତା' ବା କିଏ କପରି କରିବ ? ସବ୍‌ଇନସ୍‌ପେକ୍‌ଟର ବାବୁ ମୁକୁନ୍ଦଲାଲ ମିଶ୍ର ଜଣେ ଆଚ୍ଛା ସଚ୍ଚା ଠିକଣା ଲୋକ । ନିଜ ଥାନା କାମ ଭୁଲିଇ ଗୋପ ଅଞ୍ଚଳରେ ଦୁର୍ଭିକ୍ଷ ସାହାଯ୍ୟ କାମରେ ସରିଦିନ ଲାଗି ରହିଗଲା ହୋଇ ପଡ଼ିଛନ୍ତି । ସେ ମୃତ୍ୟୁ ରେଜିଷ୍ଟରରେ କିଛି ନ ବଦଳାଇ ଶୁଣାଯାଏ ଉପରକୁ ଲେଖିଛନ୍ତି । ଏଣେ ଖବର ଚଉକିଆ ବଡ଼ ଭୟରେ ଅଛି । ଆମ୍ଭମାନଙ୍କର ଆଶା ଏ ସତକଥା ଲେଖିବା ଦୋଷରେ ତାର କିଛି ବିପଦ ହେବ ନାହିଁ ।

"ପଥ ନ ଜାଣି ଯେବେ ବୁଡ଼େ
ସେ ପ୍ରାଣୀ କେବେହେଁ ନ ପଡ଼େ ।"

ଚୌକିଦାର ବୋଧହୁଏ ସେହିଦିନଠୁ ସାବଧାନ । ଆଉ ଏଣିକି ଉତ୍ତରରେ ଅନ୍ନ କଷ୍ଟରେ କେହି ମରିବାର ଶୁଣାଯାଏ ନାହିଁ ।"

ଅର୍ଥାତ୍ ଭୋକର ଭୟରେ ଅଧିକ ମୃତ୍ୟୁ ସମ୍ବାଦ ସେତେବେଳର ପରିସ୍ଥିତିରେ ଚୌକିଦାର ଦେବାପାଇଁ କୁଣ୍ଠିତ ହେବା ସ୍ୱାଭାବିକ । ପୁଣି ସେଇ ତାରିଖ 'ସମାଜ'ରେ ପ୍ରକାଶିତ ଆଉ ଏକ ବିବରଣୀ—ଉତ୍ତରରେ ଖୁଦ୍ଦଲ ବଣ୍ଟା କାମରୁ ଫେରିଥିବା ଜଣେ ସ୍ୱେଚ୍ଛାସେବୀଙ୍କଠାରୁ ପ୍ରକାଶ—"ଗ୍ରସ୍ତଦିନ ତଳେ ଦୁଇଜଣ ସ୍ତ୍ରୀଲୋକ ଖୁଦ୍ଦଲ ନେବାକୁ ଆସୁ ଆସୁ ଗାଁ ମୁଣ୍ଡରେ ପଡ଼ି ମରିଗଲେ । ପୋଲିସ ଆସି ଦେଖିବା ପରେ ସେଠାରୁ ଲାସ୍ ଉଠିଲା । ସ୍ତ୍ରୀଲୋକ ଦୁଇଟି କେଉଁ ଗାଆଁର ଜଣାଗଲା ନାହିଁ । × × × ଏ ମାସ ୯ ତାରିଖ ସନ୍ଧ୍ୟାରେ ନାଗପୁରର ଜଣେ ଡନ୍ତ୍ରୀ ଗୋପର କାନଗୋଇ ଅଫିସ ବାରଣ୍ଡାରେ ଆସି ପଡ଼ିଲା । ସେତେବେଳକୁ ତାର ଆଉ ଗତି ନାହିଁ । ଖାଇବାକୁ ମାଗିଲା—ତାର ସେ ଅବସ୍ଥାରେ ଖାଇ ପାରିବା ଭଲି ଜିନିଷ କାହା ପାଖରେ ନଥିଲା । ଆରଦିନ ସକାଳେ ଦେଖିଲବେଳକୁ ତାହାର ଅଣସ୍ତ୍ରୁଣ ପବନ ବହିଲାଣି । ଆମ୍ଭେମାନେ ତା ମୁହଁରେ ପାଣି ଦେଇ ବଞ୍ଚାଇବାକୁ ଚେଷ୍ଟା କଲୁ । ମାତ୍ର ଘୁହୁଁ ଘୁହୁଁ ତା' ପ୍ରାଣ ଛାଡ଼ିଗଲା ।"

"ଏ ମୃତ୍ୟୁର କାରଣ କଣ ହୋଇପାରେ ?"

"ଆସିଲାବେଳେ ବାଟରେ ଖୋଲପୁରଠାରେ ଦେଖିଲୁ ସଡ଼କ ଧାରରେ ଛ' ସାତ ବର୍ଷର ପିଲାଟିଏ ପଡ଼ିଛି । ଉଠିବାକୁ ଶକ୍ତି ନାହିଁ । କଥା କହିପାରୁ ନାହିଁ । ବଞ୍ଚିଛି କି ମରିଛି ଦେଖିବାକୁ ପାଖକୁ ଗଲୁ । ଦେଖିଲୁ ଧୁକ୍ ଧୁକ୍ ହେଉଛି । ଇତି ମଧ୍ୟରେ ସେ ନିଶ୍ଚୟ ମରିଯାଇଥିବ ।"

"ଏହାକୁ କହନ୍ତି ଖାଇବା ବିନା ଗଡ଼ି ମରିବା ।"

ଗୋପରେ ଆମେମାନେ (ଭଲେଣ୍ଟିଅରମାନେ) ଯେ ଘରେ ଥିଲୁ ତା' ଆଗରେ ଦୁଇ ତିନିଦିନ ହେଲା ଗୋଟିଏ ପିଲା ପଡ଼ିଛି । ତା' ଦେହରେ ପଲେହେଲେ ମାଂସ ନାହିଁ । କେବଳ କେତେଖଣ୍ଡ ହାଡ଼ ଉପରେ ଚମ ଡଙ୍କା ହୋଇଛି । ପାଣି ତୋରାଣି ଛଡ଼ା ଭାତ ପେଟରେ ଗଳୁନାହିଁ । ଏବାଟେ ଟିକିଏ ତୋରାଣି ଦେଲେ ସେବାଟେ ଗଳି ପଡ଼ୁଛି । ସେ

ପିଲଟି ମରିଯିବଣି ।"

"ଝାଡ଼ାକଇ ନ ହେଲେ ଆମଲହୁ (Blood dysentery) ବ୍ୟତୀତ ଏ ମୃତ୍ୟୁର ଅନ୍ୟକିଛି କାରଣ ହୋଇପାରେକି ?"

"ଗୋପ ଗୋଲକୁ ଚାଉଳ କିଣିବାକୁ ସେମାନେ ଆସୁଛନ୍ତି । ସେମାନଙ୍କ ଭିତରୁ ଅନେକ କହୁଛନ୍ତି, "ବାବୁ ମୋ ଶୁଦ୍ଧି ପାଇଁ ଦେଲେ ଦ'ସେର ଚାଉଳ ଦିଅ ।" ବାସ୍ତବରେ ଅନେକ ଲୋକ ମରୁଛନ୍ତି । ସମସ୍ତେ କହୁଛନ୍ତି ଏବଂ ଜାଣୁଛନ୍ତି, ଅଧିକାଂଶ ମୃତ୍ୟୁର କାରଣ ଅନାହାର ।"

ସେତେବେଳେ ସମାଜର ପ୍ରକାଶକଙ୍କ ଉପରେ ଏହି ଖବର ପ୍ରକାଶ ଯୋଗୁଁ ସରକାରଙ୍କ ତରଫରୁ କଡ଼ା ନଜର ରଖାଯାଇଥିଲା । ସେ ସବୁର କରୁଣ ଇତିକଥା 'ସମାଜ'ର ପୃଷ୍ଠାରେ ଲେଖା ରହିଛି ।

ଉତ୍ତରର ବୃନ୍ଦି ବଗଲ ନାମକ ଜଣେ ବଡ଼ ଚାଷୀ ଗୃହସ୍ଥଙ୍କୁ ପୋଲିସ୍ ଧରି ଆଣିଲେ । ତାର ନିଜର ପ୍ରାୟ ତିରିଶ ଏକର ଜମି, କିନ୍ତୁ ଏହି ସମୟରେ ତିନିବର୍ଷ ଧରି ତା' ଜମିରେ କୌଣସି ଫସଲ ଫଳି ନଥିଲା । ବୃନ୍ଦି ବଗଲ ଆଉ ଗୋଟିଏ ଗ୍ରାମର ବିଲରୁ ମୁଗ କାରେଡ଼ୀ ଆଣିବାକୁ ଯାଇ ଗିରଫ୍ ହୋଇଥିଲା ।

ସେତେବେଳେ ହରେକୃଷ୍ଣ ମହାନ୍ତି ପୁରୀରେ ଡେପୁଟୀ କଲେକ୍ଟର ଥାଆନ୍ତି । ସେ ମକଦ୍ଦମା ବୁଝି ମାତ୍ର କେତେଘଣ୍ଟା କଚେରୀ ବନ୍ଦ ପର୍ଯ୍ୟନ୍ତ ତାକୁ ଜେଲ୍ ଆଦେଶ ଦେଇଥିଲେ । ବୃନ୍ଦି ବଗଲ ଅତି ଦୁଃଖରେ ହାତଯୋଡ଼ି ମିନତି କଲା—"ବାବୁ, କଣ କଲେ । ମତେ ପନ୍ଦରଟି ଦିନ ହେଲେ ଜେଲ ଦେଲେ ନାହିଁ । ମୁଁ ଜେଲ୍‌ରେ ମୁଠାଏ ଖାଇଥା'ନ୍ତି ।" ଏକଥା କହି ସେ କାନ୍ଦିପକାଇଲା । ହରେକୃଷ୍ଣ ବାବୁ ବି ଆଖିରୁ ଲୁହ ନିଗାଡ଼ିଲେ । ତା ବଡ଼ ଭାଇ ସିନ୍ଧି ବଗଲ ଆଗରୁ ଖାଇବା ଅବସ୍ଥାରେ କିଛିକ୍ଷଣ ପରେ ହାତ ନ ଧୋଇଣୁ ମରି ଢଳି ପଡ଼ିଥିଲା । ଅନେକ ଦିନର ଅନାହାର ପରେ ହଠାତ୍ ଜ୍ୟାମର ଖାଦ୍ୟ ତା' ପାଇଁ କାଳ ହେଲା ।

ଏସବୁ ଅତିରଞ୍ଜିତ ସମ୍ବାଦ ନଥିଲା; କିନ୍ତୁ ସରକାର ଏ ସବୁ ମାନିବାକୁ ପ୍ରସ୍ତୁତ ନଥିଲେ । ଏପରିକି କମିସନର ଗ୍ରିଣ୍ଟିଂ ସାହେବ ଉତ୍ତରର ଏ ଶୋଚନୀୟ ଦୁର୍ଭିକ୍ଷ କଥା ଆଦୌ ସ୍ୱୀକାର କରିବାକୁ ପ୍ରସ୍ତୁତ ନଥିଲେ । ସେ ସରକାରଙ୍କ ନିର୍ଦ୍ଦେଶ କ୍ରମେ ଉତ୍ତର ଗସ୍ତରେ ଆସି ସ୍ତ୍ରୀଲୋକମାନଙ୍କ ପିତଳ ଖଡ଼ୁ ଦେଖି ଓ ସେମାନଙ୍କ ପେଟରି ଦେଖି ରିପୋର୍ଟ କରିଥା'ନ୍ତି— "ସ୍ତ୍ରୀଲୋକମାନେ ସୁନାର ଖଡ଼ୁ ପିନ୍ଧିଛନ୍ତି । ବାକ୍ସରେ ବହୁପରିମାଣରେ ସୁନାରୁପା ଲୁଚାଇ ରଖିଛନ୍ତି । ସେମାନଙ୍କର କିଛି ଅଭାବ ନାହିଁ । ଗରିବ ଲୋକେ ଦୁଧ ଓ କାଣ୍ଡିଆକୁଣ୍ଡା ଖାଉଥିବାର ଦେଖି ରିପୋର୍ଟ କଲେ—"ଚାଉଳ ଅଭାବ ନାହିଁ ।"

ଏପରି ରିପୋର୍ଟରେ ଗୋପବନ୍ଧୁ ଅତି କ୍ଷୁବ୍ଧ ଓ ବିଚଳିତ ହୋଇ ପଡ଼ିଥିଲେ । ସତ୍ୟର ଏ ଅପ୍ରକାଶ ତାଙ୍କ ସରଳ ପ୍ରାଣକୁ ବଡ଼ ବ୍ୟଥିତ କରିଥିଲା । ସେ ଏହା ପରେ ପୁରେ

କଲିକତାର ଦୈନିକ ବଙ୍ଗଳା କାଗଜର ପ୍ରତିନିଧିଙ୍କୁ ଆଣି ଏ ଦୁର୍ଦ୍ଦଶାଗ୍ରସ୍ତ ଅଞ୍ଚଳ ବୁଲାଇ ଦେଖାଇଲେ ଓ କଙ୍କାଳସାର ଲୋକମାନଙ୍କର କେତୋଟି ଫଟୋ ଉଠାଇ ନେଲେ । ଏ ଫଟୋକୁ ଯଥାସମୟରେ ଆସେମ୍ବ୍ଲିରେ ଉପସ୍ଥାପିତ କରିବା ତାଙ୍କର ଲକ୍ଷ୍ୟ ଥାଏ ।

## ହାହାକାରର ପ୍ରତିକୃତି

ଏଇ କୋଠଦେଶ ଦୁର୍ଭିକ୍ଷର ମର୍ମନ୍ତୁଦ ଦୃଶ୍ୟକୁ ଯଥାଯଥ ଆଙ୍କିବାପାଇଁ ଗୋପବନ୍ଧୁ ପୁରୀର ଜଣେ ଚିତ୍ରକାରଙ୍କୁ ଆଣି କ୍ୟାନଭାସ୍ ଉପରେ ପୁରୁଷେ ଉଚ୍ଚର ଛବିଟିଏ ତିଆରି କରାଇଲେ । ଏ ଛବିର କେତୋଟି ନକଲ୍ ମଧ୍ୟ ପ୍ରସ୍ତୁତ କରାଇଲେ । ଏହି ସମୟରେ ୧୯୧୯ ମସିହା ଡିସେମ୍ବର ୨୭ ତାରିଖ ଉତ୍କଳ ସମ୍ମିଳନୀର ପୁରୀ ବିଶେଷ ଅଧିବେଶନରେ ଏ ପ୍ରତିକୃତି ଦେଖାଇ ସେ ସମଗ୍ର ସଭାକୁ ତଟସ୍ଥ କରିଦେଇଥିଲେ । ଏ ସମ୍ମିଳନୀରେ ଶ୍ରୀ ଚନ୍ଦ୍ରଶେଖର ବେହେରା ସଭାପତି ହୋଇଥିଲେ । ଏ ଛବି ଦେଖି ସେଦିନ ପୁରୀ ସଭାର ଉପସ୍ଥିତ ସମସ୍ତ ଜନତା ବିଚଳିତ ହୋଇପଡ଼ିଥିଲେ । "ସେ ଛବିରେ ଦଶଜଣଯାକେ ମଣିଷ ଥିବେ । ସମସ୍ତଙ୍କର ହାଡ଼ କଙ୍କାଳମୟ ରୂପ । ଶୁଖୁଆ ମୁହଁ । ତାଙ୍ଗପରି ହାତ ଗୋଡ଼ । କିଏ ମୁଣ୍ଡରେ ଗାମୁଛା ପକାଇଛି । କାହା ମୁଣ୍ଡବାଳ ଫୁରୁଫୁରୁ ହୋଇ ଉଡ଼ୁଛି । କିଏ ଛିଣ୍ଡା ଲୁଗା ପିନ୍ଧିଛି । ବୁଢ଼ାଟିଏ ଠେଙ୍ଗାଟିଏ ଧରି ଛିଡ଼ା ହୋଇଛି । ଉପରେ ଗଛ କି ଗଛ ନାହିଁ । ଖୋଲା ଆକାଶ । ସେମାନେ ଗୋଟାଏ ବାଲିମଝିରେ ଅଛନ୍ତି । ଶୀତଦିନ ଖରାବେଳର ଦୃଶ୍ୟ । ମଲା ଧାନଗଛ ଠିଆ ହୋଇଛି । କିଏ ମାଇପେ ସେଥିରୁ ଅଗାଡ଼ି ଝାଡ଼ୁଛନ୍ତି । କିଏ ଶାଗ ତୋଳୁଛନ୍ତି । କିଏ ନଇଁ ପଡ଼ୁଛି । କିଏ କାନ ମୁଣ୍ଡାରେ ହାତ ଦେଇ ଲୁହ ବିଗାଡ଼ୁଛି ।"

ସେ ପ୍ରତିକୃତିର ରୂପରେ ଥିଲା ହା'ହା'କାର । ସେ ଛବି ଯେପରିକି କହୁଥିଲା— "ଖଟିଖିଆ ନିସ୍ୱହ ମଣିଷ ଆମେ । ସଂସାରରେ ଜନମ ହୋଇଥିଲୁ । ସୁଖ କଣ ଜାଣିଲୁ ନାହିଁ । ଶେଷରେ ଏମିତି ନାରଖାର ହୋଇ ପୋକ ମାଛି ପରି ଝଡ଼ି ପଡ଼ିଲୁ ।"

ଏ ଛବିର ମୂଳଟିକୁ ଗୋପବନ୍ଧୁ ବିହାର ଓଡ଼ିଶା କାଉନସିଲ୍‌ରେ ନେଇ ଦେଖେଇଥିଲେ । ଅନେକ ଦିନ ପର୍ଯ୍ୟନ୍ତ ମଧୁବାବୁଙ୍କ ଘରେ ସେ ପ୍ରତିକୃତି ଝୁଲୁଥିଲା । ଏବେ ତାହା ମିଳିବା ସମ୍ଭବ ନୁହେଁ ।

## ବଜେଟ୍ ଅଧିବେଶନ—୧୯୨୦

କମିସନର ଗ୍ରୁଣ୍ଡିଂ ସାହେବ ତତ୍ପର ଦୁର୍ଭିକ୍ଷର ଏହି କରୁଣ କାହାଣୀକୁ ଅବଦମିତ କରି ମିଥ୍ୟା ବୋଲି ପ୍ରମାଣିତ କରିବାରେ ଲାଗିପଡ଼ିଲେ । ତାଙ୍କ ବିବରଣୀ ଅସହାୟ ଦୁରବସ୍ଥାକୁ ପ୍ରକଟିତ ନ କରି ସତ୍ୟର ସଂଗୋପନ କରିଥିଲା ଓ ପ୍ରାଚୁର୍ଯ୍ୟର ଏକ ମିଥ୍ୟା ପ୍ରତିଶ୍ରୁତି ଦେଇଥିଲା । ଏଥିରେ ଗୋପବନ୍ଧୁ ଅତି ବିଚଳିତ ହେବା କଥା । 'ସମାଜ' ଓ ବ୍ରହ୍ମପୁରରୁ ଶ୍ରୀ ଶଶିଭୂଷଣ ରଥଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା 'ଆଶା'ରେ ଦୁର୍ଭିକ୍ଷର କରୁଣ ଚିତ୍ର ଧାରାବାହିକ ଭାବରେ ଗୋପବନ୍ଧୁ ପ୍ରକାଶ କରୁଥା'ନ୍ତି । ପୁନଶ୍ଚ ଏ ଦୁର୍ଦ୍ଦଶାର ଫଟୋ ସେ ଉଠେଇ ନେଇଥା'ନ୍ତି ଓ ପ୍ରତିକୃତି (ତୈଳଚିତ୍ର) ତିଆରି କରାଇଥା'ନ୍ତି । ପୁରୀରେ ଏ ସମୟରେ ଥିବା ଜଣେ ବଙ୍ଗାଳୀ ଜିଲ୍ଲାପାଳ ଶ୍ରୀ ଏସ୍. ମଜୁମଦାର ଘଟଣାର ପ୍ରକୃତ ଖବର ପ୍ରକାଶ କରିବାକୁ ଚାହୁଁଥା'ନ୍ତି; କିନ୍ତୁ ଗ୍ରୁଣ୍ଡିଂ ସାହେବଙ୍କ ଭୟରେ ସେ ଏକ ପ୍ରକାର ନୀରବ ଥା'ନ୍ତି । ତତ୍ପରକୁ ଯାଇଥିବା ଜଣେ ଡେପୁଟି କଲେକ୍ଟର ମଧ୍ୟ ଭୟରେ ଜଡ଼ସଡ଼ ।

ଗୋପବନ୍ଧୁ କିନ୍ତୁ ଏ ସବୁରେ ନୀରବ ହେବା ଲୋକ ନୁହନ୍ତି । ସେ ଲୋକଙ୍କ ଖାଦ୍ୟ— ଘାସ, କଅଁଳ ପତ୍ର, ଖୁଦ ଆଦିକୁ ପୁଡ଼ାକରି ନେଇଥା'ନ୍ତି । ବିହାର ଓଡ଼ିଶା କାଉନସିଲର ବଜେଟ୍ ସେସନ୍‌ରେ ସେ ଏସବୁ ଲୋକଙ୍କ ଖାଦ୍ୟ ଦେଖାଇ ଓ ପରିସ୍ଥିତି ବର୍ଣ୍ଣନା କରି ଏକ ହୃଦୟବିଦାରକ ବକ୍ତୃତା ଦେଇଥିଲେ । ତାଙ୍କ ଆଖିରୁ ଲୁହଧାର ବହୁଥାଏ । ମିଃ ଗ୍ରୁଣ୍ଡିଂ ସାହେବଙ୍କ ରିପୋର୍ଟ ମଧ୍ୟ ସମସ୍ତ ସଦସ୍ୟଙ୍କ ସମ୍ମୁଖରେ ସେ କାନ୍ଦି କାନ୍ଦି ପଢ଼ୁଥା'ନ୍ତି— "ଓଡ଼ିଶାରେ ଯଥେଷ୍ଟ ଧାନ ହୋଇଛି । ସ୍ତ୍ରୀଲୋକମାନେ ସୁନା ଖଡ଼ୁ ପିନ୍ଧିଛନ୍ତି । କାହାର ଅଭାବ ନାହିଁ..." ଇତ୍ୟାଦି .. । ଶେଷକୁ ଗୋପବନ୍ଧୁ ସେ ବର୍ଷର ବଜେଟ୍ (୧୯୨୦-୨୧)ରେ ଗୋଟିଏ ଟଙ୍କାର କଟ୍‌ମୋସନ ଆଣିଲେ ।

ଗୋପବନ୍ଧୁଙ୍କ ଭାଷଣ ଆସେମ୍ବ୍ଲିରେ ବହୁ ସଦସ୍ୟଙ୍କୁ ଦୋହଲେଇ ଦେଇଥିଲା । ଅନେକ ସଭ୍ୟ ସ୍ପଷ୍ଟ କାନ୍ଦିବାକୁ ଲାଗିଲେ । ବିହାର-ଓଡ଼ିଶା କାଉନ୍‌ସିଲ୍‌ର ଅନ୍ୟତମ ସଭ୍ୟ ଶ୍ରୀ ଦ୍ୱାରକାନାଥ ପରେ ସତ୍ୟବାଦୀରେ ଏସବୁ ବୃତ୍ତାନ୍ତ ବର୍ଣ୍ଣନା କରିଥିଲେ ।

ସେତେବେଳେ ଏଡ୍‌ୱାର୍ଡ ଗେଟ୍ ସାହେବ ବିହାର ଓଡ଼ିଶାର ଲାଟ୍ ଥା'ନ୍ତି । ସେ ଗୋପବନ୍ଧୁଙ୍କୁ କହିଲେ—"ଆପଣ କଟ୍‌ମୋସନ୍ ପ୍ରତ୍ୟାହାର କରି ନିଅନ୍ତୁ । ଆମେ ସାଧ୍ୟମତେ ତତ୍ପର ପାଇଁ ବ୍ୟବସ୍ଥା କରିବୁ ?" ଗୋପବନ୍ଧୁ ଲାଟଙ୍କ କଥାରେ ବିଶ୍ୱାସ ରଖି କଟ୍‌ମୋସନ୍ ପ୍ରତ୍ୟାହାର କରି ଆଣିଥିଲେ ।

## ଲାଟଙ୍କ ପରିଦର୍ଶନ

ଏପ୍ରିଲ ମାସରେ ବଜେଟ୍ ସେସନ ସରିବା ପରେ ପ୍ରତିବର୍ଷ ବିହାର ଓଡ଼ିଶା ଲାଟ ସାହେବ ପୁରୀରେ ଗ୍ରୀଷ୍ମକାଳ କଟାଉଥିଲେ । ପୁରୀ ସରକିଟ୍ ହାଉସରେ ତାଙ୍କର ରହଣି ହୁଏ । ଉତ୍ତର ଯିବାପାଇଁ ସେ ଆଗରୁ କଥା କରି ସେ ବର୍ଷ ପୁରୀ ଆସିଲେ । କାଉନ୍‌ସିଲରେ ଗୋପବନ୍ଧୁଙ୍କ ପ୍ରତିବାଦର ଯଥାର୍ଥତା ସମସ୍ତ ସଦସ୍ୟ ଅନୁଭବ କରିଥିବା ଗେଟ୍ ସାହେବ ଉପଲବ୍ଧି କଲେ; ତେଣୁ ନିଜେ ଘଟଣାସ୍ଥଳକୁ ଯିବାପାଇଁ ସେ ଗୋପବନ୍ଧୁଙ୍କ ଅନୁରୋଗକ୍ରମେ ସମ୍ମତି ପ୍ରକାଶ କରିଥିଲେ ।

ଲାଟ୍ ସାହେବ ୭।୪।୧୯୨୦ ତାରିଖ ସନ୍ଧ୍ୟାରେ ପୁରୀରେ ପହଞ୍ଚି ୭ ତାରିଖ ସକାଳୁ ଗୋପ ଓ ନିମାପଡ଼ା ଆଦି ଦୁର୍ଭିକ୍ଷ ଅଞ୍ଚଳଆଡ଼େ ଯିବା ସ୍ଥିର ହେଲା । ଲାଟ ସାହେବଙ୍କ ପରିଦର୍ଶନ କଥା ଶୁଣି ଗୃର୍ଣ୍ଣିଂ ସାହେବ ଆଗରୁ ଉତ୍ତରରେ ଥିବା ଡେପୁଟି କଲେକ୍‌ଟରଙ୍କୁ ସତର୍କ କରାଇଦେଲେ । ପୁରୀର ଜିଲ୍ଲାପାଳଙ୍କୁ ଗୋପବନ୍ଧୁ ବାବୁ ପ୍ରୋଗ୍ରାମ ମାଗିଲେ । କମିସନର କିନ୍ତୁ ଏ ପ୍ରୋଗ୍ରାମର ଠିକନିଖି ବିବରଣୀ ଗୋପବନ୍ଧୁଙ୍କୁ ଜଣାଇବାକୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଆଗରୁ ମନାକରିଥିଲେ; ତେଣୁ ଦାସେ ଆପଣେ ଜଗବନ୍ଧୁ ବାବୁଙ୍କୁ ପ୍ରୋଗ୍ରାମ ବାହାରିଲା ମାତ୍ରେ ସତ୍ୟବାଦୀକୁ ପଠାଇବାକୁ କହି ସତ୍ୟବାଦୀ ଚାଲିଆସିଲେ । ସେ ଦିନ କଟକ ଓ କଲିକତା ଆଡ଼ୁ ଆସୁଥିବା ଟ୍ରେନ ଆସିବା ପରେ ଲାଟ୍‌ସାହେବଙ୍କ ପ୍ରୋଗ୍ରାମ ବାହାରିଲା । ଜଗବନ୍ଧୁ ବାବୁ ଦୁଇଜଣ ଲୋକଙ୍କୁ ଲଣ୍ଠନ ଧରାଇ ପ୍ରୋଗ୍ରାମ ସହିତ ସତ୍ୟବାଦୀ ପଠାଇଦେଲେ । ସେମାନେ ରାତି ଦୁଇଟାରେ ସତ୍ୟବାଦୀରେ ପହଞ୍ଚିଲେ ।

ଦାସେ ଆପଣେ ପୁରୀକୁ ଆସି ଲାଟଙ୍କ ସହିତ ଯିବା ସ୍ଥିର ହୋଇଥିଲା; କିନ୍ତୁ ବାର୍ତ୍ତା ପହଞ୍ଚିଲାବେଳକୁ ଦୁଇଟାବେଳେ ଗାଡ଼ି ଚାଲିଯାଇଥିଲା ।

ପୁରୀ ପର୍ଯ୍ୟନ୍ତ ପୁଆରରେ ଆସିବାକୁ ଗୋପବନ୍ଧୁ ସ୍ଥିର କଲେ । ପୁଆର ମିଳିଲା; କିନ୍ତୁ ଗଉଡ଼ ମିଳିଲେନି । ପୁରୀ ଏକ୍‌ସପ୍ରେସ ସେତେବେଳେ ସକାଳ ସାତଟାରେ ପୁରୀରେ ଲାଗୁଥାଏ । ସେଥିରେ ଆସିବା ସ୍ଥିର ହେଲା; କିନ୍ତୁ ପୁରୀରେ ଆସି ପହଞ୍ଚିଲାବେଳକୁ କାଳେ ଲାଟ୍‌ସାହେବ ପୁରୀ ଛାଡ଼ି ଦେଇଥିବେ ଆଶଙ୍କା କରି ପୁଣି ସ୍ଥିର ହେଲା—ଲାଟ ସାହେବ ରାସ୍ତାରେ ପିପିଲିଯାଏ ଆସିବେ; ତେଣୁ ସେ ସତ୍ୟବାଦୀରେ ଥାଇ ହାତ ଦେଖାଇ କାର୍ ଅଟକାଇବେ ଓ ସେଥିରେ ଯିବେ । ସକାଳୁ ନୀଳକଣ୍ଠବାବୁଙ୍କ କ୍ୟାମ୍ପ ଉତ୍ତରକୁ ପିଲମାନଙ୍କ ହାତରେ ବାର୍ତ୍ତା ପଠାଇ ଦିଆଗଲା । ରାସ୍ତା ସଫା ହେଉଥାଏ । ସରକାରୀ କର୍ମଚାରୀମାନେ ବଡ଼ ତତ୍ପର ହୋଇ ଉଠିଥାନ୍ତି । ଏଥିରୁ ଲାଟଙ୍କ ଆସିବା କଥା ଉତ୍ତରରେ ଥାଇ ମଧ୍ୟ ନୀଳକଣ୍ଠବାବୁ ଅନୁମାନ କରି ନେଇଥା'ନ୍ତି ।

ଗୋପବନ୍ଧୁ କିନ୍ତୁ ବଡ଼ ବ୍ୟାକୁଳିତ ହୋଇ ପଡ଼ିଲେ ଓ ଶେଷକୁ ପୁରୀ ଏକ୍‌ସପ୍ରେସ

ଯୋଗେ ପୁରୀରେ ଆସି ପହଞ୍ଚିଲେ । ରେଲରୁ ଓହ୍ଲାଇ ପୁଲିସମାନଙ୍କୁ ପଚାରିଲେ । ସେମାନେ କହିଲେ—"ଏଇ ଆଗେ ଆଗେ ଲାଟଙ୍କ ଗାଡ଼ି ଚାଲିଗଲା ।" ଗୋପବନ୍ଧୁ ବଡ଼ ବିଚଳିତ ହୋଇ ମାଜିଷ୍ଟ୍ରେଟଙ୍କ କୋଠିକୁ ଗଲେ । ସେତେବେଳେ ପୁରୀରେ ଯାନବାହନ ବିଶେଷ ନ ଥାଏ । କେବଳ ଏମାରମଠ ମହାନ୍ତଙ୍କର ଗୋଟିଏ ଗାଡ଼ି ଥାଏ । ମାଜିଷ୍ଟ୍ରେଟଙ୍କ ଗାଡ଼ି ନପାଇଲେ ମହାନ୍ତଙ୍କ ମଠରେ ଯିବା ସେ ସ୍ଥିର କରି ନେଲେ, କିନ୍ତୁ ମାଜିଷ୍ଟ୍ରେଟ ତାଙ୍କପାଇଁ ନିଜ କାର୍ ରଖିଯାଇଥିଲେ । ସେଇ କାର୍‌ରେ ଗୋପବନ୍ଧୁ ପଛେ ପଛେ ଉତ୍ତରରେ ଆସି ପହଞ୍ଚିଲେ ।

ସେତେବେଳକୁ ଗ୍ରିଫିଂ ସାହେବ ଲାଟଙ୍କୁ ନେଇ ପେଡ଼ିପେଟରା ଆଡ଼ମ୍ବର ଦେଖାଉଥା'ନ୍ତି ଓ ଭିତରେ ଟଙ୍କା, ରୁପା ଆଦି ଭର୍ତ୍ତି ହୋଇ ରହିଥିବା କଥା ବୁଝାଉଥାନ୍ତି । ଯୋଉଁଏ ଘର ସେ ଦେଖିଛନ୍ତି—ଏହି ସମୟରେ ଗୋପବନ୍ଧୁ ଆସି ପହଞ୍ଚିଗଲେ । ଗ୍ରିଫିଂ ସାହେବ ବଡ଼ ବିଚଳିତ ହୋଇପଡ଼ିଲେ । ଦାସେ ଆପଣେ ପେଟରା ଖୋଲି ସାଇତି ରଖିଥିବା ଚିରାକନା, ଭଙ୍ଗାବାସନ ଲାଟଙ୍କୁ ଦେଖେଇଲେ । ସ୍ତ୍ରୀଲୋକମାନଙ୍କୁ ଡାକି ତାଙ୍କ ହାତର ପିତଳଖଡ଼ୁ ଦେଖାଇ କାନ୍ଦି ପକାଇଲେ । ନୀଳକଣ୍ଠଙ୍କ ସ୍ମୃତିରୁ ଲାଟ ସାହେବଙ୍କ ପରିଦର୍ଶନ ସମୟର ଆହୁରି ଅନେକ କରୁଣ କାହାଣୀ ଉଜ୍ଜୀବିତ ହୁଏ । "ଲାଟ ସାହେବଙ୍କ ସିଦ୍ଧି ବିଶାଳ ନାମକ ଜଣେ ଖୁବ୍ ଜମିଥିବା କୃଷକ ଘରକୁ ନିଆଗଲା । ସେ ସେତେବେଳେ ମୁଠିଶାଗରେ କୁଣ୍ଡା ପକାଇ ଚୂଲିରେ ବସାଇ ଘାଣ୍ଟୁଥିଲା । ତାକୁ ଲାଟ ସାହେବ ବହୁତ କଥା ପଚାରିଲେ । ସେ କାନ୍ଦି କାନ୍ଦି କହିଲା—ତାର ବହୁତ ଜମି ଅଛି, କିନ୍ତୁ ତା ଜମିରେ ଧାନବର୍ଷ ହେବ କିଛି ନାହିଁ ।

ସେଇ ଗ୍ରାମରେ ବଇରାମାଆର ଘର । ତା'ପୂର୍ବରୁ ତା ପୁଅ ବଇରା ଘରୁ ବାହାରି ଦାଣ୍ଡକୁ ଯିବା ବାଟରେ ପଡ଼ି ମରିଯାଇଥିଲା । ବଇରା ମା' ସେଦିନ ଘରେ ନଥିଲା; କିନ୍ତୁ ଲାଟ ସାହେବଙ୍କୁ ଦେଖାଇଲା ତାର ଘଡ଼ିରେ ପାଣି ମୁନ୍ଦିଏ ରହିଛି ଓ ସେଥିରେ ଚୂଲି ଲିପା ହୋଇଛି । ଆଉ ଚୂଲିରେ କି ଘରେ କିଛି ନାହିଁ । ଘର ଉପରେ ଚାଳ ନାହିଁ ।"

ଏ ଖବର ଏକ ମିଥ୍ୟା ଗୁଜବ ବୋଲି ପରେ ପୁଲିସ୍ ନୀଳକଣ୍ଠ ବାବୁଙ୍କ ବିରୁଦ୍ଧରେ ମକଦ୍ଦମା ଦାଏର କରିଥିଲେ ।

ଏସବୁ ଦେଖି ଓ ଶୁଣି ଲାଟ ସାହେବଙ୍କ ହୃଦ୍‌ବୋଧ ହେଲା । ସେ ଘଟଣା ସ୍ଥଳରେ ମନ୍ତବ୍ୟ କଲେ—"What ought to have been done has not been done." (ଯାହା କରାଯିବା ଉଚିତ ଥିଲା ତାହା କରାଯାଇନାହିଁ) । ତାଙ୍କ ଆଦେଶ ଅନୁସାରେ ଚାଉଳ ଓ ଲୁଗା ବଣ୍ଟା ହେବାର ବ୍ୟବସ୍ଥା ହେଲା ।

ଏଥିରେ ଗରିବ ଲୋକମାନେ କିଛିଦିନ ଆଶ୍ୱସ୍ତ ହେଲେ । ଗୋପବନ୍ଧୁ ସେମାନଙ୍କ ଆଖିରେ ସ୍ୱର୍ଗର ଦୂତ ଭାବରେ ପୂଜିତ ହେବାକୁ ଲାଗିଲେ । ସମସ୍ତଙ୍କ ଅଳି ତାଙ୍କର ପାଖରେ ମଥା ପିଟୁଥିଲା । ଗୋପବନ୍ଧୁ ଆଶୁ ପ୍ରତିକାର ଲୋଡ଼ୁଥିଲେ ।

## ପାଟଣା ସଭା

୧୬ । ୪ । ୧୯୨୦ ତାରଖରେ ପାଟଣା ସହରରେ ପୁରୀ ଦୁର୍ଭିକ୍ଷ ନେଇ ଏକ ଜନସଭା ଗୋପବନ୍ଧୁଙ୍କ ପ୍ରେରଣାରେ ଆୟୋଜିତ ହୋଇଥିଲା । ବିହାର ଲୋକମାନଙ୍କୁ ପୁରୀର ଦୁର୍ଗତି ସମ୍ପର୍କରେ ସଚେତନ କରି ସେମାନଙ୍କ ସହଯୋଗ ଲୋଡ଼ିବା ଏହି ସଭାର ଉଦ୍ଦେଶ୍ୟ ଥିଲା । ଏଥିରେ ବିହାର-ଓଡ଼ିଶା କାଉନ୍‌ସିଲ ସଦସ୍ୟ ଗୋପବନ୍ଧୁ ଏକ ସାରଗର୍ଭକ ବକ୍ତୃତା ଦେଇ ପୁରୀ ଦୁର୍ଭିକ୍ଷ ସମ୍ପର୍କରେ ବିହାରବାସୀଙ୍କୁ ଅନୁଯୋଗ କରିଥିଲେ । ସେ କହିଲେ—"ଗତ ଅଗଷ୍ଟ ମାସ ବଢ଼ି ପୂର୍ବରୁ ଗୋଟିଏ ଗ୍ରାମରେ ୪୧୧ ଜଣ ଲୋକ ଥିଲେ । ବର୍ତ୍ତମାନ ସେମାନଙ୍କ ମଧ୍ୟରୁ ୧୦୮ ଜଣ ଆଉ ନାହାନ୍ତି । ୪୭ ଜଣ ମରିଛନ୍ତି ଏବଂ ୬୧ ଜଣ ଘରଦ୍ୱାର ଛାଡ଼ି କୁଆଡ଼େ ପଳାଇଛନ୍ତି । ମାଇପ ବରକୁ ଛାଡ଼ି ପଳାଇ ଯାଉଛି । ପୁଅ ମରିଗଲାବେଳେ ମାଆ କାନ୍ଦୁନାହିଁ । ନିଜେ ମାଆର ଜୀବନ ବା ଆଉ କେତେଦିନ ରହିବ ? ଗୋଟିଏ ଗ୍ରାମରେ ବର୍ଷ ମଧ୍ୟରେ ଏଗାରଜଣ ପିଲା ଜନ୍ମ ହୋଇଛନ୍ତି; କିନ୍ତୁ ଦୁଧ ଅଭାବରେ ସମସ୍ତେ ମରିଛନ୍ତି । ମାଆ ସ୍ତନରେ ଦୁଧ ନାହିଁ । ଗାଈ ଦୁଧ ବି ମିଳୁନାହିଁ । × × × × ଏତେ ନିରୀହ ଲୋକଙ୍କ ମୃତ୍ୟୁ ପାଇଁ ଦାୟୀ କିଏ ? ୧୮୬୬ର ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ଦୁର୍ଭିକ୍ଷମାନଙ୍କ ମଧ୍ୟରେ ସବୁଠାରୁ ଭୀଷଣ ବୋଲି ଶୁଣାଯାଏ । ସେହି ଦୁର୍ଭିକ୍ଷ ପରେ ଇଂଲଣ୍ଡର ଲୋକମାନେ ପ୍ରକାଶ କରିଥିଲେ—"ଏଇ ନଅଙ୍କ ଦୁର୍ଭିକ୍ଷ କାଳେ କାଳେ ଭାରତରେ ଇଂରେଜୀ ଶାସନର କଳଙ୍କ ହୋଇ ରହିବ ।" ସଂସାରରେ ବଞ୍ଚିରହିବା ମଣିଷର ପ୍ରଥମ ଓ ପ୍ରଧାନ ଅଧିକାର; ଏବଂ କେଉଁ ଲୋକ କିପରି ବଞ୍ଚି ରହିବ ତାହା ଦେଖିବା ରାଜ୍ୟ ଓ ସମାଜର ପ୍ରଥମ ଓ ପ୍ରଧାନ କର୍ତ୍ତବ୍ୟ । ରାଜ୍ୟ ଏପର୍ଯ୍ୟନ୍ତ ତାର କର୍ତ୍ତବ୍ୟ କରିନାହିଁ । ବର୍ତ୍ତମାନ ଏହା କରିବା ଆମ୍ଭମାନଙ୍କ କର୍ତ୍ତବ୍ୟ । ସହସ୍ର ସହସ୍ର ଲୋକ ନୀରବରେ ମରୁଛନ୍ତି । ଜାଣିବା ଶୁଣିବା ଲୋକଙ୍କର ସେମାନଙ୍କ ପ୍ରତି କର୍ତ୍ତବ୍ୟ ଅଛି । ବିହାର ଏବଂ ଓଡ଼ିଶା ଆପଣାର ଭାଇବନ୍ଧୁ ପରି । ଶାସ୍ତ୍ରରେ ଅଛି—"ରାଜଦ୍ୱାରେ ଶ୍ମଶାନେ ଚ ଯଃ ତିଷ୍ଠତି ସଃ ବାନ୍ଧବଃ ।" ବର୍ତ୍ତମାନ ଏହି ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକଙ୍କ ବିପତ୍ତିବେଳେ ତାଙ୍କ ପାଖେ ଠିଆହେବା ଆପଣମାନଙ୍କ କାର୍ଯ୍ୟ । ଏହାହିଁ ପଡ଼ୋଶୀ ଧର୍ମ । ଭାରତ ମହାଜାତିର ଆମେ ଦୁଇଟି ଅଙ୍ଗ । ଗୋଟିଏ ଅଙ୍ଗ ଦୁଃଖ କଷ୍ଟ ଅଭାବ ଓ ହତାଶାରେ ନିଶ୍ଚଳ ହୋଇ ପଡ଼ୁଛି । ତାକୁ ସୁସ୍ଥ ନକଲେ ଅପର ଅଙ୍ଗ କ୍ରମେ ରୁଗଣ ହୋଇଯିବ । ବିହାରର ଭାଇମାନଙ୍କୁ ମୋର ନିବେଦନ ସେମାନେ ଓଡ଼ିଶା ପ୍ରତି ଦୃଷ୍ଟି ଦିଅନ୍ତୁ । ଯୁଗେ ଯୁଗେ ଆମେ ଭାଇ ଭାଇ ହୋଇ ଚଳିଆସିଛେ । ଆଜି ବନ୍ୟାପୀଡ଼ିତ ଭାଇମାନଙ୍କ ଡାକ ଆପଣମାନେ କଣ ଶୁଣିବେ ନାହିଁ ?" ଗୋପବନ୍ଧୁଙ୍କ ଏହି ଆହ୍ୱାନ ବିହାର ଓ ଉତ୍ତର ଭାରତରେ ପ୍ରତିଧ୍ୱନି ସୃଷ୍ଟି କଲା । ମହାତ୍ମା ଗାନ୍ଧି ଓଡ଼ିଶାର ଦୁର୍ଗତିଗ୍ରସ୍ତ ଅଞ୍ଚଳକୁ ଦୁର୍ଭିକ୍ଷ ପ୍ରପୀଡ଼ିତ ବୋଲି ଘୋଷଣା କଲେ, ଫଳରେ ଚାରିଆଡ଼ୁ ସାହାଯ୍ୟ ଓ ସମ୍ବଳ ଲବ୍ଧ ହୋଇ ପଡ଼ିଲା ।

# ଠକ୍କର ବାପା

ଓଡ଼ିଶା ଦୁର୍ଭିକ୍ଷ ପରିସ୍ଥିତି ଅନୁଧ୍ୟାନ କରିବାପାଇଁ ଗୋପବନ୍ଧୁଙ୍କ ଅନୁରୋଧ କ୍ରମେ ମହାତ୍ମା ଗାନ୍ଧି ଲୋକସେବା ଜାତୀୟ କଂଗ୍ରେସ ଦଳର ସମ୍ପାଦକ ଶ୍ରୀ ଠକ୍କର ବାପାଙ୍କୁ ସତ୍ୟବାଦୀ ପଠାଇଥିଲେ । ଆଚାର୍ଯ୍ୟ ହରିହର, ନୀଳକଣ୍ଠ, ବନମାଳୀ ଆଦିଙ୍କ ସଙ୍ଗରେ ଠକ୍କର ବାପା ବହୁ ଅଞ୍ଚଳ ବୁଲିଥିଲେ । ଏହି କୋଠ ଦେଶର ସୁତନ ନାମକ ଏକ ଗ୍ରାମକୁ ଠକ୍କର ବାପା ଚୂଡ଼ା ବାଣ୍ଟିବାକୁ ଗଲାବେଳେ ଦେଖିଲେ ଯେ, ଘରୁ ଆସି ସାହାଯ୍ୟ ନେବାକୁ ବି କାହାର ଶକ୍ତି ନାହିଁ । ସମସ୍ତେ ଜରଗ୍ରସ୍ତ ହୋଇପଡ଼ିଛନ୍ତି । ଯୁବକ, ଯୁବତୀ, ପ୍ରୌଢ଼ ଓ ପିଲାମାନେ କିଛି ନା କିଛି ରୋଜଗାର କରିବାକୁ ବାହାରି ଗ୍ରାମ ଓ ଦୂରଦୂରାନ୍ତରକୁ ଚାଲିଯାଇଛନ୍ତି । ଖାଲି ବୁଢ଼ାବୁଢ଼ୀମାନେ ଘରେ ପଡ଼ି ରହିଛନ୍ତି । ସେ ଗାଁ ମୁଣ୍ଡରେ ଆସି ଦେଖିଲେ ଯେ, ସେଠାରେ ମୋଟରେ ବାଇଶିଟି ମୁର୍ଦ୍ଦାର ପଡ଼ିଛି । ଶବ ସତ୍କାର କରିବାକୁ ସେ ଗ୍ରାମରେ କାହାର ଆଉ ବଳ ନାହିଁ । ବଡ଼ କଷ୍ଟରେ ଆଣି ଶ୍ମଶାନରେ ପକାଇ ଦେଇ ଯାଉଛନ୍ତି ।

ଗୋପବନ୍ଧୁଙ୍କ ୧୦ । ୬ । ୧୯୨୦ ତାରିଖର ଟିପା ଖାତାରୁ ଠକ୍କର ବାପାଙ୍କ ସମ୍ପର୍କରେ କେତେକ ତଥ୍ୟ ମିଳେ । ସେ ଲେଖିଛନ୍ତି—"ଠକ୍କର ସାହେବ, ବର୍ତ୍ତମାନ ଏ ଆଡ଼ର ସ୍ଥାନ ବୁଲି ଦେଖୁଛନ୍ତି । ପୁରୀ ଦୁର୍ଭିକ୍ଷପାଇଁ ଲୋକସେବା ପକ୍ଷରୁ ଗୋପ ମି. ଇ. ସ୍କୁଲକୁ ଦଶ ଟଙ୍କା ଓ ନିମାପଡ଼ା ମି. ଇ. ସ୍କୁଲକୁ କୋଡ଼ିଏ ଟଙ୍କା ମାସିକ ସାହାଯ୍ୟ ଦେବେ ବୋଲି କହିଯାଇଛନ୍ତି । ଏହା ଗରିବ ଛାତ୍ରମାନଙ୍କୁ ଏକ ପ୍ରକାର ପ୍ରାଣ ଦେଲା ।" ..."ଏ ମହାଶୟ ଏଠାରେ କେତେକ ଅନାଥ ପିଲାମାନଙ୍କୁ ଖାଇବାକୁ ଦେଇ ପଢ଼ାଇବାର ବନ୍ଦୋବସ୍ତ କରୁଛନ୍ତି ।" ସେତେବେଳେ ଧାନ ଚାଉଳ ଟଙ୍କାରେ ୧୬ ସେରରୁ ୧୦ ସେରକୁ ଖସି ଆସିଥିବା ଗୋପବନ୍ଧୁ ଉଲ୍ଲେଖ କରିଛନ୍ତି ଓ ଅନେକ ଧାନ ଦୂରକୁ ରପ୍ତାନି ହୋଇ ଯାଉଥିବାରୁ କ୍ଷୋଭ ପ୍ରକାଶ କରିଛନ୍ତି ।

ଠକ୍କର ବାପା ୧୮ ଜୁଲାଇ ପୁରୀରୁ ଫେରିଗଲେ । ସେ ଯେଉଁ ବିବରଣୀ ଦେଇଛନ୍ତି ସେଥିରୁ ଏ ସମସ୍ୟାର ବହୁ କରୁଣ ଚିତ୍ର ମିଳିଥାଏ । ସେ ଲେଖିଥିଲେ—"ପିପିଲି ଥାନା ୨୮୮ ବର୍ଗ ମାଇଲ । ଲୋକ ସଂଖ୍ୟା ୫୬୪୦୦ । ଯେଉଁମାନଙ୍କର ସାହାଯ୍ୟ ଲୋଡ଼ା ସେମାନଙ୍କୁ ଏକାଠି ହେବାକୁ କୁହାଗଲା । ଦିନଯାକ କାଳୁ ସେଠାରେ ୧୧ଟି ଇଉନିୟନରୁ ୮ଟି ଇଉନିୟନ ଲୋକ ଆସି ଜମା ହେଲେ । ବୁଢ଼ାବୁଢ଼ୀଙ୍କ ଦେହରେ ପଲେ ମାଂସ ନାହିଁ, ପିନ୍ଧିବାକୁ ଲୁଗା ନାହିଁ । ପିଲାମାନେ ଖାଲି ଗୋଟିଏ ହାଡ଼ପଞ୍ଜରା ମା' କାଖରେ ଥୁଆ ହୋଇଛନ୍ତି । କେତେକଙ୍କର ବାପ ମାଆ କେହି ନାହାନ୍ତି । ଏମାନଙ୍କୁ ଦେଖି ସାହାଯ୍ୟ ଦେବା ପାଇଁ ଲୋକ ବଛା ହୋଇଥିଲେ । ମୋଟେ ଦୁଇ ଦିନରେ ୧୪୦୦ ଲୋକ ବଛା ହେଲେ । ପ୍ରଥମ ଟିକେଟ ଦିଆହେବା ଦିନ ରାତିରେ ଘଟଣା ସ୍ଥଳରେ ଦୁଇଜଣ ଅନ୍ନକଷ୍ଟରେ

ମରଗଲେ । ସେଥିରୁ ଗୋଟିଏ ପିଲ ଥାନା ବଟ୍‌ଠାରେ ପଡ଼ି ମଲ । ଆଉଟି ଗୋଟିଏ ଯୁବା ପୁରୁଷ, ସେଇଟି ବଜାର ଭିତରେ ଘୋଷ ବାବୁଙ୍କ ଅଗଣାରେ ପଡ଼ି ମଲ । ଏବେ ଆଉ ଯୋଡ଼ିଏ ଲୋକ; ସେମାନେ ପିପିଲିର କରଦ୍ଦାନ, ପିପିଲି ଡାକ୍ତରଖାନାରେ ପଡ଼ିଛନ୍ତି । ମାତ୍ର ସେମାନେ ଖାଇବାକୁ ନପାଇ ମଲବେଳକୁ ଚିକିତ୍ସା ପାଇ ବଞ୍ଚିଯିବେ ବୋଲି ଡାକ୍ତରଖାନାରେ ପଡ଼ିଛନ୍ତି । ପିପିଲିରେ ଦରିଦ୍ର ଭବନ ଶୀଘ୍ର ଉଠାଣ ହେବା ଦରକାର । X X X ବଡ଼ ଦୁଃଖ ଓ ଲଜ୍ଜାର କଥା ଯେ, ଦାୟିତ୍ୱପୂର୍ଣ୍ଣ ବଡ଼ ସରକାରୀ ଚାକରିଆମାନେ ଏ ଥାନା କଥା କିଛି ବୁଝୁ ନାହାନ୍ତି । ଆଶ୍ଚର୍ଯ୍ୟ କଥା ଏତେ ଶିଶୁ ବାଳକ-ମାନଙ୍କ ଜୀବନ୍ତ କଙ୍କାଳ ସେମାନଙ୍କ ଆଖିରେ ପଡ଼ୁ ନାହିଁ । ବୋଧହୁଏ ସେମାନେ ଗାଁମାନଙ୍କୁ ଯାଆନ୍ତି ନାହିଁ । କର୍ତ୍ତବ୍ୟରେ ଫାଙ୍କି ଦିଅନ୍ତି । X X X ଆମ୍ଭେମାନେ ଏ କ୍ଷେତ୍ରରେ ପୁରୀ ପାଇଁ ଆସୁଥିବା ଦୁର୍ଭିକ୍ଷ କର୍ମଚାରୀ ଏକ୍‌ଲେ ସାହେବଙ୍କ ଦୃଷ୍ଟି ଆକର୍ଷଣ କରୁଅଛୁ । ଇତ୍ୟାଦି……”

## ମଲଘୋଡ଼ାର ଟାଙ୍କ

ଏ ସମୟରେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରୁ ପ୍ରତିଦିନ ପ୍ରାପ୍ତ ଅନାହାର ମୃତ୍ୟୁର ଖବର ଗୋପବନ୍ଧୁଙ୍କ ପାଖରେ ଆସି ପହଞ୍ଚୁଥାଏ । ଏହା ସହିତ ହାକିମମାନଙ୍କ ନିର୍ଦ୍ଦୟ ବ୍ୟବହାରର ଚିଠି ମଧ୍ୟ ସେ ବରାବର ଶୁଣୁଥା’ନ୍ତି । ଅନାହାର ମୃତ୍ୟୁ କଥା ଲେଖିଲେ ହାକିମମାନେ ପ୍ରତିବାଦ କରି ସଫେଇ ଦିଅନ୍ତି—“ନାମଧାମ ନ ଦେଇ ଅନାହାର ମୃତ୍ୟୁ ବୋଲି ଲେଖିଦେବା ବଡ଼ ସହଜ ।” ପୁଣି ନାମ ଦେଇ ସତକଥା ଲେଖିଲେ ତଦନ୍ତ ହୁଏ । ତଦନ୍ତରେ ଅନାହାର ମୃତ୍ୟୁ କୌଣସି ରୋଗ ଜନିତ ମୃତ୍ୟୁର ଚେହେରା ଧରେ । ଯେଉଁମାନେ ପ୍ରମାଣ ଯୋଗାନ୍ତି ସେମାନେ ହାକିମ ହୁକୁମାଙ୍କ ଅଭିସନ୍ଧି ମତେ ଆଗରୁ ତାଲିମ ପାଇଥାନ୍ତି । ଗୋପବନ୍ଧୁ ବଡ଼ କ୍ଷୁବ୍ଧ ହୋଇ ଲେଖିଥାନ୍ତି—“ସବୁଦିନେ ସବୁ ପ୍ରଦେଶରେ ଦୁର୍ଭିକ୍ଷ ମାତ୍ରାରେ ଏହିପରି ଟଣାଓଟରା । ଆମ୍ଭେମାନେ ପଚାରୁଛୁ ଅନାହାର ମୃତ୍ୟୁ ବୋଲି ଜାଣିଲେ ବା ତଦନ୍ତର ଦରକାର କଣ ? ମଲଘୋଡ଼ାର ଟାଙ୍କ ମାପି କି ଫଳ ? ଟିକିଏ ଅବସ୍ଥା ଥାଉ ଥାଉ ଲୋକେ ସାହାଯ୍ୟ ପାଉଥିଲେ ଏତେ ଅନାହାର ମୃତ୍ୟୁ ଘଟନ୍ତା ନାହିଁ । ଯାହାଙ୍କର କେବଳ କଙ୍କାଳ ରହିଲଣି, ପିଠା ପଶିଗଲଣି, ଅଣ୍ଟୋଣ ବନ୍ଦିଲଣି ସେମାନଙ୍କୁ ମୁଠାଏ ଚାଉଳ ଦେଲେ କେବଳ ସାହାଯ୍ୟ ଦେବାର ନାମ ମାତ୍ର ହେବ; କିନ୍ତୁ ଫଳ କିଛି ହେବନାହିଁ ।”

ପୁଣି ତଭାରର ଏକ ନିର୍ଦ୍ଦିଷ୍ଟ ଘଟଣା । ଜଣେ ସ୍ତ୍ରୀଲୋକ ଭଲରୂପେ ଶୁଣାଯିବାପରି କଥା କହି ପାରୁନଥାଏ । କଡତାଲଗା ହୋଇ ପଡ଼ିରହିଥାଏ । ସାହାଯ୍ୟ କେନ୍ଦ୍ର ପାଖରେ ସ୍ୱଚ

ଡାଲ୍ ଚକଟି ତାକୁ ସ୍ୱେଚ୍ଛାସେବକମାନେ ଖାଇବାକୁ ଦେଲେ । ନୀଳକଣ୍ଠ ବି ସେଠାରେ ଥା’ନ୍ତି । ଭାତ ଦେଖି ସ୍ତ୍ରୀଲୋକଟି ଆଶାରେ ଜିଭ ଲେଉଟେଇଲା । ତା’ ମୁହଁରେ ଦନ୍ତପାଣି ଓ ଶ୍ୱାସମଣ୍ଡ ଦେବାକୁ ସେ ସହଜରେ ଢୋକ ପାରିଲା ନାହିଁ । କ୍ରମାଗତ ଦୁଇଦିନକାଳ ଏହି ଚେଷ୍ଟା ମଧ୍ୟରେ ସେ ମରିଗଲା । ତା ଶୁଶ୍ରୂଷା କରୁଥିବାବେଳେ ସେ ହାତ ଉଠେଇ କହୁଥିଲା—“ମୁଁ ମୁଠିଶାଗରେ ଏତେଦିନ ବଞ୍ଚି ଆସିଲି । ମୁଠିଶାଗ ତୋଳିବାକୁ ଯାଇ ନପାରି ଏବେ ପାଞ୍ଚଦିନ ହେବ ଏହିପରି ପଡ଼ିଛି । ମୁଁ ତ ମରିଯିବି । ମୋ ଅନ୍ଧୁଣୀ ଝିଅଟିକି ଯେପରି ଆପଣମାନେ ବଞ୍ଚାଇବେ ।”

ଏ ଖବରକୁ ମଧ୍ୟ କର୍ତ୍ତୃପକ୍ଷ ଅନାହାର ମୃତ୍ୟୁ ବୋଲି ସ୍ୱୀକାର କରିବାକୁ ପ୍ରସ୍ତୁତ ନ ଥିଲେ । ଏଥିରେ ସରକାରଙ୍କ ଆଖିରେ ମଲାଘୋଡ଼ାର ଚାଙ୍କ ମାପିବା ପରି ହେଉଥିଲା; କିନ୍ତୁ ଏହାକୁ ଗୋପବନ୍ଧୁ ସରକାରୀ ଉଦାସୀନତା ବିରୁଦ୍ଧରେ ଅସ୍ତ୍ର ଭାବରେ ଗ୍ରହଣ କରୁଥିଲେ ।

## ବୁଭୁକ୍ଷିତଃ କିଂ ନ କରୋତି ପାପଂ

କେତେକ ଅନାହାର ମୃତ୍ୟୁ ବିବରଣୀ ଶୀର୍ଷକ ସମ୍ବାଦରେ ଗୋପବନ୍ଧୁ ପୁନଶ୍ଚ ଲେଖିଲେ —“ନାଥପୁରର ଗୋପୀନାଥ ମିଶ୍ର ପୁରୋହିତ ବୃତ୍ତି କରି ଚଳୁଥିଲେ । ଦୁର୍ଭିକ୍ଷ ହେତୁ ତାଙ୍କର ସେ ବୃତ୍ତି ଏକପ୍ରକାର ବନ୍ଦ ହୋଇଯିବାରୁ ସେ ସରକାରୀ କେନ୍ଦ୍ରରୁ ସାହାଯ୍ୟ ପାଉଥିଲେ ; ମାତ୍ର ସେଥିରେ ତାଙ୍କର ସମସ୍ତ ପରିବାରର ପେଟ ପୂରିଲା ନାହିଁ । ପରେ କେତେଦିନ ବାଦ ସେ ଦୁର୍ଭିକ୍ଷ କେନ୍ଦ୍ରରୁ ଚାଉଳ ନେଇ ଘରେ କାହାକୁ ନ ଦେଇ ତାଙ୍କ ପୁଅ ଓ ସେ ଦୁଇଜଣ ଯଜମାନ ଘରେ ଅଲଗା ରୋଷେଇ କରି ଖାଇଲେ । ଫଳରେ ସପରିବାର ଅନ୍ୟମାନଙ୍କର ଅନାହାର ଘଟିଲା । ତାଙ୍କ ବ୍ରାହ୍ମଣୀ କେତେଦିନ ଗଛକୁଣ୍ଡା, କଖାରୁପତ୍ର ଖାଇ ଶେଷରେ ଶୁଖି ଶୁଖି ମରିଗଲେ ।”

“ସୀତା ବୋଲି ଜଣେ ବୈଷ୍ଣବୀ ମରିଥିବାର ଖବର ମିଳେ ।” “ଗୋବିପୁରର ଲକ୍ଷ୍ମଣ ମଧ୍ୟ ନ ଖାଇ ମରିଛି ।” “ଗଲା ଏକ ତାରିଖ ଦିନ ଏଠା ସତ୍ୟବାଦୀ ବେଉଳ କଟେଯା ପାଖ ବରଗଛ ତଳେ ପଡ଼ି ୧୨ ବର୍ଷର ନାଥିଆ, ଜାଢରେ କଣ୍ଡରି, ମରିଗଲା ।”

ଏସବୁ ବିବରଣୀ ଗୋପବନ୍ଧୁଙ୍କ ହୃଦୟକୁ କରିଥ ଦେଇଥିଲା । ସେ ଦୃଢ଼ତାର ସହିତ ଏସବୁ ଉଲ୍ଲେଖ କରି ଜନତାପାଇଁ ଦାବୀ ଉପସ୍ଥାପିତ କରୁଥିଲେ । ଫଳରେ ବହୁ ଘଟଣାରେ ‘ସମାଜ’ର ପ୍ରକାଶକଙ୍କୁ ତଲବ ହେଉଥିଲା । ପୁଣି ଠିକଣା ସମୟରେ ଏ ଦୁର୍ଗତପାଇଁ ବ୍ୟବସ୍ଥା ନ ହୋଇ ଅଯଥା କାଳକ୍ଷେପ କରାଯାଉଥିଲା । ଏଥିରେ ସମ୍ବାଦଦାତା, ପ୍ରକାଶକ, ବେଳେ ବେଳେ ନୀଳକଣ୍ଠ, ଆଚାର୍ଯ୍ୟ ମହାଶୟ ବଡ଼ ହଇରାଣ ହେବା ପରି ହେଉଥିଲା ।

## ଆସନ୍ନ ଅସ୍ତମିତ ସତ୍ୟବାଦୀ

**ନୀଳକଣ୍ଠଙ୍କ ସ୍ମୃତିରୁ**—"୧୯୧୮ ମସିହା ଅକ୍ଟୋବର ମାସ ୧୪ ତାରିଖରେ ଯଥାର୍ଥରେ ଏହି ସତ୍ୟବାଦୀ ସ୍କୁଲ ଭାଙ୍ଗିଗଲା । ତାର କାରଣ ଆମ ସତ୍ୟବାଦୀ ବହୁକାଳ ପରାଧୀନ ଥିଲା ଓ ସେହି ସୂତ୍ରରେ ଆମ୍ଭମାନଙ୍କର ଏପରି ଗୋଟିଏ ସ୍କୁଲ ରଖିବାର ଓ ସେଥିପାଇଁ ସ୍ଥାୟୀ ଭାବରେ କାମ କରିବାର ଧୈର୍ଯ୍ୟ ଓ ଶକ୍ତି ନଥିଲା । ୧୯୧୮ ସାଲରେ ସତ୍ୟବାଦୀ ସ୍କୁଲରେ ଯାହା ଯାହା ଘଟିଲା ତାର ସୂଚନା ଦେବା ଉଚିତ ମନେକରୁଛି । ବି. ଟି. ପଢ଼ିବାପାଇଁ ୧୯୧୭ ସାଲରେ ଗୋଦାବରୀଶ ବାବୁଙ୍କୁ କଲିକତା ପଠାଗଲା । ସେହି ବର୍ଷ ସେ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ଭାବରେ ଉତ୍ତୀର୍ଣ୍ଣ ହୋଇ ସତ୍ୟବାଦୀକୁ ପୁଣି ଫେରି ଆସିଲେ, କିନ୍ତୁ ଆଜ କହିବାକୁ ବଡ଼ କଷ୍ଟ ହେଉଛି—ତାଙ୍କର ପ୍ରଧାନ ଶିକ୍ଷକ ହେବାପାଇଁ ଆକାଙ୍‌କ୍ଷା ବଡ଼ ପ୍ରବଳ ହୋଇ ଉଠିଲା । କାରଣ ସେ ଥିଲେ ଏମ.ଏ.ବି.ଟି. । ମୁଁ ଖାଲି ଏମ୍. ଏ. । ସେ ସାଙ୍ଗେ ସାଙ୍ଗେ ଖୋର୍ଦ୍ଧା ସ୍କୁଲକୁ ହେଡ଼ମାଷ୍ଟର ହେବାପାଇଁ ଦରଖାସ୍ତ କରିଦେଲେ । ଗୋପବନ୍ଧୁ ବାବୁ ଏକଥା ଶୁଣିଲେ । × × × ସେ ଗୋଦାବରୀଶ, କୃପାସିନ୍ଧୁ, ହରିହର ଓ ମୋତେ ସତ୍ୟବାଦୀର ମନ୍ଦିର ବଙ୍ଗଳାକୁ ଡକାଇ ନେଲେ । ସେଠାରେ ଏହି କଥା ସବୁ କହୁ କହୁ ଗୋପବନ୍ଧୁ ବାବୁ ଭେ' ଭେ' କାନ୍ଦିପକାଇଲେ । ଆମେ ସମସ୍ତେ ମଧ୍ୟ କାନ୍ଦିଲୁ । ପ୍ରାୟ ଅଧଘଣ୍ଟାଏ ପରେ ସ୍ଥିର ହେଲା ସତ୍ୟବାଦୀରେ କେହି ସ୍ଥାୟୀ ପ୍ରଧାନ ଶିକ୍ଷକ ହୋଇ ପାରିବେ ନାହିଁ । କୃପାସିନ୍ଧୁ, ଗୋଦାବରୀଶ ଓ ମୁଁ—ପ୍ରତ୍ୟେକ ତିନି ବର୍ଷପାଇଁ ପ୍ରଧାନ ଶିକ୍ଷକ ହେବୁଁ; କିନ୍ତୁ ମୁଁ ବୁଝିଲି ଏ ସମାଧାନ ଯଥାର୍ଥ ନୁହେଁ । ମୋ ମନ ମଧ୍ୟ ସେହିଠାରୁ ଫାଟିଗଲା । ମୁଁ ଜାଣିଲି ଏ ସ୍କୁଲ ଯେଉଁ ଭିତ୍ତିରେ ଯେଉଁ ଅଭିଳାଷ ନେଇ ବଢ଼ୁଥିଲା, ତା ଆଉ ପୂର୍ଣ୍ଣ ହୋଇ ପାରିବ ନାହିଁ । ସେଦିନ ଗୋଦାବରୀଶ ପ୍ରଧାନ ଶିକ୍ଷକ ହେଲେ ଓ ତା'ର କେତେ ଦିନ ପରେ ଗୋପବନ୍ଧୁ ମୋତେ ବୋର୍ଡ଼ିଂରେ ରହିବାକୁ ମନା କରି ଗ୍ରାମକୁ ଯିବାକୁ କହିଲେ । ମୁଁ ସବୁ ଛାଡ଼ି ଗ୍ରାମକୁ ଗଲି । ଗୋପବନ୍ଧୁ ବାବୁ ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ଯେଉଁ ବାଟଟି ଫିଟାଇଲେ ସେଥିରେ କେହି ସନ୍ତୁଷ୍ଟ ହେବାର ନୁହେଁ । ସତ୍ୟବାଦୀ ବିଦ୍ୟାଳୟର ଆଦର୍ଶ କିନ୍ତୁ ତା' ନ ଥିଲା । ଏଥିରେ ଗୋପବନ୍ଧୁ ବାବୁଙ୍କ ସମସ୍ତ ଆଶା ଓ ଉନ୍ମୁଖତା ଯେପରି ଚୂର ହୋଇଗଲା । କେତେଦିନ ରହି ସେ ସ୍କୁଲକୁ ଚଳାଇଲେ । ଅବସ୍ଥା ଯାହା ଦେଖିଲି ସେଥିରେ ମୋ ମନରେ ଅତ୍ୟନ୍ତ ବିରାଗ ହେଲା । ମୁଁ ଶେଷକୁ ସ୍ଥିର କଲି ଦୁଇ ବର୍ଷପାଇଁ କଲିକତା ଆସିବି । ଜଣେ ଗ୍ରାଜୁଏଟ୍ ଏମ୍. ଏ. ପାଶ୍ କରି ସାରିଲେ ତାକୁ ମୋ ସ୍ଥାନରେ ଛାଡ଼ିଦେଇ ସତ୍ୟବାଦୀ ସ୍କୁଲକୁ ଫେରିଯିବି । ଏତେଦିନ ଗଲା ନାଇଁ । କଲିକତା ବିଶ୍ୱବିଦ୍ୟାଳୟରେ 'Oriya-cum-Comparative Philology' ଅଧ୍ୟାପକ ଭାବରେ ମୁଁ ରହିବାର ପ୍ରାୟ ତିନିମାସ ପରେ ଅସହଯୋଗ ଆନ୍ଦୋଳନ ଆରମ୍ଭ

ହୋଇଗଲା । ମୁଁ କଲିକତା ଛାଡ଼ିଦେଇ ସମ୍ବଲପୁର ଆସିଲି । ସେଠାରେ ବର୍ଷେକାଳ ଘୋର ପରିଶ୍ରମ କରି ପିଲମାନଙ୍କୁ ମଣିଷ କରିବାଠାରୁ ସାଧାରଣରେ କଂଗ୍ରେସ ପ୍ରଚାର ଓ ଖବରକାଗଜ ଛାପିବା ପର୍ଯ୍ୟନ୍ତ ସବୁକରି ଶେଷରେ ଗାନ୍ଧି ପୂଜା ଆସିଲା ବେଳକୁ (?) ପ୍ରାୟ ସେପ୍ଟେମ୍ବର କିମ୍ବା ଅକ୍ଟୋବରରେ ସମ୍ବଲପୁର ଛାଡ଼ି ଆସିଲି । ସେଠାରୁ ଆସି ଗୋପବନ୍ଧୁବାବୁ କହିବା ମୁତାବକ ସତ୍ୟବାଦୀ ବିଦ୍ୟାଳୟରେ (ସେତେବେଳକୁ ତାହା କଲେଜ ହୋଇଥିଲା ) ଓଡ଼ିଆ ପଢ଼ାଉଥିଲି; କିନ୍ତୁ ଦେଖିଲି ଗୋପବନ୍ଧୁ ବାବୁଙ୍କର ସେପରି ତେଜ କିମ୍ବା ମମତା ଆଉ ନଥିଲା । କ୍ରମେ କ୍ରମେ ସ୍କୁଲରେ ପାଠପଢ଼ା ବ୍ୟବସ୍ଥା ଭାଙ୍ଗିଦେଇ ସେ ସେଠାରେ ବ୍ରହ୍ମଚର୍ଯ୍ୟାଶ୍ରମ କରିବାର ଆୟୋଜନ କଲେ । ସେଥିପାଇଁ ସାଧକ ଛାତ୍ର ଆଣିବାର କଳ୍ପନା କଲେ । ସବୁବେଳେ ବରାବର ଘରୁ ଆସି ତାଙ୍କ ନିଜ ପାଖରେ ସତ୍ୟବାଦୀରେ ରହିବାକୁ ମୋତେ ଲେଡ଼ୁଥିଲେ ।

ଏଣେ ଗୋଦାବରୀଶ ଖ୍ରୀ: ୧୯୧୯ର ପ୍ରଥମ ଭାଗରେ ଗୋପବନ୍ଧୁ ବାବୁଙ୍କ ପ୍ରେରଣାରେ ଚକ୍ରଧରପୁର ଚାଲିଗଲେ । ସେଠି ବିଚ୍ଛିନ୍ନାଞ୍ଚଳକୁ ଏକତ୍ରିତ କରିବା ଗୋପବନ୍ଧୁଙ୍କ ସ୍ୱପ୍ନ ଥିଲା । ଗୋଦାବରୀଶ ସେହି ଗୁରୁ ଦାୟିତ୍ୱରେ ରହି ଜୀବନରେ କେତେ ଯନ୍ତ୍ରଣା ଭୋଗିଛନ୍ତି ପ୍ରକାଶ କରି ହେବନି । କୃପାସିନ୍ଧୁ ମିଦନାପୁରର ବାହାଡ଼ାଗୋଡ଼ାକୁ ହାଇସ୍କୁଲଟିଏ କରିବାକୁ ଚାଲିଗଲେ । ସତ୍ୟବାଦୀର ସୀମିତ ପରିବେଶ ଭିତରୁ ଓଡ଼ିଶାର ବୃହତ୍ତମ କର୍ମଭୂଇଁକୁ ଆମେମାନେ ଗୋଟିକ ପରେ ଗୋଟିଏ ଖସିଗଲୁ ପରେ ସ୍କୁଲର ମୂଳ ଉଦ୍ଦେଶ୍ୟ ଦୋହଲିଗଲା । ସତ୍ୟବାଦୀକୁ ଏକ ଆଦର୍ଶ ବିଦ୍ୟାଳୟରେ ପ୍ରତିଷ୍ଠିତ କରି ଏ ଦେଶକୁ ଏକ ନୂତନ ଆଭିମୁଖ୍ୟରେ ଗଢ଼ିବାର ଆକାଙ୍‌କ୍ଷା ଆମ ସମସ୍ତଙ୍କର ଥିଲା । ବସ୍ତୁତଃ ସେଇ ପ୍ରଚ୍ଛନ୍ନ ଅଭିପ୍ରାୟରେ ଆମେମାନେ ଏଠି ତାଲିମ୍ ନେଉଥିଲୁ ଓ ଛାତ୍ରମାନଙ୍କୁ ତାଲିମ୍ ଦେଉଥିଲୁ; କିନ୍ତୁ ପରିସ୍ଥିତି ଆମର ସେଇ ଉଦ୍‌ଯୋଗ ପର୍ବର ଗୌରବାବହ ଉପସଂହାର ଦେଖି ପାରିଲାନି । ସ୍କୁଲ୍ ଭାଙ୍ଗିଗଲା ।

## ଗୋଦାବରୀଶଙ୍କ ସ୍ମୃତିରୁ

"ଏକ ସମୟରେ ତାଳ ଓ ଗବମଞ୍ଜି ପୋତିଲେ ତାଳଗଛ ହାତେ ଉଚ୍ଚ ହେଲାବେଳକୁ ଗବଗଛ ଦଶ ହାତ ଉଚ୍ଚ ହୋଇଥାଏ; କିନ୍ତୁ ତାଳଗଛ ବଢ଼ି ବଢ଼ି ଯେତେବେଳେ ଦଶ ହାତ ଉଚ୍ଚ ହୁଏ; ସେତେବେଳକୁ ଗବଗଛର ସତ୍ତା ନ ଥାଏ । ଗୋପବନ୍ଧୁ ବାବୁ ବହୁ ଆଶା ପୋଷଣ କରି ଯେ ସତ୍ୟବାଦୀ ସ୍କୁଲ ବସାଇଥିଲେ ମୋର ମନେହେଉଛି ସେ ତାଳମଞ୍ଜି ପରିବର୍ତ୍ତେ ଗବମଞ୍ଜି ପୋତିଥିଲେ । ଫଳରେ ଗଛଟା ହୁ' ହୁ' ହୋଇ ବଢ଼ିଗଲା, ଫୁଲ ଫୁଟିଲା, ଫଳ ଧରିଲା; କିନ୍ତୁ ସଙ୍ଗେ ସଙ୍ଗେ ତାହା ବୁଢ଼ା ହୋଇ

କଷ୍ଟ ପାଇବାକୁ ଆରମ୍ଭ କଲା । ଆମମାନଙ୍କ ମଧ୍ୟରେ କାହାର କାହା ସହିତ ମନ ମିଳିଲା ନାହିଁ । କାହାରି ଜଣକ ମୁଣ୍ଡରେ ସବୁ ଦୋଷ ଢାଳି ଦିଆଯାଇ ପାରିବ ନାହିଁ ।

ସ୍କୁଲ କାର୍ଯ୍ୟରେ ଶିଥିଳତା ଦେଖାଗଲା । ସ୍କୁଲ ସମୟରେ ଶିକ୍ଷକମାନଙ୍କ ମଧ୍ୟରେ କିଏ ଘରେ ବସି ଇଂରେଜୀରୁ ପଦ୍ୟ ଅନୁବାଦ କଲେ, କିଏ ବନ୍ଧୁ ଘରକୁ ଗଲେ, କିଏ ନିଜ ଘର ବ୍ୟବସ୍ଥା ଦେଖିବାକୁ ଗାଁରେ ରହିଲେ । ଏ ସବୁର ବାରମ୍ବାର ଖବର ପାଇ ଦିନେ ଗୋପବନ୍ଧୁ ବାବୁ ଝିଅବେଳେ ଦି'ପହର ବେଳାରେ ପୁରୀରୁ ବାର ମାଇଲ ଚାଲି ଚାଲି ଆସି ପହଞ୍ଚିଲେ । ସ୍କୁଲ ସେତେବେଳେ ବଗିଚାରେ ହେଉଥାଏ । ସେ ଚାରିଆଡ଼ ବୁଲିଯାଇ ଦେଖିଲେ ଅନେକ କ୍ଲାସ୍ ଖାଲି ପଡ଼ିଛି ଏବଂ ଉପର ଶ୍ରେଣୀର ଶିକ୍ଷକମାନଙ୍କ ମଧ୍ୟରୁ କେବଳ ହରିହର ବାବୁ ଓ ମୁଁ ପଢ଼ାଉଛୁ । ମୋ ଦେହରେ ସେ ହାତଦେଇ ଦେଖିଲେ ଯେ ଜରରେ ମୋ ଦେହ ତାତିଛି । ସେଦିନ ଛୁଟିଘଣ୍ଟା ବଜାଇ ସ୍କୁଲ ଛୁଟିକରି ଦିଆହେଲା ।

ସନ୍ଧ୍ୟାରେ ଗୋପବନ୍ଧୁ ବାବୁ ଶିକ୍ଷକମାନଙ୍କ ବୈଠକ ଡକାଇଲେ । ସେ ବୈଠକରେ ନାନା ଆଲୋଚନା ପରେ କେତେକ ନିର୍ଦ୍ଧାରଣ କରାଗଲା । ସେ ଅନୁସାରେ ପ୍ରଧାନ ଶିକ୍ଷକ ପଦ ଉଠିଗଲା ଏବଂ ହରିହର ବାବୁଙ୍କୁ ସର୍ବୋଚ୍ଚ ସ୍ଥାନ ଦିଆଯାଇ 'ଆଚାର୍ଯ୍ୟ' ପଦରେ ଅଭିଷିକ୍ତ କରାଗଲା ।

ଶାଳଗ୍ରାମ ଖଟୁଲିରେ ବସି ଫୁଲ, ଚନ୍ଦନ, ପୂଜା ପାଆନ୍ତି; କିନ୍ତୁ ଯେଉଁ ଘରେ ସେ ଖଟୁଲି ଥାଏ ସେ ଘର ଚଳାଇବା ଭାର ତାଙ୍କ ମୁଣ୍ଡରେ ପଡ଼ିଲେ ସେ ଖଟୁଲିରେ ଏପାଖ ସେପାଖ ଗଡ଼ି ପାରନ୍ତି; କିନ୍ତୁ ଘର ଚଳାଇବାକୁ ନିଜର ଅକ୍ଷମତା ପ୍ରକାଶ କରି ବସନ୍ତି । ହରିହର ବାବୁ ସତ୍ୟନିଷ୍ଠା, ସେବା, ଚରିତ୍ରବଳ, ଦୟା, ସହିଷ୍ଣୁତା ଆଦି ଗୁଣରେ ଅବଶ୍ୟ ବଡ଼ ଥିଲେ; କିନ୍ତୁ ଚାଳକ ପଦରେ ରହି ଅନୁଷ୍ଠାନଟି ଚଳାଇପାରିଲେ ନାହିଁ । ନୀଳକଣ୍ଠ ବାବୁ ଜଣେ ସ୍ପଷ୍ଟବାଦୀ ଲୋକ । ତାଙ୍କର ଭିତରେ କଥାଏ, ବାହାରେ କଥାଏ ନ ଥାଏ । ମୁଁ ଏକାନ୍ତ ଆଲୋଚନା ପରେ ତାଙ୍କଠାରୁ ଅନେକ ଥର ଶୁଣିଛି "ଆଚ୍ଛା, ଏ ଗୋରୁମୁଣ୍ଡ ଆପଣମାନେ କାମ କଣ ସୁରୁଖୁରୁରେ ଚାଲୁଛି ? ହରି ଭାଇନା ତ ଗୋଟାଏ ଗୋରୁ, ଆଉ ଗୋପବନ୍ଧୁ ବାବୁ ହେଉଛନ୍ତି ଅନ୍ଧ ।"

ହରିଭାଇନାଙ୍କୁ ମୁଁ ନିଜେ 'ଗୋରୁ' ବୋଲି ଜାଣିଥିଲି । ଗୁହାଳରେ ବନ୍ଧା ହେଲାବେଳେ ସେ ବେକ ଦେଖାଇ ଦିଅନ୍ତି । ଦୁଧ ଦୁହିଁବାକୁ ଗଲେ ହଲଚଲ ନ ହୋଇ ଠିଆ ହୋଇ ରହନ୍ତି, ଲତ ମାରନ୍ତି ନାହିଁ, ଶିଙ୍ଗ ଏତେ ଧୀରେ ଧୀରେ ହଲାନ୍ତି ଯେପରି କାହା ଦେହରେ ନ ବାଜିବ । ସୁତରାଂ, ତାଙ୍କୁ 'ଗୋରୁ' ବୋଲି କହିଲେ ମୁଁ ବିନା ଆପତ୍ତିରେ ଗ୍ରହଣ କରିନିଏ, କିନ୍ତୁ ଗୋପବନ୍ଧୁ ବାବୁ ଯେ ଅନ୍ଧ ତାହା ମୋ କାନରେ ପଶେ ନାହିଁ । ମୁଁ ତାଙ୍କୁ ଦେବତା ମଣି ଭକ୍ତି କରୁଥିଲେ ହୁଏତ ହୃଦୟରୁ ବେଦୀରୁ କାଢ଼ି ଫିଙ୍ଗି ଦେଇଥାନ୍ତି; କିନ୍ତୁ ମୁଁ ତାଙ୍କୁ ମନୁଷ୍ୟ ଦୃଷ୍ଟିରେ ଦେଖୁଥିଲି । ମୁଁ ଯୁକ୍ତି କରୁଥିଲି ଚନ୍ଦ୍ରର କଳଙ୍କ ପରି

ମନୁଷ୍ୟର ଦୋଷ ଥାଇପାରେ । ମୁଁ ଚନ୍ଦ୍ରର କଳଙ୍କ ଯେପରି ଦେଖୁନାହିଁ ସେହିପରି ଗୋପବନ୍ଧୁ ବାବୁଙ୍କ ଦୋଷାଦୋଷ ନ ବାଛି କେବଳ ତାଙ୍କ ଗୁଣଗୁଡ଼ିକ ଦେଖିବି ।

× × × ପୂର୍ବ ବୈଠକର କେତେକ ସପ୍ତାହପରେ ପୁଣି ଏକ ବୈଠକ ବସିଲା । ସେ ବୈଠକରେ ହରିହର ବାବୁ ତାଙ୍କ ନୂଆଶ୍ରେଣୀ ଛାଡ଼ିଦେଲେ । ସେତେବେଳକୁ ମୋର ଧାରଣା ଜନ୍ମିଥିଲା ଯେ ପୂର୍ବ ବ୍ୟବସ୍ଥା ଠିକ୍ ହୋଇନାହିଁ, କିନ୍ତୁ ସେ ବ୍ୟବସ୍ଥାକୁ ପୁଣି ଫେରାଇବାକୁ କୃପାସିନ୍ଧୁ ଆଉ ଅନେକ ସହକର୍ମୀ ଇଚ୍ଛା କରୁଥିଲେ । ଭାର ବହନ କରିବାପାଇଁ ସେମାନେ ସମସ୍ତେ ମୋତେ ଅନୁରୋଧ କଲେ । ମୋର ମଧ୍ୟ କିଛି କିଛି ଲାଳସା ଜନ୍ମି ଥିଲା । ମୁଁ ପ୍ରଧାନ ଶିକ୍ଷକ ହେବାକୁ ରାଜି ହେଲି ।

ଛେଳି ବେଙ୍ଗଳାରେ ବନ୍ଧାହୋଇ ଧାନ ମଳିବାକୁ ଠିକ ହୋଇପାରେ; କିନ୍ତୁ ଧାନ ମଳା ହୁଏନାହିଁ । ମୁଁ ପ୍ରଧାନ ଶିକ୍ଷକ ଚଉକିରେ ଅସି ଅଫିସ ବାକ୍ସର କୁଞ୍ଚିକାଠି ପାଖରେ ରଖିଲି, କିନ୍ତୁ ଦୁଇ ମାସ ପରେ ଜଣାପଡ଼ିଗଲା ଯେ, ସ୍କୁଲ ଅଚଳ ଅବସ୍ଥାକୁ ଯାଉଛି । ପିଲାମାନଙ୍କର ମାସିକ ଦରମା ବାକି ପଡ଼ିଗଲା । ଛାତ୍ରାବାସ ମେସ୍ ପାଉଣା ଆଦାୟ ହେଲା ନାହିଁ । × × × ମୋ କାନକୁ କେତେଆଡ଼ୁ ଖବର ଆସିଲା ଯେ ବ୍ୟବସ୍ଥା ସବୁ ଅଚଳ ଆଡ଼କୁ ନେବାପାଇଁ କୌଣସି ଆଡ଼ୁ ଭିତରି ଉଦ୍ୟମ ହେଉଥିଲା । ମୁଁ ସେକଥା ସେତେବେଳେ ବିଶ୍ୱାସ କରିନଥିଲି; ତା'ପରେ ମଧ୍ୟ କରି ନାହିଁ । ସେତେବେଳେ ଖୋରଧା ହାଇସ୍କୁଲରେ ପ୍ରଧାନ ଶିକ୍ଷକ ପଦ ଖାଲି ହୋଇଥିଲା । ସେଠାକୁ ଯିବାପାଇଁ ମୋର କେତେକ ଖୋରଧାବାସୀ ବିଶିଷ୍ଟ ବନ୍ଧୁ ଅନୁରୋଧ କଲେ । ମୁଁ ସେକଥା ଗୋପବନ୍ଧୁ ବାବୁଙ୍କୁ ଜଣାଇଲି । ପୁଣି ଏକ ବୈଠକ ବସିଲା । ମୁଁ ମୋର କେତେକ ଦୁଃଖର କାହାଣୀ କହିଲି ପରେ ଗୋପବନ୍ଧୁ ବାବୁ ମୋତେ କୁଣ୍ଢାଇ ପିଲାଙ୍କ ପରି କାନ୍ଦି କାନ୍ଦି ହୋଇ କାନ୍ଦିଲେ । ମୁଁ ମଧ୍ୟ କାନ୍ଦିଲି । ସ୍ନେହର ଲୁହଧାର ମିଶି ବନ୍ୟାରେ ପରିଣତ ହେଲା । ମୁଁ ସେଥିରେ ଭାସିଗଲି । ମୋର ଇଚ୍ଛା ବଦଳିଗଲା । ସେ ଘଟଣା ପରେ ମୋତେ ନୀଳକଣ୍ଠ ବାବୁ ଅନେକ ଥର କହିଛନ୍ତି—"ତୁମ କନ୍ଦାକନ୍ଦି ପରେ ଗୋପବନ୍ଧୁ ବାବୁ ମୋତେ କହିଲେ, "ଏଇ କାନ୍ଦିକେ ହୋଇଗଲା ତ ? ଆଉ ଛାଡ଼ି ଯିବ ନାହିଁ ।" କଥାଟା ମୁଁ ଯେତେଥର ଶୁଣିଛି ମୋର ବିଶ୍ୱାସକୁ ଆସିନାହିଁ । ଗୋପବନ୍ଧୁ ବାବୁ ମୋତେ ଯେ ମାଟିମେଞ୍ଚା ପାଇ ଲୁହରେ ଭିଜାଇ ନରମ କରିବାକୁ ବସିଥିଲେ, ସେଥିରେ ମୋର କଦାପି ପ୍ରତ୍ୟୟ ଜନ୍ମି ନାହିଁ ।

ମୁଁ ରହିଲି; ମାତ୍ର ପ୍ରଧାନ ଶିକ୍ଷକଙ୍କ କୁଞ୍ଚିକାଠି କୃପାସିନ୍ଧୁଙ୍କ ହାତକୁ ବଢ଼ାଇଦେଇ ପୁନର୍ମୂଷିକ ହୋଇ ରହିଲି । ଆମମାନଙ୍କ ମନ ଯେ ପରସ୍ପରଠାରୁ ଥରେ ଭାଙ୍ଗିଗଲା, ଆଉ ଯୋଡ଼ି ହେଲାନାହିଁ । ମୁଁ ନୀଳକଣ୍ଠ ବାବୁଙ୍କ ସଙ୍ଗେ ପୂର୍ବପରି ଚଳିବାକୁ ବହୁତ ଚେଷ୍ଟାକଲି । × × × ଅନ୍ୟମାନଙ୍କ ଭିତରେ ମଧ୍ୟ ଫାଟାଫାଟି ଲାଗିଲା । ଗୋପବନ୍ଧୁ ବାବୁ ଦେଖିଲେ ଯେ, ଚୂହାଳକୁ ଗୋଟିଏ ହେଲେ ଗୋରୁ ଅନ୍ୟତ୍ର ନେଇ ନ ଗଲେ

ଶାନ୍ତ ଆସିବ ନାହିଁ । ସିଂହଭୂମିରେ ଓଡ଼ିଆ ଜାଗରଣ ପାଇଁ କାମ କରିବା ପ୍ରସ୍ତାବ ସେ ଅଣି ପକାଇଲେ । ମୁଁ ଏକମାତ୍ର ବ. ଟି. ଶିକ୍ଷକ ଥିବାରୁ ମୋତେ ଅନ୍ୟତ୍ର ପଠାଇ ଦେବା ତାଙ୍କର ଇଚ୍ଛା ନଥିଲା । ମାତ୍ର ନୀଳକଣ୍ଠ ବାବୁ ବା କୃପାସିନ୍ଧୁ ବାବୁ କାହାରି ଯିବାର ସୁବିଧା ନଥିଲା । ନୀଳକଣ୍ଠ ବାବୁଙ୍କ ବାପା ପାଚଲାପଣ, କେତେଦିନ ଝଡ଼ ପଡ଼ିବେ ଠିକ୍ ନଥିଲା । କୃପାସିନ୍ଧୁଙ୍କ ଭାର୍ଯ୍ୟା ପ୍ରବାସକୁ ରାଜି ହେଲେନାହିଁ । ମୋର ବାପା ନଥିଲେ ଏବଂ ଏସବୁ କାର୍ଯ୍ୟ ମୁଁ ଭାର୍ଯ୍ୟାକୁ ପଚାରି କରେ ନାହିଁ । ଫଳରେ ମୁଁ ସିଂହଭୂମ ଯିବାକୁ ବାହାରିଲି ।

୧୯୧୯ ମସିହା ଫେବୃୟାରୀ ମାସ ୭ ତାରିଖ ସନ୍ଧ୍ୟାରେ ସାକ୍ଷୀଗୋପାଳ ଷ୍ଟେସନରେ ସ୍କୁଲର ଶିକ୍ଷକ ଛାତ୍ର ସମସ୍ତେ ରୁଣ୍ଡ ହେଲେ । ସେହିଠାରେ ମୁଁ ବୁଝିଲି ଯେ ଛ' ବର୍ଷର ବନ୍ଧନ ଛିଣ୍ଡାଇବା କେଡ଼େ କଷ୍ଟକର । ଭୂମିରେ ପଶିଥିବା ଚେର ସହଜେ ଉପୁଡ଼େ ନାହିଁ । ପାଣି ଢ଼ାଳି ମାଟି ବଦୁରାଇଲେ ସାନ ସାନ ଗଛ ଉପାଡ଼ି ହୁଏ । ସେଦିନ ମୋ ସହକର୍ମୀ ଓ ଛାତ୍ରମାନଙ୍କ ଆଖି ଲୁହରେ ମୋର ଛ' ବର୍ଷର ଗ୍ରେଞ୍ଚିଆ ମୂଳଟି ଗୋଟିଏ ହୁଙ୍କାର ଛାଡ଼ି କଳକୁ ଉପାଡ଼ି ଦେଲା । 'ପୁରୀ ଏକ୍ସପ୍ରେସ' ଗାଡ଼ି ସିଟି ବଜାଇ ଦୁପ୍ ଦୁପ୍ ହୋଇ ପ୍ଲାଟଫର୍ମ ଛାଡ଼ିଦେଲା । ଆଖି ପୋଛି ମୁହଁ ବୁଲାଇ ଚାହିଁ ଦେଖିଲି ଗୋପବନ୍ଧୁ ବାବୁ ବସିଛନ୍ତି ।"

ଗୋପବନ୍ଧୁଙ୍କ ଜୀବନରେ ଶ୍ରେଷ୍ଠତମ ଦର୍ଶନ ଓ ସାଧନା ପୀଠ ସତ୍ୟବାଦୀର ଇତିକଥା ଦୁଇ ବଶିଷ୍ଟ ସହକର୍ମୀଙ୍କ ଜୀବନରୁ ଉଦ୍ଧାର କରାଗଲା । ସତ୍ୟବାଦୀର ଅନ୍ତସ୍ଥଳରେ ଏଇ ଦୁଇ ତାରକାଙ୍କର ଅମଳିନ ଜ୍ୟୋତି ଓଡ଼ିଶାର ବୃହତ୍ତର ଆକାଶରେ ନିଜର ସ୍ଥିତି ଖୋଜି ବୁଲୁଥିଲା । ଗୋପବନ୍ଧୁ ଥିଲେ ପ୍ରଦୀପ୍ତ ସୂର୍ଯ୍ୟାଲୋକ, ଦିବସ ପରି ସ୍ପଷ୍ଟ ଓ ସୁନ୍ଦର । ନିଷ୍ପାପ ଓ ନିରପେକ୍ଷ ଏହି ଜ୍ୟୋତିଷ୍କଟିର ସଞ୍ଚାର ପଥ ଥିଲା ସମଗ୍ର ଉତ୍କଳ । ବିଚ୍ଛିନ୍ନାଞ୍ଚଳର ଛିନ୍ନ ଜୀବନ ତାଙ୍କୁ ଆଲୋଡ଼ିତ କରୁଥିଲା । 'ଉତ୍କଳ ସମ୍ମିଳନୀ'ରେ ବହୁ ପ୍ରସ୍ତାବ ଓ ଭାଷଣ ପରେ ଜଣେ ସଚ୍ଚୋଟ ପ୍ରତ୍ୟୟବାଦୀର ପ୍ରତ୍ୟକ୍ଷ ସହଯୋଗ ଲୋଡ଼ୁଥିଲା ଓଡ଼ିଆଭାଷୀ ବିଚ୍ଛିନ୍ନାଞ୍ଚଳ । ଓଡ଼ିଆ ଭାଷା ଓ ଓଡ଼ିଆ ଜୀବନର ଖଣ୍ଡିତ ପରିସ୍ଥିତି ଏଇ ପ୍ରିୟ ମଣିଷଟିକୁ ହାତଠାରି ଆମନ୍ତ୍ରଣ କରୁଥିଲା, 'ସତ୍ୟବାଦୀ' ର ମମତାଡ଼ୋରି ଛିଡ଼ାଇ ସେ ବୃହତ୍ତର ସଂଗ୍ରାମ ଅଙ୍ଗନରେ ଲମ୍ଫ ଦେଲେ । ସେ ମମତା ଯେତେ ନିବିଡ଼ ହେଲେ ବି କର୍ତ୍ତବ୍ୟ ପାଖରେ ତାର ଇତିକଥା କେବଳ ଲୁହର ବିସର୍ଜନ ପାଇଁ ଅପେକ୍ଷା ରଖିଥିଲା ।

## ସତ୍ୟବାଦୀ ପତ୍ରିକା (୧୯୧୫-୧୯୨୦)

୧୯୧୫ ମସିହା ମାର୍ଚ୍ଚ ମାସରେ ମାସିକ ସତ୍ୟବାଦୀ ପତ୍ରିକା ପ୍ରଥମେ ପ୍ରକାଶ ପାଇଲା । ସତ୍ୟବାଦୀ ବନବିଦ୍ୟାଳୟକୁ କେନ୍ଦ୍ରକରି ଏକତ୍ର ହୋଇଥିବା ଶିକ୍ଷିତ ଲେଖକଗୋଷ୍ଠୀଙ୍କ

ଚନ୍ତା ଓ ଭାବନାକୁ ଯଥାଯଥ ରୂପ ଦେବା ନିମନ୍ତେ ଏହି ସାହିତ୍ୟ ପତ୍ରିକାର ସୃଷ୍ଟି । ଏହି ପତ୍ରିକାର ସମ୍ପାଦକ ଥିଲେ ଗୋପବନ୍ଧୁ ବାବୁ । ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ, ବାସୁଦେବ ପ୍ରମୁଖ ସତ୍ୟବାଦୀର ଶିକ୍ଷକଙ୍କ ସମେତ ପଣ୍ଡିତ ଗୋପୀନାଥ ନନ୍ଦ, ଜଗବନ୍ଧୁ ସିଂହ, ବିରୂପାକ୍ଷ କର, ରୁଦ୍ରନାରାୟଣ ଷଡ଼ଙ୍ଗୀ, ଶ୍ରୀବତ୍ସ ପଣ୍ଡା ପ୍ରଭୃତି ସୁଲେଖକମାନଙ୍କ ରଚନାରେ 'ସତ୍ୟବାଦୀ' ବିମଣ୍ଡିତ ହେଉଥିଲା । ଆଲୋଚନା, ସମାଲୋଚନା, ପଲ୍ଲୀପ୍ରସଙ୍ଗ, ଗ୍ରନ୍ଥସାର – ଏହି ପତ୍ରିକାର ଧାରାବାହିକ ବିଷୟବସ୍ତୁ ଥିଲା । ପତ୍ରିକାର ପରିଚାଳକ ଥିଲେ ଶ୍ରୀ ଶଶିଭୂଷଣ ରଥ । ଉଚ୍ଚ ସାହିତ୍ୟିକ ସମାଲୋଚନା ବିଶେଷତଃ ସ୍କୁଲ କଲେଜ ପାଠ୍ୟ ସମ୍ପର୍କୀୟ ଆଲୋଚନା ଏଥିରେ ସ୍ଥାନ ପାଉଥିଲା । ପଲ୍ଲୀବାସୀମାନଙ୍କ ମଧ୍ୟରେ ଭାବପ୍ରଚାର ଓ ଶିକ୍ଷିତ ସହରବାସୀଙ୍କ ସଙ୍ଗେ ପଲ୍ଲୀର ସମ୍ପର୍କ ସ୍ଥାପନ ନିମନ୍ତେ ନିୟମିତ ରୂପେ ପଲ୍ଲୀପ୍ରସଙ୍ଗର ପ୍ରକାଶ ଏହି ପତ୍ରିକାର ଅନ୍ୟତମ ବୈଶିଷ୍ଟ୍ୟ ଥିଲା । ପତ୍ରିକାର ଆରମ୍ଭରେ ବିଭିନ୍ନ ସଂଖ୍ୟାରେ ମଣିଷଜୀବନ ପାଇଁ ଉଦ୍‌ଘୋଷିତ ବୈଦିକଋଷିର ବହୁ ଜାଗତିକ ମହାବାଣୀ ପ୍ରକାଶ ପାଉଥିଲା । "ଋତଂ ସତ୍ୟଂ ବଦିଷ୍ୟାମି" "ସତ୍ୟମେବ ଜୟତେ ନାଽନୃତଂ"—ଏହି ସତ୍ୟ ଗୋପବନ୍ଧୁଙ୍କ ଜୀବନର ଏକମାତ୍ର ସାଧନ ସାମଗ୍ରୀ ଥିଲା । ସତ୍ୟବିନା ଯେପରି ମାନବ ଜୀବନରେ ଶାନ୍ତି ନାହିଁ, ପ୍ରାଣରେ ସନ୍ତୋଷ ନାହିଁ, ଚିନ୍ତାରେ ସୌନ୍ଦର୍ଯ୍ୟ ନାହିଁ—ଗୋପବନ୍ଧୁଙ୍କ ଭାବ, ଭାଷା ଓ କ୍ରିୟା ସବୁବେଳେ ସେହି ମହାନ ସତ୍ୟର ସନ୍ଧାନୀ ଥିଲା । ଆଳସ୍ୟ, ଔଦାସୀନ୍ୟ, ହୃଦୟ ଦୌର୍ବଲ୍ୟ ପରିହାର କରି ସେହି ସତ୍ୟର ଆଶ୍ରୟ ଓ ଅନୁଧାବନ ପାଇଁ 'ସତ୍ୟବାଦୀ' ପତ୍ରିକାର ବହୁ ସ୍ତମ୍ଭରେ ଗୋପବନ୍ଧୁ ଆଧ୍ୟାତ୍ମିକ ଚେତନା ଆଣି ଦେଉଥିଲେ । ସତ୍ୟ ଉପଲବ୍ଧି ନିମନ୍ତେ ଗୋପବନ୍ଧୁ ସାହିତ୍ୟକୁ ପ୍ରଶସ୍ତ କ୍ଷେତ୍ର ମନେ କରିଥିଲେ । ସାହିତ୍ୟରେ ଏହି ବେଦବାକ୍ୟର ସତ୍ୟତା ପ୍ରତିପାଦନ କରିବା ତାଙ୍କର ଚରମ ଲକ୍ଷ୍ୟ ଥିଲା । ସତ୍ୟବାଦୀର ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାରେ 'ଆଦର୍ଶ ଓ ଆକାଙ୍କ୍ଷା' ଶୀର୍ଷକ ଆଲୋଚନାରେ ସେ ଲେଖିଥିଲେ—"ଓଡ଼ିଆମାନଙ୍କ ଜାତୀୟ ଜୀବନ ଗଢ଼ିବାକୁ ହେଲେ ଓଡ଼ିଆଭାଷା ମୁଖରେ ବିଶ୍ୱଭାବରାଶିର ପ୍ରକାଶ କରାଇବାକୁ ହେବ । ଭିନ୍ନ ଭିନ୍ନ ଦେଶ ଓ ପ୍ରଦେଶମାନଙ୍କରେ ବିଭିନ୍ନ ସମୟରେ ମାନବଚିନ୍ତା ଯେ ସମସ୍ତ ସତ୍ୟ ଆବିଷ୍କାର କରିଅଛି; ମାନବ ପ୍ରତିଭା ଯେଉଁ ଶୋଭାପଟଳ ପରିସ୍ଫୁଟ କରିଅଛି, ମାନବପ୍ରଜ୍ଞା ଯେଉଁ ଆଲୋକ ପାଇଅଛି, ମାନବ ଜୀବନ ଯେଉଁ ଉଚ୍ଚ ଆଦର୍ଶ ଦେଖାଇଅଛି ସେସବୁକୁ ଓଡ଼ିଆ ସାହିତ୍ୟର ସମ୍ପତ୍ତିଭୁକ୍ତ କରିବାକୁ ହେବ ।" ସାହିତ୍ୟ ମାଧ୍ୟମରେ ବିଶ୍ୱଭାବଧାରାର ପରିପ୍ରସାର, ଜାତୀୟ ଜୀବନର ଶୃଙ୍ଖଳାବିଧାନ ଓ ସମୁଚ୍ଚ ଆଦର୍ଶର ଉପଲବ୍ଧି ଥିଲା ଗୋପବନ୍ଧୁଙ୍କ ସ୍ୱପ୍ନ । ଜାତୀୟ ପ୍ରୀତି, ବିଶ୍ୱମମତା, ମାନବତାବୋଧ ଥିଲା ତାଙ୍କର ପରିପୋଷିତ ଆଦର୍ଶ । ଉତ୍କଳୀୟମାନଙ୍କ ଜାତୀୟଜୀବନ ଗଠନ ନିମନ୍ତେ ଓଡ଼ିଆଭାଷା ମୁଖରେ ବିଶ୍ୱଭାବରାଶିର ପ୍ରକାଶ କରି ଏ ଭାଷା, ଜାତି ଓ ସାହିତ୍ୟକୁ ଗୌରବମଣ୍ଡିତ କରିବାକୁ ସେ ସଯତ୍ନ ଥିଲେ । ମାତୃଭାଷା ତାଙ୍କ ନିକଟରେ ଥିଲା ଏକ ନିୟାମକ, ଉପେୟ ଥିଲା ଉନ୍ନତ ଚିନ୍ତାରାଜିର ପ୍ରକାଶ ଓ ବିକାଶ ।

'ସତ୍ୟବାଦୀ' ପତ୍ରିକା ଏହି ଉପେୟ ସାଧନର ଏକ ସାରସ୍ୱତ କ୍ଷେତ୍ରଭାବେ ଛ'ଟି ବର୍ଷ ଓଡ଼ିଶାର ସେବାରେ ଆପ୍ରାଣ ବ୍ରତୀ ହୋଇଥିଲା ।

ସତ୍ୟବାଦୀର ଆଲୋଚନା ସ୍ତରରେ ଜାତୀୟତା, ଶିକ୍ଷାସଂସ୍କାର, ମାତୃଭାଷା ସାହାଯ୍ୟରେ ଶିକ୍ଷାଦାନ, ଯୁବଶକ୍ତିର ଉଦ୍‌ବୋଧନ, ଲିପିସଂସ୍କାର, ସାହିତ୍ୟସେବା, ସାମୟିକ ପ୍ରସଙ୍ଗ, ମାନବିକ ସମସ୍ୟା ସମ୍ବନ୍ଧୀୟ ବହୁ ଉପାଦେୟ ବିଷୟର ଅଭାବ ନାହିଁ । ଏଗୁଡ଼ିକରେ ଗୋପବନ୍ଧୁଙ୍କ ସୁଦୂରଦୃଷ୍ଟି ଲକ୍ଷ୍ୟ କଲେ ବିସ୍ମିତ ହେବାକୁ ପଡ଼େ । ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନ (୧୯୧୯)ର ସଭାପତି ଭାବେ ଗୋପବନ୍ଧୁଙ୍କ ବକ୍ତବ୍ୟ, ବିଭିନ୍ନ ସମୟରେ ସତ୍ୟବାଦୀ ବିଦ୍ୟାଳୟରେ ପ୍ରଦତ୍ତ ଭାଷଣରୂପେ ଚରିତ୍ର ଗଠନ ଉପଯୋଗୀ ନୀତିମୂଳକ ରଚନାଗୁଡ଼ିକ ପତ୍ରିକାରେ ସ୍ଥାନ ପାଇଅଛି । ସ୍ୱଦେଶବତ୍ସଳ, ତ୍ୟାଗୀପୁରୁଷ ଗୋପାଳକୃଷ୍ଣ ଗୋଖଲେ, ଅଧ୍ୟାପକ ଜଗଦୀଶ ଚନ୍ଦ୍ର ବୋଷଙ୍କ ଜୀବନଚରିତ ଆଦର୍ଶ ଜୀବନଗଠନ ଉଦ୍ଦେଶ୍ୟରେ ଏ ପତ୍ରିକାରେ ଲିପିବଦ୍ଧ । ସତ୍ୟବାଦୀ ପତ୍ରିକାରେ 'ସତ୍ୟବାଦୀ ବା ସାକ୍ଷୀଗୋପାଳ' ଶୀର୍ଷକ ରଚନା କ୍ରମାନ୍ୱୟରେ ପ୍ରକାଶିତ ହେଉଥିଲା । ସତ୍ୟବାଦୀର ଦେବତା, ଏ ପୀଠର ବିଭିନ୍ନ ପର୍ବ ଓ ଯାତ୍ରା ବିଷୟ ଏଥିରେ ବିବୃତ । (ଏହା ଗୋପବନ୍ଧୁଙ୍କ ରଚନା ବୋଲି ନୀଳକଣ୍ଠ ବାବୁ ମତ ଦେଉଥିଲାବେଳେ ଅଧ୍ୟାପକ ଚିନ୍ତାମଣି ଦାସ ତାଙ୍କ ଐତିହାସିକ କୃପାସିନ୍ଧୁ ପୁସ୍ତକରେ ଏହା କୃପାସିନ୍ଧୁଙ୍କ ଲେଖନୀପ୍ରସୂତ ବୋଲି ମତବ୍ୟକ୍ତ କରିଛନ୍ତି) ଏ ରଚନାଗୁଡ଼ିକରେ କୃପାସିନ୍ଧୁଙ୍କ ଐତିହାସିକ ସୁଲଭ ଜିଜ୍ଞାସୁ ଦୃଷ୍ଟି ପରିବର୍ତ୍ତେ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱସୁଲଭ ବିଶ୍ୱାସପରମ୍ପରା-ସମର୍ଥିତ ଭକ୍ତିର ସଶ୍ରଦ୍ଧ ଦୃଷ୍ଟିଭଙ୍ଗୀ ଅଧିକ ଥିବାରୁ ନାମ ନଥିବା ଏ ରଚନାଗୁଡ଼ିକ ଗୋପବନ୍ଧୁଙ୍କ ଲେଖନୀପ୍ରସୂତ ବୋଲି ଭାବିବା ଅଧିକ ସଙ୍ଗତ ହେବ । 'ବୋଲପୁର ଶାନ୍ତି ନିକେତନ' ଶୀର୍ଷକ ଗୋପବନ୍ଧୁଙ୍କ ଭ୍ରମଣ ବୃତ୍ତାନ୍ତ ଚମତ୍କାର ସରସ ରମ୍ୟରଚନା । କବିଗୁରୁ ରବୀନ୍ଦ୍ରନାଥଙ୍କ ପ୍ରତିଷ୍ଠିତ ଶାନ୍ତିନିକେତନ ଆଶ୍ରମ ବିଦ୍ୟାଳୟ ଦର୍ଶନ ଜନିତ ଲେଖକଙ୍କ ଅନୁଭୂତି, ସତ୍ୟବାଦୀ ବନବିଦ୍ୟାଳୟ ସହ ତୁଳନାତ୍ମକ ବିଚାର ଓ ସ୍ୱାଧୀନ ମନ୍ତବ୍ୟ ଏ ରଚନାକୁ ସରସ କରିଅଛି ।

ପଲ୍ଲୀଜୀବନର ସୁଖ ଦୁଃଖ ବିଜଡ଼ିତ ବହୁପ୍ରସଙ୍ଗ, ପଲ୍ଲୀସମସ୍ୟାମାନଙ୍କର ସମାଧାନ ନିମନ୍ତେ ପ୍ରସ୍ତାବମାନ ଏଥିରେ ପ୍ରକାଶ ପାଇଛି । ଗୋପବନ୍ଧୁ ଓ ଗୋଦାବରୀଶ ଏ ଦିଗରେ ଲେଖନୀ ଚାଳନା କରିଛନ୍ତି । ଏସବୁ ରଚନାଗୁଡ଼ିକରେ ଉଭୟ ଲେଖକଙ୍କ ମୁକ୍ତଦୃଷ୍ଟି, ସମୁଚ୍ଚ ଆଦର୍ଶବୋଧ, ସୁଚିନ୍ତିତ ଓ ସହଜଗ୍ରାହ୍ୟ ପ୍ରସ୍ତାବମାନ ଅଧିକ ପ୍ରକଟିତ । ସତ୍ୟବାଦୀ ପତ୍ରିକାରେ ପ୍ରକାଶିତ ଗୋପବନ୍ଧୁଙ୍କ ଗଦ୍ୟରଚନା ଭଙ୍ଗୀ, ସ୍ପଷ୍ଟତା ଓ ସରଳତା ବୋଧହୁଏ ଆଜି ଓଡ଼ିଶାର ଦୈନିକ ପତ୍ରିକା 'ସମାଜ'ରେ ସ୍ପଷ୍ଟ ପ୍ରତିଫଳିତ ଓ ଅନୁସୃତ ହେଉଅଛି ।

ସତ୍ୟବାଦୀ ପତ୍ରିକାରେ ସାହିତ୍ୟ ସମାଲୋଚନା, ଶିକ୍ଷା, ଧର୍ମ, କଳା ଓ ଜାତୀୟତା ସମ୍ପର୍କରେ ନୀଳକଣ୍ଠଙ୍କ ମନନଶୀଳ ପ୍ରବନ୍ଧାବଳୀ ଅତ୍ୟନ୍ତ ଉପାଦେୟ । ଆର୍ଯ୍ୟ ଜୀବନର

ବୈଶିଷ୍ଟ୍ୟ ପ୍ରତିପାଦନମୂଳକ ଆଲୋଚନାତ୍ମକ ପ୍ରବନ୍ଧାବଳୀ ଏଥିରେ ଧାରାବାହିକ ପ୍ରକାଶିତ ହୋଇ ପରେ 'ଆର୍ଯ୍ୟଜୀବନ' ନାମକ ପୁସ୍ତକାକାରରେ ସଙ୍କଳିତ ହୋଇଅଛି । 'ଲାବଣ୍ୟବତୀ'ର ସମାଲୋଚନା, ଫକୀରମୋହନଙ୍କ ଉପନ୍ୟାସମାନଙ୍କର ଯଥାର୍ଥ ମାନନିରୂପଣ ଏହି ପତ୍ରିକାକୁ ନୀଳକଣ୍ଠଙ୍କ ବିଶେଷ ଅବଦାନ ଭାବରେ ଉଲ୍ଲେଖ ରହିବ । ବସ୍ତୁତଃ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ନିର୍ଭୀକତା ସଂସ୍କୃତି ସଚେତନତା ଓ ସ୍ୱକୀୟ ବିଚାରଧାରାର ପ୍ରବର୍ତ୍ତନ ପାଇଁ ଏହି ପତ୍ରିକା ଜରିଆରେ ନୀଳକଣ୍ଠ ଓ ଗୋପବନ୍ଧୁଙ୍କ ନିର୍ଦ୍ଦେଶ ଓଡ଼ିଆ ସମାଲୋଚନା କ୍ଷେତ୍ରରେ ଏକ ନୂତନ ପ୍ରସ୍ଥ ଫିଟାଇ ଦେଇଛି ।

ଅନ୍ୟ ଜଣେ ଭାଷା ସାହିତ୍ୟ ସାଧକ ଶ୍ରୀ ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱ ସନ୍ଦର୍ଭ, ଶ୍ରୀମଦ୍ଭାଗବତ ସମାଲୋଚନା ପ୍ରାୟ ୧୯୧୬ ଠାରୁ 'ସତ୍ୟବାଦୀ' ପତ୍ରିକାର ଶେଷାବସ୍ଥା ୧୯୨୦ ପର୍ଯ୍ୟନ୍ତ ଧାରାବାହିକ ଭାବରେ ପ୍ରକାଶିତ ହୋଇଅଛି । ଏ ସବୁରେ ଶ୍ରୀ ନନ୍ଦଙ୍କ ସାଧନାର ନିରବଚ୍ଛିନ୍ନତା, ନୈଷ୍ଠିକ, ସାହିତ୍ୟସେବା, ଅନୁସନ୍ଧାନ ଓ ସାଧାରଣରେ ବ୍ୟବହୃତ ଓଡ଼ିଆ ଭାଷା ଉପରେ ବୈଜ୍ଞାନିକ ଆଲୋଚନା ପାଠକମାନଙ୍କ ପାଇଁ ଯେତେ ଶୁଷ୍କ ଓ ନୀରସ ହେଲେ ମଧ୍ୟ ଓଡ଼ିଆ ଭାଷାର ସମ୍ପଦ ହୋଇ ରହିବ । ଓଡ଼ିଆ ସମାଲୋଚନା ସାହିତ୍ୟର ଇତିହାସରେ 'ଉତ୍କଳ ସାହିତ୍ୟ' ପ୍ରକାଶିତ ତାଙ୍କ 'ସାରଳାଦର୍ପଣ' ଓ ଭାଷା-ତାତ୍ତ୍ୱିକ ଆଲୋଚନା ତାଙ୍କୁ ଜଣେ ଶ୍ରେଷ୍ଠ ସାଧକର ଗୌରବ ଅର୍ପଣ କରିଅଛି ।

ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ପଲ୍ଲୀପ୍ରସଙ୍ଗ ସତ୍ୟବାଦୀର ପଦ ଶରୀରଭେଦ ଓ ସ୍ୱାସ୍ଥ୍ୟ ଆର୍ଥି-ନୀତିକ ଆଲୋଚନା 'ଧନ' ଶୀର୍ଷକ ପ୍ରବନ୍ଧ ଏହି ପତ୍ରିକାରେ କ୍ରମାନ୍ୱୟରେ ପ୍ରକାଶିତ ହୋଇଅଛି । ପଲ୍ଲୀର ଉନ୍ନତି ପାଇଁ ବିଭିନ୍ନ ପ୍ରସ୍ତାବ, ଗୃହସ୍ଥମାନଙ୍କର ପଲ୍ଲୀସେବାରେ ଅବକାଶ, ପଲ୍ଲୀସ୍ୱାସ୍ଥ୍ୟ ସମ୍ପର୍କରେ ଉପାଦେୟ ଆଲୋଚନା 'ସତ୍ୟବାଦୀ'ର ଘୋଷିତ ଆଦର୍ଶ ଦିଗରେ ରେଖାପାତ କରୁଥିଲା । 'ଧନ' ପ୍ରବନ୍ଧାବଳୀ ସମକାଳୀନ ବିଚାରରେ ଓଡ଼ିଆ ସାହିତ୍ୟରେ ଅଭିନବ ଓ ପାଠକମାନଙ୍କ କୌତୂହଳ ଉଦ୍ଦୀପକ ଥିଲା । ଗୋଦାବରୀଶଙ୍କ ସରଳ ଭାଷା ଓ ରଚନାରୀତି ଚିତ୍ତାକର୍ଷକ ଥିଲା ।

ମାତୃଭୂମିର ପ୍ରକୃତ ପରିଚୟ ଲାଭ ନିମନ୍ତେ ଗୋପବନ୍ଧୁଙ୍କ ମନରେ ଯେଉଁ ଆବେଗ ଥିଲା ପରମ୍ପରାର ପୂର୍ବୋକ୍ତ ଦୃଷ୍ଟି ନେଇ ଐତିହାସିକ କୃପାସିନ୍ଧୁ ସେ ସବୁ 'ସତ୍ୟବାଦୀ' ପତ୍ରିକାରେ ପ୍ରକାଶ କରୁଥିଲେ । ଭାରତରେ ଇଂରେଜ ସାମ୍ରାଜ୍ୟ ବିସ୍ତାର, ଇଂରେଜ ବଣିକମାନେ ଓଡ଼ିଶା ଆଗମନ, କୋଣାର୍କ ମନ୍ଦିରର ଶିଳ୍ପ ଓ ସ୍ଥାପତ୍ୟ, ଚନ୍ଦ୍ରଶିଳାର ଆବିଷ୍କୃତି ଆଦି ଆଲୋଚନାରେ କୃପାସିନ୍ଧୁଙ୍କ ଅନାସକ୍ତ ତଥ୍ୟାନୁଶୀଳନ ଓ ସତ୍ୟ ଉଦ୍‌ଘାଟନ ନିମନ୍ତେ ଅଭୀପ୍‌ସା ନିହିତ । ଓଡ଼ିଆ ଇତିହାସଠାରୁ ଭାରତ ଇତିହାସର ଘଟଣାବଳୀ ପର୍ଯ୍ୟନ୍ତ ତାଙ୍କ ଐତିହାସିକ ଦୃଷ୍ଟି ପ୍ରଧାବିତ । ସମାଜତତ୍ତ୍ୱମୂଳକ ହିନ୍ଦୁର ସମାଜବିଧାନ ଆଲୋଚନାରେ ତାଙ୍କ ବିଶ୍ଳେଷଣାତ୍ମକ ଦୃଷ୍ଟିର ତୀକ୍ଷ୍ଣତା ଲକ୍ଷ୍ୟ କରିବାର କଥା ।

ସ୍ୱଦେଶରେ ଦୁର୍ଗ ଓ ଦେବାଳୟ, ପ୍ରାଚୀନ ଓ ପ୍ରବର୍ତ୍ତିନ, କୀର୍ତ୍ତି ଓ ଅନୁଷ୍ଠାନ ଭିତରେ ଯେଉଁ ପୁଣ୍ୟ ଓ ପବିତ୍ରତା ସଞ୍ଚିତ ହୋଇ ଏ ଜାତିକୁ ଜାତୀୟତାର ପୁଲକ ଓ ସଫଳ ଆତ୍ମୀୟ ବିଶ୍ୱାସ ଦେଇଥିଲା ସେହି ତଥ୍ୟାନୁସନ୍ଧାନ ଗୋପବନ୍ଧୁଙ୍କ ପ୍ରାଣକୁ ଉଦ୍‌ବୁଦ୍ଧ କରିଥିଲା । ଏହି ଆଦର୍ଶରେ ଉଦ୍‌ବୁଦ୍ଧ ସତ୍ୟବାଦୀର ଅନ୍ୟତମ ବିଶିଷ୍ଟ ସମର୍ଥକ ଶ୍ରୀ ଜଗବନ୍ଧୁ ସିଂହ ତାଙ୍କର ବହୁ ବିକ୍ଷିପ୍ତ ଐତିହାସିକ ପ୍ରବନ୍ଧାବଳୀ 'ସତ୍ୟବାଦୀ' ପତ୍ରିକାରେ ପ୍ରକାଶ କରିଥିଲେ । 'ପ୍ରାଚୀନ ଉତ୍କଳ'ର କେତେକ ପରିଚ୍ଛେଦ, ପ୍ରତାପରୁଦ୍ରଦେବଙ୍କ ବିଷୟରେ ଧାରାବାହିକ ରଚନା, କୋଣାର୍କ ସମ୍ବନ୍ଧୀୟ ଲେଖା, ପ୍ରଥମ ମହାଯୁଦ୍ଧକାଳର ଘଟଣା ଅବଲମ୍ବନରେ ସମର ପ୍ରସଙ୍ଗ ପ୍ରଭୃତି ରଚନାରେ ଗୋପବନ୍ଧୁ ସିଂହଙ୍କ ଐତିହାସିକ ଦୃଷ୍ଟି ଓ ପ୍ରୀତି ସୁସ୍ପଷ୍ଟ ।

ଇତିହାସର ଆଲୋଚନା କ୍ଷେତ୍ରରେ 'ସତ୍ୟବାଦୀ'ର ଅନ୍ୟତମ ଆଲୋଚକ ବିରୂପାକ୍ଷ କରଙ୍କ 'କେଶରୀବଂଶ' ଶୀର୍ଷକ ଧାରାବାହିକ ଆଲୋଚନା ଉଲ୍ଲେଖଯୋଗ୍ୟ । ଇତିହାସ ଆଲୋଚନାର ଏହି ପ୍ରାକ୍‌କାଳରେ ଏସବୁ ଆଲୋଚନାର ଐତିହାସିକ ମୂଲ୍ୟ ଯାହା ଥାଉନା କାହିଁକି ସାହିତ୍ୟ କ୍ଷେତ୍ରରେ ଏକ ପୁଣ୍ୟ ପରମ୍ପରାର ପ୍ରକାଶ ରୂପେ ଏମାନଙ୍କ ଗୁରୁତ୍ୱ କଳନା କରାଯାଇପାରେ ।

ଶ୍ରୀ ବାସୁଦେବ ମହାପାତ୍ର 'ସତ୍ୟବାଦୀ'ର ଅନ୍ୟତମ ବିଶିଷ୍ଟ ପ୍ରବନ୍ଧକାର । ଜୀବନର ଅଭିଜ୍ଞତା ସମ୍ଭୂତ ବିଷୟମାନଙ୍କର ପଠନଦ୍ୱାରା ଏକ ସୁନ୍ଦର ଜୀବନ ଯାପନ ନିମନ୍ତେ ତାଙ୍କ ପ୍ରବନ୍ଧମାନଙ୍କର ବିଷୟ ବିନ୍ୟାସ ଓ ବିଶ୍ଳେଷଣ ଅତି ଚିତ୍ତାକର୍ଷକ, ଏ ସବୁରେ ଜୀବନପାଇଁ ବହୁ ନୀତିମୂଳକ ପ୍ରସ୍ତାବ ଅତି ସରଳ ଭାବରେ ପ୍ରକାଶ ପାଇଛି । ଅବଶ୍ୟ ଭାଷା ଅନେକ ସ୍ଥଳେ ସାଧୁଶବ୍ଦ ବହୁଳ ଓ ଭଙ୍ଗୀ । ରତ୍ନାକର ପତିଙ୍କ ପ୍ରବନ୍ଧଗୁଡ଼ିକ ମଧ୍ୟ ଏହି ଧରଣର ବୈଶିଷ୍ଟ୍ୟରେ ମଣ୍ଡିତ । ଜୀବନରେ ସଂଯମର ସ୍ଥାନ, ଚରିତ୍ର ଗଠନ, ସମାଜସଂସ୍କାରର ସମସ୍ୟା, ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ଆପେକ୍ଷିକ ସମ୍ବନ୍ଧ ସେ ନିଜ ପ୍ରବନ୍ଧମାନଙ୍କରେ ମନୋଜ୍ଞଭାବେ ବର୍ଣ୍ଣନା କରିଛନ୍ତି । ପ୍ରବନ୍ଧମାନଙ୍କରେ ଯୁକ୍ତିମୂଳକତା ଓ କ୍ରମିକତା ସ୍ପଷ୍ଟ ।

ଅନ୍ୟମାନଙ୍କ ମଧ୍ୟରେ ଗୋଦାବରୀଶ ମହାପାତ୍ର, ଶ୍ରୀ ଚନ୍ଦ୍ରଶେଖର ମିଶ୍ର, ଶ୍ରୀ ସଦାଶିବ ମିଶ୍ର ଛାତ୍ରାବସ୍ଥାରେ ଏ ପତ୍ରିକାରେ ଲେଖନୀଚାଳନା କରିଛନ୍ତି ।

ସତ୍ୟବାଦୀ ବନ ବିଦ୍ୟାଳୟ, 'ସତ୍ୟବାଦୀ' ପତ୍ରିକା ଓ ଲେଖକମଣ୍ଡଳୀ ସମସ୍ତଙ୍କୁ ନେଇ ପରବର୍ତ୍ତୀ ଯୁଗରେ 'ସତ୍ୟବାଦୀ' ନାମକ ଏକ ଜୀବନଦର୍ଶନ ଗଢ଼ି ଉଠିଛି ଏବଂ ଏକ ଉଜ୍ଜ୍ୱଳ ପରମ୍ପରା ତିଆରି ହୋଇଛି, ଯାହା ଆଜି ଓଡ଼ିଆ ସାହିତ୍ୟରେ ଏକ ଯୁଗ ନାମରେ ପରିଚିତ । ସତ୍ୟବାଦୀ ପତ୍ରିକା ତାର ମାତ୍ର ଛ' ବର୍ଷର ସ୍ଥିତି ଭିତରେ ଏକ ନିର୍ଦ୍ଦିଷ୍ଟ ବଳିଷ୍ଠ ପରମ୍ପରାର ବାହକ ଓ ମୁଖପାତ୍ର ରୂପେ ଗୋପବନ୍ଧୁ ପ୍ରାଣର ଅଭିଳାଷ ନେଇ ଓଡ଼ିଆ ସାହିତ୍ୟରେ ଦୀପ୍ତିମାନ ହୋଇ ରହିବ ।

[ ମୋର ପୂଜ୍ୟ ଅଧ୍ୟାପକ ଶ୍ରୀଯୁକ୍ତ ଶ୍ରୀନିବାସ ମିଶ୍ର, ଏମ୍. ଏ. ଙ୍କ ସାହାଯ୍ୟରେ ଏ ଅଧ୍ୟାୟଟି ଲିଖିତ । ]

## 'ସମାଜ' ଏକ କ୍ରାନ୍ତି, ଏକ ଚେତନା

୪ । ୧୦ । ୧୯୧୯ ତାରିଖରେ ସତ୍ୟବାଦୀ ପ୍ରେସରୁ 'ସମାଜ' ସାପ୍ତାହିକ ଖବରକାଗଜ ଭାବରେ ପ୍ରକାଶ ପାଇଲା । 'ସମାଜ' ବାହାରିବା ପୂର୍ବରୁ 'ସତ୍ୟବାଦୀ' ମାସିକ ପତ୍ରିକାରେ 'ସମାଜ' ପ୍ରକାଶନ ନିମନ୍ତେ ଯେଉଁ ବିଜ୍ଞପ୍ତି ପ୍ରକାଶ ପାଇଥିଲା ଗୋପବନ୍ଧୁଙ୍କ ଜୀବନରେ ତା'ର ଐତିହାସିକ ମୂଲ୍ୟ ଅବଶ୍ୟ ସ୍ୱୀକାର କରିବାକୁ ହେବ । ସେଥିରେ ଲେଖାଥିଲା—"ସମାଜ ନାମରେ ଖଣ୍ଡିଏ ସାପ୍ତାହିକ ପତ୍ର କୁମାର ପୂର୍ଣ୍ଣିମା ଦିନ ସତ୍ୟବାଦୀ ପ୍ରେସରୁ ବାହାରିବ । ଏଥିରେ ଦେଶର ଅବସ୍ଥା ଓ ନାନାଦି ହିତକର ପ୍ରସ୍ତାବର ଆଲୋଚନା ହେବ । ରାଜା ପ୍ରଜା, ଜମିଦାର ରଇତ, ମହାଜନ ଖାତକ, କୃଷକ ବ୍ୟବସାୟୀ, ଶିକ୍ଷକ ଛାତ୍ର, ମାଲିକ ମଜୁରିଆ, ଶିଳ୍ପୀ ଶ୍ରମଜୀବୀ ପ୍ରଭୃତି ସକଳଶ୍ରେଣୀ ଲୋକଙ୍କ ପ୍ରୟୋଜନୀୟ ବିଷୟ ଏଥିରେ ରହିବ । ସହର, ମଫସଲ, ଦେଶ ବିଦେଶର ସମ୍ବାଦମାନ ଏଥିରେ ଦିଆଯିବ । ବିଶେଷତଃ ପଲ୍ଲୀଗ୍ରାମର ଜନସାଧାରଣଙ୍କ ଦୁଃଖଗୁହାରି ଅଭାବ ଅଭିଯୋଗମାନ ପ୍ରକାଶିତ ହେବ । × × × ଏହି ପତ୍ରିକାର ଅଗ୍ରିମ ବାର୍ଷିକ ମୂଲ୍ୟ ଦେଢ଼ଟଙ୍କା ମାତ୍ର ।"

ଆଶ୍ୱିନ ଶୁକ୍ଳ ଦଶମୀ (ଦଶହରା ଉତ୍ସବ) ଅବକାଶରେ 'ସମାଜ'ର ପ୍ରଥମ ସଂଖ୍ୟା ପ୍ରକାଶ ପାଇଲା । ଗୋପବନ୍ଧୁଙ୍କ ଜୀବନର ବହୁ ଆଶା, ଆକାଂକ୍ଷା ଓ ଅଭିଯୋଜନା 'ସମାଜ'ରେ କ୍ରମେ ରୂପାନ୍ତରିତ ହେବାକୁ ଲାଗିଲା । ଜଣେ ବ୍ୟବସ୍ଥାପକ ହିସାବରେ ନିଜର ଚିନ୍ତାଧାରାକୁ, ଦେଶର ଦୁଃଖ ଦାରିଦ୍ର୍ୟକୁ ଓ ଜନସାଧାରଣଙ୍କ ସ୍ଥାନୀୟ ତଥା ଜାତୀୟ ସମସ୍ୟାଗୁଡ଼ିକୁ କର୍ତ୍ତୃପକ୍ଷଙ୍କ ନଜରରେ ପକାଇବା ପାଇଁ 'ସମାଜ' ଏକ ବଳିଷ୍ଠ ମାଧ୍ୟମ ଭାବରେ ପ୍ରକାଶ ପାଇଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ବିଶେଷତଃ ବିଚ୍ଛିନ୍ନାଞ୍ଚଳରେ ଏହା ଭାବଗତ ଐକ୍ୟ ଓ ସଂହତି ଆଣିବ ବୋଲି ଗୋପବନ୍ଧୁ ଚିନ୍ତାକଲେ ।

ଗୋପବନ୍ଧୁ ସମାଜର ପ୍ରତିଷ୍ଠାତା ଓ ପ୍ରଥମ ସମ୍ପାଦକ ଥିଲେ । ପଣ୍ଡିତ କୃପାସିନ୍ଧୁଙ୍କୁ ଏହି କାଗଜର ପ୍ରକାଶନ ନିମନ୍ତେ ବହୁ ଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । ଶ୍ରୀଯୁକ୍ତ ସତ୍ୟବାଦୀ ତ୍ରିପାଠୀ ଏହାର ପରିଚାଳକ (Manager) ଥିଲେ । ଏହି ପତ୍ରିକାର ପ୍ରକାଶନ ସତ୍ୟବାଦୀର ଛାତ୍ରମହଲରେ ବେଶ୍ ଆସକ୍ତି ଓ ଆଲୋଡ଼ନ ସୃଷ୍ଟି କରିଥିଲା । ବହୁଛାତ୍ର ସ୍ୱେଚ୍ଛାକୃତ ଭାବରେ ଏ ମୁଦ୍ରଣ କାମରେ ସହଯୋଗ କରୁଥିଲେ । ୧୯୧୯ ମସିହା ଅକ୍ଟୋବର ମାସରେ ଶ୍ରୀଯୁକ୍ତ ରାଧାନାଥ ରଥ ନିଜର ଶ୍ରେଷ୍ଠ ସରକାରୀ ଚାକିରି ଛାଡ଼ି 'ସମାଜ' କାଗଜର ମ୍ୟାନେଜର ଭାବରେ ଯୋଗଦେଲେ । ଶ୍ରୀଯୁକ୍ତ ହରିହର ରଥ ସହକାରୀ ଭାବରେ ପରିଚାଳନା ଦାୟିତ୍ୱ ବହନ କଲେ । ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ଶ୍ରୀଯୁକ୍ତ ରାମଚନ୍ଦ୍ର ରଥ ପ୍ରମୁଖ ସତ୍ୟବାଦୀର ଶିକ୍ଷକବୃନ୍ଦ ଆନ୍ତରିକତାର ସହିତ ଏହି ନୂତନ କ୍ରାନ୍ତିକାରୀ ପତ୍ରିକାର ତତ୍ତ୍ୱାବଧାନ କରୁଥିଲେ ।

'ସମାଜ' ଓଡ଼ିଆ ସାହିତ୍ୟର ଗଦ୍ୟଧାରାରେ ଏକ ଆଦର୍ଶ ସୃଷ୍ଟି କରିପାରିଥିଲା । ପଲ୍ଲୀ ଅଞ୍ଚଳର ଅଧିବାସୀଙ୍କ ଅବବୋଧ ନିମନ୍ତେ 'ସମାଜ'ର ଗଦ୍ୟଭାଷା ଖୁବ୍ ସରଳ ଓ ପ୍ରାଞ୍ଜଳ ଥିଲା । ପୁନଶ୍ଚ ସମ୍ବାଦ ପ୍ରକାଶନରେ ଗୋପବନ୍ଧୁଙ୍କ ମୌଳିକ ଦୂରଦୃଷ୍ଟି ଓ ନିର୍ଭୀକତା ବେଶ୍ ବାରିହୋଇ ପଡ଼ୁଥିଲା । ଅନେକ ସତ୍ୟ ଖବର ପ୍ରକାଶ କରି ସେ କର୍ତ୍ତୃପକ୍ଷଙ୍କ କ୍ରୁଦ୍ଧ ଦୃଷ୍ଟିରେ ପଡ଼ୁଥିଲେ ଓ ଏଥିପାଇଁ ସମ୍ପାଦକ ଭାବରେ କୋର୍ଟ କଚେରୀକୁ ମଧ୍ୟ ତାଙ୍କୁ ଦୌଡ଼ିବାକୁ ହେଉଥିଲା । ବନ୍ୟାବିପ୍ଲାବିତ କରୁଣ ବିବରଣୀ ପ୍ରଥମରୁ ଧାରାବାହିକ ଭାବରେ 'ସମାଜ'ରେ ପ୍ରକାଶ ପାଇଲା । ଫଳରେ ଦୁର୍ଭିକ୍ଷର କରାଳତାକୁ ଦେଶ ଲୋକେ ତଥା ସରକାର ଉପଲବ୍ଧି କରିବାକୁ ସୁଯୋଗ ପାଇଲେ ।

"ସତ୍ୟ ହୋଇଥିଲେ ସାଂଘାତିକ" ଶୀର୍ଷକ ସମ୍ବାଦ ପ୍ରକାଶନ ପରେ ଗୋପବନ୍ଧୁଙ୍କ ନାମରେ ରୁଜୁ ହୋଇଥିବା ମକଦ୍ଦମା ଖାରଜ ହୋଇଗଲା । ଗୋପବନ୍ଧୁ ଆତ୍ମପକ୍ଷ ସମର୍ଥନ ପାଇଁ ନୀତିଦୃଷ୍ଟିରୁ ଓକିଲ ନ ଦେଇ ମଧ୍ୟ ସତ୍ୟର ପ୍ରବଳ ଅନୁରାଗ ହେତୁ ନିର୍ଦ୍ଦୋଷ ପ୍ରମାଣିତ ହେଲେ; କିନ୍ତୁ ପୁରୀ କଲେକ୍ଟର 'ସମାଜ' କାଗଜ ପ୍ରକାଶନ ସଂସ୍ଥା ତରଫରୁ ଦୁଇ ହଜାର ଟଙ୍କାର ଅମାନତ ସରକାରଙ୍କ ଟ୍ରେଜେରୀରେ ଜମା ରଖିବାକୁ ନୋଟିସ୍ ଦେଲେ । ଗୋପବନ୍ଧୁ ଏ ସମୟରେ 'ଅସହଯୋଗ କାର୍ଯ୍ୟ'ରେ ଓଡ଼ିଶାସାରା ବୁଲିବାରେ ଏତେ ବ୍ୟସ୍ତ ରହିଥିଲେ ଯେ, ଏ ନୋଟିସ୍ ସେ ପାଇ ପାରିନଥିଲେ । ପରେ ବିଭିନ୍ନ ଅଭିସନ୍ଧି ଓ ଆକ୍ରୋଶମୂଳକ ଅଭିଯୋଗରେ ୧୯୨୨ ମସିହା ମେ' ମାସ ଶେଷ ଆଡ଼କୁ ଗୋପବନ୍ଧୁ ଗିରଫ୍ ହେବାପରେ ଆଚାର୍ଯ୍ୟ ମହାଶୟ କଚ୍ଛାଦନ ପାଇଁ 'ସମାଜ' ପ୍ରକାଶନର ପୂର୍ଣ୍ଣ ଦାୟିତ୍ୱ ବୁଲାଇଥିଲେ ।

ସତ୍ୟବାଦୀ ହାଇସ୍କୁଲ ନିକଟବର୍ତ୍ତୀ ଏକ ସ୍କୁଲଛପର ଘରୁ ସମାଜ ପ୍ରକାଶ ପାଉଥିଲା । ପ୍ରେସ ନାମ ଗୋପବନ୍ଧୁ ଦେଇଥିଲେ 'ସତ୍ୟବାଦୀ ପ୍ରେସ' । ତାଙ୍କ ଜୀବନର କାର୍ଯ୍ୟକଳାପ ସହିତ ସତ୍ୟବାଦୀ ପୀଠର ନାମ ଅତି ମନୋଜ୍ଞଭାବରେ ଏ 'ପ୍ରେସ'ର ନାମକରଣରେ ମିଶିରହିଥିଲା । ଗୋପବନ୍ଧୁ ଜେଲ୍‌ରୁ ଖଲାସ ହେବାପରେ ୬୯ ତାରିଖ ନଭେମ୍ବର ୧୯୨୪ ମସିହାରୁ ପୁନଶ୍ଚ 'ସମାଜ' ସମ୍ପାଦନାର ଦାୟିତ୍ୱ ନିଜେ ଗ୍ରହଣ କଲେ । ଆଚାର୍ଯ୍ୟ ମହାଶୟ ମୁଦ୍ରାକର ଓ ପ୍ରକାଶକ ରହିଲେ । ଗୋପବନ୍ଧୁ ଜେଲ୍‌ରୁ ଆସିବା ପରେ ନାନା କାରଣରୁ ତାଙ୍କ କର୍ମକ୍ଷେତ୍ରକୁ ସତ୍ୟବାଦୀରୁ ପୁରୀକୁ ନେବା ମନସ୍ଥ କଲେ । ୧୯୨୫ ଜାନୁୟାରୀ ପହିଲା; ନବବର୍ଷର ପ୍ରଥମ ସକାଳରେ ସତ୍ୟବାଦୀ ପ୍ରେସ ପୁରୀର ପଥୁରିଆ ସାହିରେ ପ୍ରତିଷ୍ଠିତ ହେଲା । ଜାନୁୟାରୀ ୩ ତାରିଖରେ ପୁରୀର ସାପ୍ତାହିକ ସମାଜ ପୂର୍ବରୀତି ଅନୁଯାୟୀ ପ୍ରକାଶ ପାଇଲା ।

କିନ୍ତୁ ସେତେବେଳେ କଟକ ସହର ଓଡ଼ିଶାର ରାଜଧାନୀ ତଥା ରାଜନୈତିକ ଓ ବ୍ୟାବସାୟିକ ପ୍ରାଣକେନ୍ଦ୍ର ଥିଲା । ତେଣୁ ପୁରୀରୁ କଟକକୁ ସତ୍ୟବାଦୀ ପ୍ରେସକୁ ଉଠାଇ ଆଣି ସମାଜକୁ ଅଧିକ ଗତିଶୀଳ କରିବା ଦିଗରେ ଗୋପବନ୍ଧୁ ଏକ ଦୃଢ଼ ନିଷ୍ପତ୍ତି ନେଲେ ।

ପୁରୀରେ ମାତ୍ର ଦୁଇବର୍ଷ କେତେ ମାସ ରହିବା ପରେ ୧୯୨୭ ମସିହା ଜୁଲାଇ ୨ ତାରିଖ ଠାରୁ କଟକରୁ 'ସମାଜ' ପ୍ରକାଶ ପାଇଲା । ପୁରୁଣା କଲେଜ ଗଳି (ଭାଷାକୋଷ ଲେନ୍)ର ଏକ ଭଡ଼ାଘରେ ପ୍ରେସ ଅବସ୍ଥାପିତ ହେଲା । ପଣ୍ଡିତ ଲିଙ୍ଗରାଜ ମିଶ୍ର ମୁଦ୍ରାକର ଓ ପ୍ରକାଶକ ହୋଇ ରହିଲେ ।

ଦେଶର ଦୁର୍ଗତି ଓ ପ୍ରଗତି ପାଇଁ 'ସମାଜ' ମଝିରେ ମଝିରେ ବିଶେଷ ସଂଖ୍ୟା ପ୍ରକାଶ କରି ଲୋକ ସଂପ୍ରୀତି ଲାଭ କରୁଥିଲା । ୧୯୨୭ ମସିହା ଅକ୍ଟୋବର ମାସରେ କଟକରେ ହେଉଥିବା ବନ୍ୟା ସମ୍ମିଳନୀ ଉପଲକ୍ଷେ ଏହିପରି ଏକ ବିଶେଷ ସଂଖ୍ୟା ପ୍ରକାଶ ପାଇଥିଲା । ବସ୍ତୁ-ତଥ୍ୟସହ ଗୋପବନ୍ଧୁ ଏଥିରେ ପ୍ରାଣସ୍ପର୍ଶୀ ଭାଷାରେ ଆଲୋଚନା କରିଥିଲେ ଓ ଜାତିର ଦୁଃଖରେ ତାଙ୍କ ପ୍ରାଣର ବ୍ୟାକୁଳ ବ୍ୟଥାର ଗମ୍ଭୀର ପରିଚୟ ଦେଇଥିଲେ । ଏହି ସମ୍ମିଳନୀ ପରେ ପରେ 'ସମାଜ'ର ଆଦର ଢେର ବଢ଼ିଯାଇଥିଲା । 'ସମାଜ' ଓଡ଼ିଆ ସାମ୍ବାଦିକତାର ଏକ ମାନ ସୃଷ୍ଟି କରିପାରିଥିଲା ଓ ସମାଜର ସାମ୍ବାଦିକମାନେ ଉଚ୍ଚ ପ୍ରଶଂସିତ ହେଉଥିଲେ । ମେ' ୧୯୨୮ ମସିହାରେ ପାରିକୁଦରେ ପୋଲିସ ଅତ୍ୟାଚାର ଶୀର୍ଷକ ଏକ ସମ୍ବାଦ ପ୍ରକାଶ ପାଇବା ପରେ ସରକାର ଏକ ମକଦ୍ଦମା ରୁଜୁ କରିବାପାଇଁ ସମ୍ବାଦଦାତାଙ୍କ ନାମ ଚାହିଁଲେ । ଗୋପବନ୍ଧୁ କିନ୍ତୁ ମାନବିକତା ତଥା ନୈତିକତା ଦୃଷ୍ଟିରୁ ସମ୍ବାଦଦାତାଙ୍କୁ ବିପନ୍ନ କରିବାକୁ ଚାହିଁଲେ ନାହିଁ । ଅତି ସ୍ପଷ୍ଟ ଭାବରେ ସେ ଏପରି ତଥ୍ୟ ଯୋଗାଇବାର ବିରୋଧ କରିଥିଲେ । ଫଳରେ ଜିଲ୍ଲାପାଳ ପ୍ରକାଶକଙ୍କ ଉପରେ ଶହେ ଟଙ୍କା ଜୋରିମାନା କରିଥିଲେ । ଗୋପବନ୍ଧୁ କିନ୍ତୁ ଏହି ଅବିଚାରମୂଳକ ଦଣ୍ଡାଦେଶ ଶୁଣିବା ପୂର୍ବରୁ ଇହଧାମ ତ୍ୟାଗ କରିଥିଲେ ।

## ବ୍ୟବସ୍ଥାପକ ସଭା ସଦସ୍ୟ

୧୯୧୨ ମସିହାରେ ବଙ୍ଗ ପ୍ରଦେଶରୁ ବିଚ୍ଛିନ୍ନ ହୋଇ ବିହାର ଓ ଓଡ଼ିଶା ଜଣେ ଲେଫଟ୍‌ନାଣ୍ଟ ଗଭର୍ଣ୍ଣରଙ୍କ ଅଧୀନରେ ଶାସିତ ହେଲା । ୧୯୦୯ର ଆକ୍ଟ ଅନୁସାରେ ଏସବୁ ପ୍ରାଦେଶିକ ବ୍ୟବସ୍ଥା ସଭାକୁ ଅତିରିକ୍ତ ସଭ୍ୟ ଭାବରେ ମ୍ୟୁନିସିପାଲ ସଂସ୍ଥାମାନଙ୍କରୁ ଜଣେ ଜଣେ ସଭ୍ୟ ନିର୍ବାଚିତ ହୋଇ ଆସିବା କଥା । ଓଡ଼ିଶାର ସମସ୍ତ ପୌରସଂସ୍ଥାଗୁଡ଼ିକରୁ ୧୯୧୨ରେ ଉତ୍କଳ ଗୌରବ ମଧୁସୂଦନ ନିର୍ବାଚିତ ହୋଇଥିଲେ । ୧୯୧୭ ମସିହା ନିର୍ବାଚନରେ ମଧୁବାବୁଙ୍କ ପ୍ରରୋଚନାରେ ଓ ଉଦ୍ୟମରେ ଗୋପବନ୍ଧୁଙ୍କର ଜୟପଟ୍ଟ ହେଲା ।

ଗୋପବନ୍ଧୁ ଆଗରୁ ଖଦୀ ପିନ୍ଧୁଥିଲେ— ମାତ୍ର ବ୍ୟବସ୍ଥାପକ ସଭାରେ ଯୋଗ ଦେବାପାଇଁ ସେ ପ୍ୟାଣ୍ଟ, ଓଭରକୋଟ ଓ ଜୋତା ପିନ୍ଧୁଥିଲେ । ସଭାର ଅଧିବେଶନ ସରିଲେ ସେସବୁ ପେଡ଼ିରେ ଭଙ୍ଗାହୋଇ ରହୁଥିଲା—ପୁଣି ସେହି ଖଦୀକୁ ସେଇ ଖଦୀ—ସରଳ ନିରାଡ଼ମ୍ବର ବେଶଭୂଷା । ବ୍ୟବସ୍ଥାପକ ସଭାରେ ଯୋଗଦେବା ପରେ ତାଙ୍କ ଓକିଲାତି ଜୀବନର

ଏକପ୍ରକାର ଅବସାନ ଘଟିଲା । ସେ କୋର୍ଟ କଚେରୀକୁ ଯିବା ଏକବାରେ ଛାଡ଼ିଦେଲେ ।

ସେତେବେଳେ ସାର୍ ଏଡ୍‌ୱାର୍ଡ ଗେଟ୍ ବିହାର-ଓଡ଼ିଶା ଗଭର୍ଣ୍ଣର ଥା'ନ୍ତି । କେତେକ ସଦସ୍ୟ ଗୋରା ସାହେବ ଓ ଗଭର୍ଣ୍ଣରଙ୍କ ଅନୁଗ୍ରହ ପାଇବା ପାଇଁ ବଡ଼ ପ୍ରଲୋଭିତ ହୋଇ ପଡ଼ୁଥା'ନ୍ତି । ସେମାନଙ୍କ କାର୍ଯ୍ୟକଳାପରେ ଉତ୍କଟ ବ୍ୟକ୍ତିଗତ ଲୋଭ ଓ ଲୋଭ ଫୁଟି ଉଠୁଥାଏ । ସାହେବଙ୍କ ସହିତ ଆନ୍ତରିକତା, ବସାଉଠା ଓ ଆଳାପ ଆଲୋଚନାରେ ସେମାନେ ନିଜକୁ ଧନ୍ୟ ମନେକରୁଥା'ନ୍ତି । ଫଳରେ ଏହି ସରକାରଙ୍କ ଅନ୍ୟାୟ ବିରୁଦ୍ଧରେ ସେମାନଙ୍କର କିଛି କହିବାର ସାହସ ନଥାଏ ।

ଗୋପବନ୍ଧୁଙ୍କ ଜୀବନ ଭିନ୍ନ ଉପାଦାନରେ ଗଢ଼ାଥିଲା । ଜନତାର ପ୍ରତିନିଧି ଭାବରେ କର୍ତ୍ତବ୍ୟରେ ଅବହେଳାକୁ ସେ ମହାପାପ ବୋଲି ଭାବୁଥିଲେ । ତେଣୁ କୌଣସି ଫାଇଦା-ମୂଳକ ମନୋବୃତ୍ତି ବା ଉଦ୍ୟମ ସହିତ ସେ ବ୍ୟବସ୍ଥାପକ ଭାବରେ ସାଲିସ୍ କରିପାରୁ-ନଥିଲେ । ତାଙ୍କର କର୍ତ୍ତବ୍ୟପରାୟଣତା, ନମ୍ରତା ଓ ଯୁକ୍ତିବତ୍ତା ଗଭର୍ଣ୍ଣରଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ନିଜ କ୍ଷମତାର ଅସଦ୍‌ଉପଯୋଗ ସେ କରୁନଥିବାରୁ ଗଭର୍ଣ୍ଣର ତାଙ୍କ ପ୍ରତି ପ୍ରଶଂସମାନ ଥିଲେ ।

ବ୍ୟବସ୍ଥାପକ ଭାବରେ ଗୋପବନ୍ଧୁ ଚାରୋଟି ମୁଖ୍ୟ ସମସ୍ୟା ପ୍ରତି ଧ୍ୟାନ ଦେଇଥିଲେ— (୧) ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଓ ଓଡ଼ିଶା ପାଇଁ ସ୍ୱତନ୍ତ୍ର ଏକ ରାଜନୈତିକ ପ୍ରଦେଶ ଗଠନ, (୨) ସ୍ଥାୟୀ ବନ୍ୟା ନିରୋଧ, (୩) ଲବଣ ଆମଦାନୀ ଉପରୁ କଟକଣା ଓ ଶୁଳ୍କ ଲୋପ, (୪) ସତ୍ୟବାଦୀ ବନବିଦ୍ୟାଳୟ ଛାଞ୍ଚରେ ଓଡ଼ିଶାସାରା ଶିକ୍ଷା ପ୍ରସାର । ବ୍ୟବସ୍ଥା ସଭାରେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳକୁ ଏକ ପ୍ରଦେଶାଧୀନ କରିବା ପାଇଁ ଏକ ପ୍ରସ୍ତାବ ଆଣିବା ପୂର୍ବରୁ ସେ ଏସବୁ ଅଞ୍ଚଳରେ ନିଜେ ବୁଲି ଲୋକମାନଙ୍କ ଭାଷା ଓ ସମସ୍ୟା ସହିତ ପରିଚୟ ଲାଭ କରିଥିଲେ । ମଧ୍ୟପ୍ରଦେଶର ବସ୍ତର, ଫୁଲଝର, ଖଡ଼ିଆଳ, ବିନ୍ଦ୍ରା ନୂଆଗଡ଼ଠାରୁ ମାଡ୍ରାସ ପ୍ରଦେଶ ଅନ୍ତର୍ଗତ ବିଜୟନଗର ଓ ଜୟପୁର ବାଟ ଦେଇ ବଙ୍ଗପ୍ରଦେଶ ଅନ୍ତର୍ଗତ ମେଦିନୀପୁର ଓ ବିହାର ଅନ୍ତର୍ଗତ ସିଂହଭୂମ ଓ ଷଢ଼େଇକଳା ପର୍ଯ୍ୟନ୍ତ ସେ ଓଡ଼ିଆ ଭାଷାଭାଷୀ ଲୋକଙ୍କ ନିବିଡ଼ ସମ୍ପର୍କରେ ଏହି କାଳରେ ଆସିପାରିଥିଲେ । ସେମାନଙ୍କ ଭିତରେ ଓଡ଼ିଆ ସଂସ୍କୃତି, ଭାଷା ଓ ସାହିତ୍ୟକୁ ବଞ୍ଚେଇ ରଖିବା ପାଇଁ ସେ ତାଙ୍କର ସହକର୍ମୀ ଗୋଦାବରୀଶଙ୍କୁ ସତ୍ୟବାଦୀରୁ ନେଇ ୧୯୧୯ ରେ ଚକ୍ରଧରପୁର ଓ ସିଂହଭୂମରେ ହାଇସ୍କୁଲ ପରିଚାଳନା ଦାୟିତ୍ୱରେ ରଖିଲେ । ପୋରହାଟ ଓ ଧଳଭୂମିରେ ଅନେକଗୁଡ଼ିଏ ନିମ୍ନ ପ୍ରାଥମିକ ସ୍କୁଲ ଖୋଲିଗଲା । ସତ୍ୟବାଦୀର ଅନ୍ୟତମ ସହକର୍ମୀ ଶ୍ରୀ ବାସୁଦେବ ମହାପାତ୍ର ବାହାଡ଼ାଗୋଡ଼ାକୁ ଯାଇ ସେଠାରେ ଗୋଟିଏ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । ଏହି ଅଞ୍ଚଳର ଲୋକମାନଙ୍କ ମନରେ ଓଡ଼ିଆ ଜାତିପ୍ରାଣତା ଆଣିବା ପାଇଁ ସେ ସ୍କୁଲମାନଙ୍କରେ ପୁରସ୍କାର ବିତରଣ ଉତ୍ସବ କରି ନିଜେ ଉଦ୍‌ବୋଧନ ଦେଉଥିଲେ । ଏହି ସିଂହଭୂମ ଅଞ୍ଚଳରେ ସେ ଓଡ଼ିଆ ଜାଗୃତିର ବାର୍ତ୍ତା ପ୍ରଚାର କରିବେଲେ

ରାଧାନାଥ ରଥଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଶ୍ରୀ ରଥ ସରକାରୀ ଚାକିରି ଛାଡ଼ି ଗୋପବନ୍ଧୁଙ୍କ ଜାତୀୟକାର୍ଯ୍ୟରେ ଯୋଗଦେଲେ । ବଙ୍ଗ ସରକାର ମିଦନାପୁରର ଓଡ଼ିଆ ନେତାଙ୍କୁ ଦେଶଦ୍ରୋହ ପାଇଁ ଅଭିଯୁକ୍ତ କଲେ । ଗୋପବନ୍ଧୁ ଏପରି ମନୋବୃତ୍ତି ବିରୁଦ୍ଧରେ ନିଜେ ନେତୃତ୍ୱ ନେଇ ଏଠାରେ ଲୋକମାନଙ୍କ ମନରେ ନବ ଜାତୀୟତା ଓ ସ୍ୱାଧୀନତା ଚେତନା ଆଣିବାରେ ନିୟତ ଉଦ୍ୟମ କରୁଥିଲେ । ଲୋକମାନଙ୍କ ମନର ଅବଦମିତ ଜାତି-ପ୍ରୀତି କ୍ରମେ ପ୍ରକଟିତ ହେବାକୁ ବାଟ ଖୋଜି ପାଇଲା । ସେମାନେ ଆଶାଭରସା ପାଇଲେ ।

ବନ୍ୟା ଓ ଦୁର୍ଭିକ୍ଷର ନିରାକରଣ ପାଇଁ ଗୋପବନ୍ଧୁଙ୍କ ହୃଦୟର ବ୍ୟାକୁଳତା ସମସ୍ତ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭା ଓ ପରେ ଭାରତ ସରକାର ତଥା ଜାତୀୟନେତା ମହାତ୍ମା ଗାନ୍ଧି ଉପଲବ୍ଧି କରିପାରିଥିଲେ । ମହାନଦୀ, କାଠଯୋଡ଼ି, ଦୟା, ଭାର୍ଗବୀ, ଖରସୋତା, ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ ଓ ସୁବର୍ଣ୍ଣରେଖାର ବନ୍ୟାରେ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ଧ୍ୱଂସସ୍ତୂପରେ ପରିଣତ ହେଉଥିଲା । ବର୍ଷେ ବଢ଼ି ହେବା ବେଳକୁ ଅପର ବର୍ଷ ମରୁଡ଼ି ଓଡ଼ିଶା ପାଇଁ ପ୍ରକୃତିର ଥିଲା ଦୁରନ୍ତ ଉପହାସ । ବଢ଼ି ମରୁଡ଼ି ଜନିତ ପରବର୍ତ୍ତୀ ପରିସ୍ଥିତି ଦୁର୍ଭିକ୍ଷକୁ ଆୟତ୍ତ କରିବା ଗରିବ ଜନସାଧାରଣଙ୍କ ସାଧ୍ୟାତୀତ ବ୍ୟାପାର ଥିଲା । ଲୋକେ ଖାଇବାକୁ ନ ପାଇ ଜୀବନବୃନ୍ତରୁ ଝଡ଼ି ପଡ଼ୁଥିଲେ । ଆହାର ପାଇଁ ଅଟ୍ଟପାଟ୍ଟ ହେଉ ହେଉ ମାଆ କୋଳରେ ସନ୍ତାନର ହେଉଥିଲା ଅପମୃତ୍ୟୁ । ଏସବୁ ଗୋପବନ୍ଧୁଙ୍କ ଦରଦୀ ହୃଦୟକୁ ଆଲୋଡ଼ିତ କରୁଥିଲା । ବ୍ୟବସ୍ଥାପକ ସଭାରେ ସେ ଏହାର ନିରାକରଣ ପାଇଁ ପ୍ରବଳ ଉଦ୍ୟମ କରୁଥିଲେ ।

କିନ୍ତୁ ସରକାର ବୋଲି ସେତେବେଳେ ଯାହାଙ୍କୁ ବୁଝାଯାଉଥିଲା ସାଧାରଣ ଲୋକଙ୍କ ସହିତ ସେମାନଙ୍କର ସମ୍ପର୍କ ନଥିଲା । ଫଳରେ ବ୍ୟବସ୍ଥା ସଭାରେ ସରକାରୀ ସଭ୍ୟମାନେ ମିଥ୍ୟା ରିପୋର୍ଟ ଦାଖଲ କରି ଜନତାର ଦାବୀକୁ ଅବଦମିତ କରିଦେଉଥିଲେ । ଦରିଦ୍ର ବୁଭୁକ୍ଷୁର ଆକୁଳ ଅଶ୍ରୁ ସେମାନଙ୍କ ହୃଦୟରେ ରେଖାପାତ କରିପାରୁନଥିଲା ।

୧୯୧୯ କୋଠଦେଶ ବଢ଼ିର ଯେଉଁ କରୁଣ ଚିତ୍ର ଗୋପବନ୍ଧୁ ବ୍ୟବସ୍ଥା ସଭାରେ ଦାଖଲ କଲେ ତାହା ଅତିରଞ୍ଜିତ ବୋଲି ସରକାରୀ ସଭ୍ୟ ଓଡ଼ିଶା ଡିଭିଜନ କମିଶନର ମି. ଗ୍ରୁଣ୍ଟିଂ ପ୍ରତିବାଦ କଲେ । ସରକାରୀ ସୂତ୍ରରୁ ଏକ ବିଶ୍ୱାସଯୋଗ୍ୟ ବିବରଣୀ ମିଳିବା ଅସମ୍ଭବ ଥିଲା । ପୁଣି ବିବରଣୀ ଥିଲା ଅଭିସନ୍ଧିମୂଳକ । ଗୋପବନ୍ଧୁ ଖବରକାଗଜ ଜରିଆରେ ଏ ବନ୍ୟାର କରାଳ ଦୃଶ୍ୟ ବର୍ଣ୍ଣନା କରି ସମଗ୍ର ଓଡ଼ିଶା ଓ ଭାରତର ଦୃଷ୍ଟି ଆକର୍ଷଣ କଲେ । ଭାରତର ବହୁ ଅଞ୍ଚଳରୁ ବେସରକାରୀ ସାହାଯ୍ୟ ଆସିବାବେଳେ ସରକାରଙ୍କ ଉଦାସୀନତା ଗୋପବନ୍ଧୁଙ୍କୁ ବିଚଳିତ କଲା । ତେଣୁ ମାର୍ଚ୍ଚ ୧୩ ତାରିଖ ୧୯୨୦ ମସିହାର ବଜେଟ୍ ଅଧିବେଶନରେ ସେ ସରକାରଙ୍କ ଦ୍ୱାରା ବ୍ୟବସ୍ଥା କରାଯାଉଥିବା ୧୯,୦୦୦ ଟଙ୍କା ବଦଳେ ୫୦,୦୦୦ ଟଙ୍କା ଦାବୀ କରି ପ୍ରସ୍ତାବ ଆଗତ କଲେ । ଏଥିପାଇଁ

ପୋଲିସ ବଜେଟର ଖର୍ଚ୍ଚରୁ ୩୯,୦୦୦ ଟଙ୍କା କାଟି ଦେବାପାଇଁ ସେ ପ୍ରସ୍ତାବ ଆଣିଥିଲେ । ପ୍ରାଦେଶିକ ସରକାର ୫୦,୦୦୦ ଟଙ୍କା ବ୍ୟବସ୍ଥା କରିପାରିଥିଲେ ଭାରତ ସରକାର ଏହାର ତିନିଗୁଣ, ଅର୍ଥାତ୍ ୧,୫୦,୦୦୦ ଟଙ୍କା ଦେଇଥାନ୍ତେ । ଫଳରେ ଲୋକମାନଙ୍କ ପାଖରେ ସରକାରୀ ସାହାଯ୍ୟ ଆବଶ୍ୟକ ପରିମାଣରେ ପହଞ୍ଚି ପାରିଥାନ୍ତା ; କିନ୍ତୁ ମି. ଗ୍ରିଣ୍ଡିଂଙ୍କ ମିଥ୍ୟା ରିପୋର୍ଟକୁ ଅବଲମ୍ବନକରି ଗୋପବନ୍ଧୁଙ୍କର ଏ ପ୍ରସ୍ତାବ ଗୃହୀତ ହେଲା ନାହିଁ । କିନ୍ତୁ ଦରକାର ସ୍ଥଳେ ଅଧିକ ବ୍ୟବସ୍ଥା କରାଯିବ ବୋଲି ଗଭର୍ଣ୍ଣର ମତ ଦେଲେ ।

ଗୋପବନ୍ଧୁ ବ୍ୟଥିତ ହୃଦୟରେ କହିଲେ—"ମି. ଗ୍ରିଣ୍ଡିଂ ମାତ୍ର ଥରେ ଛ' ଦିନତଳେ ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳକୁ ଯାଇଛନ୍ତି । ନିଜ କାର୍‌ରେ ଯାଇ ସେ ଫେରି ଆସିଲେ । ତେଣୁ ଅତି-ମାତ୍ରାରେ କ୍ଷତିଗ୍ରସ୍ତ ଅଞ୍ଚଳ ସବୁ ଦେଖିବା ତାଙ୍କ ପକ୍ଷେ ସମ୍ଭବ ହୋଇନାହିଁ । ମୁଁ ନିଜେ ସେସବୁ ଅଞ୍ଚଳ ବୁଲିବୁଲି ଥରେ ବୁଲି ଦେଖିଛି ।"

ମି. ଗ୍ରିଣ୍ଡିଂ ହସ୍ତକ୍ଷେପ କରି କହିଲେ—"ବାରମ୍ବାର ବିଜୁଳି ଓ ଘଡ଼ଘଡ଼ି ମାରୁଥିଲା । ରାସ୍ତା ନିହାତି କାଦୁଆ । ମୁଁ ଆଉ କିପରି ଭିତରକୁ ଯାଇଥା'ନ୍ତି ? ଗୋପବନ୍ଧୁ ବାବୁ ମୋତେ ସେସବୁ ସ୍ଥାନକୁ ଯିବାକୁ କହିଥିଲେ ସତ; କିନ୍ତୁ ଯିବା ସମ୍ଭବ ଥିଲା କି ?"

ତହୁଁ ଗୋପବନ୍ଧୁ କହିଲେ—"ସରକାର ଯଦି ଜଣେ ସରକାରୀ ସଭ୍ୟଙ୍କ ସହିତ ବେସରକାରୀ ସଭ୍ୟଙ୍କୁ ଏଥିପାଇଁ ପଠାଇଥାନ୍ତେ ତା'ହେଲେ ମୋ କଥାର ସତ୍ୟାସତ୍ୟ ଏଠାରେ ବୁଝାପଡ଼ିଥାନ୍ତା । ମୁଁ ଘଟଣା ଅତିରଞ୍ଜିତ କରିଛି ବୋଲି ମି. ଗ୍ରିଣ୍ଡିଂ ମଧ୍ୟ ମୋତେ ଦୋଷାରୋପ କରି କହିପାରିନଥା'ନ୍ତେ । କେତୋଟି ୟୁନିୟନ୍ ଏଥିରେ କ୍ଷତିଗ୍ରସ୍ତ ହୋଇଛି ତାହା ସଠିକ୍ ଭାବରେ ମୁଁ କହି ନପାରିଲେ ବି ମୋର ଗୋଟିଏ ପ୍ରଶ୍ନର ଉତ୍ତରରେ ଯାହା ଏହି ସମ୍ବନ୍ଧରେ ସରକାରୀ ସୂତ୍ରରୁ ଯୋଗେଇ ଦିଆଯାଇଛି ତଦନୁସାରେ ତିନୋଟି ଥାନାର ୨୫୦ ଖଣ୍ଡି ଗ୍ରାମ ଅନ୍ତତଃ ବହୁତ କ୍ଷତିଗ୍ରସ୍ତ ବୋଲି ଜଣାଯାଏ । ତେବେ ଲୋକ ନଖାଇ ନପିଇ ମରୁଥିବାବେଳେ ଏଠାରେ ବାଦାନୁବାଦର ଅବକାଶ ନାହିଁ । ମୁଁ ନିଜ ଆଖିରେ ଦେଖିଥିବା ଓ ନିଜ ଅଙ୍ଗେ ନିଭେଇଥିବା ଘଟଣାକୁ ଅସ୍ୱୀକାର କରିପାରିବି ନାହିଁ । ଏହାପରେ ଆଉ ଅଧିକ କହିବା ମୋର ଦରକାର ନାହିଁ । ଆବଶ୍ୟକ ସ୍ଥଳେ ଅଧିକ ଖର୍ଚ୍ଚ ବ୍ୟବସ୍ଥା ହେବ ବୋଲି ଏ ଗୃହରେ ପ୍ରତିଶ୍ରୁତି ଦିଆଯାଇଛି । 'ଦୁର୍ଭିକ୍ଷ' ହୋଇଛି ବୋଲି ଘୋଷିତ ହେଉ ବା ନହେଉ ସେଥିରେ କିଛି ଯା'ଆସେ ନାହିଁ; କିନ୍ତୁ ସେଠାରେ ମୁମୂର୍ଷୁ ମଣିଷଙ୍କୁ ତୁରନ୍ତ ବଞ୍ଚାଇବା ଦାୟିତ୍ୱ ସରକାରଙ୍କର । ଯାହା ବ୍ୟବସ୍ଥା ହେବା କଥା ତାହା ହୋଇଛି ବୋଲି ମିଃ ଗ୍ରିଣ୍ଡିଂ କହୁଛନ୍ତି । ବେଶ୍ ତାହାହିଁ ହେଉ । ସରକାରୀ ଅଫିସରମାନେ କ'ଣ କରିଛନ୍ତି ବା କ'ଣ ନ କରିଛନ୍ତି ସେ ଦୋଷ ବର୍ତ୍ତମାନ ଦେଖିବାର ବେଳ ନୁହେଁ । ସେମାନେ ଏଣିକି କ'ଣ ବ୍ୟବସ୍ଥା କରିବେ, ତାହାର ଉପରେ ମୁଁ ଗୁରୁତ୍ୱ ଦେଉଛି । ଓଡ଼ିଶାର ଏକ ସାମାନ୍ୟ ଅଂଶ ବନ୍ୟାଗ୍ରସ୍ତ ବୋଲି କହି ଅଧିକ ଖର୍ଚ୍ଚ ବ୍ୟବସ୍ଥାର ପ୍ରତିରୋଧ କରାଯାଉଛି । ଛୋଟ ଅଞ୍ଚଳ ହେଉ ବା ବଡ଼ ଅଞ୍ଚଳ ହେଉ—କିଛି କଥା ନାହିଁ; କିନ୍ତୁ ଯଦି

ଏ ଦେଶର କୌଣସି ଏକ ଜଲ୍ଲୁତକମ ଅଞ୍ଚଳରେ ଖାଇବା ବିନା ଜଣେ ହେଲେ ମଣିଷ ମରଯାଏ ତା'ହେଲେ ସେ ମୃତ୍ୟୁ ପାଇଁ ସରକାର ଦାୟୀ ହେବେ ଏବଂ ଆମେ ଯେଉଁମାନେ ପ୍ରତ୍ୟକ୍ଷ ବା ପରୋକ୍ଷରେ ଶାସନ ସଂସ୍ଥାସହ ସମ୍ପୃକ୍ତ ସେମାନେ ପ୍ରତ୍ୟେକେ ଏଥିପାଇଁ ଦାୟୀ ହେବୁ ।"

ଗୋପବନ୍ଧୁ ତାଙ୍କର ଏ ବକ୍ତବ୍ୟ ଆଗରୁ ଲୋକେ ଖାଉଥିବା ଶୁଖିଲ ଘାସ, କଅଁଳିଆ ପତ୍ର, ଖୁଦ ଓ ମଦରଙ୍ଗା ଦେଖାଇଥିଲେ ଓ କଙ୍କାଳସାର ଲୋକମାନଙ୍କ ଫଟୋ ଛପାଇ ବାଣ୍ଟିଥିଲେ । ଏବେ ଏ ଭାଷଣରେ ସମଗ୍ର ବ୍ୟବସ୍ଥା ସଭା ମ୍ରିୟମାଣ ଓ ଆଲୋଡ଼ିତ ହୋଇ ପଡ଼ିଲା । ନିଜେ ଗଭର୍ଣ୍ଣର ପରିଦର୍ଶନକୁ ଯିବେ ବୋଲି ସ୍ଥିର ହେଲା । ସେ କଥା ପୂର୍ବେ ଆଲୋଚିତ ହୋଇଛି ।

ବନ୍ୟା ପ୍ରତିକାର ଦିଗରେ ଏକ ସ୍ଥାୟୀ ବ୍ୟବସ୍ଥା ପାଇଁ ଗୋପବନ୍ଧୁ ଚିନ୍ତା କଲେ । କାରଣ ସମୁଦ୍ରକୁ ଚାଙ୍ଗେ ପାଣି ପରି ଏ ସାହାଯ୍ୟ ଲୋକମାନଙ୍କ ପେଟପାଇଁ ଯଥେଷ୍ଟ ହେଉଥିଲା; ଅଧିକନ୍ତୁ ସେମାନଙ୍କୁ ମାଗିଖିଆ ଜାତିରେ ପରିଣତ କରିବାକୁ ବସିଥିଲା । ଓଡ଼ିଆ ଜାତିର ଆତ୍ମିକ ବଳ ଓ ସ୍ୱାବଲମ୍ବନଶୀଳତାରେ ଗୋପବନ୍ଧୁଙ୍କର ଅଗାଧ ବିଶ୍ୱାସ ଥିଲା । ତେଣୁ ଏତେ ବଡ଼ ଜାତିର ଏ ଐତିହାସିକ ଦୁରବସ୍ଥାର ପ୍ରତିକାର ନହେଲେ ଜାତିପ୍ରାଣତାର ଆବେଗ ଶୁଖି ଶୁକୁଟି ଯିବ ବୋଲି ସେ ବିଚାରୁଥିଲେ ।

ଆଉଥରେ ବ୍ୟବସ୍ଥା ସଭାରେ ସେ ଓ ବ୍ରଜସୁନ୍ଦର ବାବୁ ସ୍ଥାୟୀ ବନ୍ୟା ପ୍ରତିରୋଧ ବ୍ୟବସ୍ଥା ପାଇଁ ଏକ ପ୍ରସ୍ତାବ ଆଗତ କଲେ । ଏଥିପାଇଁ ଏକ କମିଟି ବସାଇ ବନ୍ୟାଗ୍ରସ୍ତ ଅଞ୍ଚଳ ଅବ୍ୟବସ୍ଥା ପର୍ଯ୍ୟବେକ୍ଷଣ ଓ ପ୍ରାରମ୍ଭିକ ଅନୁଶୀଳନ ନିମନ୍ତେ ସେ ପ୍ରସ୍ତାବରେ ଦାବୀ କରାଗଲା । ଯଦିଓ ସେତେବେଳର ଦାୟିତ୍ୱହୀନ ସରକାର ଏହି ପ୍ରସ୍ତାବକୁ ଗ୍ରହଣ କଲେ ନାହିଁ ତଥାପି ୧୯୨୨-୨୩ରେ ଯେଉଁ ବନ୍ୟା ତଦନ୍ତ କମିଟି ନିଯୁକ୍ତ ହେଲା ସେମାନେ ପ୍ରାରମ୍ଭିକ ଅନୁଶୀଳନରେ ୭୦,୦୦୦ ଟଙ୍କା ଖର୍ଚ୍ଚ କରିଥିଲେ; କିନ୍ତୁ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇନଥିଲେ । ପୁନଶ୍ଚ ୧୯୨୭ର ବନ୍ୟାଜନିତ ଭୟଙ୍କର କ୍ଷୟକ୍ଷତି ପରେ ସରକାର ଏକ ବନ୍ୟା ବିଶେଷଜ୍ଞ କମିଟି ନିଯୁକ୍ତକଲେ ଓ ସେହି ଅନୁସନ୍ଧାନର ବିବରଣୀ ଉପରେ ବହୁକାଳପରେ ମହାନଦୀରେ ହୀରାକୁଦ ବନ୍ଧ ନିର୍ମିତ ହୋଇଅଛି ।

## ଲୁଣ ଉତ୍ପାଦନ ସମସ୍ୟା

ଓଡ଼ିଶାର ସମୁଦ୍ରେପ୍ରାନ୍ତି ଉପକୂଳବର୍ତ୍ତୀ ଜିଲାର ଲୋକମାନେ ସମୁଦ୍ର ଲୁଣି ପାଣିରୁ ଲୁଣ ମାରି ଜୀବିକା ନିର୍ବାହ କରୁଥିଲେ । ଇଷ୍ଟଇଣ୍ଡିଆ କମ୍ପାନୀ ଓଡ଼ିଶା ଦଖଲ କରିବା ପରେ ଲୋକମାନଙ୍କ

ଏହି ଅଧିକାର ବାତିଲ୍ କରିଦିଆଗଲା ଓ ଲୁଣମରା ଉପରେ ଶୁଳ୍କ ବସାଗଲା; ତଥାପି ମଧ୍ୟ ଲୁଣ ମାରିବା ପାଇଁ ସରକାରଙ୍କ ଅନୁମତି ନେଇବାକୁ ହେଲା । କଟକ, ପୁରୀ, ଗଞ୍ଜାମ ଓ ବାଲେଶ୍ୱରର ଗରିବ ଲୋକମାନେ ଏଥିରେ ଅତିମାତ୍ରାରେ କ୍ଷତିଗ୍ରସ୍ତ ହେଲେ । ଲୁଣ ପରି ଏକ ଅତ୍ୟାବଶ୍ୟକ ଦ୍ରବ୍ୟ ଉପରେ ନିୟନ୍ତ୍ରଣ ଓ ଶୁଳ୍କ ଜାରିହେବାରୁ ଲୁଣର ଦର ମଧ୍ୟ ବଢ଼ିଗଲା । ଓଡ଼ିଶାର ଚିଲିକା ଉପକୂଳବର୍ତ୍ତୀ ଲୋକେ ଓ ସୁନ୍ଦରବାଲିର ଲୋକେ ଲୁଣ ମାରି ଭାରତର ବିଭିନ୍ନ ଅଞ୍ଚଳକୁ ରପ୍ତାନି କରୁଥିଲେ । ବିଶେଷତଃ ଚିଲିକାର ପାରିକୁଦ ଏଥିପାଇଁ ପ୍ରସିଦ୍ଧ ଥିଲା । ବର୍ତ୍ତମାନ ସବୁ ବନ୍ଦ ହୋଇଗଲା ।

ଗୋପବନ୍ଧୁ ବ୍ୟବସ୍ଥାପକସଭାରେ ଲୁଣ ଆମଦାନୀରୁ ସମସ୍ତ ଶୁଳ୍କ ଓ କଟକଣା ଉଠାଇଦେବାକୁ ଏକ ପ୍ରସ୍ତାବ ଆଣିଲେ । ବହୁ ନଜିର ଓ ନଥି ଉଦ୍ଧାର କରି ସେ ନିଜ ଯୁକ୍ତିକୁ ସାବ୍ୟସ୍ତ କରାଇବାକୁ ବସିଲେ । ସରକାର ଚିଲିକାରେ ଲୁଣ ଆମଦାନୀ ପୁନଃପ୍ରଚଳନ ନିମନ୍ତେ ଏକ କାରଖାନା ବସାଇବାକୁ ପ୍ରତିଶ୍ରୁତି ଦେଲେ । ଏଥିପାଇଁ ଟାଟା ଓ କିଲବର୍ଣ୍ଣ କମ୍ପାନୀ ଯୌଥ ସୂତ୍ରରେ ଲୁଣ ଆମଦାନୀ ନିମନ୍ତେ କାରଖାନା ବସାଇବାକୁ ପ୍ରାରମ୍ଭିକ ତଦନ୍ତ କାର୍ଯ୍ୟ ଆରମ୍ଭ କଲେ । ଏହି ସମୟରେ ଗୋପବନ୍ଧୁଙ୍କ ସହିତ ଗଭର୍ଣ୍ଣର ଏଡୱାର୍ଡ ଗେଟ୍ ଚିଲିକାକୁ ଗସ୍ତରେ ଆସିଲାବେଳେ ଲୋକଙ୍କ ଆପତ୍ତି ଶୁଣି ପୁନର୍ବାର ଯଥାରୀତି ଲୁଣ ଆମଦାନୀ କରାଇବାକୁ ସ୍ଥାନୀୟ ଲୋକଙ୍କୁ ସୁଯୋଗ ମିଳିବ ବୋଲି ପ୍ରତିଶ୍ରୁତି ଦେଇଥିଲେ; କିନ୍ତୁ ୧୯୧୮ରେ ପ୍ରଥମ ପୃଥିବୀ ମହାଯୁଦ୍ଧର ଅବସାନ ସହିତ ଇଂଲଣ୍ଡର ଅର୍ଥନୀତିକ ସ୍ଥିତି ଦୋହଲିଗଲା । ତେଣୁ ଇଂଲଣ୍ଡ ଅର୍ଥନୀତିର ଉଦ୍ଧାର ପାଇଁ ଲିଭରପୁଲର ଲୁଣ ଭାରତବଜାରରେ ବିକ୍ରୀ ପାଇଁ କଡ଼ାକଡ଼ି ବ୍ୟବସ୍ଥା ହୋଇଗଲା । ଏ ଦୁଇଟି କମ୍ପାନୀ ମଧ୍ୟ ଏଠାରେ ଲୁଣ ଆମଦାନୀ ନିମନ୍ତେ କାରଖାନା ବସାଇବା ବ୍ୟବସାୟ ଦୃଷ୍ଟିରୁ ଅଧିକ ବ୍ୟୟସାପେକ୍ଷ ହେବ ବୋଲି ମତ ଦେଲେ । ତଥାପି ଗୋପବନ୍ଧୁଙ୍କ ଉଦ୍ୟମ ଭବିଷ୍ୟତରେ ଫଳପ୍ରସୂ ହେଲା । ମହାତ୍ମା ଗାନ୍ଧି ୧୯୩୦ରେ ଭାରତସାରା ଲୁଣମରା ଆନ୍ଦୋଳନ ଚଳାଇଲେ । ବହୁ ଲୋକ ବନ୍ଦୀ ଓ ମୃତାହତ ହେଲେ । ଶେଷକୁ ଗାନ୍ଧି ଇରୱିନ୍ ପ୍ୟାକ୍ଟ ଫଳରେ ୧୯୩୧ରେ ଓଡ଼ିଶାର ଉପକୂଳବର୍ତ୍ତୀ ଲୋକେ ପୁନଶ୍ଚ ତାଙ୍କ ମୌଳିକ ଅଧିକାର ଫେରିପାଇଲେ । ନିଜ ଘରୁଦ୍ଧା ମେଣ୍ଢାଇ ମୁଣ୍ଡରେ ବୋଝେ ବୋଝେ ଲୁଣ ବୋହି ନେଇ ନିକଟବର୍ତ୍ତୀ ଅଞ୍ଚଳରେ ବିକି ଚାଲିବାକୁ ମଧ୍ୟ ଅନୁମତି ମିଳିଲା; କିନ୍ତୁ ଗୋପବନ୍ଧୁ ଏସବୁ ଦେଖିବାକୁ ସେତେବେଳେ ନଥିଲେ ।

**ଶିକ୍ଷା ସମସ୍ୟା**—ଛାତ୍ର ଜୀବନରୁ ଗୋପବନ୍ଧୁ ଓଡ଼ିଶାରେ ଶିକ୍ଷା ପ୍ରସାର ପାଇଁ ଧ୍ୟାନଶୀଳ ଥିଲେ । ପ୍ରଚଳିତ ଶିକ୍ଷାପଦ୍ଧତିକୁ ବଦଳାଇ ଜୀବନଗଠନର ବୃହତ୍ତର ଭୂମିକା ସହିତ ଶିକ୍ଷାନୀତିକୁ ସମନ୍ୱିତ କରିବାର ସେ ପକ୍ଷପାତୀ ଥିଲେ । ଏହି ଚିନ୍ତାଧାରାର ଫଳସ୍ୱରୂପ ୧୯୦୯ରେ ସତ୍ୟବାଦୀ ବନବିଦ୍ୟାଳୟର ପ୍ରତିଷ୍ଠା ହେଲା । ଗୋଟିଏ ଆଦର୍ଶ ସ୍କୁଲ ପାଇଁ ବଡ଼ କୋଠାଘରର ଦରକାର ନାହିଁ, ପ୍ରକୃତିର ସୁରମ୍ୟ କୋଳରେ ଅତି

ନିରାଡ଼ମ୍ବର ପରିବେଶ ମଧ୍ୟରେ ଏପରି ସ୍କୁଲ ପରିଚାଳିତ ହୋଇପାରିବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ଏ ସମ୍ବନ୍ଧରେ ସେ ବିହାର-ଓଡ଼ିଶା ବ୍ୟବସ୍ଥାପକସଭାରେ ଗୋଟିଏ ପ୍ରସ୍ତାବ ଆଗତ କରିଥିଲେ । ଶିକ୍ଷା ଅନୁଷ୍ଠାନଗୁଡ଼ିକରୁ ସରକାରୀ କଟକଣା କୋହଳ କରିବା ଓ କୋଠାଘର ତଥା ଆସବାବ ଉପରେ ମଞ୍ଜୁରୀ ପାଇଁ ଗୁରୁତ୍ୱ ନଦେବା ଏପରି ପ୍ରସ୍ତାବର ଅସଲ ଉଦ୍ଦେଶ୍ୟ ଥିଲା । ବରଂ କୋଠାଘରଗୁଡ଼ିକ ଆବଦ୍ଧ ଥିବାରୁ ଛାତ୍ରମାନଙ୍କର ଦୈହିକ ଅଭିବୃଦ୍ଧି ଓ ସୁସ୍ଥତା ନିମନ୍ତେ ଏଗୁଡ଼ିକ ପରିପନ୍ଥୀ ବୋଲି ସେ ଯୁକ୍ତି ଦର୍ଶାଇଲେ । ମୁକ୍ତ ମଞ୍ଚ, ମୁକ୍ତ ବାୟୁ ଓ ସୂର୍ଯ୍ୟକିରଣର ଆବଶ୍ୟକତା ସମ୍ପର୍କରେ ଡାକ୍ତର ମତ ଦେଉଥିବା ବେଳେ ଶିକ୍ଷାଶାସ୍ତ୍ରର ନୀତି ଓ ନିୟମ ଉପଯୋଗୀ ହେଉନାହିଁ ବୋଲି, ପୂର୍ବରୁ ଗୁରୁକୁଳ ଆଶ୍ରମର ଶିକ୍ଷା ବ୍ୟବସ୍ଥାର ଉପଯୋଗିତା ସମ୍ପର୍କରେ ଉଲ୍ଲେଖ କରି ଏହାର ପୁନରୁଦ୍ଧାର ନିମନ୍ତେ ସେ ଯୁକ୍ତି କରୁଥିଲେ । ଗଛ ଛାଇରେ ବର୍ଷାଋତୁ ବ୍ୟତୀତ ଅନ୍ୟ ଋତୁରେ ଶିକ୍ଷାବ୍ୟବସ୍ଥାର ସେହି ପ୍ରାଚୀନ ରୀତିକୁ ପୁନଶ୍ଚ ଅନୁମୋଦନ କରାଗଲେ ଓଡ଼ିଶାରେ ଖୁବ୍ କ୍ଷିପ୍ର ଗତିରେ ଶିକ୍ଷା ବିସ୍ତାର ହୋଇପାରନ୍ତା ଏବଂ ଅଯଥା ବହୁ ଖର୍ଚ୍ଚରୁ ମଧ୍ୟ ରକ୍ଷା ମିଳନ୍ତା । ଏ ସମ୍ବନ୍ଧରେ ସେ ଗଭର୍ଣ୍ଣର ଗେଟ୍ଙ୍କ ସତ୍ୟବାଦୀ ସ୍କୁଲ ପରିଦର୍ଶନ ମନ୍ତବ୍ୟ ଉଲ୍ଲେଖ କରିଥିଲେ—

"I was greatly impressed by the system of teaching in open-air instead of the crowded class rooms. It is to be hoped that the boys would thus learn to appreciate the advantages of the fresh air and will do their best to discourage among their relatives the pernicious practice of shutting out air from their houses which is at present so common and which in many parts is causing a terrible spread of tubercular disease.

ଏହା ବ୍ୟତୀତ ରେଭେନ୍ସା କଲେଜରେ ଏମ୍. ଏ. (ଇଂରାଜୀ) ଓ ଆଇନ ଅଧ୍ୟୟନ ବିଭାଗ ଖୋଲିବାକୁ ସେ ବିହାର-ଓଡ଼ିଶା ବିଧାନସଭାରେ ଧାରାବାହିକ ଉଦ୍ୟମ କରି ସଫଳ ହୋଇଥିଲେ । ତାଙ୍କ ଉଦ୍ୟମରେ ପୁରୀରେ ସଂସ୍କୃତ କଲେଜ ଓ କଟକରେ ଇଂଜିନିୟରିଂ ସ୍କୁଲ ପ୍ରତିଷ୍ଠିତ ହେଲା । ଗରିବ ମେଧାବୀ ଛାତ୍ରମାନଙ୍କ ପାଇଁ ଦରମା ଛାଡ଼ ବ୍ୟବସ୍ଥା ଚାଲୁହେଲ ଓ ସମୁଦାୟ ଛାତ୍ର ସଂଖ୍ୟାର ଶତକଡ଼ା ଦଶଭାଗ ଛାତ୍ର ଏହି ସୁଯୋଗ ପାଇପାରିଲେ । ଭାରତୀୟ ପ୍ରଶାସନିକ ସେବା ନିମନ୍ତେ (Indian Civil Service) ପ୍ରତିବର୍ଷ ଜଣେ ଓଡ଼ିଆ ଛାତ୍ର ଇଂଲଣ୍ଡରେ ଉଚ୍ଚଶିକ୍ଷା ପାଇବାର ବ୍ୟବସ୍ଥା ସେ କରାଇଥିଲେ ।

**ଅନ୍ୟାନ୍ୟ ସମସ୍ୟା**—ସେତେବେଳେ ପୁରୀରେ ପିଇବା ପାଣିର ଘୋର ଅଭାବ ଥିଲା । ଫଳରେ ରଥଯାତ୍ରା ପର୍ବ ଜନସମାଗମରେ ଲୋକେ ପାନୀୟ ଜଳ ଅଭାବରେ କଲେରାରେ ବହୁ ସଂଖ୍ୟାରେ ଆକ୍ରାନ୍ତ ହେଉଥିଲେ । ଗୋପବନ୍ଧୁ ପୁରୀ ସହରରେ ପାନୀୟ ଜଳ ବ୍ୟବସ୍ଥା ପାଇଁ ଲଢ଼ିଥିଲେ । କୁଟୀର ଶିଳ୍ପର ବିକାଶ ପାଇଁ ଗାଁଗହଳରେ ସମବାୟ ଆନ୍ଦୋଳନ ସ୍ଥଳ କରିବା ନିମନ୍ତେ ସେ ଧ୍ୟାନ ଦେଇଥିଲେ । ତାଙ୍କ ପ୍ରଚେଷ୍ଟାରେ ଓଡ଼ିଶାର ଜିଲ୍ଲାବୋର୍ଡ଼ମାନଙ୍କରେ ଚେୟାରମ୍ୟାନ ପଦ ପାଇଁ ପୂର୍ବପର କଲେକ୍ଟରଙ୍କ ପରିବର୍ତ୍ତେ ସାଧାରଣ ଲୋକଙ୍କ ଭିତରୁ ନିର୍ବାଚିତ ପ୍ରତିନିଧି ଯୋଗଦେବାର ବିଧି ପ୍ରଚଳିତ ହେଲା । ଜଙ୍ଗଲ ବିଭାଗ ଆଇନକାନୁନ ସାଧାରଣ ଲୋକଙ୍କ ହିତଦୃଷ୍ଟିରୁ କେତେକ ପରିମାଣରେ କୋହଳ ହେଲା । ଓଡ଼ିଶାର ବହୁ ମଧ୍ୟଭର୍ଣ୍ଣାକୁଲାର ବିଦ୍ୟାଳୟକୁ ମଧ୍ୟଇଂରାଜୀ ବିଦ୍ୟାଳୟରେ ପରିଣତ କରିବା ପାଇଁ ସେ ସକ୍ରିୟ ପଦକ୍ଷେପ ନେଇଥିଲେ ।

ଜଣେ ବ୍ୟବସ୍ଥାପକ ହିସାବରେ ଗୋପବନ୍ଧୁ ନିଜେ ବିଭିନ୍ନ ବିଷୟରେ ଧ୍ୟାନ ରଖି ପାରିଥିଲେ ଓ ନିଜକୁ ପ୍ରସ୍ତୁତ କରିବା ପାଇଁ ବିଭିନ୍ନ ବିଷୟରେ ଗଭୀର ଅଧ୍ୟୟନ ମଧ୍ୟ କରୁଥିଲେ । ତାଙ୍କର ଉଗ୍ର ଦଳୀୟ ମନୋବୃତ୍ତି ନଥିଲା, ତେଣୁ ସମସ୍ତ ଅନ୍ୟାୟର ସେ ନିରପେକ୍ଷତା ସହିତ ସମାଲୋଚନା କରିପାରୁଥିଲେ । ପାଟଣା ଯିବା ରାସ୍ତାରେ କଲିକତାରେ କିଛି ସମୟ କଟାଇ ନିଜ ବକ୍ତବ୍ୟ ପାଇଁ ସେ ପ୍ରାମାଣିକ ତଥ୍ୟ ଖୋଜୁଥିଲେ ଓ ଏଥିପାଇଁ କଲିକତାସ୍ଥ ଇମ୍ପେରିଆଲ୍ ଲାଇବ୍ରେରୀରେ ଅଧ୍ୟୟନ କରୁଥିଲେ । ଏପରିକି ତାଙ୍କର ଅନେକ ଲିଖିତ ବକ୍ତବ୍ୟକୁ ସେ ନୀଳକଣ୍ଠ, ଗୋଦାବରୀଶ, ହରିହର ଓ ଲିଙ୍ଗରାଜଙ୍କ ସମକ୍ଷରେ ପାଠକରି ସେମାନଙ୍କ ମତାମତ ଲୋଡ଼ୁଥିଲେ । ନିଜେ ଅତି ନିଷ୍ଠାପର ଓ କର୍ତ୍ତବ୍ୟପରାୟଣ ଥିବାରୁ ସେ ସମସ୍ତଙ୍କ ଶ୍ରଦ୍ଧାଭାଜନ ହୋଇଥିଲେ ଓ ପ୍ରଶଂସା ଲାଭ କରିଥିଲେ । ଥରେ Mr. Scott ଗୋପବନ୍ଧୁଙ୍କୁ ଭେଟି କହିଥିଲେ—"Mr. Das, I have been in India for the last 17 years. I have heard the speeches of eminent parliamentarians on the floor of the House of Commons, particulary I remember the speeches of Mr. A. J. Balfour, one time Prime-Minister of England, and I can tell you that your speeches remind me of that greatman. As a Congressman you are now in the position of an enemy of British Imperialism, but I can tell you that we, Europian officers, appreciate sincere and devoted patriots like you."

ବିହାର-ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ସାର ଏଡ଼ୱାର୍ଡ଼ ଗେଟ୍ ବ୍ୟକ୍ତିଗତଭାବେ ଗୋପବନ୍ଧୁଙ୍କ ସହିତ ବ୍ୟକ୍ତିଗତ ସମ୍ପର୍କ ରକ୍ଷା କରିପାରିଥିଲେ । ତତ୍କାଳୀନ ପରିସ୍ଥିତିରେ ଏହା ଏକ ଅସମ୍ଭବ ବ୍ୟାପାର ଥିଲା । ଗୋପବନ୍ଧୁଙ୍କ ନିଷ୍ଠାପରତା, କର୍ତ୍ତବ୍ୟପରାୟଣତା ଓ ଦେଶପ୍ରୀତିରେ ସେ ଏତେ ଉଦ୍‌ବୁଦ୍ଧ ହୋଇଥିଲେ ଯେ, ସତ୍ୟବାଦୀ ବିଦ୍ୟାଳୟ ପରିଦର୍ଶନ କରିସାରି ସ୍କୁଲର ଉଦ୍ଦେଶ୍ୟ ଓ ଆଭିମୁଖ୍ୟ ନେଇ ଯଥେଷ୍ଟ ସ୍ୱାଧୀନତା ଓ ନିର୍ଭୀକତା ସହିତ ଆଗେଇବା ପାଇଁ ସେ ପରାମର୍ଶ ଦେଇଥିଲେ । ଗୋପବନ୍ଧୁଙ୍କ ପରି ଜାତି-ପ୍ରାଣ ଲୋକ କୌଣସି ଧ୍ୱଂସମୂଳକ କାର୍ଯ୍ୟରେ ଲାଗିନପାରନ୍ତି — ଏ ଧାରଣା ତାଙ୍କଠାରେ ବଦ୍ଧମୂଳ ହୋଇଥିଲା । ମୋଟ ଉପରେ ଉଭୟଙ୍କ ମଧ୍ୟରେ ଘଟଣାକ୍ରମେ ବନ୍ଧୁତ୍ୱପୂର୍ଣ୍ଣ ବାତାବରଣ ପ୍ରତିଷ୍ଠିତ ହୋଇପାରିଥିଲା ।

ସବୁ ଶୁଖିଗଲାଣି—ଆଚାର୍ଯ୍ୟ ମହାଶୟ ଥରେ ଗୋପବନ୍ଧୁଙ୍କୁ କହିଲେ—"ଆପଣ ଏ ଆସେମ୍ବ୍ଲି ଧନ୍ଦା ଛାଡ଼ି କେବଳ ଲେଖାଲେଖି କରନ୍ତୁ । ଆପଣଙ୍କ ଗୀତ ଆଖିରେ ଲୁହ ବୁହାଇ ପାରୁଛି ।' ଏହି ସମୟକୁ ଗୋପବନ୍ଧୁଙ୍କର କେତୋଟି ଖଣ୍ଡକବିତା 'ଅବକାଶ ଚିନ୍ତା' ନାମକ ପୁସ୍ତିକାକାରରେ ସଙ୍କଳିତ ହୋଇସାରିଥାଏ । ଏହି ସଂକଳନର ବହୁ ସକରୁଣ ଭାବୋଦ୍ଦୀପକ କବିତାରେ ଗୋପବନ୍ଧୁଙ୍କ ଅନ୍ତର ବିଗଳିତ ହୋଇ ପ୍ରକାଶ ପାଇଥାଏ । ଆଚାର୍ଯ୍ୟ ମହାଶୟ ଏସବୁ କବିତା ପଢ଼ି ତନ୍ମୟ ହୋଇପଡ଼ିଥା'ନ୍ତି ।

ଗୋପବନ୍ଧୁ ଅତି ବିମର୍ଷଭାବରେ ଉତ୍ତର ଦେଲେ, "ଆଉ ଅଛି କ, ସବୁ ଶୁଖିଗଲାଣି । ଗୀତ ଆଉ ମନକୁ ଆସୁନି ।"

କର୍ମର କଣ୍ଟକିତ ସରଣୀରେ କବିତାର କୁହୁକ ତାଙ୍କୁ ଆଚ୍ଛନ୍ନ କରିପାରିନଥିଲା । ସୌନ୍ଦର୍ଯ୍ୟ ଅପେକ୍ଷା ସେ ଥିଲେ ଅଧିକଭାବରେ ସତ୍ୟର ପୂଜାରୀ—ସତ୍ୟ ହିଁ ଥିଲା ତାଙ୍କ ପାଇଁ ଏକମାତ୍ର ସୌନ୍ଦର୍ଯ୍ୟ । ଜାତି ଓ ଜନତାର ସେବାପୀଠରେ କବିତାର ସକଳ ଭାବପ୍ରବଣ ଅନୁଭୂତିକୁ କ୍ରମେ କ୍ରମେ ସେ ନିଜ ଚେତନାରୁ ପରିହାର କରି ସେବକ ସାଜିଥିଲେ । ତେଣୁ କାବ୍ୟର କବି ନହୋଇ କର୍ମର କଳାକାରଭାବରେ ସେ ଏକ ଉଗ୍ର ଜାତିପ୍ରାଣତାକୁ ଏ ସାହିତ୍ୟରେ ଜୀବନ୍ୟାସ ଦେଇଥିଲେ; ଓଡ଼ିଆ ସାହିତ୍ୟରେ ଏହାହିଁ 'ସତ୍ୟବାଦୀ ଯୁଗ' ନାମରେ ପରିଚିତ । ତାହା ଏକ ସ୍ୱତନ୍ତ୍ର ବିସ୍ତରର କଥା ।

## ବିଚ୍ଛିନ୍ନାଞ୍ଚଳ ସମସ୍ୟା

୧୯୧୯ ମସିହା । ଗୋପବନ୍ଧୁ ସେତେବେଳେ ବିହାର-ଓଡ଼ିଶା କାଉନ୍‌ସିଲର ସଦସ୍ୟ । ମି. ଗ୍ୟାରେଟ୍, ଆଇ. ସି. ଏସ୍., ସିଂହଭୂମର ଡେପୁଟୀ କମିସନର ଥିଲେ । ସେତେବେଳେ ସିଂହଭୂମର ସ୍କୁଲ, କଚେରୀ ଓ ସରକାରୀ କାର୍ଯ୍ୟାଳୟମାନଙ୍କରେ ହିନ୍ଦୀ ଭାଷାର ପ୍ରଚଳନ ଅଧିକ ହେଉଥାଏ । ମାତୃଭାଷା ଓଡ଼ିଆରେ ପିଲାମାନଙ୍କୁ ଶିକ୍ଷାଦିଆଯିବା ନିମନ୍ତେ କାଣିଲା ଶୁଣିଲା

ଲୋକେ ଆପତ୍ତି କରି ଡେପୁଟୀ କମିଶନରଙ୍କୁ ଦରଖାସ୍ତ ଦେଉଥାନ୍ତି । ଘଟଣାକ୍ରମେ ଏହିପରି ତିନୋଟି ଦରଖାସ୍ତ ଗ୍ୟାରେଟ୍ ସାହେବ ପଣ୍ଡିତ ଗୋପବନ୍ଧୁଙ୍କ ପାଖ୍ ପଠାଇ ସେ ବିଷୟରେ ଗୋପବନ୍ଧୁଙ୍କ ମତାମତ ଲୋଡ଼ିଲେ । ଗୋପବନ୍ଧୁ ଏ ଦରଖାସ୍ତଗୁଡ଼ିକ ପାଇବା ମାତ୍ରେ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଗସ୍ତକରି ବହୁ ତଥ୍ୟ ସଂଗ୍ରହ କଲେ ଓ ଶେଷରେ ୧୯୧୯ ମସିହା ଫେବୃୟାରୀ ୨୪ ତାରିଖରେ ୧୫ ପୃଷ୍ଠା ବ୍ୟାପୀ ଏକ ଦୀର୍ଘ ପତ୍ର ମି. ଗ୍ୟାରେଟ୍ଙ୍କ ପାଖକୁ ଲେଖି ପଠାଇଥିଲେ ।

ସେ ଚିଠିରେ ଗୋପବନ୍ଧୁ ଲେଖିଥିଲେ, "ଚକ୍ରଧରପୁରଠାରେ ଗୋଟିଏ ହାଇସ୍କୁଲ ପ୍ରତିଷ୍ଠା କରିବା ପାଇଁ ମୁଁ ତିନି ସପ୍ତାହରୁ ଅଧିକକାଳ ଧରି ସିଂହଭୂମ ଜିଲ୍ଲାରେ ବୁଲୁଛି । ଏ ଜିଲ୍ଲାର ଓଡ଼ିଆ ସମସ୍ୟାରେ ମୋର ଆଗ୍ରହ ରହିଛି । ପ୍ରାୟ ତିନିବର୍ଷ ପୂର୍ବେ ଓଡ଼ିଆ ଶିକ୍ଷା ବିଷୟ ଅନୁସନ୍ଧାନ କରିବା ସକାଶେ ମୁଁ ପୋଡ଼ାହାଟ ପ୍ରଗଣାରେ କେତେକ ଅଞ୍ଚଳରେ ଗସ୍ତ କରୁଥିଲି । ସେ ସମସ୍ତରୁ ମୋର ପ୍ରତ୍ୟକ୍ଷ ବ୍ୟକ୍ତିଗତ ଅନୁସନ୍ଧାନ ଫଳରେ ଏବଂ ବିଶ୍ୱାସଯୋଗ୍ୟ ଲୋକଙ୍କ ଲେଖା ଓ ପତ୍ରାବଳୀରୁ ମୁଁ ଯେଉଁସବୁ ସମ୍ବାଦ ଓ ତଥ୍ୟ ପାଇଛି, ସେଥିରେ ମୋର ବିଶ୍ୱାସ ଦୃଢ଼ୀଭୂତ ହୋଇଛି ଯେ, ସିଂହଭୂମ ଗୋଟିଏ ଓଡ଼ିଆ ଜିଲା । ଅବଶ୍ୟ ଯେଉଁ ସବୁ ଆର୍ଯ୍ୟଭାଷା ଏ ଜିଲରେ ପ୍ରଚଳିତ, ସେ ସବୁ ତୁଳନାରେ ଏବଂ ଏ ଜିଲ୍ଲାର ଭୌଗୋଳିକ ପରିସ୍ଥିତି, ସାମାଜିକ ଓ ଐତିହାସିକ ସମ୍ପର୍କ ଓ ଘଟଣାବଳୀ ଦୃଷ୍ଟିରୁ ମୁଁ ଏହାକୁ ଓଡ଼ିଆ ଜିଲ ବୋଲି କହୁଛି ; କିନ୍ତୁ ଇଂରେଜମାନେ ସିଂହଭୂମ ଜିଲକୁ ଦଖଲ କଲା ପରଠାରୁ ପ୍ରାୟ ଏକ ଶତାବ୍ଦୀ ଧରି ଏଠାର ଓଡ଼ିଆମାନଙ୍କ ଅସ୍ତିତ୍ୱକୁ ଏକାବେଳକେ ଉପେକ୍ଷା କରାଯାଇଛି । ସେମାନଙ୍କ ଭାଷାକୁ କୋର୍ଟ କଚେରୀ, ସ୍କୁଲ-ମାନଙ୍କରୁ ଏକାବେଳକେ ନିର୍ବାସିତ କରିଦିଆଯାଇଛି । ଏପରିକି ମୁଁ ଜାଣେ, ଅନେକ ଜିଲ ଅଫିସର ଏଠାରେ ତାଙ୍କର ସାଧାରଣ କାର୍ଯ୍ୟ କାଳର ଶେଷ ଭାଗରେ ସୁଦ୍ଧା ଏ ଜିଲର ଅଧିବାସୀଙ୍କ ଭିତରେ ଓଡ଼ିଆ ଲୋକ ମଧ୍ୟ ଅଛନ୍ତି ଶୁଣି ବିସ୍ମୟ ପ୍ରକାଶ କରିଛନ୍ତି । ଏଭଳି ଏକାନ୍ତ ଅବହେଳା ଓ ଅଜ୍ଞତା ସତ୍ତ୍ୱେ ସିଂହଭୂମ ଜିଲରେ ଓଡ଼ିଆର ଏବେ ମଧ୍ୟ ସ୍ଥାନ ରହିଛି ଏବଂ ସଂଖ୍ୟାଧିକ୍ୟ ଯୋଗୁ ସେମାନଙ୍କର ପ୍ରାଧାନ୍ୟ ରହିଛି । ବିହାର-ଓଡ଼ିଶାର ଲାଟ୍ ମାନ୍ୟବର ଏଡ଼ଓ୍ୱାର୍ଡ଼ ଗେଟ୍ଙ୍କ ସହିତ ମୋର ଯେତେଥର ସାକ୍ଷାତ ହୋଇଛି, ମୁଁ ତାଙ୍କ ମନରେ ଏ ବାସ୍ତବ ତଥ୍ୟ ବିଷୟରେ ଧାରଣା ଜନ୍ମାଇବା ପାଇଁ ବହୁବାର ଚେଷ୍ଟା କରିଛି । ଗତ ନଭେମ୍ବର ମାସ ବ୍ୟବସ୍ଥାସଭା ବୈଠକରେ ମୁଁ ସିଂହଭୂମରେ ଓଡ଼ିଆ ଶିକ୍ଷା ଓ କୋର୍ଟ କଚେରୀରେ ଓଡ଼ିଆ ଭାଷାକୁ ଅସ୍ୱୀକାର କରାଯାଇଥିବା ବିଷୟରେ କେତେଗୁଡ଼ିଏ ପ୍ରଶ୍ନ ପଚାରିଥିଲି । ତା'ର ଉତ୍ତରରେ ସରକାର ସୂଚିତ କଲେ ଯେ, "ଏ ବିଷୟରେ ସ୍ଥାନୀୟ ଓଡ଼ିଆମାନଙ୍କ ଭିତରେ ସେପରି କୌଣସି ଦୃଢ଼ ମନୋଭାବ ଥିବା ସରକାର ଜାଣନ୍ତି ନାହିଁ ।" ସିଂହଭୂମ ଓଡ଼ିଆମାନେ ସରକାରଙ୍କୁ ତାଙ୍କର ମନୋଭାବ ଜଣାଇବା ପାଇଁ ସରକାର ଯେ କିପରି ଆଶା କରନ୍ତି ମୁଁ ବୁଝିପାରୁନାହିଁ । ତାଙ୍କ ଜିଭ ତ କାଟିଦିଆଯାଇଛି

ଏବଂ ଗୋଟିଏ ପୁରାଣ ପ୍ରସିଦ୍ଧ ଜାତି, ଯାହାର କି ଗୋଟିଏ ଭାଷା, ସାହିତ୍ୟ ଓ ନିଜର ଇତିହାସ ଅଛି, ତାକୁ ଆଦିମ ଅଧିବାସୀଙ୍କ ଭଳି ବରାବର ବ୍ୟବହାର କରାଯାଉଛି । ଖାଲି ସେତିକି ନୁହେଁ, ବରଂ ଓଡ଼ିଆମାନଙ୍କ ଅବସ୍ଥା ତାଙ୍କ ପଡ଼ୋଶୀ ଆଦିମ ଅଧିବାସୀଙ୍କଠାରୁ ଆହୁରି ହୀନ ହୋଇଛି । ଏଠାରେ 'ହୋ' ଅଧିବାସୀଙ୍କର କେବଳ ଗୋଟାଏ ନିତାନ୍ତ ଦରକଣ୍ଡିଆ କଥିତ ବୋଲି ଭାଷା ଅଛି, ଏହାର ସାହିତ୍ୟ ନାହିଁ, ଲିପି ମଧ୍ୟ ନାହିଁ, ଯାହାକି ଓଡ଼ିଆର ଅଛି । ଏପରି ଅବସ୍ଥାରେ 'ହୋ' ଜାତିର ପିଲାଙ୍କୁ ହିନ୍ଦୀରେ ଶିକ୍ଷାଦେବା ସେତେଦୂର କଠିନ କଥା ହୋଇନପାରେ—କିନ୍ତୁ ଓଡ଼ିଆ ପିଲାକୁ ବାଧ୍ୟତା ସହକାରେ ହିନ୍ଦୀ ଶିକ୍ଷାଦେବା ତା' ପକ୍ଷରେ ନିଶ୍ଚିତ କଷ୍ଟକର ବ୍ୟାପାର ହେବ । ପ୍ରଥମ ଘଟଣାରେ ଶିକ୍ଷା ବ୍ୟବସ୍ଥାରେ ମାତ୍ର ଗୋଟିଏ ପ୍ରକାର ମାନସିକ କ୍ରିୟା କାର୍ଯ୍ୟକରେ, ଅର୍ଥାତ୍ ସେ କେବଳ ଗୋଟିଏ ଭାଷା ଶିକ୍ଷା କରେ; କିନ୍ତୁ ପରବର୍ତ୍ତୀ ଘଟଣାରେ ଦୋହରା ପ୍ରକ୍ରିୟା କାର୍ଯ୍ୟକରେ । ଗୋଟିଏ ଜାତିର ଦୃଢ଼ୀଭୂତ ସୁବିକଶିତ ଭାଷା ଓ ବ୍ୟକ୍ତିତ୍ୱକୁ ଏକପକ୍ଷରେ ମାରିଦେବା ଓ ଅନ୍ୟପକ୍ଷରେ ଗୋଟିଏ ନୂଆ ଅପରଭାଷାକୁ ଆପଣାର କରି ଆୟତ୍ତ କରିବା ପାଇଁ ଶ୍ରମ କରିବା । ଏହିଭଳି ଅବସ୍ଥାରେ ସିଂହଭୂମ ଜିଲ୍ଲାରେ ଯେ ଓଡ଼ିଆମାନଙ୍କର ଏପର୍ଯ୍ୟନ୍ତ ଅସ୍ତିତ୍ୱ ରହିଛି ଏହା ଏକାବେଳକେ ବିସ୍ମୟକର ଏବଂ ଏହାହିଁ ଗୋଟିଏ ଜାତିର ଜାତୀୟ ଜୀବନର ପରିଚୟକ । କହିବାକୁ ଗଲେ, ଏଠାରେ ଓଡ଼ିଆମାନେ ଅନ୍ଧକାରଚ୍ଛନ୍ନ, ଲୋକଲୋଚନ ଅଗୋଚରରେ ଥିବା ବଣଜଙ୍ଗଲ ମଧ୍ୟରେ ଏକପ୍ରକାର ଆର୍ତ୍ତନାଦ କରି କୌଣସିମତେ ଜୀବନ ସଂଗ୍ରାମ ଚଳାଇ ତିଷ୍ଠି ରହିଛନ୍ତି । ସେମାନଙ୍କ ଭିତରେ ତାଙ୍କର ଦୁରବସ୍ଥା ଓ ମନର ଦୁଃଖ ସରକାରଙ୍କୁ ଜଣାଇବା ଭଳି ଲୋକ ମଧ୍ୟ ବାହାରୁନାହାନ୍ତି । ଏହା ସେମାନଙ୍କର ଦୋଷ ନୁହେଁ । ସରକାରଙ୍କର ଉଚିତ ହେଉଛି ନିଜ ଆଡ଼ୁ ସେମାନଙ୍କ ଅବସ୍ଥା ଅନୁଧ୍ୟାନ କରିବା ।"

"ଏ ଜିଲ୍ଲାରେ ମୋର ବର୍ତ୍ତମାନ ରହଣି ଭିତରେ ମୁଁ ଏଠା ଓଡ଼ିଆମାନଙ୍କ ଇଚ୍ଛା ଓ ପ୍ରାଣର ବେଦନା ପୂର୍ବାପେକ୍ଷା ଅଧିକ ଜାଣିବାପାଇଁ ଚେଷ୍ଟା କରିଛି । ଆପଣ ଓଡ଼ିଶାରେ ନିଜ କାର୍ଯ୍ୟକାଳର ଦଶବର୍ଷ କଟାଇଛନ୍ତି ଏବଂ ଓଡ଼ିଆମାନଙ୍କ ବିଷୟରେ ଅନେକ କଥା ଜାଣନ୍ତି । ମୋର ଆଶା, ଆପଣଙ୍କର ଏ ପୂର୍ବ ଅନୁଭୂତି ଏ ଜିଲ୍ଲାରେ ଓଡ଼ିଆମାନଙ୍କ ଦୁଃଖକଷ୍ଟ ଉପଲବ୍ଧି କରିବାରେ ଆପଣଙ୍କୁ ସାହାଯ୍ୟ କରୁଥିବ । ମୁଁ ସେହି ଆଶାରେ ସିଂହଭୂମ ଓଡ଼ିଆ ସମସ୍ୟା ବିଷୟରେ ଆପଣଙ୍କୁ ଚିଠି ଲେଖିବାକୁ ବସିଥିବାବେଳେ ଆପଣ ମୋ ଠାକୁ ମତ ପ୍ରକାଶ କରିବା ପାଇଁ ପଠାଇଥିବା ତିନିଖଣ୍ଡି ଦରଖାସ୍ତ ମୁଁ ପାଇଲି । ସେ ଦରଖାସ୍ତଗୁଡ଼ିକ ସୋନୁଆ, ମନ୍ଦୁଲଡିହା, ସମପୋଷୀ, କେରା, ଚକ୍ରଧରପୁର ଏବଂ ପୋଡ଼ାହାଟର ଅନ୍ୟାନ୍ୟ କେତେକ ଗାଆଁର ଓଡ଼ିଆ ଅଧିବାସୀଙ୍କଠାରୁ ଆସିଛି । ସେଥିରେ ପ୍ରାର୍ଥନା କରାଯାଇଛି କି, ତାଙ୍କ ସ୍କୁଲମାନଙ୍କରେ ହିନ୍ଦୀ ପରିବର୍ତ୍ତେ ଓଡ଼ିଆ ପଢ଼ାଇବା ପାଇଁ

ବ୍ୟବସ୍ଥା କରାହେଉ । ମୋର ବିଶ୍ୱାସ, ମୁଁ ସିଂହଭୂମ ଓଡ଼ିଆମାନଙ୍କ ଶିକ୍ଷା ବିଷୟରେ ଠିକଏ ଅଗ୍ରହୀ ଥିବାରୁ ଆପଣ ଏ ବିଷୟରେ ମୋର ମତ ପଚାରିଛନ୍ତି ।"

ଗୋପବନ୍ଧୁ ତାଙ୍କ ପତ୍ରରେ ପୁଣି ଲେଖିଥିଲେ—"ଏ ଜିଲାରେ 'ହୋ' ଏବଂ ଓଡ଼ିଆମାନେ ହିଁ ମୁଖ୍ୟ ଅଧିବାସୀ । ଅଳ୍ପ କେତେଜଣ ବଙ୍ଗଳା ଓ ହିନ୍ଦୀଭାଷୀ ଲୋକ ଏବେ କିଛି ଅଳ୍ପକାଳ ହେଲା ଏ ଜିଲାକୁ ଆସିଛନ୍ତି । ଯେହେତୁ ସରକାରୀ କାର୍ଯ୍ୟରେ ଅଛନ୍ତି ଏବଂ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଓ ପ୍ରଭାବ ପକାଇ ପାରିବା ଭଳି ସ୍ଥାନରେ ସେମାନଙ୍କର ପ୍ରବେଶ ରହିଛି, ତେଣୁ ଯେଉଁ ଓଡ଼ିଆଭାଷା ଏ ଜିଲାର ଏକମାତ୍ର ଆର୍ଯ୍ୟଭାଷା ଥିଲା ଏବଂ ଯେଉଁ ଭାଷାର ତାଳପତ୍ର ପୋଥି ଓ ଖେଦା ବହୁ ବିଶିଷ୍ଟ ଲୋକଙ୍କ ଘରେ ଏପରିକ 'ହୋ' ପରିବାରରେ ଏବେ ବି ଦେଖାଯାଏ, ସେ ଓଡ଼ିଆ ଭାଷାକୁ ସ୍କୁଲ ଏବଂ କଚେରୀରୁ ଉଠାଇଦେଇ ଧଳଭୂମରେ ବଙ୍ଗଳା ଏବଂ ପୋଡ଼ହାଟ ଓ କୋଲ୍ହାଣରେ ହିନ୍ଦୀ ଭାଷାର ପ୍ରଚାର ଏମାନେ କରାଇଛନ୍ତି । ଏହାର ପରିଣତିରେ ଓଡ଼ିଆ ଓ କେତେକାଂଶରେ ଆଦିବାସୀଙ୍କର ସର୍ବନାଶ ଘଟିଛି । ପ୍ରଥମତଃ ଓଡ଼ିଆ ପିଲାଙ୍କୁ ପ୍ରାଥମିକ ସ୍କୁଲରେ ହିନ୍ଦୀ ଅବା ବଙ୍ଗଳାରେ ପଢ଼ିବାକୁ ହେଉଛି, ଅଥଚ ଏ ଦୁଇ ଭାଷା ଭିତରେ କୌଣସି ଗୋଟିଏ ମଧ୍ୟ ସେମାନଙ୍କ ଘରେ ଚଳେ ନାହିଁ । ପଢ଼ାଇଲାବେଳେ ତାଙ୍କୁ ଓଡ଼ିଆରେ ବୁଝାଇବାକୁ ହିଁ ପଡ଼ୁଛି । ତା' ନ ହେଲେ ସେମାନେ ପାଠ ବୁଝିପାରୁ ନାହାନ୍ତି । ଏହିପରି ଅସ୍ୱାଭାବିକ ବ୍ୟବସ୍ଥା ଦ୍ୱାରା ସେମାନଙ୍କ ପାଠପଢ଼ାରେ ଘୋର ବାଧା ଉପୁଜୁଛି । ଦ୍ୱିତୀୟରେ ପୋଡ଼ହାଟର ଅନେକ ଅଞ୍ଚଳରେ ପୋଲିସ ସବ୍‌ଇନ୍‌ସପେକ୍ଟର ପ୍ରଭୃତି ଯାହା କହୁଛନ୍ତି, ଓଡ଼ିଆଙ୍କ ପକ୍ଷ ଓ ସାକ୍ଷୀମାନେ ଅନେକ ସମୟରେ ତାହା ବୁଝିପାରୁନାହାନ୍ତି । ଅନେକ କଥା ଭୁଲ୍ ବୁଝୁଛନ୍ତି । ତୃତୀୟରେ ପୋଡ଼ାହାଟ ଓ କୋଲ୍ହାଣରେ ଆଦିବାସୀ ପିଲମାନେ ଏକା ଗାଁରେ ଓଡ଼ିଆ ଲୋକଙ୍କ ସହିତ ମିଶି ଚଳୁଥିବାରୁ ଓଡ଼ିଆ ବୁଝୁଛନ୍ତି ଓ କହୁଛନ୍ତି ମଧ୍ୟ । ତେଣୁ ହିନ୍ଦୀ ବା ବଙ୍ଗଳାପରି ଗୋଟିଏ ନୂଆ ଭାଷା ସେମାନଙ୍କୁ ଶିକ୍ଷା କରିବା ପାଇଁ ବାଧ୍ୟ କରାଯିବାରେ ସେମାନେ ଯେଉଁ ଅସୁବିଧାରେ ପଡ଼ୁଛନ୍ତି ତାହା ବେଶ୍ ଅନୁମେୟ ।"

ଗୋପବନ୍ଧୁଙ୍କ ପତ୍ରରେ ଯେଉଁ ହିସାବକିତାବ ଦିଆଯାଇଥିଲା ସେଥିରୁ ଜଣାଯାଏ ସେତେବେଳେ ୧୮୯୧ ର ଜନଗଣନା ଅନୁସାରେ ସିଂହଭୂମରେ ଓଡ଼ିଆମାନଙ୍କ ସଂଖ୍ୟା ଥିଲା ୧୧୪,୪୦୬, ୧୯୦୧ର ଜନଗଣନା ଅନୁସାରେ ୧୦୦,୦୯୬, ୧୯୧୧ ରେ ୧୬୪,୫୯୩ । ଏହି ଜନଗଣନା ଅନୁସାରେ ହିନ୍ଦୀଭାଷୀଙ୍କ ସଂଖ୍ୟା ଯଥାକ୍ରମେ ୬୫,୮୬୭; ୬୭,୬୭୭ ଓ ୩୪,୩୬୩ ମାତ୍ର ଥିଲା । ହିନ୍ଦୀଭାଷୀଙ୍କ ସଂଖ୍ୟା ଏତେ କମ୍ ଥିବା ସ୍ଥଳେ କୋର୍ଟକଚେରୀରେ ହିନ୍ଦୀଭାଷାର ପ୍ରଚଳନ ଫଳରେ ଓଡ଼ିଆଭାଷା ପ୍ରତି ସଚେତନ ଭାବରେ ଅବହେଳା କରାଯାଉଥିଲା । ଏପରିକି ସ୍କୁଲ ଜିଲା ସ୍କୁଲରୁ ତତ୍କାଳୀନ ଶିକ୍ଷାବିଭାଗ

ଡେପୁଟୀ ଇନ୍ସ୍‌ପେକ୍‌ଟର ଓ ହେଡ୍‌ମାଷ୍ଟର ପ୍ରଭୃତି ଓଡ଼ିଆ ଓ ଉର୍ଦ୍ଦୁ ଭାଷାକୁ ଲୋପ କରିବାକୁ ଏକ ଚକ୍ରାନ୍ତ କରିଥିଲେ । ଶେଷରେ ଜିଲ୍ଲା ସ୍କୁଲର ଚେୟାରମ୍ୟାନ୍ ମି. ଗ୍ୟାରେଟ୍ ଓଡ଼ିଆ ଓ ଉର୍ଦ୍ଦୁ ଭାଷାର ପ୍ରଚଳନ ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଗୋପବନ୍ଧୁ ତାଙ୍କର ଏହି ଦୀର୍ଘପତ୍ରରେ ପୋଡ଼ହାଟ ଓ ଧଳଭୂମ ଅଞ୍ଚଳରେ ଓଡ଼ିଆ ପିଲାଙ୍କ ନିମନ୍ତେ ଓଡ଼ିଆଭାଷାରେ ଶିକ୍ଷା ବ୍ୟବସ୍ଥା ପାଇଁ ବହୁ ଯୁକ୍ତି ସମ୍ବଳିତ ତଥ୍ୟ ଦେଇ ଗ୍ୟାରେଟ୍‌ଙ୍କୁ ଲେଖିଥିଲେ—"ସିଂହଭୂମର ଓଡ଼ିଆମାନେ ବର୍ତ୍ତମାନ ମୃତ୍ୟୁମୁଖର ସମ୍ମୁଖୀନ । ଆପଣ ବର୍ତ୍ତମାନ କାର୍ଯ୍ୟରୁ ଅବସର ନେବା ଉପରେ । ମୃତ୍ୟୁମୁଖରେ ପଡ଼ିଥିବା ଓଡ଼ିଆମାନଙ୍କ ପ୍ରତି ଆପଣଙ୍କର ଶେଷକାର୍ଯ୍ୟରୂପେ ଆପଣ ଏତିକ ଯତ୍ନତଃ କରନ୍ତୁ ଯାହା ଫଳରେ ପ୍ରକୃତ ଘଟଣା ସରକାରଙ୍କ ପାଖରେ ଉପସ୍ଥାପିତ ହୋଇପାରିବ । ତା'ହେଲେ ଓଡ଼ିଆମାନଙ୍କ ଦୀର୍ଘକାଳ ପୋଷିତ ଏ ଦୁଃଖ ଆପତ୍ତିର ପ୍ରତିକାର ହେବ । ସେମାନେ ଯେଉଁ ଦୁଃଖ ନିର୍ଯାତନା ଭିତରେ ଭିଡ଼ି ଓଟାରି ହୋଇ ଚାଲିଛନ୍ତି, ତାହା ତାଙ୍କର ଜୀବନୀଶକ୍ତିକୁ ଏକବାର ଶୋଷିଦେଲଣି ଏବଂ ଗୋଟିଏ ସ୍ୱତନ୍ତ୍ର ଜାତି ହିସାବରେ ସେମାନଙ୍କ ଅସ୍ତିତ୍ୱକୁ ମଧ୍ୟ ବିପନ୍ନ କଲଣି ।"

ଓଡ଼ିଆ ଭାଷାଭାଷୀ ଅଞ୍ଚଳପାଇଁ ଗୋପବନ୍ଧୁଙ୍କ ଦରଦ ଓ ବ୍ୟାକୁଳତା ଏହି ପତ୍ରରୁ ସ୍ପଷ୍ଟ । ସରକାରୀ ଉଦାସୀନତା ଓ ବିହାର କଂଗ୍ରେସ ନେତାମାନଙ୍କ ସମସ୍ତ ଅଭିସନ୍ଧି ସତ୍ତ୍ୱେ ପରେ ପରେ ଗୋପବନ୍ଧୁ ଏହି ବିଚ୍ଛିନ୍ନାଞ୍ଚଳରେ ବହୁ ବିଦ୍ୟାଳୟ ସ୍ଥାପନ କରି ଓଡ଼ିଆ ଭାଷାକୁ ବଞ୍ଚାଇବାର ଉଦ୍ୟମ କରିଥିଲେ—ଏ ସବୁ ପରେ ଆଲୋଚିତ ହେବ ।

## କାଳିଆ ଶ୍ରୀମୁଖ ଦେଖିବା

ଫୁଲଝର ଜମିଦାରୀ ବହୁଦିନ ଧରି ସମ୍ବଲପୁର ଜିଲ୍ଲା ସଙ୍ଗେ ମିଶି ରହିଥିଲା; କିନ୍ତୁ ପରେ ସମ୍ବଲପୁରରୁ ବିଚ୍ଛିନ୍ନ ହୋଇ ମଧ୍ୟପ୍ରଦେଶ ଭିତରେ ରାୟପୁର ଜିଲ୍ଲା ସଙ୍ଗେ ମିଶି ରହିଲା । ଏହି ଜମିଦାରୀ ଦୀର୍ଘରେ କୋଡ଼ିଏ କୋଶ ଓ ପ୍ରସ୍ଥରେ ଦଶ କୋଶ । ୧୯୨୦ ମସିହାରେ ଜନସଂଖ୍ୟା ଥିଲା ଲକ୍ଷେ ପଚିଶ ହଜାର । ସମସ୍ତେ ଓଡ଼ିଆ । ସ୍ଥାନେ ସ୍ଥାନେ ଲରିଆ ଭାଷା କହୁଥିବା ଲୋକ ମଧ୍ୟ ଥିଲେ । ଏ ଭାଷା ମଧ୍ୟ ଅଧାଓଡ଼ିଆ ଓ ଅଧା ହିନ୍ଦୀ । ଏ ଜମିଦାରୀ ବହୁଦିନ ସମ୍ବଲପୁର ସଙ୍ଗେ ଥିଲା । ଏଠାରେ ସ୍ଥାନୀୟ ଲୋକଙ୍କ ଉଦ୍ୟମ ଓ ଆନ୍ଦୋଳନ ଫଳରେ କେତୋଟି ଓଡ଼ିଆ ପ୍ରାଇମେରୀ ସ୍କୁଲ ମଧ୍ୟ ଖୋଲିଥିଲା; ତଥାପି କଚେରୀରେ ଓଡ଼ିଆ ଭାଷା ବ୍ୟବହୃତ ହେଉନଥିଲା । ସେଥିପାଇଁ ଗୋପବନ୍ଧୁଙ୍କ ପରାମର୍ଶ କ୍ରମେ ପ୍ରାଚୀରକ ଅନନ୍ତ ମିଶ୍ର କିଛିଦିନ ପାଇଁ ଫୁଲଝର ଯାଇଥିଲେ । ୧୯୨୦ ମସିହା ଏପ୍ରିଲ ମାସର ପ୍ରଥମ

ସପ୍ତାହରେ ନିଜେ ଗୋପବନ୍ଧୁ, ବ୍ରଜସୁନ୍ଦର ଦାସ, ସମ୍ବଲପୁରର ଓକିଲ ରାମନାରାୟଣ ମିଶ୍ର ଏବଂ ବରଗଡ଼ର ଓକିଲ ଶ୍ରୀ ବାଲୁକେଶ୍ୱର ମିଶ୍ର ଫୁଲଝରର ଯାଇଥିଲେ । ସେଠାରେ ଓଡ଼ିଆମାନଙ୍କ ସ୍ୱାର୍ଥପାଇଁ ତଥା ଓଡ଼ିଆ ଭାଷାର କଲ୍ୟାଣ ପାଇଁ ମୁଖ୍ୟ ଲୋକମାନଙ୍କୁ ଡକାଇ ବହୁ ମୂଲ୍ୟବାନ୍ ପରାମର୍ଶ ଦେଇଥିଲେ ।

ପରେ ନଭେମ୍ବର ମାସରେ ଫୁଲଝରର ୭୫ ଜଣ ଲରିଆ ଗୌନ୍ତିଆ ଓ ପ୍ରଧାନ ବ୍ୟକ୍ତିଙ୍କ ସ୍ୱାକ୍ଷରରେ ଏକ ପତ୍ର ଗୋପବନ୍ଧୁ ପାଇଲେ । ସେଥିରେ ସେମାନେ ହିନ୍ଦୀ ଭାଷାର ତାଡ଼ନା ଓ ଅତ୍ୟାଚାର ସମ୍ପର୍କରେ ସ୍ପଷ୍ଟ ଉଲ୍ଲେଖ କରି ଓଡ଼ିଆ ସହିତ ମିଶିବାକୁ ଅତି କରୁଣ ଭାବରେ ଅନୁରୋଧ କରିଥିଲେ । ସେମାନଙ୍କ ପତ୍ରର ମର୍ମ ଥିଲା ଯେ, ସେମାନେ ଜଗନ୍ନାଥଙ୍କ ଉପାସନା କରନ୍ତି, ଘରେ ଘରେ ଭାଗବତ ପୋଥି ପାଠ କରନ୍ତି । ରଜା ମଧ୍ୟ ଅତି ଉତ୍ସାହ ଓ ଆଡ଼ମ୍ବରରେ ଗୁଣ୍ଡିଚା ଯାତ୍ରା କରାନ୍ତି; କିନ୍ତୁ ଦେଓ୍ୱାନ ହିନ୍ଦୀଭାଷୀ ହୋଇଥିବାରୁ ଏ ଅଞ୍ଚଳକୁ ମଧ୍ୟପ୍ରଦେଶ ସହିତ ମିଶାଇବାକୁ ତାଙ୍କର ପ୍ରବଳ ଉଦ୍ୟମ । "ସମ୍ବଲପୁର ଭାଇମାନେ ଉତ୍କଳ ଜନନୀଙ୍କ କୋଳରେ ସ୍ଥାନ ପାଇବାରୁ ଆମ୍ଭମାନଙ୍କୁ ସେ ମୂର୍ଚ୍ଛି ଦେଇ ସୁଖ ନିଦ୍ରାରେ ମାତିଅଛନ୍ତି ଏବଂ ଆମ୍ଭେମାନେ ଅନାଥ ପରି ହିନ୍ଦୀ ଭାଷୀଙ୍କ ନିର୍ଯ୍ୟାତନା ଦୁଃଖ ଭୋଗ କରୁଛୁ । ଆମ୍ଭମାନଙ୍କ ଗୁହାରି ରାଜକର୍ମଚାରୀଙ୍କ କର୍ଣ୍ଣରେ ପଡ଼େ ନାହିଁ କି ଉତ୍କଳ ଜନନୀର ସନ୍ତାନମାନଙ୍କ ନେତ୍ରେ ପଡ଼େ ନାହିଁ । ହେ ସମ୍ପାଦକ ମହାଶୟ, ଆମ୍ଭର ମର୍ମନ୍ତୁଦ ବେଦନା ରାଜସରକାରଙ୍କୁ ଜଣାଇଦେବେ ।"

ଏ ପତ୍ର ପାଇ ଗୋପବନ୍ଧୁ ଉପାୟ ଚିନ୍ତା କରୁଥିବାବେଳେ ପୁଣି ଆଉ ଏକ ପତ୍ର ପାଇଲେ । ସେଥିରେ ଲେଖାଥିଲା—"ଦେଓ୍ୱାନ ଆମ୍ଭମାନଙ୍କୁ ଡକାଇ ନେଇ ଜବାବ ନେଇଅଛୁ କି ତୁମ୍ଭେମାନେ କାହାର ହୁକୁମରେ ଓଡ଼ିଆ ସ୍କୁଲ ଖୋଲିଅଛ ? ଆମ୍ଭେମାନେ ସତକଥା କହିଅଛୁ । ହେଲେ ପୁଞ୍ଜା ଆପଣମାନଙ୍କ ଜୋର୍ ନପାଇଲେ, କେହି ନଆସିଲେ ଆମ୍ଭେମାନେ ଅନାଥ ହେବୁ । ଆମ୍ଭମାନଙ୍କୁ ଡରାଇ କରି ହିନ୍ଦୀ ହେବାକୁ ଲେଖାଇ ନେବେ । ଆଠଦିନ ଭିତରେ ଏହା କରାଇନେବେ । ଆମ୍ଭେମାନେ ଏତେବେଳେ ନଈ ମଝିରେ ବସିଅଛୁ । ଆପଣମାନେ ଯଦି ଦେଶର ଉନ୍ନତି କରୁଅଛନ୍ତି ତେବେ ଧର୍ମକୁ ଦେଖି ଆମ୍ଭମାନଙ୍କ ଦଶା ଫିଟାଇ ଦିଅନ୍ତୁ । ନୋହିଲେ ପରମେଶ୍ୱର ଆପଣମାନଙ୍କର ଭଲ କରିବେ ନାହିଁ । ଯଦି ହିନ୍ଦୀରେ ରହିବୁ ଆମ୍ଭମାନଙ୍କୁ ପରଦେଶୀୟ ହିନ୍ଦୀ ଅଫିସରମାନେ ପଛନ୍ତେ ଘାଣ୍ଟି ପକାଇବେ ।"

ଫୁଲଝର ଓଡ଼ିଆମାନଙ୍କ ଏ କରୁଣ ଚିଠି ଗୋପବନ୍ଧୁଙ୍କୁ ଖୁବ୍ ବିଚଳିତ କରି-ଦେଇଥିଲା । ୧୯୨୧ ମସିହା ଜନଗଣନାର ପ୍ରାରମ୍ଭିକ ଉଦ୍ୟମ ବେଳେ ୧୯୨୦ ମସିହା ମଧ୍ୟଭାଗରେ ଏଠାର ଓଡ଼ିଆମାନଙ୍କ ଭାଷାକୁ ଓଡ଼ିଆ ପରିବର୍ତ୍ତେ 'ଲରିଆ' ବୋଲି କାଗଜ ପତ୍ରରେ ଲେଖାଇ ନିଆଗଲା । ଏଥିପାଇଁ ସୁପରିଣ୍ଟେଣ୍ଡେଣ୍ଟ୍ ବାରିକ ରାଓଙ୍କ ମଧ୍ୟପ୍ରଦେଶ ଉପରିସ୍ଥ କର୍ମଚାରୀମାନଙ୍କର ଗୋପନ ନିର୍ଦ୍ଦେଶ ଥିଲା ଓ ସେହିମନ୍ତେ ସେ ବିଚ୍ଛିନ୍ନ ହାଲକାର

ପଞ୍ଚୁଆଶ୍ରମମାନଙ୍କୁ ଓଡ଼ିଆ ପରିବର୍ତ୍ତେ ଲରିଆ ଲେଖିବାକୁ ନିର୍ଦ୍ଦେଶ ଦେଇଥିଲେ । ଏ ସବୁରେ ବ୍ୟଥିତ ହୋଇ ଗୋପବନ୍ଧୁଙ୍କ ପାଖକୁ ଫୁଲଝରର ବହୁ ବିଶିଷ୍ଟ ଲୋକ ପୁଣି ଚିଠି ଲେଖିଥିଲେ—"ଆପଣ କୌଣସି ପ୍ରକାରେ ଆମ୍ଭମାନଙ୍କୁ ସାହାଯ୍ୟ କରନ୍ତୁ ଓ ସଙ୍ଗରେ ରଖନ୍ତୁ । ଓଡ଼ିଆ ଜାତି ବିଷୟରେ କେହି ଜଣେ ମୁଖ୍ୟ ପ୍ରଚାରକଙ୍କୁ ଆମ୍ଭ ଏଠାରେ ତଦାରଖ କରିବା ପାଇଁ ଏହି ସମୟରେ ପଠାନ୍ତୁ, ନହେଲେ ଆମ୍ଭେମାନେ ମଲୁଁ । ଆପଣଙ୍କଠାରେ ଆମ୍ଭମାନଙ୍କର ଶକ୍ତି ଥିବାରୁ ଏହି କ୍ଷୁଦ୍ର କାଗଜରେ ପ୍ରାର୍ଥନା କଲୁଁ । ଆମ୍ଭମାନଙ୍କୁ ଗୋଟିଏ ଭାଇ ବୋଲି ବିଚାରକରି ସଙ୍ଗରେ ରଖନ୍ତୁ ।"

ଏହି ସମୟରେ ଗୋଦାବରୀଶବାବୁ ଚନ୍ଦ୍ରଧରପୁର ବିଚ୍ଛିନ୍ନାଞ୍ଚଳରେ କାର୍ଯ୍ୟ କରୁଥିଲେ । ଗୋପବନ୍ଧୁଙ୍କ ନିର୍ଦ୍ଦେଶ କ୍ରମେ ୨୨।୧୧।୨୦ ତାରିଖରେ ସେ ଚନ୍ଦ୍ରଧରପୁରରୁ ଫୁଲଝରକୁ ଯାଇଥିଲେ । ଏ ବର୍ଷ ଚନ୍ଦ୍ରଧରପୁରରେ ଉତ୍କଳ ସମ୍ମିଳନୀର ବାର୍ଷିକ ଅଧିବେଶନ ଆୟୋଜିତ ହେଉଥିବାରୁ ଗୋଦାବରୀଶବାବୁ ଅଧିକ ସମୟ ଫୁଲଝରରେ ରହିପାରି-ନଥିଲେ । ୩।୧୨।୨୦ ତାରିଖରେ ସମ୍ବଲପୁରର ବିଶିଷ୍ଟ ଉତ୍କଳ ଶ୍ରୀଯୁକ୍ତ ଚନ୍ଦ୍ରଶେଖର ବେହେରାଙ୍କ ଟେଲିଗ୍ରାମ ପାଇ ଗୋପବନ୍ଧୁ ୬ ତାରିଖ ସନ୍ଧ୍ୟାରେ ଫୁଲଝର ଅଭିମୁଖେ ଯାତ୍ରାକଲେ । ୮ ତାରିଖ ସକାଳେ ସମ୍ବଲପୁରରେ ପହଞ୍ଚି ଉତ୍କଳ ଅଚ୍ୟୁତାନନ୍ଦ ପୁରୋହିତ, ଶ୍ରୀ ଜନାର୍ଦ୍ଦନ ପୂଜାରି ଏବଂ ପୀତାମ୍ବର ଚନ୍ଦ୍ର ଦେଙ୍କ ସଙ୍ଗେ ସେହିଦିନ ରାତିରେ ଜୟପୁର ଯାତ୍ରାକଲେ । ବହୁ ପଥଶ୍ରମ ପରେ ୧୨ ତାରିଖ ସକାଳେ ଫୁଲଝର ଇଲାକାର ବୋନ୍ଦା ମୌଜାରେ ପହଞ୍ଚିଲେ । ଏଠାକାର ଅଧିବାସୀ ଶ୍ରୀ ଘାସିରାମ ଗୌନ୍ତିଆ 'ଲରିଆ' ଥିଲେ ମଧ୍ୟ ଓଡ଼ିଆ ସପକ୍ଷରେ ତାଙ୍କର ବିଶେଷ ଯତ୍ନ ଥିଲା । ସେହିଦିନ ସେଇ ଗ୍ରାମରେ 'ଲରିଆ'ମାନଙ୍କର ଜାତିଆଣ ସଭା ବସିବାର ଥିଲା । ଗୋପବନ୍ଧୁ ସେଥିରେ ଯୋଗ ଦେଇଥିଲେ । ଉପରବେଳା ସେଠାରୁ ବାହାରି ଫୁଲଝରର ରାଜଧାନୀ ସରେଇପାଲି ମୁକାମରେ ପହଞ୍ଚିଲେ । ସରେଇପାଲିର ୧୩ ମାଇଲ ଦୂର ବସନା ଗ୍ରାମରେ ତଦନ୍ତ କାର୍ଯ୍ୟ ଚାଲୁଥିଲା । ଗୋପବନ୍ଧୁ ୧୨ ତାରିଖ ରାତିରେ ଏକା ଏକା ବସନା ବାହାରିଲେ ଓ ସୂର୍ଯ୍ୟୋଦୟ ପୂର୍ବରୁ ସେଠାରେ ପହଞ୍ଚିଲେ । ରାୟପୁର ଜିଲ୍ଲା ଅନ୍ତର୍ଗତ ମହାସମୁଦ୍ର ସବ୍‌ଡିଭିଜନର ଅଫିସର ବେଲି ସାହେବ ଓ ତାଙ୍କ ସଙ୍ଗେ ଆଉ ଜଣେ ନୂଆ ଦେଶୀ ସିଭିଲିଆନ୍ ଶ୍ରୀ ଆର. ଏନ୍. ବାନାର୍ଜୀ ତଦନ୍ତ ଉପଲକ୍ଷେ ପୂର୍ବଦିନ ବସନାଠାରେ ଆସି ମୁକାମ କରିଥିଲେ । ବସନା ପୂର୍ବରୁ ଏମାନେ ସାଂରା ଏବଂ ଭୁରୁଡିହି ଦୁଇ କ୍ୟାମ୍ପରେ ୭ ତାରିଖରୁ ୧୨ ତାରିଖ ଯାଏ ତଦନ୍ତ କରି ଆସିଥିଲେ । ତାଙ୍କ ସହ ସାକ୍ଷାତ କରି ଗୋପବନ୍ଧୁ ଫୁଲଝର ଓଡ଼ିଆଭାଷା ପ୍ରସଙ୍ଗରେ କେତେକ ଆଲୋଚନା କରି ଓଡ଼ିଆ ପ୍ରତି ସେମାନଙ୍କର ସହାନୁଭୂତି ଥିବା ବୁଝିଥିଲେ ।

ଉପରବେଳା ତଦନ୍ତ ଉପଲକ୍ଷେ ବସନା ଚାରିପାଖର ଅନେକ ଗଉନ୍ତିଆ ଓ ପ୍ରଜା ବସନାରେ ରୁଣ୍ଡ ହେଲେ । ଗୋପବନ୍ଧୁଙ୍କୁ ସେମାନେ ଦଳ ଦଳ ହୋଇ ସାକ୍ଷାତ କଲେ ।

ଗୋପବନ୍ଧୁ ବୁଝିଲେ ଯେ, ସମ୍ବଲପୁର ସହିତ ମିଶି ରହିବାକୁ ସେମାନଙ୍କର ଏକାନ୍ତ ଇଚ୍ଛା । ଏଣେ କିନ୍ତୁ ରାଜାଙ୍କ ତରଫରୁ ପିଆଦା ଚପରାସୀ ଆସି ସେମାନଙ୍କୁ ଜଗିଛନ୍ତି । "ଦେବାନ ସାହେବ ବୋଲାଡେ" କହି ବାରମ୍ବାର ତାଗିଦ୍ କରୁଛନ୍ତି । ତେଣୁ ଗରିବ ପ୍ରଜାମାନେ ବଡ଼ ଦ୍ୱନ୍ଦ୍ୱରେ ପଡ଼ିଯାଉଥିବା ଗୋପବନ୍ଧୁ ଲକ୍ଷ୍ୟ କଲେ । ପ୍ରାୟ ସାଢ଼େ ୩ଟା ବେଳକୁ ତଦନ୍ତକାର୍ଯ୍ୟ ଆରମ୍ଭ ହେଲା । ତମ୍ବୁ ନିକଟକୁ ଯାଉଥିବା ନିରୀହ ପ୍ରଜାମାନଙ୍କୁ କମ୍ପର୍ ଦୂରକୁ ଡାକନେଇ ଧମକ ଚମକ ଦେଇ ରାଜାଙ୍କ ମତ ଓଡ଼ିଶା ପକ୍ଷରେ ନୁହେଁ ବୋଲି ବାରମ୍ବାର କହୁଥାନ୍ତି । ନିଜେ ରାଜା ବି ତଦନ୍ତକାରୀମାନଙ୍କ ପାଖରେ ବସିଛନ୍ତି । ତେଣୁ ଏ ପରିସ୍ଥିତିରେ ଭୟଭୀତ ହୋଇ ଅଧିକାଂଶ ପ୍ରଜା କହିଲେ—"ରାଜା ଯେଆଡ଼େ ଆମେ ସେଆଡ଼େ ।" ରାଜା ଓ ଦେଓ୍ୱାନଙ୍କ ଆଗରେ ପ୍ରକୃତ ମନକଥା ଖୋଲି କହିବା ପାଇଁ ସେମାନଙ୍କର ସାହସ ନଥିଲା; କିନ୍ତୁ ଗୌନ୍ତିଆଙ୍କ ଛଡ଼ା ଅନ୍ୟାନ୍ୟ ସାଧାରଣଙ୍କ ପକ୍ଷରୁ ବେଶୀ ଭାଗ ଲୋକ ଓଡ଼ିଆ ସପକ୍ଷରେ ଥିବାର ୧୩ ତାରିଖ ତଦନ୍ତରୁ ଜଣାଗଲା ।

ତେର ତାରିଖ ସନ୍ଧ୍ୟାରେ ଗୋପବନ୍ଧୁ ନିଜେ ରାଜାଙ୍କୁ ସାକ୍ଷାତକରି କହିଲେ—"ଦେଶ ମିଶ୍ରଣ ବ୍ୟାପାରରେ ରାଜା ପ୍ରଜା ଦୁଇ ପକ୍ଷ ହୋଇ ମକଦ୍ଦମା କରିବା ପରି କାର୍ଯ୍ୟ କରିବା ସୁନ୍ଦର ନୁହେଁ ।" ରାଜାଙ୍କ ସଙ୍ଗେ ଯିବାପାଇଁ ପ୍ରଜାମାନେ କହୁଛନ୍ତି । ତାହା ନହୋଇ ରାଜା ଯେବେ କହନ୍ତେ—"ପ୍ରଜାମାନଙ୍କର ଯେଉଁଆଡ଼େ ସୁବିଧା ହେବ ବୋଲି ସେମାନେ ମନେକରନ୍ତି ମୁଁ ସେହିଆଡ଼େ ଯିବାକୁ ପ୍ରସ୍ତୁତ ତା'ହେଲେ ସୁନ୍ଦର ହୁଅନ୍ତା ।" ରାଜାଙ୍କ ଗୁରୁ ଓଡ଼ିଆ, ପୁରୋହିତ ଓଡ଼ିଆ, ପୁରାଣ ପାଠ ପୂଣ୍ୟପର୍ବ ସବୁ ଓଡ଼ିଆ ପଦ୍ଧତିରେ । ଦେଓ୍ୱାନ ଏବଂ ଆଉ କେତେଜଣ କର୍ମଚାରୀଙ୍କୁ ଛାଡ଼ିଲେ ସମସ୍ତେ ଓଡ଼ିଆ । ମାତ୍ର ରାଜା ଦୁର୍ବଳ ଥିବାରୁ ସେ ଦେଓ୍ୱାନଙ୍କ ପରାମର୍ଶମତେ ସବୁବେଳେ ଚଳୁଥିଲେ । ତାଙ୍କର ବ୍ୟକ୍ତିତ୍ୱ ନଥିଲା ।

୧୪ । ୧୨ । ୧୯୨୦ ତାରିଖ ଦିନ ତଦନ୍ତ ବେଳେ ରାଜା, ଦେଓ୍ୱାନ ବା ତାଙ୍କ ତରଫରୁ କେହି ନଥିବାରୁ ତଦନ୍ତ କାର୍ଯ୍ୟ ନିରପେକ୍ଷ ଭାବରେ ହୋଇଥିଲା । ତା' ପରଦିନ ଗିଧିଲି ଗ୍ରାମକୁ ତଦନ୍ତ ମୁକାମ ଉଠିବାର କଥା । ଗୋପବନ୍ଧୁ ବାବୁ ଆଗରୁ ଯାଇ ଗିଧିଲିରେ ପହଞ୍ଚିଲେ । ଗିଧିଲି ବସନାଠାରୁ ଆଠ ମାଇଲ ଦୂର । ଏଠାରେ ଓଡ଼ିଆ ରକ୍ଷା ପାଣ୍ଠି ତରଫରୁ ଏକ ଓଡ଼ିଆ ସ୍କୁଲ ପ୍ରାୟ ଛ'ମାସ ତଳେ ସ୍ଥାପିତ ହୋଇଥିଲା । ଗୋପବନ୍ଧୁଙ୍କୁ ଦେଖି ଲୋକମାନେ ଉତ୍ସାହ ଓ ଆନନ୍ଦରେ ମାତିଗଲେ । ଉପରବେଳାକୁ ପ୍ରାୟ ଦୁଇ ହଜାର ଲୋକ ଗିଧିଲିରେ ପହଞ୍ଚିଲେ । ସମସ୍ତଙ୍କର ସମ୍ବଲପୁର ସହିତ ମିଶିବା ଏକାନ୍ତ ଇଚ୍ଛା । ଦେଓ୍ୱାନ ବା ରାଜାଙ୍କୁ ନଡରି ସମ୍ବଲପୁର ସହିତ ମିଶି ରହିବେ ବୋଲି ସମସ୍ତେ ସଙ୍କଳ୍ପ କଲେ; କିନ୍ତୁ ପରେ ପରେ ଖବର ଆସିଲା ଯେ ସାହେବମାନେ ଅନ୍ୟ କାର୍ଯ୍ୟରେ ବ୍ୟସ୍ତ ରହିଥିବାରୁ ଗିଧିଲି ଆସି ପାରିଲେ ନାହିଁ—ଆସନ୍ତା କାଲି ସରେଇ-ପାଲିରେ ମୁକାମ ହେବ । ସେଦିନ ଗିଧିଲିରେ ଅବସାଦର ଛାୟା ସଞ୍ଚରି ଯାଇଥିଲା ।

ରାଜାପକ୍ଷର ଏ ଚକ୍ରାନ୍ତ ବିରୁଦ୍ଧରେ ଗିଧିଲରେ ସେଦିନ ନାହିଁ ନଥିବା ଉତ୍ତେଜନା । ଗୋପବନ୍ଧୁ ସଭାକଲେ, ଉଦ୍‌ବୋଧନ ଦେଲେ । ୧୬ ତାରିଖ ସକାଳେ ସେ ସରେଇପାଲିରେ ପହଞ୍ଚିଲେ ।

୧୭ ତାରିଖ ସକାଳେ ଅନେକ ଗଉନ୍ତିଆ ଓ ପ୍ରଜାମାନଙ୍କ ମତ ନେଓ୍ୱା ହେଲା । ପ୍ରଜାମାନେ ନିର୍ଭୟରେ ସମ୍ବଲପୁର ସଙ୍ଗେ ମିଶି ରହିବା କଥା କହିଲେ; ମାତ୍ର ଗୌନ୍ତିଆମାନେ ଦେଓ୍ୱାନଙ୍କ ଭୟରେ ଏକଥା ସହଜ ଓ ସ୍ପଷ୍ଟ ଭାବେ କହି ପାରିଲେ ନାହିଁ । ସତେ ଯେପରି ସେମାନଙ୍କ ଗଳାକୁ କିଏ ରୁଦ୍ଧ କରି ଦେଉଥିଲା । ପୁଣି ସମ୍ମୁଖରେ ସ୍ୱୟଂ ଦେଓ୍ୱାନ ସାହେବ ଉପସ୍ଥିତ । ଗୋପବନ୍ଧୁଙ୍କ ପାଖରେ ସେମାନଙ୍କର ପ୍ରତିଶ୍ରୁତି ଦେଓ୍ୱାନଙ୍କୁ ଦେଖିବା ମାତ୍ରେ ମଳିନ ପଡ଼ିଗଲା । କାରଣ ଏ ଗୌନ୍ତିଅମାନେ ଜମିଦାରମାନଙ୍କ ତଳେ ଅନେକ ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରୁଥିଲେ । ଖୋର୍ଦ୍ଧାର ସରବରାକାରମାନଙ୍କ ପରି ଏମାନଙ୍କର ରାଜଦତ୍ତ ନିଷ୍କର ଭୂମି ଥିଲା; କିନ୍ତୁ ପ୍ରଜାମାନଙ୍କ କଥା ନିଆରା । ସେମାନଙ୍କ ପ୍ରଜାସ୍ୱତ୍ୱରେ ହାତ ଦେବାର ଅଧିକାର ଏପରିକି ରାଜାଙ୍କର ମଧ୍ୟ ନଥିଲା । ତେଣୁ ସେମାନେ ଅପେକ୍ଷାକୃତ ନିର୍ଭୟରେ କହିପାରୁଥିଲେ । ତଥାପି ଓଡ଼ିଆ, ଲରିଆ ଓ କେତେକ ଗଉନ୍ତିଆ ସମ୍ବଲପୁର ସପକ୍ଷରେ ଠିଆ ହୋଇ ମତ ଜଣାଇଥିଲେ ।

୧୭ । ୧୨ । ୧୯୨୦ ତାରିଖରେ ଗୋପବନ୍ଧୁ ତଦନ୍ତକାରୀ ହାକିମଙ୍କୁ ଗୋଟିଏ ପତ୍ରଦେଇ ସେ ନିଜେ ବା ରାଜା ବା ଦେଓ୍ୱାନ କେହି ତଦନ୍ତ ସମୟରେ ରହିବା ଉଚିତ ନୁହେଁ ବୋଲି ଜଣାଇଥିଲେ । ଏମାନଙ୍କ ଉପସ୍ଥିତି ଫଳରେ ପ୍ରକୃତ ଜନମତ ପ୍ରକାଶ ପାଇ ପାରୁନଥିଲା । ତାହାହିଁ ହେଲା । ହାକିମମାନେ ନିରପେକ୍ଷ ତଦନ୍ତ କଲେ । ଓଡ଼ିଆ ଓ ଲରିଆ—ଉଭୟେ ସମ୍ବଲପୁର ସଙ୍ଗେ ମିଶିବାକୁ ମତ ପ୍ରକାଶ କଲେ ।

ଏହାପରେ ୧୯ ଅପରାହ୍ନ ୪ ଘଣ୍ଟାରେ ଫୁଲ୍‌ଝରର 'ପ୍ରଜା ହିତକାରିଣୀ' ସଭାର ବିଶେଷ ଅଧିବେଶନ ବସିଲା । ଏ ଇଲାକାର ବହୁ ମୁଖିଆ ଗଉନ୍ତିଆ ଓ ପ୍ରଜାମାନେ ଏ ସଭାରେ ଯୋଗ ଦେଇଥିଲେ । କାର୍ଯ୍ୟାରମ୍ଭ ପୂର୍ବରୁ ଖଞ୍ଜଣୀ ମୃଦଙ୍ଗ ଶଙ୍ଖନାଦ ସହ ଭାଗବତର କେତେ ପଦ ପଠିତ ହୋଇଥିଲା । ଏ ସଭାରେ ଓଡ଼ିଆ ସପକ୍ଷରେ ସମସ୍ତେ ଦୃଢ଼ମତ ଦେଇ ଅନେକ ପ୍ରସ୍ତାବ ଆଗତ କରିଥିଲେ । ଏ ଇଲାକାର କେନ୍ଦ୍ର ସ୍ଥଳମାନଙ୍କରେ ଓଡ଼ିଆ ବିଦ୍ୟାଳୟ ସ୍ଥାପନ ଓ ଓଡ଼ିଆ ଶିକ୍ଷାର ପ୍ରଚାର ନିମନ୍ତେ ଅର୍ଥ ସଂଗ୍ରହ କରିବା ପାଇଁ ଫୁଲ୍‌ଝର ଶିକ୍ଷା ସମିତି ଗଠିତ ହୋଇଥିଲା । ଗୋପବନ୍ଧୁ ଏହି ସଭାରେ ଫୁଲ୍‌ଝରବାସୀଙ୍କ କର୍ତ୍ତବ୍ୟ ସମ୍ପର୍କରେ ଏକ ବକ୍ତବ୍ୟ ଦେଇ ସମସ୍ତଙ୍କୁ ଉତ୍ସାହିତ କରିଥିଲେ ।

ସଭା ଭାଙ୍ଗିବା ପରେ ପୁନରାୟ ସଂକୀର୍ତ୍ତନ ଆରମ୍ଭ ହେଲା । ସଂକୀର୍ତ୍ତନ ଦଳ ସଭା ସ୍ଥାନରୁ ଉଠି ବଜାରରେ ବୁଲି ତଦନ୍ତକାରୀ ସାହେବଙ୍କ ତମ୍ବୁ ନିକଟରେ ଉପସ୍ଥିତ ହୋଇଥିଲେ । ସେମାନେ ଉଚ୍ଚ ସ୍ୱରରେ ଗୋଟିଏ ଗୀତ ବୋଲୁଥିଲେ—

"ଚାଲ ହୋ ଏଇ ବାଟେ ଯିବା
ଓଡ଼ିଆ ରାଜ୍ୟରେ ମିଳିବା;
ଚାଲ ହୋ ଏଇ ବାଟେ ଯିବା
କାଳିଆ ଶ୍ରୀମୁଖ ଦେଖିବା ।"

ହରିବୋଲ ଓ ଶଙ୍ଖନାଦରେ ଚତୁର୍ଦ୍ଦିଗ ମୁଖରିତ ହେଉଥିଲା ।

ଅନୁସନ୍ଧାନ କାର୍ଯ୍ୟ ସରିଗଲା । ବହୁ ଅଧିକ ସଂଖ୍ୟକ ଲୋକ ଓଡ଼ିଆ ସପକ୍ଷରେ ମତ ଦେଇଥିବା ଖବର ପାଇ ଦେଓ୍ୱାନ ପୁଣି ଦୌରାତ୍ମ୍ୟ ଆରମ୍ଭ କରିଦେଲେ । ଲରିଆ, ଗୌଣ୍ଡିଆ ଏବଂ ପ୍ରଜାମାନଙ୍କ ମଧ୍ୟରୁ କେତେକଙ୍କୁ ଧରିନେଇ ଧମକ ଚମକ ଦେଲେ । ଜୋର କରି ସେମାନଙ୍କଠାରୁ ଦରଖାସ୍ତରେ ଦସ୍ତଖତ ନେଇ ସମ୍ବଲପୁର ସଙ୍ଗେ ନରହି ରାୟପୁର ସଙ୍ଗେ ରହିବା ପାଇଁ ଡେପୁଟୀ କମିସନରଙ୍କୁ ଜଣାଇଲେ । 'କର୍ମବୀର' ନାମକ ହିନ୍ଦୀ କାଗଜରେ ଓଡ଼ିଆ ବିରୁଦ୍ଧରେ ଲେଖାଲେଖି କଲେ । ଫୁଲଝରର ଦେଓ୍ୱାନ ଏ ଅଞ୍ଚଳ ପାଇଁ ସେନସସ୍ ଅଫିସର ନିଯୁକ୍ତ ହୋଇଥିବାରୁ ସେ ଓଡ଼ିଆ ବିରୁଦ୍ଧରେ ସବୁପ୍ରକାର ଚକ୍ରାନ୍ତ ଆରମ୍ଭ କରିଥିଲେ । ଏପରିକି ଓଡ଼ିଆମାନଙ୍କ ଭାଷା ହିନ୍ଦୀ ଲେଖାଇବାକୁ ସେ ଏନୁମରେଟରମାନଙ୍କୁ ଉପର ନିର୍ଦ୍ଦେଶ ଦେଇଥିଲେ । କେହି କେହି ଏନୁମରେଟର ଏକଥା ଗୋପବନ୍ଧୁଙ୍କ ଆଗରେ ସ୍ୱୀକାର କରିଥିଲେ । ତେଣୁ ଗୋପବନ୍ଧୁ ବେଲି ସାହେବଙ୍କୁ ସାକ୍ଷାତ କରି ଜନଗଣନା କାର୍ଯ୍ୟ ନିରପେକ୍ଷ ଭାବରେ ନହେଲେ ସେ ତାଙ୍କ ତରଫରୁ ବେସରକାରୀ ଜନ ଗଣନା କାର୍ଯ୍ୟ କରିବେ ବୋଲି ସ୍ପଷ୍ଟ କହିଥିଲେ ।

## କଲିକତା କଂଗ୍ରେସ ସମ୍ମିଳନୀ (୧୯୨୦)

୧୯୧୯ ଏପ୍ରିଲ ୬ ତାରିଖରେ ପଞ୍ଜାବର ଜାଲିଆନାବାଗରେ ଯେଉଁ ଅମାନୁଷିକ ହତ୍ୟାକାଣ୍ଡ ଘଟିଗଲା ଓ ବହୁଲୋକ ଜେନେରାଲ ଡାୟାରଙ୍କ ଗୁଳିବୃଷ୍ଟିରେ ତଳି ପଡ଼ିଲେ ତାରି ପରେ ପରେ କଲିକତାରେ କଂଗ୍ରେସର ଏକ ସ୍ୱତନ୍ତ୍ର ଅଧିବେଶନ ଡକାଯାଇଥିଲା । ଇତିହାସର ଏଇ କଳଙ୍କିତ ଅଧ୍ୟାୟ ସମସ୍ତ ଭାରତବାସୀଙ୍କ ପ୍ରାଣରେ ଅଗ୍ନି କଣା ଜାଳଦେଇଥିଲା । ପୁନଶ୍ଚ ପଞ୍ଜାବକେଶରୀ ଲାଲା ଲଜପତରାୟ ଦୀର୍ଘ ୧୪ ବର୍ଷ କାଳ ଭାରତରୁ ନିର୍ବାସିତ ହୋଇ ସେବର୍ଷ ମାତୃଭୂମିକୁ ଫେରିଆ'ନ୍ତି । ତେଣୁ ତାଙ୍କ ନେତୃତ୍ୱକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ସେ ଏହି ଅଧିବେଶନରେ ସଭାପତିତ୍ୱ କରିଥିଲେ । ଏହି ଅଧିବେଶନ ଭାରତର ରାଜନୈତିକ ଇତିହାସରେ ଏକ ନୂତନ ପୃଷ୍ଠା ଉନ୍ମୋଚନ କରିବ ବୋଲି ସମସ୍ତ ଭାରତବାସୀ ଆକାଙ୍କ୍ଷିତ ହୋଇ ରହିଁରହିଥିଲେ ।

୧୯୨୦ ମସିହା ସେପ୍ଟେମ୍ବର ମାସ ୪ ତାରିଖଠାରୁ ଦୁଇଦିନ ଧରି ଏହି ବିଶେଷ ଅଧିବେଶନ ଚାଲିଥିଲା । ୧୮ ହଜାରରୁ ୨୦ ହଜାର ଲୋକ ଏ ଅଧିବେଶନରେ ଯୋଗଦାନ କରିଥିଲେ । ଓଡ଼ିଶାରୁ ଦାସେଆପଣେ, କୃପାସିନ୍ଧୁ ମିଶ୍ର ପ୍ରମୁଖ ଏଇ ଅଧିବେଶନରେ ଯୋଗ ଦେଇଥିଲେ । ସେତେବେଳେ ପଣ୍ଡିତ ନୀଳକଣ୍ଠ ସାର୍ ଆଶୁତୋଷଙ୍କ ପ୍ରସ୍ତାବ ଓ ଗୋପବନ୍ଧୁଙ୍କ ପ୍ରେରଣାରେ କଲିକତା ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଅଧ୍ୟାପକ ଓ ଗବେଷକ ରୂପେ ଯୋଗ ଦେଇଥା'ନ୍ତି । ତେଣୁ ଏ ଅଧିବେଶନରେ ଯୋଗଦେବା ତାଙ୍କ ପକ୍ଷେ ସହଜ ଥିଲା । ଏହି ଅଧିବେଶନର ଅବ୍ୟବହିତ ପୂର୍ବରୁ ଗୋପବନ୍ଧୁ ୩୦ । ୮ । ୧୯୨୦ ତାରିଖରେ ପୁରୀରେ ପ୍ରଥମ ଜିଲ୍ଲା କଂଗ୍ରେସ କମିଟି ଗଠନ କରିଥିଲେ ଓ ପ୍ରଥମ ସଭାପତି ଭାବରେ ମନୋନୀତ ହୋଇଥିଲେ ।

ଏହି ଅଧିବେଶନରେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ନୀତି ଧାର୍ଯ୍ୟ ହେଲା । ଜିନା, ପଣ୍ଡିତ ମଦନମୋହନ ମାଲବ୍ୟ, ଆନିବେଶାନ୍ତ ଓ ଅନ୍ୟାନ୍ୟ କେତେକ ମୁଖିଆ କଂଗ୍ରେସ ନେତା ମହାତ୍ମା ଗାନ୍ଧିଙ୍କ ଅସହଯୋଗ ପ୍ରସ୍ତାବର ବିରୁଦ୍ଧାଚରଣ କରିଥିଲେ । ଏପରିକି ସଭାପତି ଲାଲା ଲାଜପତରାୟ ମଧ୍ୟ ଏ ପ୍ରସ୍ତାବକୁ ଆନ୍ତରିକ ଗ୍ରହଣ କରିପାରି ନଥିଲେ, ତଥାପି ଅଧିକ ଭୋଟରେ ଏହା ଧାର୍ଯ୍ୟ ହେଲା । କଂଗ୍ରେସର ନିଷ୍ପତ୍ତିକ୍ରମେ କାଉନ୍ସିଲକୁ କେହି ମେମ୍ବର ହୋଇ ନଯିବା ସ୍ଥିର ହେଲା । ତଥାପି ବିରୁଦ୍ଧ ମତବାଦୀମାନେ ପରବର୍ତ୍ତୀ କଂଗ୍ରେସ ଅଧିବେଶନରେ ଏହି ନୀତିର ବିରୋଧ କରିବା ପାଇଁ ସଜ ହେଉଥିଲେ । କଲିକତା କଂଗ୍ରେସ ସମ୍ମିଳନୀ ବହୁ ଆଶା ଓ ଆଶଙ୍କା ଭିତରେ ଇତି ହେଲା । ଜାତୀୟ ମୁକ୍ତି ସଂଗ୍ରାମ ଅଭିଜାତ ଓ ବୁଦ୍ଧିଜୀବୀ ଚିନ୍ତା ପରିଧିରୁ ମୁକ୍ତ ହୋଇ କ୍ରମେ ସାଧାରଣ ଭାରତୀୟଙ୍କ ସୁଖଦୁଃଖର ଅନୁସ୍ପନ୍ଦନରେ ସ୍ପନ୍ଦିତ ହେବାକୁ ବାଟ ଖୋଜୁଥିଲେ । ଗାନ୍ଧି ମହାତ୍ମା ହିଁ ପ୍ରଥମେ ଏହି ଚିନ୍ତାର ସ୍ଫୁରଣ ହେଲେ । ପରାଧୀନତାର ବେଦନାସିକ୍ତ ଜାତି ମାନସରେ ସେ ଆଶାର ଦୁରନ୍ତ ଉତ୍ସ ଖୋଲିଦେଲେ ।

## ମହାଜନୋ ଯେନ ଗତଃ ସଃ ପନ୍ଥା

ଗୋପବନ୍ଧୁ କଲିକତା ଅଧିବେଶନରୁ ପାଟଣା ଓ ଲକ୍ଷ୍ନୌ ଯାଇ ସତ୍ୟବାଦୀ ଫେରିବାମାତ୍ରେ ସ୍କୁଲର ସମସ୍ତ ଶିକ୍ଷକ ଓ ଛାତ୍ର ତାଙ୍କ ପାଖରେ ରୁଣ୍ଡହୋଇଗଲେ । ବିଶେଷତଃ ଅଧିବେଶନରେ ମହାତ୍ମା ଗାନ୍ଧିଙ୍କ ପ୍ରସ୍ତାବ—ଅସହଯୋଗ ଆନ୍ଦୋଳନ ଗୃହୀତ ହେବାର ଥାଏ । ଭାରତର ବହୁ ଉଚ୍ଚଶିକ୍ଷିତ ବ୍ୟକ୍ତି ଓ ଇଂରେଜୀ ଶାସନର ପଦସ୍ଥ କର୍ମଚାରୀମାନେ ସନ୍ତ୍ରସ୍ତ ହୋଇ-ପଡ଼ିଥାନ୍ତି । ସାଧାରଣଙ୍କ ମନରେ ଆଶା ଓ ଉଦ୍‌ବେଗ ଲାଗି ରହିଥାଏ । ଦାସେଆପଣେଙ୍କ ସିଦ୍ଧାନ୍ତ ଓ ପ୍ରତିକ୍ରିୟା ଶୁଣିବାକୁ ସମସ୍ତ ସତ୍ୟବାଦୀ ସେଦିନ ଖୁବ୍ ବ୍ୟଗ୍ର ହୋଇ ଉଠିଥାଏ ।

ଦାସେଆପଣେ ପହିଲୁ ପ୍ରଥମେ 'ସମାଜ' କାଗଜରେ କ'ଣ ବାହାରିଛି ଦେଖିବାକୁ ମାଗିଲେ । ଆଚାର୍ଯ୍ୟ ମହାଶୟ ଓ ଅନ୍ୟାନ୍ୟ ଶିକ୍ଷକମାନେ ପାଖରେ ଠିଆ ହୋଇଥାନ୍ତି । ସମସ୍ତଙ୍କ ମୁହଁରେ କଂଗ୍ରେସ ଅଧିବେଶନ ବିଷୟ ଜାଣିବାର ବ୍ୟଗ୍ରତା ଓ କୌତୂହଳ ଲାଗି ରହିଥାଏ ।

ଦାସେ ଆପଣେ ଆରମ୍ଭ କଲେ—"ଜାଣିଲ ହରିହର, ଏଥର କଲିକତାରେ ଜଗନ୍ନାଥ ଦର୍ଶନ କରି ଫେରିଆସିଲି ।"

କଥାଟା ସମସ୍ତଙ୍କୁ ଟିକିଏ ଖାପଛଡ଼ା ଲାଗିଲା । କଲିକତା ପୁଣି ଜଗନ୍ନାଥ ଦର୍ଶନ— ସମସ୍ତେ ଅଡ଼ୁଆରେ ପଡ଼ିଗଲେ ।

ଦାସେ ଆପଣେ ହସି ହସି କହିଲେ—"ପୁରୀରେ ଶ୍ରୀଗୁଣ୍ଡିଚାରେ ଯେ ବିରାଟ ଜନ-ସମାଗମ ହୁଏ, ଏଥିରେ ତିନୋଟି ମୂର୍ତ୍ତି ଉତ୍ସବସାର ହୋଇ ରଥରେ ବସିଥା'ନ୍ତି—ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ଲୋକେ ଗୁଣ୍ଡିଚା ଯାତ ଦେଖନ୍ତି ଏବଂ ଏ ତିନିମୂର୍ତ୍ତିଙ୍କୁ ଦର୍ଶନ କରନ୍ତି । ସେଥିରେ ହିଁ ଲୋକଙ୍କର ଆନନ୍ଦ । ଏଥିରେ ପୁଣ୍ୟ ଅର୍ଜନ୍ତି ବୋଲି ସେମାନଙ୍କର ପ୍ରତିଷ୍ଠିତ ବିଶ୍ୱାସ । ମୋର ମନେହେଲା—ଏଥର କଲିକତାରେ ମୁଁ ଗୁଣ୍ଡିଚାଯାତ୍ରା ଦେଖି ଆସିଲି । କଂଗ୍ରେସ ଅଧିବେଶନ ଏକ ବିରାଟ ଜନସମାଗମ । ଏହା ଶ୍ରୀଗୁଣ୍ଡିଚା ପରି ମୋତେ ଜଣାଗଲା । ସେଠାରେ ଭାରତର ସବୁ ବିଶିଷ୍ଟ ନେତା ଓ ନେତ୍ରୀ ଉପସ୍ଥିତ ଥିଲେ । ଉତ୍ସାହ ଓ କୋଳାହଳର ସୀମା ନଥିଲା; କିନ୍ତୁ ତିନୋଟି ମୂର୍ତ୍ତି ଆଖି ଆଗରେ ଜାଜ୍ୱଲ୍ୟମାନ ହୋଇ ଉଭାହେଲେ—ପଞ୍ଜାବର ଲାଲା ଲଜପତରାୟ, ସ୍ୱରାଜ୍ୟ ସଂଗ୍ରାମର ଅଗ୍ରଦୂତ ମହାତ୍ମା ଗାନ୍ଧି ଏବଂ ଉଦାରହୃଦୟା ଭଗିନୀ ଆନିବେଶାନ୍ତ । ମୋର ମନେହେଲା ଏ ତିନିମୂର୍ତ୍ତି ଯେପରି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା । ତମେ ଜାଣ ଲାଲାଜୀ ଶ୍ୟାମଳ ବର୍ଣ୍ଣ । ଶ୍ରୀଗୁଣ୍ଡିଚାରେ ଜଗନ୍ନାଥଙ୍କ ପରି ଏକ ବିରାଟ ଅଧିବେଶନରେ ସେ ପୁରୋଧା । ଜଗନ୍ନାଥଙ୍କ ଆଖିରେ ଚୈତନ୍ୟ ଥିବା ପରି ଲାଲାଜୀଙ୍କ ଆଖି ଦୁଇଟିରେ ଅପୂର୍ବ ଗାମ୍ଭୀର୍ଯ୍ୟ ଓ ଜ୍ୟୋତି ରହିଛି । କି ସାହସୀ, ତେଜସ୍ୱୀନ୍ ପୁରୁଷ; କି ପ୍ରଗଲ୍‌ଭ ବକ୍ତା ! ତାଙ୍କ ତେଜସ୍ୱିତାରେ ସେ ସମସ୍ତ ଜନତାକୁ ବଶୀଭୂତ କରିଦେଇଥିଲେ । ସେ ଯଥାର୍ଥରେ ଜଣେ ବିପ୍ଳବୀ । ଗାନ୍ଧି ମହାତ୍ମାଙ୍କୁ ଦେଖି ମନେହେଲା ସତେ ଯେପରି ସେ ବଳଭଦ୍ର । ତାଙ୍କର ଦୀର୍ଘ କର୍ଣ୍ଣ, ଆୟତ ନୟନ, ତାଙ୍କ କମନୀୟ ମୂର୍ତ୍ତିରେ ଦୃଢ଼ତାର ଭାବ ଯେପରି ବଳିଷ୍ଠ, ସେହିପରି ମଧୁର । ମନେହେଲା ସେ ଯେପରି ତ୍ୟାଗ ଆଉ ବିନୟର ଅବତାର । ବୃଦ୍ଧା ଶ୍ରୀମତୀ ଆନିବେଶାନ୍ତଙ୍କୁ କଂଗ୍ରେସ ପୀଠରେ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ତାଙ୍କର କି ବିରାଟ ସମ୍ବର୍ଦ୍ଧନା ହୋଇଥିଲା ! ସେ ଆଇରିସ୍ ରମଣୀ ହୋଇଥିଲେ ହେଁ ଏ ଦେଶର ସେବାରେ ନିଜକୁ ଭଗିନୀ ରୂପରେ ଉତ୍ସର୍ଗ କରିଛନ୍ତି । ସେ ଇଂରେଜ ଶାସନର ଘୋର ସମାଲୋଚକ ଥିଲେ; କିନ୍ତୁ ଏ ଦୁଇବର୍ଷ ମଧ୍ୟରେ ତାଙ୍କ ମତ କେତେକ ପରିମାଣରେ ବଦଳିଛି । ଇଂରେଜ ସରକାରଙ୍କ କେତେକ କଥାକୁ ସେ ସମର୍ଥନ କଲାଭଳି କଥା କହୁଥିବାରୁ ତାଙ୍କ ଉପରେ କଂଗ୍ରେସର

ଆଗୁଆ ଲୋକେ ଖୁବ ବିରକ୍ତ । ତାଙ୍କ ମତବାଦୀ ବିଶିଷ୍ଟ ନେତା ଓ ନେତ୍ରୀ ଏଥିପାଇଁ କଂଗ୍ରେସରେ ଏଥର ଯୋଗ ଦେଲେ ନାହିଁ; କିନ୍ତୁ ଉଦାରହୃଦୟା ଆନିବେଶାନ୍ତ ତାଙ୍କର କେତେକ ପରିମାଣରେ ମତ ବିରୋଧ ସତ୍ତ୍ୱେ ସେ କଂଗ୍ରେସ ଅଧିବେଶନରେ ଯୋଗଦେଲେ ଓ ଗାନ୍ଧିଙ୍କଦ୍ୱାରା ଆଗତ ଅସହଯୋଗ ଦୃଷ୍ଟିଭଙ୍ଗୀକୁ ସମର୍ଥନ କରି ବକ୍ତୃତା ଦେଲେ—ଏହା ବିସ୍ମୟର କଥା । ସେ ଯେତେବେଳେ କହିବାକୁ ଠିଆ ହେଲେ, ଘୋରଆଡ଼ୁ ଖୁବ ଗଣ୍ଡଗୋଳ ହେଲା । ତାଙ୍କୁ ଲୋକେ ମୋଟେ କୁହାଇ ଦେଲେ ନାହିଁ । ଶ୍ରୀମତୀ ବେଶାନ୍ତ କିନ୍ତୁ ହଟିଯିବା ବ୍ୟକ୍ତି ନୁହନ୍ତି । ମହିଳାର ତେଜ ତାଙ୍କଠାରେ ପୂର୍ଣ୍ଣ ପ୍ରତିଭାତ ହେଉଥିଲା । ସେ ନୀରବରେ ଅଥଚ ଦୃଢ଼ ଭାବରେ ଠିଆହୋଇ ରହିଲେ । ସ୍ଥାନ ଛାଡ଼ିଲେ ନାହିଁ । ପଣ୍ଡିତ ମାଳବ୍ୟ ଉଠି ଲୋକଙ୍କୁ ଶାନ୍ତ କରାଇଲେ, ତଥାପି କିଛି ଫଳ ହେଲା ନାହିଁ । ଶେଷରେ ମହାତ୍ମା ଗାନ୍ଧି ଠିଆହୋଇ ଯେତେବେଳେ ଲୋକଙ୍କୁ ନିବେଦନ କଲେ, ଘୋରଆଡ଼ ନିସ୍ତବ୍ଧ ହୋଇଗଲା । ଶ୍ରୀମତୀ ବେଶାନ୍ତ ତାଙ୍କର ଓଜସ୍ୱିନୀ ବକ୍ତୃତାରେ ଯାହା କହିଲେ, ସେଥିରେ ଭାରତର ସ୍ୱାଧୀନତା ପ୍ରତି ତାଙ୍କ ପ୍ରାଣର ବ୍ୟାକୁଳତା, ଅକୃତ୍ରିମ ସ୍ନେହ ପ୍ରତ୍ୟେକ ହୃଦୟକୁ ସ୍ପର୍ଶ କଲା । ସେ ତାଙ୍କ ସ୍ୱାଧୀନ ମତ ପ୍ରକାଶ କରିବାକୁ ଟଳେହେଲେ ଦ୍ୱିଧା ପ୍ରକାଶ କରିନଥିଲେ । ତାଙ୍କୁ ଦେଖି ସୁଭଦ୍ରା ଦର୍ଶନ ମିଳିଲା ବୋଲି ମୁଁ ମନେକଲି । ରଥ ଉପରେ ତିନିମୂର୍ତ୍ତି ଯେପରି ସ୍ୱତନ୍ତ୍ର, ଏ ତିନିମୂର୍ତ୍ତିଙ୍କର ସ୍ୱାତନ୍ତ୍ର୍ୟ, ପ୍ରତ୍ୟେକ ଉପଲବ୍ଧି କରୁଥିଲେ । ତିନି ନେତାଙ୍କର ଯଦି ବାସ୍ତବିକ୍ ଏକ ମନ ଓ ମିଳିତ ଉଦ୍ୟମ ରହେ ମୋର ମନେହୁଏ ଭାରତର ସ୍ୱରାଜ୍ୟ ଲାଭ ଅତି ସହଜ ହୋଇପଡ଼ିବ । ମତ ବିରୋଧ ସତ୍ତ୍ୱେ ମୂଳ ଉଦ୍ଦେଶ୍ୟ ବିଷୟରେ ପରସ୍ପର ସହଯୋଗ କରିବାର ଏ ଯେଉଁ ଦୃଷ୍ଟାନ୍ତ ଦେଖିଲି, ସେଥିରୁ ବହୁତ କିଛି ଶିଖିବାର ଅଛି ।"

ଦାସେଆପଣେ ପୁଣି କହିଲେ—"ଏଥର କଂଗ୍ରେସରେ ମହାତ୍ମା ଗାନ୍ଧିଙ୍କ ବ୍ୟକ୍ତିତ୍ୱର ଅସାଧାରଣ ପ୍ରଭାବ ଦେଖାଗଲା । ଯାହା କୁହନ୍ତି 'I came, I saw, I conquered.' କଂଗ୍ରେସ ପୀଠରେ ଗାନ୍ଧିଜୀଙ୍କ ଆବିର୍ଭାବ ଠିକ୍ ଏହି ପ୍ରକାର । ଗାନ୍ଧିଜୀ ଏ ପର୍ଯ୍ୟନ୍ତ କଂଗ୍ରେସ ପୀଠରେ ମୁଖ୍ୟସ୍ଥାନ ପାଇନଥିଲେ । ଅନେକ ତାଙ୍କ ମତବାଦର ବିରୋଧୀ ଥିଲେ । କଂଗ୍ରେସ ଆନ୍ଦୋଳନ ଅଚିରେ ଫାଟିଯିବ ବୋଲି ଅନେକ ଆଶଙ୍କା କରୁଥିଲେ; କିନ୍ତୁ ଗାନ୍ଧିଜୀଙ୍କ ବିନୟ, ସାଧୁତା, ନିଷ୍କପଟତା ଓ ଅକାଟ୍ୟ ଯୁକ୍ତି ଲୋକମାନଙ୍କୁ ବେଶ୍ ଅଭିଭୂତ କରିପାରିଲା । ଅସହଯୋଗ ଆନ୍ଦୋଳନ ସୂତ୍ରପାତ କରି ସେ ଜାତୀୟ ସଂଗ୍ରାମର ପୁରୋଧା ହେଲେ । ସେ ଯୁଦ୍ଧାନ୍ତ ସବୁକ୍ଷେତ୍ରରେ ସଂଗ୍ରାମ । ବାସ୍ତବିକ ଲାଲଜୀଙ୍କ ତେଜସ୍ୱିତା, ମହାତ୍ମା ଗାନ୍ଧିଙ୍କ ତ୍ୟାଗପୂତ ଦୃଢ଼ତା ଏବଂ ଶ୍ରୀମତୀ ବେଶାନ୍ତଙ୍କ ଧୈର୍ଯ୍ୟ ଓ ଉଦାରତା ଚିରଦିନ ପାଇଁ ମନକୁ ପ୍ରଭାବିତ କରି ରଖିବ ।"

ଗୋପବନ୍ଧୁଙ୍କ କଥା ସମସ୍ତେ ନୀରବରେ ଶୁଣୁଥାନ୍ତି । ସେ ଏତିକି କହି ତୁନି ହୋଇଗଲା ପରେ ଆଗ୍ରହର ସହିତ ପଚାରିଲେ—"ଆପଣେ, କଂଗ୍ରେସରେ ତ ଏ ପ୍ରସ୍ତାବ ହେଲା;

ଆପଣ କ'ଣ ବିଚାରୁଛନ୍ତି ? ଆମେ ସବୁ କ'ଣ କରିବୁ ?''

ଦାସେଆପଣେ କହିଲେ—ଜାତିର ଇତିହାସରେ ଏ ଯେପରି ଗୋଟିଏ ଘୋର ପରିବର୍ତ୍ତନର ସମୟ, ବ୍ୟକ୍ତିଗତ ଓ ଅନୁଷ୍ଠାନର ଜୀବନରେ ମଧ୍ୟ ଏହା ସେହିଭଳି ଏକ ସଙ୍କଟର ସମୟ । ଏ କ୍ଷେତ୍ରରେ କ'ଣ କରିବାକୁ ହେବ ମୁଁ ହଠାତ୍ କହିପାରିବିନି । ତୁମେ ସମସ୍ତେ ବସି ବିଚାର କର; କିନ୍ତୁ ମୋ ପକ୍ଷେ କଅଣ କର୍ତ୍ତବ୍ୟ, ମୁଁ ସେକଥା ବରାବର ବିଚାର ବିଚାରି ଆସୁଛି । ତଳ ଯୁଧିଷ୍ଠିରଙ୍କ କହିବା ପରି—''ମହାଜନୋ ଯେନ ଗତଃ ସଃ ପନ୍ଥା ।''

ସେଦିନଠାରୁ ପ୍ରାୟ ପନ୍ଦରଦିନ ଧରି ଗୋପବନ୍ଧୁ ନିର୍ଜନରେ ବସି ଗମ୍ଭୀର ଚିନ୍ତା କଲେ । କାହା ସହିତ ସାକ୍ଷାତ ନାହିଁ, କଥାବାର୍ତ୍ତା ନାହିଁ । ଏହି ଦିନଗୁଡ଼ିକରେ ସେ ଆପଣା ଚିନ୍ତାର ଏକ ନିର୍ଦ୍ଦିଷ୍ଟ ପଥ ଖୋଜିବସୁଥିଲେ । ନୀରବରେ ନିଜ ମତ ସ୍ଥିର କରୁଥିଲେ । ତା'ପରେ ସେ ବିହାର-ଓଡ଼ିଶା କାଉନ୍‌ସିଲର ସଭ୍ୟ ପଦରୁ ଇସ୍ତଫା ଦେଲେ ।

ବିହାର-ଓଡ଼ିଶା ଲାଟ୍ ଗେଟ୍ ସାହେବ ସେତେବେଳେ ପୁରୀରେ ଅବସ୍ଥାନ କରୁଥା'ନ୍ତି । ସେ ତାଙ୍କୁ ଅନେକ ବୁଝାଇଲେ, ''ଆପଣ 'ଅସହଯୋଗ'ରେ ଯୋଗ ଦିଅନ୍ତୁ ନାହିଁ । ଏହିଠାରେ ରୁହନ୍ତୁ । ଏଠାରେ ଆପଣ ଦେଶସେବା କରିପାରିବେ । ଆପଣ ନିଷ୍ଠା ଓ ସାଧୁତା ବଳରେ କାଉନ୍‌ସିଲରେ ଥାଇ ଲୋକମାନଙ୍କ ପାଇଁ ଯାହା ହାସଲ କରିପାରିଛନ୍ତି ଅସହଯୋଗ ଦ୍ୱାରା ତା ହୋଇପାରିବ ନାହିଁ ।''

କିନ୍ତୁ ଗୋପବନ୍ଧୁ କହିଲେ—''ନା, ଏଠାରେ ମୁଁ ଅତି ମାତ୍ରାରେ ସଙ୍କୁଚିତ ହୋଇଯାଉଛି । ଯେତେହେଲେ ଏଠାରେ ସ୍ୱାଧୀନତା ନାହିଁ । ଏଠାରେ ରହିଲେ ଭାରତ ସ୍ୱାଧୀନତା ଲାଭ କରିପାରିବ ନାହିଁ । ଆପଣଙ୍କ ହୃଦୟ କୋମଳ ହୋଇପାରେ; କିନ୍ତୁ ଆପଣଙ୍କ ସରକାର ଇସ୍ପାତଠାରୁ ଆହୁରି ଟାଣ । ଶିଳାଠାରୁ ଆହୁରି କଠିନ । ବ୍ୟବସ୍ଥା ସଭାରେ ମୋର ସାର୍ଘ ଗ୍ରବର୍ଷର ଆକୁଳ ଆବେଦନ କେହି ଶୁଣିଲେ ନାହିଁ । ବନ୍ୟାର ସ୍ଥାୟୀ ପ୍ରତିକାର ପାଇଁ କିଛି କରାଗଲା ନାହିଁ । ଲୁଣ ଉତ୍ପାଦନ ସମସ୍ୟା ପ୍ରତି ସରକାର ଧ୍ୟାନ ଦେଲେନାହିଁ । ଏ ସରକାର ଅମଳରେ ଶିକ୍ଷାର ପ୍ରସାର ହେବା ସ୍ୱପ୍ନ ପ୍ରାୟ । ଆପଣ ନିଜେ ପୁରୀ ଜିଲ୍ଲାରେ ଭୁଲି ଲୋକେ ପୋକମାଛି ପରି ମରୁଥିବା ସ୍ୱଚକ୍ଷୁରେ ଦେଖିଲେ, କିନ୍ତୁ ଆପଣଙ୍କ ସରକାର କହିଲା—'ଏହା ଦୁର୍ଭିକ୍ଷ ନୁହେଁ' । ଆପଣ କେବେ ବିଶ୍ୱାସ କରୁଛନ୍ତି ସରକାର ସହିତ ଆଉ ଅଧିକ ସହଯୋଗରେ ଲୋକଙ୍କର ମଙ୍ଗଳ ହୋଇ-ପାରିବ ? ଅସହଯୋଗ ହିଁ ବର୍ତ୍ତମାନ ଏକମାତ୍ର ବାଟ । ଯଦି ଲୋକମାନେ ଅସହଯୋଗ କରି ଏକ ଦୁର୍ବାର ଦୁଃଖକୁ ବରଣ କରନ୍ତି ଓ ନିଜ ଲକ୍ଷ୍ୟରେ ଦୃଢ଼ ରହନ୍ତି ତା'ହେଲେ ସରକାର ସେମାନଙ୍କୁ ଅବହେଳା କରିପାରିବ ନାହିଁ । ମୋର ଦୃଢ଼ ବିଶ୍ୱାସ ଦୁର୍ବଳ ହୃଦୟ ନେଇ ଓ ଅସ୍ଥିର ମନ ନେଇ କିଛି ହାସଲ କରାଯାଇ ପାରେ ନାହିଁ ।''

ସରକାର ସତ୍ୟବାଦୀ ସ୍କୁଲ ପାଇଁ ନାନା ପ୍ରଲୋଭନ ଦେଖାଇଲେ, ନାନା ପ୍ରତିଶ୍ରୁତି ଦେଲେ; କିନ୍ତୁ ଗୋପବନ୍ଧୁଙ୍କୁ ଅଟକାଇ ପାରିଲେ ନାହିଁ ।

ପରେ ଆଚାର୍ଯ୍ୟ ମହାଶୟ ଓ ସତ୍ୟବାଦୀର କେତେକ ଶିକ୍ଷକଙ୍କୁ ଗୋପବନ୍ଧୁ ଏ ସମ୍ବନ୍ଧରେ କହିଲେ—"ଆସେମ୍ବ୍ଲିର ସ୍ୱାଧୀନ ସଭ୍ୟ ହେଲେ ମଧ୍ୟ ଆମେ ସବୁ ପରାଧୀନ ଦେଶର କାଉନ୍‌ସିଲର । ଯେତେବେଳେ ଆମ ବକ୍ତୃତା ଶୁଣି ଲାଟସାହେବ ହସିଦେଉଛନ୍ତି —ସେତେବେଳେ ଆମ ବୁକୁ କୁଣ୍ଡେମୋଟ ହୋଇଯାଉଛି । ଏହା ପରାଧୀନତାର ଏକ ଲକ୍ଷଣ । ଆମକୁ ନୂଆ ବାଟ ବାଛି ନେବାକୁ ହେବ । ମହାତ୍ମା ଗାନ୍ଧି ଭଗୀରଥ ପରି ସ୍ୱରାଜର ଗଙ୍ଗାକୁ ବୁହାଇ ଆଣିବାରେ ଲାଗିଛନ୍ତି । ଆମେ ସବୁ ନିଶ୍ଚିନ୍ତ ରହିଲେ ଚଳିବ କି ?"

ନୀଳକଣ୍ଠଙ୍କୁ ପରେ କଲିକତାରେ କହିଲେ—"ଏବେ ତୁମ୍ଭେମାନେ ଯାହା ଇଚ୍ଛା ତାହା କର । ମୁଁ ଯାଉଛି ଏକା ଏକା ଅସହଯୋଗରେ ଯୋଗ ଦେବି ।" ବସ୍ତୁତଃ ଏହିଠାରୁ ହିଁ ଗୋପବନ୍ଧୁଙ୍କ ଜୀବନରେ କଂଗ୍ରେସ ରାଜନୈତିକ ଆନ୍ଦୋଳନର ଏକ ଯୁଗ ଆରମ୍ଭ ହୋଇଥିଲା । ଏହା ପୂର୍ବରୁ ଓଡ଼ିଶାରେ ଜାତୀୟ କଂଗ୍ରେସର ସତ୍ତା ନଥିଲା କହିଲେ ଚଳେ ।

## ପୁରୀରେ ଭୋଟ ପ୍ରଚାର—୧୯୨୦

### (ମଧୁବାବୁ ଓ ଗୋପବନ୍ଧୁ)

୧୯୧୯ ମସିହାର ଶାସନ ସଂସ୍କାର ଅନୁସାରେ ୧୯୨୦ ନଭେମ୍ବର ମାସରେ ସମଗ୍ର ଭାରତରେ ପ୍ରାଦେଶିକ କାଉନସିଲ ଓ ବଡ଼ଲାଟ ସଭାପାଇଁ ଭୋଟଗ୍ରହଣ ହେଲା; କିନ୍ତୁ ଏହାର କିଛିଦିନ ପୂର୍ବରୁ କଲିକତାରେ ଭାରତ ଜାତୀୟ ମହାସମିତି ଯେଉଁ ପ୍ରସ୍ତାବ ଧାର୍ଯ୍ୟକଲେ ସେଥିରେ କାଉନ୍‌ସିଲ୍ ବର୍ଜନ ଏକ ମୁଖ୍ୟ କାର୍ଯ୍ୟକ୍ରମ ଭାବରେ ସ୍ଥାନ ନେଲା । ତଦନୁସାରେ ଜାତୀୟବାଦୀମାନେ ଆସେମ୍ବ୍ଲି ପ୍ରୋଗ୍ରାମ୍ ପରିହାର କରିବାକୁ ସଂକଳ୍ପ କରିନେଲେ ।

କିନ୍ତୁ ଓଡ଼ିଶାରେ ମଧୁବାବୁ ଜାତୀୟ କଂଗ୍ରେସର ଏହି ଅସହଯୋଗ ନୀତି ଅମୂଳକ ବୋଲି ଦୃଢ଼ଭାବରେ ଅନୁଭବ କରିଥିଲେ । ତେଣୁ ସମଗ୍ର ଦେଶର ବାତାବରଣ ବିରୁଦ୍ଧରେ ତାଙ୍କ ପରି ଜଣେ ଉଗ୍ର ଜାତୀୟବାଦୀ ଓ ଦୃଢ଼ମନା ଲୋକ ଠିଆହେବା ବିଚିତ୍ର ନୁହେଁ । ବିଶେଷତଃ ଓଡ଼ିଶାପ୍ରଦେଶ ଗଠନ ଓ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ବ୍ୟାପାରରେ ତାଙ୍କର କଂଗ୍ରେସ ପ୍ରତି ଆସ୍ଥା ଚହଲି ଯାଇଥିଲା । ନିଜେ ମଧୁବାବୁ ଓଡ଼ିଶାର ମ୍ୟୁନିସିପାଲିଟିମାନଙ୍କ ତରଫରୁ ଲାଟସଭାକୁ ପ୍ରାର୍ଥୀ ଭାବରେ ଠିଆ ହେଲେ । ସେ ୨୧ । ୧୧ । ୧୯୨୦ ତାରିଖରେ ପୁରୀକୁ ଯାଇ ସିଂହଦ୍ୱାର ନିକଟବର୍ତ୍ତୀ ଏମାରମଠ ଚତ୍ୱରରେ ଭୋଟ ପ୍ରଚାର ଉଦ୍ଦେଶ୍ୟରେ ସଭା କରାଇଲେ ; କିନ୍ତୁ ଏ ସଭାରେ ତାଙ୍କପ୍ରତି ବିଶେଷ ଲୋକସମର୍ଥନ ମିଳିନଥିଲା ।

ଏହାର ପରଦିନ ସନ୍ଧ୍ୟାରେ ସିଂହଦ୍ୱାର ଆଗ ବଡ଼ ଦାଣ୍ଡରେ ଏକ ବିରାଟ ସଭା ହୋଇଥିଲା । ଏଥିରେ ବହୁ ସଂଖ୍ୟକ ଭୋଟଦାତା ସହର ଓ ମଫସଲର ପ୍ରାୟ ଅଢ଼େଇ ହଜାର ଲୋକ ଏକାଠି ହୋଇଥିଲେ । ପଣ୍ଡିତ ଗୋପବନ୍ଧୁ ସଭାର ଉଦ୍ଦେଶ୍ୟ ଓ ଭାରତ ଜାତୀୟ କଂଗ୍ରେସର ନିଷ୍ପତ୍ତି ଜଣାଇ ଭୋଟ ଦେବା ନଦେବା ବିଷୟରେ ବିସ୍ତୃତଭାବରେ ଉପସ୍ଥିତ ଲୋକମାନଙ୍କୁ ବୁଝାଇଦେଲେ । ପଞ୍ଜାବ ଅତ୍ୟାଚାର, ଖିଲାଫତ୍ ପ୍ରସଙ୍ଗ, ବିଶେଷତଃ ପୁରୀ ଦୁର୍ଭିକ୍ଷ ବିଷୟରେ ସରକାରଙ୍କ ନିଷ୍ଠୁରତା ସମ୍ପର୍କରେ ଅନେକ କଥା କହି ସେ ତାଙ୍କର କାଉନ୍‌ସିଲ୍‌କୁ ଠିଆ ନ ହେବାର କାରଣ ପ୍ରକାଶ କରିଥିଲେ । ଗୋପବନ୍ଧୁ ବାବୁଙ୍କ ବକ୍ତୃତା ଶୁଣି ଶେଷରେ ଉପସ୍ଥିତ ସମସ୍ତ ଲୋକେ ଭୋଟ ନଦେବା ଉଚିତ ବୋଲି ଅନୁଭବ କରିଥିଲେ । ସଭା ମଧ୍ୟରୁ ସେହି ମର୍ମରେ ଧ୍ୱନିମାନ ଶୁଣାଯାଉଥିଲା । ଏହି ସଭାରେ ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ମଧ୍ୟ ଅସହଯୋଗ ନୀତି ସମ୍ପର୍କରେ କେତେ କଥା କହିଥିଲେ ଓ ମଧୁବାବୁଙ୍କ ପ୍ରାର୍ଥୀତ୍ୱ ପ୍ରତି ସ୍ପଷ୍ଟ ଆକ୍ଷେପ କରିଥିଲେ ।

## ଅସହଯୋଗ ଦୀକ୍ଷା

ଏହାର କିଛିଦିନ ପରେ ଡିସେମ୍ବର ମାସରେ (୧୯୨୦ ମସିହା) ନାଗପୁରଠାରେ କଂଗ୍ରେସର ବାର୍ଷିକ ସମ୍ମିଳନୀ ବସିଲା । ଭାରତୀୟ କଂଗ୍ରେସ ଇତିହାସରେ ଏହା ସର୍ବପ୍ରଥମ ବୃହତ୍ତମ ସମ୍ମିଳନୀ ରୂପେ ସଂଗଠିତ ହୋଇଥିଲା । ଏହା ପୂର୍ବରୁ କଂଗ୍ରେସ କେବଳ ମଧ୍ୟବିତ୍ତ ବୁଦ୍ଧିଜୀବୀମାନଙ୍କର ଏକ ଅନୁଷ୍ଠାନ ଥିଲା; କିନ୍ତୁ କଲିକତାରେ ଅନୁଷ୍ଠିତ ବିଶେଷ ଅଧିବେଶନରେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ପ୍ରସ୍ତାବ ଜାତୀୟ କଂଗ୍ରେସ ପ୍ରତି ଜନସାଧାରଣଙ୍କ ଦୃଷ୍ଟି ବିଶେଷ ଭାବରେ ଆକୃଷ୍ଟ କରିଥିଲା ଓ କଂଗ୍ରେସ ଜନତାର ଅନୁଷ୍ଠାନ ଭାବରେ ସମଗ୍ର ଭାରତବାସୀଙ୍କ ପ୍ରତ୍ୟୟ ଲାଭ କଲା । ସେଥିରେ ମହାତ୍ମା ଗାନ୍ଧି 'ଅସହଯୋଗ' ଦୀକ୍ଷା ଧାର୍ଯ୍ୟ କରିଦେବେ ବୋଲି ଜଣାପଡ଼ିଲା । ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ, ପଣ୍ଡିତ ମୋତିଲାଲ, ଭି. ଜେ. ପଟେଲ ପ୍ରମୁଖ Prochanger ଦଳର ନେତାମାନେ ଏହି ଅସହଯୋଗ ଆନ୍ଦୋଳନର ପ୍ରତିରୋଧ କରିବା ପାଇଁ ସ୍ଥିର କରି ନାଗପୁରରେ ପହଞ୍ଚିଥିଲେ । ୧୯୧୯ ମସିହାର 'ମଣ୍ଟେଗ୍ୟୁ ଚେମସ୍‌ଫୋର୍ଡ଼ ଶାସନ ସଂସ୍କାର' ନୀତି ଅନୁଯାୟୀ ବିଭିନ୍ନ ଆଞ୍ଚଳିକ ଓ କେନ୍ଦ୍ରୀୟ ଶାସନ ସଂସ୍ଥାରେ କ୍ରମେ ଅଧିକରୁ ଅଧିକ ଭାରତୀୟ ପଶି ପ୍ରତ୍ୟକ୍ଷ ଶାସନରେ ଭାଗ ନେଇ ବ୍ରିଟିଶ ଶକ୍ତିକୁ ଦୁର୍ବଳ ତଥା ଏ ଦେଶରୁ ଉଚ୍ଛେଦ କରିବା ମତ ଏମାନେ ପୋଷଣ କରୁଥିଲେ; କିନ୍ତୁ ସମ୍ପୂର୍ଣ୍ଣ ଅସହଯୋଗ ଓ ବିଦେଶୀ ଜିନିଷ ବର୍ଜନ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନର ମୂଳ କଥା ଥିଲା । ଫଳରେ ଭାରତୀୟ ରାଜନୀତି ଓ କଂଗ୍ରେସ ସଂସ୍ଥା ଦୁଇଟି ମତବାଦରେ ବିଭକ୍ତ ହୋଇପଡ଼ିଥିଲା; କିନ୍ତୁ

ନାଗପୁରଠାରେ ଚିତ୍ତରଞ୍ଜନ ଦାସ ପ୍ରମୁଖ ଗାନ୍ଧିଙ୍କ ସହିତ କଥାବାର୍ତ୍ତା କଲା ପରେ ନିଜର ମତ ବଦଳାଇ ଅସହଯୋଗ ଗ୍ରହଣ କରିନେଇଥିଲେ । 'ଅସହଯୋଗ'ର ବର୍ଷକ ଭିତରେ ଦେଶ ସ୍ୱାଧୀନ ହୋଇଯିବ ବୋଲି ମହାତ୍ମା ଗାନ୍ଧି ଘୋଷଣା କଲେ । ଦେଶସାରା ଜାତୀୟ ମୁକ୍ତିର ବିପୁଳ ଉତ୍ସାହ ଖେଳିଗଲା । ଛାତ୍ର, ଶିକ୍ଷକ, ବୁଦ୍ଧିଜୀବୀ, ସରକାରୀ ଚାକିରିଆ ଆଦି ଆବାଳ-ବୃଦ୍ଧ-ବନିତା ଅସହଯୋଗର ମହାଯଜ୍ଞରେ ଝାସ ଦେଲେ । ଗୋପବନ୍ଧୁ ନିଜ ମତ ସ୍ଥିର କରି ନେଇଥିଲେ । ଏପରିକି ୧୯୨୦ ମସିହା ଅକ୍ଟୋବର ବେଳକୁ ଶେଷ ଥର ପାଇଁ ବିହାର-ଓଡ଼ିଶା କାଉନ୍‌ସିଲରେ ଯୋଗ ଓ ଇସ୍ତଫା ଦେଇ ଫେରି ସେ ଓଡ଼ିଶାରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଦେଇଥିଲେ । ୧୯୨୦ ମସିହା ଡିସେମ୍ବରରେ ନାଗପୁର କଂଗ୍ରେସରୁ ଫେରି ଚକ୍ରଧରପୁରରେ 'ଉତ୍କଳ ସମ୍ମିଳନୀ'ର ଯେଉଁ ସଭା ଡକା ଯାଇଥିଲା ସେଥିରେ ଗୋପବନ୍ଧୁ 'ଉତ୍କଳ ସମ୍ମିଳନୀ'ର ଉଦ୍ଦେଶ୍ୟ ବଦଳାଇ ଓଡ଼ିଆଙ୍କୀ ଦେଶମିଶ୍ରଣ ପରିବର୍ତ୍ତେ ଭାରତର ସ୍ୱାଧୀନତା ପ୍ରାପ୍ତିକୁ ପ୍ରଥମ ଆଭିମୁଖ୍ୟ ଭାବରେ ସ୍ୱୀକୃତ କରାଇନେଲେ । ଏହା ଫଳରେ 'ଉତ୍କଳ ସମ୍ମିଳନୀ'ର ପ୍ରାଣ ପ୍ରତିଷ୍ଠାତା ମଧୁବାବୁଙ୍କ ନେତୃତ୍ୱ ଟଳିପଡ଼ିଲା ଓ ସ୍ୱରାଜ୍ୟକାମୀ ଯୁବକ ଦଳର ନେତୃତ୍ୱ ପ୍ରତିଷ୍ଠିତ ହେଲା ।

## ଚକ୍ରଧରପୁର ଉତ୍କଳ ସମ୍ମିଳନୀ

ଆଗରୁ କୁହାଯାଇଛି ୧୯୨୦ ମସିହା ଡିସେମ୍ବର ମାସରେ ନାଗପୁରରେ କଂଗ୍ରେସ ସମ୍ମିଳନୀ ବସିଥିଲା । ଓଡ଼ିଶାରୁ ଏଥିରେ ଗୋପବନ୍ଧୁ ପ୍ରତିନିଧି ଭାବରେ ଯୋଗ ଦେଇଥିଲେ । ଭାଷାସୂତ୍ରରେ ଭାରତର ପ୍ରଦେଶଗୁଡ଼ିକ ଗଠନ ନେଇ ଏକ ପ୍ରସ୍ତାବ ଏହି ସମ୍ମିଳନୀରେ ଗୃହୀତ ହୋଇଥିଲା । ନିଜେ ଗୋପବନ୍ଧୁ ଏହି ପ୍ରସ୍ତାବ ଗୃହୀତ ହେବା ନିମନ୍ତେ ମହାତ୍ମା ଗାନ୍ଧିଙ୍କୁ ଏହି ସମ୍ମିଳନୀରେ ଖୁବ୍ ପ୍ରଭାବିତ କରିଥିଲେ । ଅବଶ୍ୟ ଏକ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ଏହି ଭାଷାସୂତ୍ରରେ ହୋଇପାରିବ ଓ ଜାତୀୟ କଂଗ୍ରେସର ସମର୍ଥନ ଲାଭ କରିପାରିବ ବୋଲି ତାଙ୍କ ମନରେ ଧାରଣା ବଦ୍ଧମୂଳ ହୋଇଥିଲା । ଏହି ପ୍ରସ୍ତାବ ଗୃହୀତ ହେବା ପରେ ପରେ ଡିସେମ୍ବର ୩୦ ତାରିଖ ୧୯୨୦ ମସିହାରେ ଚକ୍ରଧରପୁରରେ ଉତ୍କଳ ସମ୍ମିଳନୀ ଆହ୍ୱାନ କରାଗଲା । ଶ୍ରୀ ଜଗବନ୍ଧୁ ସିଂହ ଏହି ସମ୍ମିଳନୀରେ ସଭାପତିତ୍ୱ କରିଥିଲେ । ଅଭ୍ୟର୍ଥନା ସମିତିର ସଭାପତି ଥିଲେ ଠାକୁର ଉଦିତ ନାରାୟଣ ସିଂହଦେଓ । ଗୋପବନ୍ଧୁଙ୍କ ଏକ ଅନୁରୂପ ପ୍ରସ୍ତାବ ଶ୍ରୀ ଚନ୍ଦ୍ରଶେଖର ବେହେରାଙ୍କ ସମର୍ଥନ କ୍ରମେ ଏହି ସମ୍ମିଳନୀରେ ଆଗତ କଲେ—

"ଏତଦ୍ୱାରା ପ୍ରସ୍ତାବ କରାଯାଉଅଛି କି ଉତ୍କଳ ସମ୍ମିଳନୀର ଗୃହୀତ ନୀତି, ଆଦର୍ଶ ଓ ଆଭିମୁଖ୍ୟ ସହିତ ଏଣିକି ଭାରତୀୟ କଂଗ୍ରେସର ଲକ୍ଷ୍ୟ ଓ ନୀତି ଯୋଗ କରାଯିବ ।"

ଆଉ ଏକ ପ୍ରସ୍ତାବ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ପ୍ରସ୍ତାବ ଓ ନୀଳକଣ୍ଠ ଦାସଙ୍କ ଅନୁମୋଦନ କ୍ରମେ ମଧ୍ୟ ଉକ୍ତ ସମ୍ମିଳନୀରେ ଆଗତ କରାଗଲା—

"ଏହି ସମ୍ମିଳନୀ ଜାତୀୟ କଂଗ୍ରେସ ସମ୍ମିଳନୀରେ ଗୃହୀତ ଭାଷାସୂତ୍ରରେ ପ୍ରଦେଶ ଗଠନ ପ୍ରସ୍ତାବକୁ ସର୍ବାନ୍ତଃକରଣରେ ଗ୍ରହଣ କରୁଅଛି ।"

ଏବଂ ଅନ୍ୟ ଗୋଟିଏ ପ୍ରସ୍ତାବରେ କୁହାଯାଇଥିଲା ଯେ, ଯଦି ଓଡ଼ିଶାର ଓ ଓଡ଼ିଆ ଭାଷା ଭାଷୀମାନଙ୍କର ଦୀର୍ଘଦିନର ଏକମାତ୍ର ଅଭିଳଷିତ ପ୍ରଦେଶ ଗଠନ ଲକ୍ଷ୍ୟ ହାସଲରେ ଏଣିକି କାଳକ୍ଷେପ ହୁଏ ତେବେ ଓଡ଼ିଆ ଭାଷାଭାଷୀଙ୍କ ମଧ୍ୟରେ ଘୋର ଉତ୍ତେଜନା ଓ ଅସନ୍ତୋଷ ପ୍ରକାଶ ପାଇବ ।

ଏହି ପ୍ରସ୍ତାବଗୁଡ଼ିକ ସହିତ ଉତ୍କଳ ସମ୍ମିଳନୀରେ ଅତୀତରେ ଗୃହୀତ ହୋଇଥିବା ସମସ୍ତ ପ୍ରସ୍ତାବ ଅକାମୀ ହୋଇପଡ଼ିଲା, ଏପରିକି ଏହା ପରେ ପରେ ମଧୁବାବୁଙ୍କ ହାତରୁ ଉତ୍କଳ ପ୍ରଦେଶ ଗଠନ ନେତୃତ୍ୱ ଗୋପବନ୍ଧୁଙ୍କ ହାତକୁ ଚାଲି ଆସିଥିବା ଲକ୍ଷ୍ୟ କରାଗଲା । ଅଧିକନ୍ତୁ ଗୋପବନ୍ଧୁ ପରେ ପରେ ତାଙ୍କ ସାଧନାପୀଠ ସତ୍ୟବାଦୀ ବନବିଦ୍ୟାଳୟର ଆଭିମୁଖ୍ୟକୁ ଏହି ଜାତୀୟତାର ମହାସ୍ରୋତରେ ମିଶାଇଦେଲେ ।

## ସତ୍ୟବାଦୀ ଜାତୀୟ ସ୍କୁଲ : ଜାନୁୟାରୀ–୧୯୨୧

ଅସହଯୋଗର ଅନୁପ୍ରେରଣା ଗୋପବନ୍ଧୁଙ୍କୁ ମନ୍ତ୍ରମୁଗ୍ଧ କରିଥିଲା । ଏପରିକି ଆଉ ମୁହୂର୍ତ୍ତିକ ପାଇଁ ସେ ସରକାରଙ୍କ କୌଣସି ପରିକଳ୍ପନା ବା ଯୋଜନାରେ ଭାଗୀଦାର ହେବାକୁ ପ୍ରସ୍ତୁତ ନଥିଲେ । ବହୁ ଚିନ୍ତା ଓ ଭାବନା ପରେ ସତ୍ୟବାଦୀ ସ୍କୁଲର ଛାତ୍ର, ଅଭିଭାବକ ଓ ଶିକ୍ଷକମାନଙ୍କୁ ଡାକି ସେ ଏହି ସ୍କୁଲକୁ ଏକ ଜାତୀୟ ବିଦ୍ୟାଳୟ ରୂପେ ଘୋଷଣା କଲେ । ଅବଶ୍ୟ ଏଥିରେ ବହୁ ସ୍ଥାନୀୟ ଲୋକ ପ୍ରଥମେ ଆପତ୍ତି କରିଥିଲେ । କେହି କେହି ଏ ସ୍କୁଲକୁ ଯଥାରୀତି ରଖି ଆଉ ଗୋଟିଏ ଜାତୀୟ ବିଦ୍ୟାଳୟ ଗଠନ ପାଇଁ ମତ ଦେଇଥିଲେ; କିନ୍ତୁ ଗୋପବନ୍ଧୁ ବାବୁ ତାଙ୍କ ସିଦ୍ଧାନ୍ତରେ ଅଟଳ ରହିଲେ । ସେ ଯୁକ୍ତି କଲେ—"ମୁଁ ଯଦି ମୋ ସ୍କୁଲ ନଛାଡ଼େ ତେବେ ସ୍କୁଲ କଲେଜ ଛାଡ଼ିବାକୁ ମୁଁ ଅନ୍ୟମାନଙ୍କୁ କିପରି କହିବି ?" ଛାତ୍ର ଓ ଶିକ୍ଷକମାନଙ୍କ ସମ୍ମିଳିତ ସଭାରେ ଅତି ଭାବପ୍ରବଣ ଭାବରେ ସେ ଦୃଢ଼ତାର ସହିତ କହିଲେ—"ପ୍ରଚଳିତ ଶିକ୍ଷାରୀତି ଆମମାନଙ୍କୁ ଇଂରେଜୀ ଶାସନ ପ୍ରତି ଅଧିକ ଆକୃଷ୍ଟ କରୁଛି । ବିଶ୍ୱବିଦ୍ୟାଳୟ ସହିତ ଏ ସ୍କୁଲ ସଶ୍ଳିଷ୍ଟ ରହିବା ଅର୍ଥ ସେମାନଙ୍କ ନୀତି-ନିୟମ-ନିର୍ଦ୍ଦେଶ ଅନୁସାରେ ପରିଚାଳିତ ହେବା । ଏଥିରେ ଏ ସ୍କୁଲର ଛାତ୍ରମାନଙ୍କ ମଧ୍ୟରେ ସ୍ୱାଧୀନତା ସଂଗ୍ରାମର ପ୍ରୟାସ ବିସ୍ତାରିତ ହୋଇପାରିବନି । ଏଠାରେ ସରକାରଙ୍କ ପ୍ରଚଳିତ ପାଶ୍ଚାତ୍ୟ ଶିକ୍ଷାନୀତି ଅନୁଯାୟୀ କେତେଜଣ ଛାତ୍ରଙ୍କୁ ବାର୍ଷିକ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇବା ପ୍ରଧାନ

ଲକ୍ଷ୍ୟ ନଥିଲା, ବରଂ ଏ ଦେଶପାଇଁ ଉପଯୁକ୍ତ ମଣିଷ ତାଲିମ କରିବା ଓ ଜନତାର ସେବାରେ ଆତ୍ମୋତ୍ସର୍ଗ କରିବାର ସାଧନା ଓ ପ୍ରୟାସ ସୃଷ୍ଟି କରିବା ପାଇଁ ଏ ସ୍କୁଲ ଅନୁପ୍ରେରଣା ଦେଉଥିଲା । ଏହି ଲକ୍ଷ୍ୟ ଏ ପର୍ଯ୍ୟନ୍ତ ଅବଧାରିତ ହୋଇ ଆସିଅଛି । ବର୍ତ୍ତମାନ ଜାତିପ୍ରାଣରେ ସ୍ୱାଧୀନତାର ଯେଉଁ ଉନ୍ମାଦନା ଆସିଛି ସେଥିରୁ ଏ ବିଦ୍ୟାଳୟର ଛାତ୍ରମାନେ ଦୂରେଇ ରହିଲେ ଏହି ବିଦ୍ୟାଳୟର ମୂଳ ଲକ୍ଷ୍ୟ ସାଧିତ ହୋଇପାରିବ ନାହିଁ । ପୁନଶ୍ଚ, ଏ ବିଦ୍ୟାଳୟ ସହିତ ମୋ ପରି ଜଣେ ଅସହଯୋଗୀର ଯୋଗାଯୋଗ କର୍ତ୍ତୃପକ୍ଷଙ୍କ ଦୃଷ୍ଟିରେ ନନ୍ଦିତ ହେବାର ନୁହେଁ । ସେଥିପାଇଁ ସ୍କୁଲ ସ୍ୱାର୍ଥରେ ବାଧା ଉପୁଜିବା ସ୍ୱାଭାବିକ । ମୁଁ ବୁଝୁଛି ଏହି ସିଦ୍ଧାନ୍ତ ଏଣିକି ସ୍କୁଲ ପାଇଁ ଏକ ବିଷମ ପରୀକ୍ଷା ଆଣି ଥୋଇବ । ବହୁ ଦୁର୍ଗତି ଓ ଦୁରବସ୍ଥା ଉପୁଜିବ । ଆମର ସାଧନା ଓ ନିଷ୍ଠାରେ ଏ ଯେଉଁ ମହାନ୍ ଅନୁଷ୍ଠାନ ଗଢ଼ି ଉଠିଥିଲା ତା' ହୁଏତ କ୍ରମେ ଭୁଷୁଡ଼ି ପଡ଼ିବ ; କିନ୍ତୁ ଜଣେ ସତ୍ୟାଗ୍ରହୀ ଭାବରେ ମୁଁ ଏ ବାଟ ଏକ ମହାନ୍ ଜାତିର ଦାବୀ ଭାବରେ ବାଛି ନେଉଛି । ମୁଁ ଏ ବିଷୟରେ ବହୁତ ଚିନ୍ତା କରିଛି ; କିନ୍ତୁ ସାଲିସ୍ କରିପାରିନାହିଁ । ଆପଣମାନେ ସମସ୍ତେ ଶିକ୍ଷିତ ଓ ଉପଯୁକ୍ତ ହୋଇ ପାରିଛନ୍ତି । ଏଣିକି ଆପଣମାନେ ନିଜନିଜର ରାହା ବାଛିନିଅନ୍ତୁ ।"

ଏହି ସିଦ୍ଧାନ୍ତର କିଛିଦିନ ପୂର୍ବରୁ ସରକାର ସତ୍ୟବାଦୀ ବିଦ୍ୟାଳୟ ପାଇଁ ୨୦,୦୦୦ ଟଙ୍କା ମଞ୍ଜୁର କରି ଚିଠି ଦେଇଥିଲେ । ଏ ଟଙ୍କା ପୁରୀ ଟ୍ରେଜେରୀରେ ଜମା ଥିଲା । ଅନେକ ଲୋକ ଏ ଟଙ୍କା ଉଠାଇ ଆଣିବା ପାଇଁ ଗୋପବନ୍ଧୁଙ୍କୁ ଅନୁରୋଧ କରିଥିଲେ ; କିନ୍ତୁ ଗୋପବନ୍ଧୁ କହିଲେ, "ଏ ଟଙ୍କା ଗ୍ରହଣ କରିବା ଅର୍ଥ ସରକାରଙ୍କ ନୀତିକୁ ସମର୍ଥନ କରିବା । ଏଥିରେ ଆମର ନୈତିକ ବଳ ଭାଙ୍ଗିପଡ଼ିବ । ଲୋକ ଓ ସରକାରଙ୍କ ଆଖିରେ ଆମେ ଅସାଧୁ ବୋଲି ପ୍ରମାଣିତ ହେବା ।"

ଏ ଟଙ୍କା ଫେରିଗଲା ଓ ସତ୍ୟବାଦୀ ସ୍କୁଲ କୋଠା ତିଆରି ହେବା ଏତିକିରେ ରହିଲା । ଗୋପବନ୍ଧୁବାବୁ ଆହୁରି ପାଦେ ଆଗେଇଯାଇ ସତ୍ୟବାଦୀ ସ୍କୁଲ ମଞ୍ଜୁରୀ (Recognition) ପ୍ରତ୍ୟାହାର କରିନେବା ପାଇଁ ଶିକ୍ଷା ବିଭାଗ ନିର୍ଦ୍ଦେଶକଙ୍କୁ ତାର କରିଦେଲେ । କୌଣସି ପ୍ରଲୋଭନ ଓ ପ୍ରଭାବ ତାଙ୍କ ସିଦ୍ଧାନ୍ତକୁ ବଦଳେଇ ପାରିଲାନାହିଁ ।

## ବିଚ୍ଛିନ୍ନାଞ୍ଚଳରେ କଂଗ୍ରେସ କାର୍ଯ୍ୟ

ଗୋପବନ୍ଧୁଙ୍କ ପ୍ରେରଣାରେ ଗୋଦାବରୀଶ ସତ୍ୟବାଦୀ ଗ୍ରୁପ୍ ଚନ୍ଦ୍ରଧରପୁରରେ ଓଡ଼ିଆ ଭାଷାର ପ୍ରଚାର ଓ ପ୍ରସାରଣ ନିମନ୍ତେ ଏକ ସ୍କୁଲ ଚଳାଉଥାନ୍ତି । ବହୁ ସଂଖ୍ୟାରେ ବିଦ୍ୟାଳୟ ପ୍ରତିଷ୍ଠା କରି ଓଡ଼ିଆ ଭାଷାକୁ ପରିବ୍ୟାପ୍ତ କରିବା ଗୋପବନ୍ଧୁଙ୍କ ଉଦ୍ଦେଶ୍ୟ ଥାଏ । ଏଥିପାଇଁ ଚନ୍ଦ୍ରଧରପୁରର ଶ୍ରୀ ଦୀନନାଥ ପାଣ୍ଡେ ବହୁ ପରିମାଣରେ ଅର୍ଥ ସାହାଯ୍ୟ

ଦେଉଥାନ୍ତି । କର୍ମୀ ହିସାବରେ ଯୁଟିଥାନ୍ତି ଶ୍ରୀ ଗତିକୃଷ୍ଣ ଷଡ଼ଙ୍ଗୀ । ସେ ଶିକ୍ଷା ବିଭାଗ ଇନ୍‌ସପେକ୍‌ଟର ଥିଲେ ମଧ୍ୟ ଗୋପବନ୍ଧୁଙ୍କ ପ୍ରେରଣାରେ ଚାକିରି ଛାଡ଼ି ପରେ ଗୋଦାବରୀଶ ବାବୁଙ୍କ ସହିତ ସହକର୍ମୀ ଭାବରେ ଚକ୍ରଧରପୁର ସ୍କୁଲରେ ଯୋଗଦେଲେ । ଦୀନନାଥ ପାଣ୍ଡେଙ୍କ ଅର୍ଥଦାନରେ ସ୍କୁଲ ପାଇଁ ଘର ତିଆରି ହୋଇଥିଲା । ଗତିକୃଷ୍ଣ ଥିଲେ ନିରହଙ୍କାର ନିରଳସ କର୍ମୀ । ପରିଧାନ ଖଦଡ଼ । ଖଣ୍ଡିଏ ସଫା ଖଦଡ଼ ଲୁଗା ପିନ୍ଧି ଓ ଗୋଟିଏ ଗାମୁଛା କାନ୍ଧରେ ପକାଇ ସେ ସଭା ସମିତିକୁ ଯାଉଥିଲେ । ଅହଂକାର ବା ଅଭିମାନ ବୋଲି ଜିନିଷ ତାଙ୍କଠାରେ ସ୍ୱପ୍ନ ଥିଲା ।

୧୯୧୯ ବେଳକୁ ଗୋପବନ୍ଧୁଙ୍କ ପ୍ରେରଣାରେ ପ୍ରଚାରକ ଅନନ୍ତ ମିଶ୍ର ସିଂହଭୂମ ଜିଲ୍ଲାକୁ ଆସି ଓଡ଼ିଆ ଭାଷା ପ୍ରଚାରରେ ଆତ୍ମନିୟୋଗ କଲେ । ଓଡ଼ିଶା ସାରା ବୁଲି ବୁଲି ଏହି ବିଚ୍ଛିନ୍ନାଞ୍ଚଳରେ ସ୍କୁଲ ପ୍ରତିଷ୍ଠା ପାଇଁ ସେ ଚାନ୍ଦା ସଂଗ୍ରହ କରୁଥିଲେ । ମାତ୍ର ପଇସାଟିଏ ଚାନ୍ଦା ଧାର୍ଯ୍ୟ କରାଯାଇଥିଲା । ସେ ପ୍ରାୟ ଏହି ପଇସାଏ କରି ବାରହଜାର ଟଙ୍କା ଆଦାୟ କରି ପାରିଥିଲେ ।

୧୯୧୧ ମସିହା ଜନଗଣନା ଅନୁଯାୟୀ ସିଂହଭୂମରେ ଓଡ଼ିଆଙ୍କ ସଂଖ୍ୟା ଥିଲା ମାତ୍ର ୧୨୪,୫୯୩; କିନ୍ତୁ ୧୯୨୧ ଜନଗଣନାବେଳେ ଏହି ସଂଖ୍ୟା ବଢ଼ି ୧୪୦,୮୨୧ ହୋଇଥିଲା । ଏମାନଙ୍କ ପାଇଁ ଗୋପବନ୍ଧୁଙ୍କ ଉଦ୍ୟମରେ ସମଗ୍ର ଜିଲ୍ଲାରେ ବହୁ ପ୍ରାଥମିକ ସ୍କୁଲ ବସିଲା । ମୋଟଉପରେ ଓଡ଼ିଆମାନଙ୍କର ଏହି ଜାଗୃତି ଦେଖି କେତେକ ବିହାରୀ ଲୋକ ବଡ଼ ବିଚଳିତ ହୋଇପଡ଼ିଥିଲେ । ବିହାରର ରାଜଧାନୀ ପାଟଣାକୁ ଦୌଡ଼ି ବିହାର ପ୍ରଦେଶ କଂଗ୍ରେସ ନେତାମାନଙ୍କ ସହିତ ସମ୍ପର୍କ ପ୍ରତିଷ୍ଠା କରୁଥିଲେ । ୧୯୨୦ ମସିହା ଡିସେମ୍ବର ମାସରେ ଚକ୍ରଧରପୁରରେ "ଉତ୍କଳ ସମ୍ମିଳନୀ" ବସିବା ଫଳରେ ଓଡ଼ିଆ ଭାଷା ଆନ୍ଦୋଳନ ଆହୁରି ଅଗ୍ରଗତି ଲାଭ କରିଥିଲା । ଏହି ସମ୍ମିଳନୀ ପାଇଁ ବଙ୍ଗାଳୀ ଓ ବିହାରୀମାନେ ସହଯୋଗ କରିନଥିଲେ ।

ଏହାପରେ ଆସିଲା ଅସହଯୋଗର ଜୁଆର । ଗୋପବନ୍ଧୁ ଦିନେ ୧୯୨୧ ମସିହା ଆଦ୍ୟଭାଗରେ ଚକ୍ରଧରପୁରରେ ପହଞ୍ଚିଲେ । ଅସହଯୋଗ ଆନ୍ଦୋଳନ ପାଇଁ ସ୍କୁଲ ଭାଙ୍ଗିଦେଇ ଗୋଦାବରୀଶଙ୍କୁ ନେଇ ଆସିବା ତାଙ୍କର ଉଦ୍ଦେଶ୍ୟ ଥିଲା; କିନ୍ତୁ ଗୋଦାବରୀଶ ସେତେବେଳେ ଗୋପବନ୍ଧୁଙ୍କ ପରି ଅସହଯୋଗ ଦୀକ୍ଷାରେ ଅନୁବ୍ରତୀ ହୋଇନଥିଲେ । ସେ ସହଜ ଭାବରେ କହିଲେ, "ଆପଣ ଓଡ଼ିଶାରେ ଅସହଯୋଗ ପ୍ରବର୍ତ୍ତନ କରନ୍ତୁ; ମାତ୍ର ସ୍କୁଲ ଦୁଇଟାକୁ ଛାଡ଼ି ଦିଅନ୍ତୁ ।" ଅସହଯୋଗ ପନ୍ଥା ଧରିଲେ ସିଂହଭୂମରେ ଓଡ଼ିଆ ଆନ୍ଦୋଳନ ବାଧାପ୍ରାପ୍ତ ହେବ ବୋଲି ଗୋଦାବରୀଶ ଯୁକ୍ତି କଲେ ।

କିନ୍ତୁ ଗୋପବନ୍ଧୁ ଅସହଯୋଗରେ ନିଜ ଆତ୍ମା ମିଶାଇ ଦେଇଥିଲେ । ମହାଭାରତୀୟ ଜାତିର ଡାକରା ଆଗରେ ଉତ୍କଳ ଓ ବିଚ୍ଛିନ୍ନାଞ୍ଚଳର ସ୍ୱାର୍ଥ ତାଙ୍କ ଚିନ୍ତାରେ କ୍ରମେ ନିଷ୍ପ୍ରଭ ହୋଇପଡ଼ୁଥିଲା । ଗୋପବନ୍ଧୁ ଗୋଦାବରୀଶଙ୍କୁ କହିଲେ—"ତୁମେ ଏ ସ୍କୁଲ, ଏଠାରେ

ଓଡ଼ିଆ ଆନ୍ଦୋଳନ ଧରି ହାକିମ ହୁକୁମାମାନଙ୍କ ସହଯୋଗରେ ଚଲ । ଏ କାମରେ ବାଧା ଦେବା ଠିକ ନୁହେଁ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ପରିଣତ ହେଉ ଓ ସେଠାରେ ଶିକ୍ଷକମାନେ କଂଗ୍ରେସ କାମରେ ଯୋଗଦିଅନ୍ତୁ ।"

କିନ୍ତୁ ଗୋଠଝଣ୍ଟିଆ ହୋଇ ଅଲଗା ରହିବାକୁ ଗୋଦାବରୀଶ ଉଚିତ ମଣିଲେ ନାହିଁ । ସ୍ଥିର ହେଲା ସତ୍ୟବାଦୀ ପରି ଚକ୍ରଧରପୁର ସ୍କୁଲ ମଧ୍ୟ ଜାତୀୟ ବିଦ୍ୟାଳୟରେ ପରିଣତ ହେବ । ତାହାହିଁ ହେଲା । ଗୋଦାବରୀଶ ପରେ ପରେ ପାଟଣା ବିଶ୍ୱବିଦ୍ୟାଳୟ ସଦସ୍ୟ ପଦରୁ ଇସ୍ତଫା ଦେଲେ । ଚକ୍ରଧରପୁରରେ କଂଗ୍ରେସ ଓ ଅସହଯୋଗ ଆନ୍ଦୋଳନ କାମର ଭାର ଗୋଦାବରୀଶଙ୍କ ଉପରେ ନ୍ୟସ୍ତ ରହିଲା ।

ସାରା ସିଂହଭୂମ ଜିଲ୍ଲାରେ କଂଗ୍ରେସ ଆନ୍ଦୋଳନ ଆଗେଇ ଚାଲିଲା । ଗୋପବନ୍ଧୁ ବାବୁ ମଝିରେ ମଝିରେ ଆସି ପହଞ୍ଚିଲେ । ତାଙ୍କୁ ଦେଖିବାକୁ ଓ ଶୁଣିବାକୁ ହଜାର ହଜାର ଲୋକ ସଭାରେ ଯୋଗ ଦିଅନ୍ତି । ସବୁଠାରେ ସେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ବାଣୀ, ଜାତୀୟ କଂଗ୍ରେସର ଲକ୍ଷ୍ୟ ଲୋକଙ୍କୁ ବୁଝାଇ ଉନ୍ମସ୍ତ କରିଦିଅନ୍ତି ।

ଏହିସବୁ ପ୍ରଚେଷ୍ଟାରେ ସମଗ୍ର ସିଂହଭୂମ ଜିଲ୍ଲାରେ ଓଡ଼ିଆ ଭାଷାର ବେଶ ପ୍ରଭାବ ପରିଲକ୍ଷିତ ହେଲା । ଦୀର୍ଘଦିନ ଧରି ଅବଦମିତ ରହିଥିବା ଓଡ଼ିଆମାନେ ଆଶ୍ୱାସନା ପାଇଲେ । ଦଳ ସମିତି ପାଇଁ ଆଗ୍ରହରେ ଚାନ୍ଦା ଭେଦା ବି ଦେଲେ; କିନ୍ତୁ ବିହାରୀମାନେ ପ୍ରମାଦ ଗଣିଲେ । ଲୁଚି ଛପି ମୁଣ୍ଡ ଟେକୁଥିବା ଓଡ଼ିଆ ବିହାରୀ ବିବାଦ କ୍ରମେ ପ୍ରକଟିତ ହେବାକୁ ଲାଗିଲା ।

ସେତେବେଳକୁ ଭାଷାଭିତ୍ତିରେ ପ୍ରଦେଶ ଗଠନ କଂଗ୍ରେସର ଏକ ନିର୍ଦ୍ଧାରିତ ଲକ୍ଷ୍ୟ ଭାବରେ ଘୋଷିତ ହୋଇସାରିଲାଣି । ସିଂହଭୂମରେ ଥିବା ବିହାରୀମାନେ ବିହାର ସହିତ ସିଂହଭୂମକୁ ସାମିଲ କରି ରଖିବାକୁ ଜୋର୍ ଦେଲେ । ଓଡ଼ିଆମାନେ ଏହା ଗ୍ରହଣ କଲେ ନାହିଁ । ଫଳରେ ବିବାଦ ଦିନକୁ ଦିନ ବଡ଼ ଆକାର ଧାରଣ କଲା ।

ସେତେବେଳେ ରାଜେନ୍ଦ୍ର ପ୍ରସାଦ ବିହାରର କଂଗ୍ରେସ ନେତା । ଗୋଦାବରୀଶ ବାବୁ ଏ ଅନ୍ତରୀଣ ବିବାଦ କଥା ରାଜେନ୍ଦ୍ର ପ୍ରସାଦ ଓ ଗୋପବନ୍ଧୁଙ୍କୁ ଜଣାଇଲେ । ଶେଷକୁ ତଦନ୍ତ କମିଟି ବସି ବିବାଦ ନିଷ୍ପତ୍ତି ହେବା ସ୍ଥିର ହେଲା । ଏହି କମିଟିରେ ଓଡ଼ିଶାରୁ ଗୋପବନ୍ଧୁ ବାବୁ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀ ଏବଂ ବିହାରରୁ ଭାଗଲପୁରର ନେତା ଶ୍ରୀଯୁକ୍ତ ଦୀପ୍ ନାରାୟଣ ଓ ମୌଲବୀ ସାଫୀ ରହିଲେ । ଦୀପ୍ ନାରାୟଣ ଅତ୍ୟନ୍ତ ସ୍ପଷ୍ଟବାଦୀ ଓ ନିରପେକ୍ଷ ଥିଲେ; କିନ୍ତୁ ସାଫୀ ଥିଲେ ଓଲଟା ।

କମିଟି ସ୍ଥିର କଲା ଯେ, ସମଗ୍ର ସିଂହଭୂମ ଜିଲ୍ଲାରେ ଯେତେଜଣ କଂଗ୍ରେସ ମେମ୍ବର ହୋଇଥିବେ ସେମାନଙ୍କ ମଧ୍ୟରେ ଭୋଟ ନିଆଯାଇ ସିଂହଭୂମର ଭାଗ୍ୟ ନିଷ୍ପତ୍ତି ହେବ । ପ୍ରତ୍ୟେକ ଚାରିଅଣିଆ ସଭ୍ୟ ପାଖୁ ରିପ୍ଲାଇ କାର୍ଡ଼ରେ ମତାମତ ପାଇଁ ପଠାଗଲା । ଯାହା ମିଳିଲା, ସେଥିରୁ ଜଣାଗଲା ସିଂହଭୂମ ଜିଲ୍ଲା କଂଗ୍ରେସ କମିଟିକୁ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସହିତ ମିଶାଇବା ସପକ୍ଷରେ ୧୪ ଭାଗ ଓ ବିପକ୍ଷରେ ମାତ୍ର ଏକଭାଗ ଲୋକ ମତାମତ

ଜଣାଇଲେ । ପ୍ରାୟ ସାଢ଼େ-ତିନିବର୍ଷ ଲୋକ ଉଦାସୀନ ରହିଲେ ।

ଏହି ନିଷ୍ପତ୍ତି ଅନୁଯାୟୀ ସିଂହଭୂମ ଜିଲ୍ଲାର କଂଗ୍ରେସ କମିଟି ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ସହିତ ସଂଲଗ୍ନ ହେବା କଥା । ଏହାକୁ ଚୂଡ଼ାନ୍ତ କରିବା ପାଇଁ ସିଂହଭୂମରେ ଗୋଟିଏ କଂଗ୍ରେସ ସଭା ଅନୁଷ୍ଠିତ ହେଲା । ଏଥିରେ ନିମନ୍ତ୍ରଣ କ୍ରମେ ରାଜେନ୍ଦ୍ର ପ୍ରସାଦ ବିହାରରୁ ଓ ଗୋପବନ୍ଧୁ ବାବୁ ଓଡ଼ିଶାରୁ ଯୋଗଦେଇଥିଲେ । ଉଭୟଙ୍କ ପାଇଁ ସମଗ୍ର ଜିଲ୍ଲାର ଗସ୍ତକ୍ରମ ଠିକଣା କରାହେଲା । ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ସଭାମାନଙ୍କରେ ଯାହା ବୁଝାଇ କହିଲେ ସେଥିରୁ ଜଣାଗଲା ଯେ, ସେ ଯେପରି ବାଧ୍ୟବାଧକତାରେ ଏହି ନିଷ୍ପତ୍ତି ମାନି ନେଉଛନ୍ତି; ନଚେତ୍ ତାଙ୍କ ଅନ୍ତର ଏହାକୁ ସ୍ୱୀକୃତ ଦେଉନାହିଁ । ଏହା ଗୁଇଁବସାର ଜଣେ ବିହାରୀ ବେପାରୀ ଶ୍ରୀଯୁକ୍ତ ରାମ ଲଗନ୍ ରାମଙ୍କ ପାଖକୁ ଲିଖିତ ରାଜେନ୍ଦ୍ର ପ୍ରସାଦଙ୍କ ଚିଠିରୁ ସ୍ପଷ୍ଟ ଜଣାପଡ଼ିଲା । ସେଥିରେ ଲେଖାଥିଲା—"ସଭାରେ ମୁଁ ଯେଉଁ ମତ ବ୍ୟକ୍ତ କଲି ତାହା ନକରିବା ପାଇଁ ଆପଣମାନେ କ'ଣ ବାଟ ରଖିଥିଲେ ? ମୁଁ ଦେଖୁଛି ଯେ ଆପଣମାନେ ଓଡ଼ିଆମାନଙ୍କ ପରି କାମିକା ଲୋକ ନୁହଁନ୍ତି । ମୁଁ ଏଠାରୁ କାହାକୁ ପଠାଇ ପାରୁନାହିଁ । ମୁଁ ଯାହା ପ୍ରକାଶ୍ୟରେ କହିଲି ତାହା ଯେ ମୋର ଆନ୍ତରିକ ମତ ନୁହେଁ ଏକଥା ଆପଣମାନେ ଜାଣନ୍ତି । ବର୍ତ୍ତମାନ ଏକମାତ୍ର ଉପାୟ ହେଉଛି ଆପଣମାନଙ୍କର କାମରେ ଲାଗିବା । ଗୋଳମାଳ ଲଗାଇ ରଖନ୍ତୁ, ଦବାନ୍ତୁ ନାହିଁ । ତା'ହେଲେ ନିଶ୍ଚୟ ଫଳଲାଭ ହେବ ।"

ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦ ତତ୍‌କାଳୀନ କଂଗ୍ରେସ ସମ୍ପାଦକ ଶ୍ରୀଯୁକ୍ତ ମୋତିଲାଲଙ୍କୁ ପ୍ରଭାବିତ କଲେ । ଫଳରେ ୧୯୨୧ ମସିହାର ଅହମଦାବାଦ କଂଗ୍ରେସ ପାଇଁ ସିଂହଭୂମ ସଭ୍ୟମାନେ ବିହାର ପ୍ରାଦେଶିକ କଂଗ୍ରେସ କମିଟି ବାଟେ ପ୍ରତିନିଧିତ୍ୱ କରିବାକୁ ଶ୍ରୀ ମୋତିଲାଲ ଉପରୁ ନିର୍ଦ୍ଦେଶ ଦେଇଦେଲେ । ଏଥିରେ ସିଂହଭୂମର ଓଡ଼ିଆମାନେ ଅତିମାତ୍ରାରେ ରୁଷ୍ଟ ହେଲେ । କଥା ଗୋପବନ୍ଧୁଙ୍କ ଯାଏ ଗଲା । ବହୁ ଦଳାଦଳିରେ ଶେଷକୁ ବିହାର ବା ଓଡ଼ିଶା ଯେ ଯେଉଁ ବାଟେ ଇଚ୍ଛିବ ସେବାଟେ ଯିବାର ବ୍ୟବସ୍ଥା ରହିଲା । ଏପରି ସିଦ୍ଧାନ୍ତରେ ଓଡ଼ିଶାର ଦାବୀ ଓ ଏକ ଗଣତାନ୍ତ୍ରିକ ନିଷ୍ପତ୍ତି ଉପରେ ଆଘାତ ଆସିଲା । ୧୯୨୧ ମସିହା ଅହମଦାବାଦ କଂଗ୍ରେସରେ ରାଜେନ୍ଦ୍ର ପ୍ରସାଦଙ୍କ ଏ ଚିଠିକୁ କୌଶଳକ୍ରମେ ଶ୍ରୀ ରାମଲଗନ ରାମଙ୍କଠାରୁ ହସ୍ତଗତ କରି ସିଂହଭୂମ ସଭ୍ୟ ଶ୍ରୀ ଗତିକୃଷ୍ଣ ଷଡ଼ଙ୍ଗୀ ଓ ଶ୍ରୀ ଈଶ୍ୱର ଚରଣ ଷଡ଼ଙ୍ଗୀ ରାଜେନ୍ଦ୍ର ପ୍ରସାଦଙ୍କୁ ଦେଖାଇଥିଲେ ଏବଂ ପ୍ରକାଶ୍ୟରେ ତାଙ୍କୁ ଅପମାନ ବି ଦେଲେ । ଏହି ଅଧିବେଶନକୁ ସର୍ବମୋଟ ୯ ଜଣ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ବାଟେ ଓ ମାତ୍ର ୨ ଜଣ ବିହାର ବାଟେ ଆସିଥିଲେ । ତଥାପି ରାଜେନ୍ଦ୍ର ପ୍ରସାଦ ବିହାରର ଟାଣୁଆ ନେତା ଥିବାରୁ ଓଡ଼ିଶାର ଦାବୀ କଂଗ୍ରେସ ମଣ୍ଡପରେ ସବୁଦିନ ପାଇଁ ଅସ୍ତମିତ ହୋଇଗଲା । ଏପରିକି ଭାରତ ସ୍ୱାଧୀନତା ପାଇବା ପରେ ଯେଉଁ ସୀମା କମିସନ ବସିଲା ସେଠାରେ ଷଡ଼ଯନ୍ତ୍ର କଲା, ଟେରସୂଆଁ ସମେତ ବିଚ୍ଛିନ୍ନାଞ୍ଚଳଗୁଡ଼ିକୁ

ଓଡ଼ିଶା ସହିତ ମିଶାଇବାର ସକଳ ଉଦ୍ୟମ ବ୍ୟର୍ଥ ହୋଇଗଲା । ରାଜେନ୍ଦ୍ର ପ୍ରସାଦ କୌଣସିମତେ ବିହାରରୁ ଏସବୁ ଅଞ୍ଚଳକୁ ଛାଡ଼ିଦେବାକୁ ପ୍ରସ୍ତୁତ ନଥିଲେ, ତେଣୁ ସେ ରାଷ୍ଟ୍ରପତି ଥିବାବେଳେ ଓଡ଼ିଶାର ସକଳ ଆନ୍ଦୋଳନ ଓ ଓଡ଼ିଆ ଯୁବକର ଆତ୍ମଦାନ ଅରଣ୍ୟ ରୋଦନରେ ପର୍ଯ୍ୟବସିତ ହୋଇଯିବା ସାରହେଲା ।

## ଅସହଯୋଗର ଆହ୍ୱାନ

ଅସହଯୋଗ ଓ ସ୍ୱଦେଶୀ ବର୍ଜନର ବହୁପୂର୍ବରୁ ଗୋପବନ୍ଧୁ ପୁରୀରେ ଏହି ସ୍ୱଦେଶୀ ଜିନିଷକୁ ପରିହାର କରିବାକୁ କୁଳବୃଦ୍ଧ ମଧୁସୂଦନଙ୍କ ସହିତ ଏକ ଆନ୍ଦୋଳନର ସୂତ୍ରପାତ କରିଥିଲେ । ଏବେ ଅସହଯୋଗ ଅଗ୍ନିଶିଖାରେ ସେ ଲମ୍ଫ ଦେଲେ । ୧୯୨୧ ମସିହା ଜାନୁଆରୀ ଆରମ୍ଭରୁ ସତ୍ୟବାଦୀ ବନବିଦ୍ୟାଳୟ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଗଲା । ଫଳେ ଗୋପବନ୍ଧୁ ଜାନୁଆରୀ ୬ ତାରିଖରେ କଲିକତା ବିଶ୍ୱବିଦ୍ୟାଳୟରୁ ନୀଳକଣ୍ଠ ଓ ସମ୍ବଲପୁରର ଶ୍ରୀ ଭଗୀରଥି ମିଶ୍ରଙ୍କୁ ଓକିଲାତି ପଢ଼ାରୁ ଛଡ଼ାଇ ସମ୍ବଲପୁର ନେଇ ଆସିଲେ । ସେଠାରେ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ପ୍ରଚାର ଦାୟିତ୍ୱ ଏ ଦୁହିଁଙ୍କ ଉପରେ ରହିଲା । ସିଂହଭୂମରେ ପ୍ରଚାରକ ଅନନ୍ତ ମିଶ୍ର ଓ ଗୋଦାବରୀଶ ବାବୁ ଆଗରୁ ଯାଇ ଚକ୍ରଧରପୁରରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ସଂଗଠନ କାମରେ ନିଯୁକ୍ତ ଥିଲେ । ବର୍ତ୍ତମାନ ଅସହଯୋଗ ଆନ୍ଦୋଳନର ଦାୟିତ୍ୱ ସେଠାରେ ତାଙ୍କ ଉପରେ ପଡ଼ିଲା । ସ୍ଥିରହେଲା ସତ୍ୟବାଦୀ ପରି ଚକ୍ରଧରପୁର ସ୍କୁଲ ଜାତୀୟ ବିଦ୍ୟାଳୟରେ ପରିଣତ ହେବ ଓ ଗୋଦାବରୀଶବାବୁ ଅସହଯୋଗରେ ମିଶିବେ । ଗୋପବନ୍ଧୁ ଏହି 'ଅସହଯୋଗ' ଦୀକ୍ଷାରେ ଏତେ ଭାବରେ ତନ୍ମୟ ହୋଇପଡ଼ିଥିଲେ ଯେ, ତାଙ୍କ ପାଟିରୁ 'ମହାତ୍ମା ଗାନ୍ଧିଜି ଜୟ' ଧ୍ୱନି ଭଲ ଶୁଭୁନଥିଲେ ମଧ୍ୟ ଖଣ୍ଡିଖଣ୍ଡିଆ କରି କହୁଥିଲେ । ବାରମାସ ଭିତରେ ଦେଶ ସ୍ୱାଧୀନ ହୋଇଯିବ ବୋଲି ତାଙ୍କର ପ୍ରତିଷ୍ଠିତ ଧାରଣା ଜନ୍ମିଥିଲା । ଏପରିକି ଥରେ ଜଣେ ଯୁବକ ଏଥିରେ ସନ୍ଦେହ ପ୍ରକାଶ କରିବାରେ ଗୋପବନ୍ଧୁ ବାବୁ କହିଲେ—"ତୋର ଗାଲ ଚିପିଲେ ଦୁଧ ବାହାରିବ । ତୁ ସବୁ ବୁଝିଗଲୁ, ଆଉ ଗାନ୍ଧି ନବୁଝି ନଶୁଝି ବାହାରିଛି ? ଆରେ ସେ ସାକ୍ଷାତ ଅବତାର । ଆଫଗାନିସ୍ଥାନ କି ତୁର୍କୀ, କି ରୁଷିଆ କାହାର ସଙ୍ଗେ କିଛି ବ୍ୟବସ୍ଥା ନକରି କ'ଣ ଏତେ ବଡ଼ କାମରେ ହାତ ଦେଇଛି ?" (ଗୋଦାବରୀଶ ଗ୍ରନ୍ଥାବଳୀ, ପୃ-୧୧୦ )

ଆଗରୁ କୁହାଯାଇଛି, ନୀଳକଣ୍ଠ କଲିକତାରେ ଅଧ୍ୟାପନା କାର୍ଯ୍ୟରେ ଥିବାବେଳେ ଗୋପବନ୍ଧୁ ବାବୁ ଶେଷଥର ପାଇଁ ବିହାର-ଓଡ଼ିଶା କାଉନ୍‌ସିଲ୍‌ରେ ଯୋଗ ଦେବାପାଇଁ ପାଟଣା ଯିବା ବାଟରେ ତାଙ୍କୁ ଭେଟି ନିଜ ମତ ବ୍ୟକ୍ତ କରିଥିଲେ । ନୀଳକଣ୍ଠ ବାବୁ

କହିଲେ—"ଜୀବନରେ ସମସ୍ତେ ଏକା ନାଆରେ ବସିଥାଉଁ—ଆଉ କୂଳ ଲୋଭ କାହିଁକି? ଆପଣ ଯାହା କରିବାକୁ ବିଚାରିଛନ୍ତି, ମୁଁ ତେଇଆ କରିବି। ମୋର ଇଚ୍ଛା ଆମେମାନେ ସମସ୍ତେ ତେଇଆ କରିବୁ।"

ଜାନୁଆରୀ ୧୯୨୧ ମସିହା ୭ ତାରିଖରେ ଗୋପବନ୍ଧୁ, ନୀଳକଣ୍ଠ ଓ ଭାଗୀରଥି ମିଶ୍ରଙ୍କୁ ଧରି ସମ୍ବଲପୁରରେ ପହଞ୍ଚିଲେ। ସମ୍ବଲପୁର ସହରରେ ଏ ଖବର ଆଗରୁ ବିଜୁଳି ବେଗରେ ବ୍ୟାପି ଯାଇଥିଲା। ଖଣ୍ଡିଏ ମଟରକାର୍ ଆଣି ବହୁ ଲୋକ ଷ୍ଟେସନରେ ଅପେକ୍ଷା କରିଥିଲେ। ସେଇଠାରୁ ଏକ ବିରାଟ ଶୋଭାଯାତ୍ରା ଆରମ୍ଭ ହେଲା ଓ ଷ୍ଟେସନ ବଡ଼ ରାସ୍ତାରେ ଏ ଶୋଭାଯାତ୍ରା ଅଗ୍ରେଇଲା। ଦ୍ୱାରେ ଦ୍ୱାରେ ଅଭ୍ୟର୍ଥନା ଓ ଫୁଲମାଳ। କିଏ ଚନ୍ଦନ ଦେଇ ମୁଣ୍ଡରେ ଚାଉଳ ପକାଉଥାଏ ଓ ଶ୍ରୀଫଳ ଆଣି ମୁଣ୍ଡରେ ଛୁଆଁଇ ଦେଉଥାଏ। ଯୁବତୀମାନେ ଆସି ମୁଣ୍ଡରେ ଚନ୍ଦନ ଓ ସିନ୍ଦୂର ଦେଉଥାନ୍ତି। ଜୟଧ୍ୱନିର ସ୍ୱର ବରାବର ଉଠୁଥାଏ। ହରିବୋଲ ଓ ହୁଳହୁଳିର ମିଶ୍ରିତ ଧ୍ୱନି ବେଶ୍ ଏକ ସାତ୍ତ୍ୱିକ କଲରୋଳ ସୃଷ୍ଟି କରୁଥାଏ। ଶେଷକୁ ଓକିଲ ଚନ୍ଦ୍ରଶେଖର ବେହେରାଙ୍କ ଝାଡ଼ୁଆପଡ଼ା ବାସଭବନର ସମ୍ମୁଖରେ ଶୋଭାଯାତ୍ରା ବନ୍ଦ ହେଲା। ଗୋପବନ୍ଧୁ ବାବୁ ପ୍ରଭୃତି ଶ୍ରୀ ବେହେରାଙ୍କ ଘରେ ରହିଲେ।

ସମ୍ବଲପୁରରେ ମଧ୍ୟ ଗୋଟିଏ ଜାତୀୟ ବିଦ୍ୟାଳୟ ନୀଳକଣ୍ଠଙ୍କ ତତ୍ତ୍ୱାବଧାନରେ ଖୋଲାଗଲା। ସମ୍ବଲପୁରର ପ୍ରତିଷ୍ଠାପନ୍ନ ଲୋକମାନେ କ୍ରମେ କ୍ରମେ ନିଜ ପିଲାମାନଙ୍କୁ ସେହି ଜାତୀୟ ବିଦ୍ୟାଳୟକୁ ପଠାଇଲେ। ସହରର ହିନ୍ଦୁ, ମୁସଲମାନ, ଗୁଜୁରାଟୀ, ମାରୱାଡ଼ୀ ସମସ୍ତଙ୍କ ମନରେ ଅସୀମ ଉତ୍ସାହ ଦେଖାଗଲା। ସମ୍ବଲପୁରର ଶ୍ରୀ ଧରଣୀଧର ମିଶ୍ର, ସମ୍ବଲପୁର କଂଗ୍ରେସ କମିଟି ସଭାପତି ଶ୍ରୀ ଚନ୍ଦ୍ରଶେଖର ବେହେରା ଓ କଟକ କଲେଜ ଛାଡ଼ି ଅସହଯୋଗରେ ମିଶିଥିବା ଶ୍ରୀ ଚନ୍ଦ୍ରଶେଖର ମିଶ୍ର ଆଦିଙ୍କ ସହଯୋଗିତାରେ 'ସେବା' ନାମକ ଏକ ସାପ୍ତାହିକ ପତ୍ରିକା ନୀଳକଣ୍ଠବାବୁଙ୍କ ସମ୍ପାଦନାରେ ପ୍ରକାଶ ପାଇଲା।

ଭାରତରେ ମହାତ୍ମା ଗାନ୍ଧି ଓ ଉତ୍କଳରେ ଗୋପବନ୍ଧୁଙ୍କ ଡାକରାରେ ଶତାଧିକ ଛାତ୍ର ବିଦ୍ୟାଳୟ ଛାଡ଼ି, ବୃତ୍ତିଜୀବୀମାନେ ଚାକିରି ଛାଡ଼ି, ଓକିଲମାନେ କଚେରୀ ଛାଡ଼ି ସ୍ୱାଧୀନତା ସଂଗ୍ରାମର ଉଦ୍‌ବେଳ ଜୁଆରରେ ଆପଣାକୁ ମିଶାଇ ଦେଲେ। ଏମାନଙ୍କ ମଧ୍ୟରେ ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ହରେକୃଷ୍ଣ ମହତାବ, ଶ୍ରୀ ଯଦୁମଣି ମଙ୍ଗରାଜ, ଶ୍ରୀ ଗୋପବନ୍ଧୁ ଚୌଧୁରୀ, ଶ୍ରୀ ଭାଗୀରଥି ମହାପାତ୍ର—କେହି କଲେଜ ପାଠ, କେହି ଓକିଲାତି ଅବା ବୃତ୍ତି ଛାଡ଼ି ଆଗେଇ ଆସିଲେ। ସ୍କୁଲ ଛାତ୍ରମାନେ ସ୍କୁଲ ଛାଡ଼ିଲେ। ଏମାନଙ୍କ ଭବିଷ୍ୟତ ଶିକ୍ଷା ଲାଭ ନିମନ୍ତେ ଓ ଜାତୀୟ ବିଦ୍ୟାଳୟଗୁଡ଼ିକର ପରିଚାଳନା ପାଇଁ ଗୋପବନ୍ଧୁ 'ଉତ୍କଳ ଶିକ୍ଷା ପରିଷଦ' ନାମରେ ଏକ ଅନୁଷ୍ଠାନ ଗଢ଼ିଲେ। ବିଶ୍ୱବିଦ୍ୟାଳୟ ସହିତ ସଂପର୍କ ତୁଟାଇ ଆସିଥିବା ଛାତ୍ରମାନଙ୍କ ଶିକ୍ଷାର ପୂର୍ଣ୍ଣତା ନିମନ୍ତେ ଏହି ଅନୁଷ୍ଠାନ ମାଧ୍ୟମରେ ଶିକ୍ଷାନୁଷ୍ଠାନ ଆଦି ପ୍ରତିଷ୍ଠା କରି ଜାତୀୟତାମୂଳକ ଶିକ୍ଷାଧାରା ପ୍ରବର୍ତ୍ତନ କରିବା ଗୋପବନ୍ଧୁଙ୍କ ଉଦ୍ଦେଶ୍ୟ ଥିଲା।

# ବେଗଚର୍ ନା ଚରବେଗା ?

୧୯୨୧ ମସିହା ଜାନୁୟାରୀ ମାସ । କଟକ ସହରର ଚନକୋଣିଆ ବଗିଚା, ଯେଉଁଠି ବର୍ତ୍ତମାନ କ୍ୟାପିଟାଲ୍ ସିନେମା ଘର ହୋଇଛି—ତାହା ନିକଟରେ ଭୂତଆଣି ଗଛର ବଣ ମଧ୍ୟରେ ସ୍ୱଳ୍ପ ପରିସର ସଫା ଜାଗାରେ ଗୋଟିଏ ସଭା ହେଉଥାଏ । ପାଞ୍ଚଶହ ଯାଏ ଲୋକ ଏକାଠି ହୋଇଥାନ୍ତି । ଅଧିକାଂଶ ଛାତ୍ର । ସରକାରୀ ଅଫିସରେ କାମ କରୁଥିବା ଲୋକମାନେ ଦୂରଛଡ଼ା ହୋଇ ଠିଆ ହୋଇଥା'ନ୍ତି । ଗୋପବନ୍ଧୁ ବକ୍ତୃତା ଦେଉଥାନ୍ତି । ମୁଣ୍ଡବାଳ ନୁଖୁରା, ମୁହଁରେ ଘନ ଶ୍ମଶ୍ରୁ, ପରିଧାନ ଗ୍ରେଟ ଖଦଡ଼ ଲୁଗା, ଢିଲା ପଞ୍ଜାବୀ, ପୁଣି ତା ଉପରେ ସଫା ଚାଦର—ପାଦରେ ଜୋତା ନଥାଏ । ଲୋକେ ଉତ୍କର୍ଣ୍ଣ ହୋଇ ଏ ବକ୍ତୃତା ଶୁଣୁଥା'ନ୍ତି । ତାଙ୍କ ବକ୍ତୃତାରେ ଜାତିପ୍ରୀତିର ଆଗ୍ନେୟ ଆକାଂକ୍ଷା ଫୁଟି ଉଠୁଥାଏ । ବହୁ ଉଦାହରଣ ଓ ତଥ୍ୟ ଦେଇ ସେ 'ଅସହଯୋଗ ଆନ୍ଦୋଳନ' ବିଷୟ ବୁଝାଉଥାନ୍ତି । ରବୀନ୍ଦ୍ରନାଥ ଠାକୁର ଇପରି ବ୍ରିଟିଶ ସରକାର ପ୍ରଦତ୍ତ ସର୍ବୋଚ୍ଚ ସମ୍ମାନ 'ସାର୍' ଉପାଧି ଓ ଗାନ୍ଧିଜୀ 'କାଇଜର-ଇ-ହିନ୍ଦ୍' ପଦକ ତଥା ଉପାଧି ପ୍ରତ୍ୟାଖ୍ୟାନ କରିଛନ୍ତି ସେକଥା କହୁଥାନ୍ତି । ପୁଣି ଗାନ୍ଧିଜୀ ଘୋଷଣା କରିଥାନ୍ତି ଯେ ଠିକ୍ ଏକ ବର୍ଷ ମଧ୍ୟରେ ତିଳକ ସ୍ୱରାଜ୍ୟ ପାଣ୍ଠିକୁ ଏକ କୋଟି ଟଙ୍କା ସଂଗୃହୀତ ହେଲେ ଓ ଏକ କୋଟି ଲୋକ କଂଗ୍ରେସ ସଭ୍ୟ ତାଲିକାଭୁକ୍ତ ହୋଇପାରିଲେ ବର୍ଷକ ମଧ୍ୟରେ ନିଶ୍ଚିତ ରୂପେ ସ୍ୱରାଜ୍ୟ ଆସିଯିବ । ଏ ସବୁ ତାଙ୍କ ବକ୍ତୃତାରେ ସରଳ ଓ ଭାବପ୍ରବଣ ଭାଷାରେ ପ୍ରକାଶ ପାଉଥାଏ । ସେ ଦେଶର ପରିସ୍ଥିତି, ବିଦେଶୀ ଶାସନର ଅତ୍ୟାଚାର ଓ ଜାଲିଆନାବାଗ୍ ହତ୍ୟାକାଣ୍ଡ, ମୁକ୍ତି ସଂଗ୍ରାମରେ ଦେଶବାସୀଙ୍କ ଦାୟିତ୍ୱ ବର୍ଣ୍ଣନା କରି ପ୍ରାଣସ୍ପର୍ଶୀ ଭାଷାରେ କହୁଥାନ୍ତି—"ବିଦେଶୀ ଶାସକର ଅନ୍ୟାୟ ଅବିଚାରକୁ ମୁଣ୍ଡପାତି ସହିଯିବା ପାପ । ଅନ୍ୟାୟ ଅବିଚାର କଥା ପାସୋରି ଦେଇ ଯେଉଁମାନେ ଅତ୍ୟାଚାରୀ ଶାସକ ଗୋଷ୍ଠୀ ସହିତ ସହଯୋଗ କରୁଛନ୍ତି ସେମାନେ ସ୍ୱାଧୀନତା ପଥରେ କଣ୍ଟକ । ଯେଉଁ ଜାତି ଶାସକର ଅନ୍ୟାୟ ଅବିଚାରକୁ ଭୁଲି ପରାଧୀନତାର ଶିକୁଳିକୁ ଆଦରି ନିଏ ସେ ଜାତି ସ୍ୱାଧୀନତା ପାଇଁ ଅଯୋଗ୍ୟ । ଚାରି ଶ୍ରେଣୀର ଲୋକ ଅଛନ୍ତି । ଚରବେଗା, ବେଗଚର୍, ଚରଚର୍, ବେଗବେଗା । ଏ ଚାରିଙ୍କ ମଧ୍ୟରେ 'ବେଗ୍‌ଚର୍' ଲୋକେ ଶ୍ରେଷ୍ଠ । ବିଦେଶୀ ଶାସକର ଅନ୍ୟାୟ, ଶୋଷଣ ଏମାନଙ୍କ ମନରେ ତୁରନ୍ତ ଆଲୋଡ଼ନ ଆଣେ ଓ ଚିର କାଳକୁ ମନେଥାଏ । ଏହିମାନେ ସ୍ୱାଧୀନତା ପାଇଁ ଉଦ୍‌ବୁଦ୍ଧ ହୁଅନ୍ତି ।

କାଠଯୋଡ଼ି ନଦୀର ହନୁମାନ ଘାଟ ବାଲି ଶଯ୍ୟାରେ ପ୍ରତି ସନ୍ଧ୍ୟାରେ ସଭା ହେବାକୁ ଲାଗିଲା । ପ୍ରତି ସଭାରେ ଗୋପବନ୍ଧୁ ସହର ଓ ମଫସଲ-ଆଗତ ସମବେତ ଜନତାକୁ ସ୍ୱାଧୀନତା ଆନ୍ଦୋଳନର ମର୍ମ ଓ ଓଡ଼ିଆବାସୀଙ୍କ କର୍ତ୍ତବ୍ୟ ସମ୍ପର୍କରେ ଉଦ୍‌ବୋଧନ

ଦେଲେ । ଗୋଟିଏ ଦିନର ସଭାରେ ସ୍ୱର୍ଗତ ଶ୍ରୀ ପଦ୍ମମଣି ମଙ୍ଗରାଜ ଯୋଗଦେଇଥାନ୍ତି । ସେତେବେଳେ ସେ ରେଭେନ୍‌ସା କଲେଜର ବି. ଏସ୍ ସି ଶ୍ରେଣୀର ଛାତ୍ର । ଶ୍ରୀ ଗୋପବନ୍ଧୁ ଚୌଧୁରୀ ସେତେବେଳେ ଡେପୁଟି ମାଜିଷ୍ଟ୍ରେଟ ଚାକିରିରୁ ଇସ୍ତଫା ଦେଇ ପଣ୍ଡିତ ଗୋପବନ୍ଧୁଙ୍କ ଚାର କରିଥା'ନ୍ତି । ଗୋପବନ୍ଧୁ ସାଧାରଣ ସଭାରେ ଏ ତାରବାର୍ତ୍ତାଟି ପଢ଼ି ଶୁଣାଇଦେଲେ । ଭାରତକୁ ଇଂରେଜମାନେ କପରି ଶୋଷଣ କରୁଛନ୍ତି ତା'ର ଉଦାହରଣ ଦେଇ ଗୋପବନ୍ଧୁ କହିଲେ—"ଇଂରେଜ ଶାସକମାନେ ଆମ ଦେଶର ଅତି ସରୁ ସୂକ୍ଷ୍ମଲୁଗା ବୁଣିବାରେ ଦକ୍ଷ ତନ୍ତୀମାନଙ୍କ ଅଙ୍ଗୁଳି କାଟି ଦେଇଛନ୍ତି । ଭାରତର ବସ୍ତ୍ରଶିଳ୍ପର ଧ୍ୱଂସ ସାଧନ କରୁଛନ୍ତି । ବର୍ତ୍ତମାନ ବିଲାତର ମାଞ୍ଚେଷ୍ଟରର ଲୁଗାକଲମାନଙ୍କରେ ତିଆରି ହେଉଥିବା ଲୁଗାପଟା ଆମ ଦେଶରେ ବିକି କରି ଇଂରେଜମାନେ ବର୍ଷକୁ ୬୦ କୋଟି ଟଙ୍କା ନେଇଯାଉଛନ୍ତି । ଏ ଶୋଷଣ ବନ୍ଦକଲେ ଦେଶ ଆର୍ଥିକ ଦୁର୍ଗତିରୁ ରକ୍ଷାପାଇବ— ଦେଶ ସ୍ୱାଧୀନ ହେବ । ଏଣୁ ବିଦେଶୀ ବିଲାତି ଲୁଗା ସମସ୍ତେ ବର୍ଜନ କର । ଅରଟରେ ସୂତାକାଟି ସେହି ସୂତାରେ ଲୁଗା ବୁଣି ପିନ୍ଧ ।"

ଏହି ବକ୍ତୃତାଟି ଶୁଣି ଶ୍ରୀ ମଙ୍ଗରାଜ ଏପରି ଉତ୍ତ୍ୟକ୍ତ ହୋଇ ଉଠିଲେ ଯେ, ସଙ୍ଗେ ସଙ୍ଗେ ସେ ପିନ୍ଧିଥିବା କୋଟ୍ ଖଣ୍ଡିକ ଖୋଲି ଫିଙ୍ଗିଦେଲେ । ସେହିଦିନ ସେ ଅସହଯୋଗ ଆନ୍ଦୋଳନରେ ଯୋଗଦେଲେ । ସେତେବେଳର ଉତ୍ତେଜନା ଆଜି କଳ୍ପନା କରିବା କଷ୍ଟକର ।

## କଂଗ୍ରେସ ଆନ୍ଦୋଳନର ବାର୍ତ୍ତା

ଭାରତସାରା ଅସହଯୋଗ ଆନ୍ଦୋଳନର ବହ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ସ୍କୁଲ କଲେଜ ଛାଡ଼ି ଛାତ୍ର, କଚେରୀ ଛାଡ଼ି ଓକିଲ ଓ ହାକିମ ହୁକୁମା ଏବଂ ସରକାରୀ ବୃତ୍ତି ଛାଡ଼ି ଚାକିରିଆ, କାଉନସିଲ୍ ଛାଡ଼ି ଭାରତୀୟ ସଭ୍ୟ ବହୁ ସଂଖ୍ୟାରେ ଅସହଯୋଗରେ ଉଦ୍‌ବୁଦ୍ଧ ହେଲେ । ସାରିଆଡ଼େ ସଭା ସମିତି ହେଲା ; କିନ୍ତୁ ସତ୍ୟବାଦୀ ଓ ଚକ୍ରଧରପୁର ଆଦି କେତୋଟି ଜାତୀୟ ବିଦ୍ୟାଳୟ ବ୍ୟତୀତ ଓଡ଼ିଶାର ସ୍କୁଲ କଲେଜ ଛାତ୍ରମାନେ ପ୍ରଥମେ ପ୍ରଥମେ ଏ କାର୍ଯ୍ୟରେ ବିଶେଷ ଆଗ୍ରହ, ଉତ୍ସାହ ପ୍ରଦର୍ଶନ କରିବା ଦେଖାଗଲା ନାହିଁ । ଗୋପବନ୍ଧୁ ବହୁ ସ୍ଥାନରେ ସଭା ସମିତି କରି ଜାତୀୟ ଉଦ୍ଦେଶ୍ୟ ବୁଝାଇବାକୁ ଲାଗିଲେ । ଏହିପରି ଗୋଟିଏ ବଡ଼ ସଭାର ଆୟୋଜନ ଗୋପରେ ହୋଇଥିଲା । ବହୁ ସଂଖ୍ୟାରେ ଏ ଅଞ୍ଚଳରୁ ଓ ବାହାରୁ ଲୋକମାନେ ସଭାରେ ଯୋଗ ଦେଇଥିଲେ । ବହୁ ବକ୍ତା ସେମାନଙ୍କ ଭାଷଣ ପ୍ରସଙ୍ଗରେ ଲୋକମାନଙ୍କୁ 'ମଳମୁଣ୍ଡିଆ' ଆଖ୍ୟା ଦେବାରୁ ଶେଷରେ ଗୋପବନ୍ଧୁ କହିଲେ—"ଆପଣମାନଙ୍କୁ ସମସ୍ତେ ଯେ ମଳମୁଣ୍ଡିଆ କହୁଛନ୍ତି ସେଥିରେ ମୁଁ

ଏକମତ ନୁହେଁ । ଆପଣମାନେ ହିଁ ସ୍ୱରାଜ ଆଣିବେ, ଏଇ ସ୍କୁଲ ପିଲମାନଙ୍କ ଦ୍ୱାରା କିଛି ହେବନାହିଁ ।"

ସେତେବେଳେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପରି ସମସ୍ତ ସ୍କୁଲ ସରକାରୀ ସାହାଯ୍ୟ ଓ ମଞ୍ଜୁରୀକୁ ପ୍ରତ୍ୟାଖ୍ୟାନ କରିବାକୁ ଗୋପବନ୍ଧୁ ଯୁକ୍ତି କରୁଥା'ନ୍ତି । କାରଣ ସରକାରଙ୍କ ପ୍ରତି କୌଣସି ପ୍ରକାର ଅନୁଗତ୍ୟ ବା ମୁଖାପେକ୍ଷିତା ପ୍ରଦର୍ଶନ କରିବା ଅସହଯୋଗର ପ୍ରତିକୂଳ ବୋଲି ବିବେଚିତ ହେଉଥାଏ ।

ଶେଷକୁ ଗୋପବନ୍ଧୁ କହିଲେ—"ଏମାନେ ସରକାରୀ ଇସ୍କୁଲିଆ ପିଲ ନୁହନ୍ତି ଯେ ସରକାର "ଇସ୍‌କୁ ଲେଲିଆ" କହିଲେ ଠିକ୍ ହେବ । ଅର୍ଥାତ୍ ଭବିଷ୍ୟତରେ ସରକାରୀ ଚାକିରିର ମୋହ ଏ ଛାତ୍ରମାନଙ୍କୁ ଖୁବ୍ ଆଚ୍ଛନ୍ନ କରି ପକାଇଛି । ତେଣୁ ସେମାନେ ସ୍କୁଲ ଛାଡ଼ିବାକୁ ସାହସ କରିପାରୁନାହାନ୍ତି । ଏଥିରେ ସଭାରେ ଭାରି ଗୋଟାଏ ହାସ୍ୟରୋଳ ଉଠିଥିଲା । ଦେଶର ଭବିଷ୍ୟତ ତରୁଣମାନଙ୍କୁ ପଙ୍ଗୁ କରିଦେଲେ ଭଲ ଶିକ୍ଷାରେ ଦେଶର ରାଜନୀତିକୁ ବଳିଷ୍ଠ ଭାବରେ ନିୟନ୍ତ୍ରିତ କରିବାର ଆତ୍ମବିଶ୍ୱାସ ଆସିବ ନାହିଁ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ତେଣୁ କଟକର ସ୍ୱରାଜ ଆଶ୍ରମଠାରେ ଅସହଯୋଗ ଆନ୍ଦୋଳନକୁ ଡେଇଁ ପଡ଼ିଥିବା କିଶୋରମାନଙ୍କ ପାଇଁ ଶ୍ରୀ ନନ୍ଦକିଶୋର ଦାସ, ବ୍ରଜବନ୍ଧୁ ଦାସ ଓ ନଟବିହାରୀ ସରକାର ଆଦିଙ୍କ ଅଧ୍ୟାପନାରେ ଗୋପବନ୍ଧୁ ଏକ ଜାତୀୟ ବିଦ୍ୟାଳୟ ଆରମ୍ଭ କରିଥିଲେ । ଓଡ଼ିଶାର ଲୁପ୍ତପ୍ରାୟ ଶକ୍ତିର ଅବଶେଷ ପ୍ରାଣବିନ୍ଦୁ, କର୍ମପ୍ରେରଣାରେ ଉଦ୍‌ବୁଦ୍ଧ ତରୁଣମାନଙ୍କର କର୍ମକେନ୍ଦ୍ର ହେଲା କଟକର ସ୍ୱରାଜ ଆଶ୍ରମ । ଏଠାରେ ଆସି ପହଞ୍ଚିଲେ ଶ୍ରୀ ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ନିରଞ୍ଜନ ପଟ୍ଟନାୟକ, ଭାଗୀରଥି ମହାପାତ୍ର, ହରେକୃଷ୍ଣ ମହତାବ, ରାଜକୃଷ୍ଣ ବୋଷ, ଆଚାର୍ଯ୍ୟ ହରିହର, ଲିଙ୍ଗରାଜ ମିଶ୍ର, ନୀଳକଣ୍ଠ ଦାସ ଆଦି ବହୁ ରାଜନୈତିକ ସଂଗଠକ । ଚାରିଆଡ଼େ ପ୍ରଚାର ଓ ସଭା ସମିତି ହେଲା । କେନ୍ଦ୍ରମାନଙ୍କରେ ଚରଖାର ପ୍ରଚଳନ ହେଲା । କର୍ମୀମାନେ ହାତରେ ସୂତା କାଟି ଲୁଗା ବୁଣେଇ ପିନ୍ଧିଲେ । ପୁରୀରେ ଜଗବନ୍ଧୁ ସିଂହ ଓ ବନମାଳୀ ଦାସ, ଗୋପବନ୍ଧୁଙ୍କ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ଏ ଆନ୍ଦୋଳନକୁ ଲମ୍ଫ ଦେଲେ । ବିଚଳିତ ଇଂରେଜ ସରକାରର ଦମନନୀତି, ଜେଲ, ଜୁଲମକୁ ଭୟ ନକରି ପୁରପଲ୍ଲୀ ଚାରିଆଡ଼େ ଅସହଯୋଗର ବାର୍ତ୍ତା ଏମାନେ ପ୍ରଚାର କଲେ । ସାରା ଓଡ଼ିଶାର ଗାଁଗହଳରେ ରାଜନୈତିକ ଓ ସାମାଜିକ ସଂଗଠନ କାର୍ଯ୍ୟ ଚାଲିଲା । ଗୋପବନ୍ଧୁଙ୍କ ଆଦର୍ଶ ଓ ଅନୁପ୍ରେରଣା ସମସ୍ତଙ୍କ ମନରେ ଶକ୍ତି ସଞ୍ଚାର କଲା ।

## ଗାନ୍ଧିଜୀଙ୍କ ଆଗମନ

ଗୋପବନ୍ଧୁଙ୍କ ନିମନ୍ତ୍ରଣ କ୍ରମେ ୧୯୨୧ ମସିହା ମାର୍ଚ୍ଚ ମାସରେ ଗାନ୍ଧିଜୀ ଓଡ଼ିଶା ଆସିଲେ । ତାଙ୍କ ଆଗମନ ଉପଲକ୍ଷେ ସମଗ୍ର କଟକ ସହରରେ ସେଦିନ ନାହିଁ ନଥିବା

ଆନନ୍ଦ ଓ ଉଦ୍ଦୀପନା ପ୍ରକାଶ ପାଇଥିଲା । ଗାନ୍ଧି ପ୍ରଦେଶରୁ ପ୍ରଦେଶ ବୁଲି ଅସହଯୋଗ ଆନ୍ଦୋଳନ, ବିଦେଶୀ ବର୍ଜନର ଉଦ୍ଦେଶ୍ୟ ବୁଝାଉଥା'ନ୍ତି । ପୁଣି ଗ୍ରାମେ ଗ୍ରାମେ ସୂତା କାଟି ଓ ଲୁଗା ବୁଣି ପିନ୍ଧିବା, ମୁସଲମାନମାନଙ୍କ ସଙ୍ଗେ ଭାଇପରି ମିଶି ଚଳିବା, ହରିଜନମାନଙ୍କୁ ଛୁଆଁଛୁତ କରି ସେମାନଙ୍କ ସଙ୍ଗରେ ଆପଣାର ହୋଇ ଚଳିବା ପାଇଁ ଗାନ୍ଧି ଏକ ସାମାଜିକ ବିପ୍ଳବ ଆରମ୍ଭ କରିଥା'ନ୍ତି । ଏଥିପାଇଁ ଏ ଦେଶର ରକ୍ଷଣଶୀଳ ହିନ୍ଦୁମାନଙ୍କ ଭିତରେ ଖୁବ୍ ପ୍ରତିକ୍ରିୟା ପ୍ରକାଶ ପାଉଥାଏ । ତେଣୁ ସ୍ୱରାଜ ଆନ୍ଦୋଳନକୁ ସେମାନେ ଏକ ବିଧର୍ମ ଆଚରଣ ବୋଲି ନାମିତ କରିବାକୁ କୁଣ୍ଠିତ ହେଉନଥା'ନ୍ତି ।

ତା ୨୩ । ୩ । ୨୧ ଦୋଳପୂର୍ଣ୍ଣିମା ଦିନ କଟକର ହାତୀଗଡ଼ା-ଘାଟ କାଠଯୋଡ଼ି ବାଲିରେ ଏକ ଐତିହାସିକ ସଭାର ଆୟୋଜନ ହେଲା । ସରକାରଙ୍କ ୧୪୪ ଧାରା ସହର ଉପରେ ଜାରି ଥିବାରୁ ସହରର କୌଣସି ପଡ଼ିଆରେ ଏ ସଭା କରିବା ସମ୍ଭବ ନଥିଲା । କାଠଯୋଡ଼ି ବାଲିରେ ବିପୁଳ ଜନସମାଗମ – ସମବେତ ଜନତାର ବିପୁଳ ଜୟଧ୍ୱନି — 'ମହାତ୍ମା ଗାନ୍ଧିଙ୍କି ଜୟ', 'ବନ୍ଦେ ମାତରଂ'ର ନିନାଦ ମଧ୍ୟରେ ସଭା ଆରମ୍ଭ ହେଲା । ସମବେତ ଜନତା ସ୍ତବ୍ଧ ଓ ନୀରବ ହେଲେ । ଗାନ୍ଧିଜୀଙ୍କ ପରିଚୟ ଦେବାକୁ ଯାଇ ଗୋପବନ୍ଧୁ କହିଲେ—"ଏପର୍ଯ୍ୟନ୍ତ ଯେ ସମସ୍ତ ମହାପୁରୁଷ ଭାରତରେ ଜନ୍ମଗ୍ରହଣ କରି ନିଜର କୀର୍ତ୍ତି ଏ ପୁଣ୍ୟଭୂମିରେ ଛାଡ଼ିଯାଇଅଛନ୍ତି, ସେମାନେ ସମସ୍ତେ ଉତ୍କଳରେ ପଦାର୍ପଣ କରି ଯାଇଅଛନ୍ତି । ବୁଦ୍ଧଦେବଙ୍କଠାରୁ ଆରମ୍ଭ କରି କବୀର, ରାମାନୁଜ, ଶଙ୍କର, ନାନକ, ଚୈତନ୍ୟ ସମସ୍ତେ ଉତ୍କଳରେ ନିଜର ଚିହ୍ନ ରଖିଯାଇଛନ୍ତି । ଆହୁରି ମଧ୍ୟ ଆଜକୁ ୩୦୦ ବର୍ଷ ତଳେ ଠିକ୍ ଆଜର ଦୋଳପୂର୍ଣ୍ଣିମା ତିଥିରେ ଚୈତନ୍ୟ ମହାପ୍ରଭୁ ଏହି ନଦୀର ବାଲୁକାରେ ପ୍ରେମଧର୍ମ ପ୍ରଚାର କରିଥିଲେ । ଆଜି ଅନ୍ୟ ଏକ ମହାପୁରୁଷ ପୁଣି ୩୦୦ ବର୍ଷ ପରେ ଏହି ବାଲୁକାରେ ସେହି ତିଥିରେ ରାଜନୈତିକ ପ୍ରେମଧର୍ମ ପ୍ରଚାର କରିବାକୁ ଆସିଛନ୍ତି । ଅନ୍ତରୁ ଉତ୍କଳ ଧର୍ମ ନିମିତ୍ତ ଯୁଗେ ଯୁଗେ ପ୍ରତିଷ୍ଠା ପାଇଅଛି । ଆଜି ଏହି ମହାତ୍ମାଙ୍କ ଯୋଗୁଁ ରାଜନୀତି ପୁଣି ଧର୍ମ ଉପରେ ପ୍ରତିଷ୍ଠିତ ହେବାକୁ ଯାଉଛି । ଏହି ମହାତ୍ମା ଓ ପୁଣ୍ୟାତ୍ମାଙ୍କ ରାଜନୀତିରେ କୁଟନୀତିର ସ୍ଥାନ ନାହିଁ । ଉତ୍କଳ ଯୁଗେ ଯୁଗେ ଧର୍ମବିଷୟରେ ଉଦାରତା ଦେଖାଇଛି । ନାନା ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟର ଲୋକେ ଉତ୍କଳରେ ଏକୀଭୂତ । ପୁରୀଧାମରେ ଜାତିଭେଦ ନାହିଁ । ଆପଣମାନେ ଉତ୍କଳୀୟଙ୍କ ପୂର୍ବ ଗୌରବ ଓ ଧର୍ମ ଉଦାରତା ସ୍ମରଣ କରି ମହାତ୍ମାଙ୍କ କଥା ଶ୍ରବଣ କରନ୍ତୁ ।"

ଏହି ସଭାରେ ତିଳକ ସ୍ୱରାଜ ପାଣ୍ଠି ପାଇଁ ଚାନ୍ଦା ସଂଗ୍ରହ କରାଯାଇଥିଲା । ସଭା ଶେଷ ହେବା ପରେ ଗାନ୍ଧିଜୀ ସ୍ୱରାଜ ଆଶ୍ରମକୁ ଫେରି ସେଠାରେ ଅବସ୍ଥାନ କରିଥିଲେ । ଆଶ୍ରମର ବାହାର ଅଗଣାରେ ସ୍ୱେଚ୍ଛାସେବକମାନଙ୍କର ଏକ ସଭାରେ ଗାନ୍ଧିଜୀ ଭାଷଣ ଦେଲେ । ସଭାରମ୍ଭରେ ଜଣେ ସ୍ୱେଚ୍ଛାସେବକ ବୀର ଦର୍ପରେ ନୀଳକଣ୍ଠଙ୍କ ଲିଖିତ ଜାତୀୟ ସଙ୍ଗୀତ ଗାନକଲେ—

"ସ୍ୱରାଜ ସ୍ୱସ୍ଥା ଅଲବତ୍ତ ହୋଗା ଛୋଡ଼କେ ଆଓ ଗୋଲାମି
ଭାରତ ଲଡ଼କା ଗୋଲାମ ହୋକେ କାହେ କରେ ବଦ୍‌ନାମି"

ସ୍ୱେଚ୍ଛାସେବକମାନଙ୍କ ମଧ୍ୟରେ ଅଧିକାଂଶ ଅଳ୍ପବୟସ୍କ ଛାତ୍ର, ଶରୀର କ୍ଷୀଣ ଓ ଦୁର୍ବଳ । ଭାଷଣ ଶେଷରେ ଗାନ୍ଧିଜୀ ଗୋପବନ୍ଧୁଙ୍କୁ ପଚାରିଲେ—"ୟେ ବଚ୍ଚେ କ୍ୟା ଘିଉ ଖାତେ ନେହିଁ ?" ସେତେବେଳେ ଓଡ଼ିଶାରେ ହିନ୍ଦୀ ଶିକ୍ଷା ପ୍ରଚଳନ ନଥିଲା । ଗୋପବନ୍ଧୁ ମଧ୍ୟ ହିନ୍ଦୀ ଜାଣି ନଥିଲେ । ତଥାପି ସେ ଅଧେ ଓଡ଼ିଆ ମିଶା ହିନ୍ଦୀରେ ଉତ୍ତର ଦେଲେ—"ଓଡ଼ିଶା ମେ ତ ଲୋକଙ୍କୁ ଦୋଓକ୍ତ ପଖାଳ ଖାନେକୁ ମିଲ୍‌ତା ନେହିଁ, ଘିଉ କାହାଁସେ ମିଲେଗା ?"

ଯାହାହେଉ ସେହିଦିନ ରାତିରେ ସ୍ୱେଚ୍ଛାସେବକମାନଙ୍କୁ ଆଶ୍ରମର ମୁଷ୍ଟିଭିକ୍ଷା ଲବ୍ଧ ପଞ୍ଚବର୍ଣ୍ଣୀ ଚାଉଳର ଭାତରେ ଟିକିଏ ଘିଅ ଦିଆଯାଇଥିଲା ।

ଅନ୍ୟ ଏକଦିନର ଘଟଣା । ଗାନ୍ଧିଜୀ ଆଶ୍ରମର ଉପରମହଲାରେ ଥା'ନ୍ତି । ଭୋଜନବେଳେ ତାଙ୍କ ସ୍ତ୍ରୀ ଶ୍ରୀମତୀ କସ୍ତୁରବା ପାଚିଲା ଅମୃତଭଣ୍ଡା କାଟି ଦିଅନ୍ତି । ସେଦିନ ଅମୃତଭଣ୍ଡା କାଟି ସଜାଡ଼ି ଦେବାରେ ଟିକିଏ ଡେରି ହେଲା । ନିୟମ ଶୃଙ୍ଖଳା ଟିକିଏ ବ୍ୟାହତ ହେଲେ ଗାନ୍ଧିଜୀ ହଠାତ୍ ଭାରି ରାଗି ଯାଉଥିଲେ । ସେ ରାଗିଯାଇ କହିଲେ—'ମେ ନହିଁ ଖାଉଁଗା ।" ସତକୁ ସତ ଖାଇଲେ ନାହିଁ ମଧ୍ୟ । କସ୍ତୁରବା ମଧ୍ୟ ଉପବାସ ରହିଲେ । କସ୍ତୁରବାଙ୍କ କଷ୍ଟ ଗୋପବନ୍ଧୁଙ୍କ ପ୍ରାଣକୁ ବାଧିଲା । ସେ ଆଲୋଚନା ପ୍ରସଙ୍ଗରେ କେତେକ ବନ୍ଧୁଙ୍କୁ କହିଲେ—"ମାଇପୀ ଲୋକଟା ରାତିଯାକ ଉପାସ ରହିଲା । ଏ କି ମହାତ୍ମା ବୋଲାଉଛନ୍ତି ହେ ? ଏ କି ରାଗ···!"

ପର ପୀଡ଼ା ଦେଖିଲେ ଯେତେ ବଡ଼ ବ୍ୟକ୍ତି ହୋଇଥାନ୍ତୁ ପଛକେ ଗୋପବନ୍ଧୁ ତାହାର ସମାଲୋଚନା କରିବାକୁ କୁଣ୍ଠିତ ହେଉନଥିଲେ ।

ମହାତ୍ମା ଗାନ୍ଧି ୨୩ ତାରିଖ ଦିନସାରା ବହୁ ଶ୍ରେଷ୍ଠ ବଡ଼ ସଭାରେ ଉଦ୍‌ବୋଧନ ଦେଇଥିଲେ । କଟକର ଛାତ୍ରମାନଙ୍କ ସଭାରେ ସେ ଛାତ୍ରମାନଙ୍କୁ ସରକାରୀ ସ୍କୁଲରେ ନ ପଢ଼ିବା ପାଇଁ ପରାମର୍ଶ ଦେଇଥିଲେ ଓ ସରକାରୀ ସ୍କୁଲରେ ବର୍ତ୍ତମାନ ପରିସ୍ଥିତିରେ ପାଠପଢ଼ିବା ମହାପାପ ବୋଲି କହିଥିଲେ । ଜଣେ ଛାତ୍ରର ପ୍ରଶ୍ନୋତ୍ତର ଛଳରେ ସେ କହିଥିଲେ, "ମୁଁ ଏ ଅତ୍ୟାଚାରର ଜର୍ଜରିତ ସଇତାନ ଶାସନର ପକ୍ଷାଘାତ କରାଇବା ପାଇଁ ମୋ ଜୀବନକୁ ଉତ୍ସର୍ଗ କରିଅଛି । ମୁଁ ଅରାଜକତା ରୂପକ ନିଆଁରେ ପଛେ ପୋଡ଼ି ମରିଯିବି କିନ୍ତୁ ଦାସତ୍ୱ ରୂପକ ଉତ୍ତପ୍ତ ତେଲକଣ୍ଡାରେ ପଡ଼ି ଯେପରି ଛଟପଟ ଓ ଦହଗଞ୍ଜ ନହୁଏ । ମହର୍ଗରୁ ଯାଇ ବରଂ କାନ୍ତାରରେ ପଡ଼ିବା ଭଲ; କାରଣ କାନ୍ତାରରେ ଶୀଘ୍ର ମରିଯିବି ଓ କମ୍ ଦହଗଞ୍ଜ ହେବ ।"

୨୪ ତାରିଖ ସକାଳେ କଟକର ପ୍ରସିଦ୍ଧ କଦମ ରସୁଲ ମସଜିଦ୍‌ରେ ମହାତ୍ମା ଖିଲାଫତ୍ ପ୍ରସଙ୍ଗରେ ଏକ ବକ୍ତୃତା ଦେଇଥିଲେ । ଏଥିରେ କଟକ ସହରର ମୁସଲମାନମାନେ ବଡ଼ ଉତ୍ସାହିତ ହୋଇଥିଲେ । ଜେରୁଜେଲମର ମୁକ୍ତି ନହେବାଯାଏ ଖିଲାଫତ୍ ସମସ୍ୟା ସମାଧାନ

ହେବନାହିଁ ବୋଲି ମହାତ୍ମା ଗାନ୍ଧି କହୁଥିଲେ । ଖିଲାଫତ୍ ଓ ସ୍ୱରାଜ୍ୟ—ଏ ଉଭୟ ବିଷୟରେ ବର୍ତ୍ତମାନ ମୁସଲମାନଙ୍କର ଆନ୍ଦୋଳନ କରିବା ଉଚିତ ବୋଲି ସେ ସ୍ପଷ୍ଟ ଆହ୍ୱାନ କରିଥିଲେ । ଏ ସମସ୍ତ ସଭାରେ ସେ ଚରଖା ପ୍ରଚଳନ ଓ ବିଦେଶୀ ବର୍ଜନ ଉପରେ ଅଧିକ ଗୁରୁତ୍ୱ ଦେଇଥିଲେ । ଚରଖା ଓ ଖଦୀ ଦ୍ୱାରା ପ୍ରକୃତ ସ୍ୱରାଜ୍ୟ ଆସିବ ବୋଲି ସେ ଦୃଢ଼ ଭାବରେ ବିଶ୍ୱାସ କରିଥିଲେ ।

ଏହାପରେ ୨୫ ତାରିଖ ସକାଳେ ଗୋପବନ୍ଧୁଙ୍କ ସହିତ ଭଦ୍ରଖରେ ପହଞ୍ଚି ସେଠାରେ ହିନ୍ଦୁ ମୁସଲମାନ ସମ୍ପ୍ରୀତି ଓ ଜାତୀୟ ଆନ୍ଦୋଳନ ପାଇଁ ମହାତ୍ମା ଗାନ୍ଧି ଉଦ୍‌ବୋଧନ ଦେଇଥିଲେ । ସେଦିନ ରାତି ପୁରୀ ଏକ୍‌ସ୍‌ପ୍ରେସ୍ ଯୋଗେ ସତ୍ୟବାଦୀ ଯାତ୍ରାକଲେ ।

## ପୁରୀରେ ମହାତ୍ମାଜୀ

କଟକରୁ ପୁରୀ ଆସିବା ବାଟରେ ମହାତ୍ମାଜୀ କେତେଘଣ୍ଟା ପାଇଁ ସତ୍ୟବାଦୀ ବନବିଦ୍ୟାଳୟରେ ଅତିଥି ହୋଇଥିଲେ । ଗୋପବନ୍ଧୁଙ୍କ ସହିତ ଗୋଟିଏ ଘରେ କିଛି ସମୟ ନିଭୃତ ଆଲୋଚନା କରିଥିଲେ । ଏ ଦେଶ ପାଇଁ ଦୁଇ ଜାତୀୟ ନେତାଙ୍କ ଭିତରେ କେତେ ଗମ୍ଭୀର ପ୍ରାଣଭରା ଆଳାପ ଆଲୋଚନା ! ତାଙ୍କୁ ଦେଖିବା ପାଇଁ ଚାରିଆଡ଼ୁ ଜଳଧାରାପରି ଜନସ୍ରୋତ ଛୁଟିଆସିଲା । ସତ୍ୟବାଦୀର ନିକଟବର୍ତ୍ତୀ ପଡ଼ିଆରେ ଏକ ଜନସଭାର ଆୟୋଜନ ହୋଇଥିଲା । ସେତେବେଳେ ନୂଆହୋଇ 'ଲଉଡ୍ ସ୍ପିକର' ବାହାରିଥାଏ । ସେଥିରୁ ଗୋଟିଏ ମହାତ୍ମାଜୀଙ୍କ ସାଙ୍ଗରେ ଥାଏ । ସେ ସେଇଥିରେ କହୁଥା'ନ୍ତି । ତାହା ଶୁଣିବା ଦୂରେ ଥାଉ ତଟସ୍ଥ ହୋଇ ତାଙ୍କୁ ମୁଣ୍ଡିଆ ମାରିବା ଓ 'ଲଉଡ ସ୍ପିକର'କୁ ଚାହିଁରହିବା ଲୋକଙ୍କର ବଡ଼ କାମ ହୋଇଥାଏ ।

ପୁରୀର ଶରଧା ବାଲିରେ ଜନସଭାର ଆୟୋଜନ ହୋଇଥିଲା । ପୁରୀ ସହର ଲୋକାରଣ୍ୟ । ଷ୍ଟେସନଠାରୁ ଶରଧାବାଲି ଯାଏ ଲକ୍ଷମାନ ଯାତ୍ରୀଦଳ ମହାପୁରୁଷଙ୍କର ଅପେକ୍ଷାରେ ଉଦ୍‌ଗ୍ରୀବ । ପୁଣି ସିଂହଦ୍ୱାର ଓ ରାଜଭବନ ଗାନ୍ଧିଙ୍କ ଆଗମନରେ ସୁସଜ୍ଜିତ । ଗାନ୍ଧି ଆସିଲେ । ସେଦିନ ଥାଏ ୨୬-୩-୧୯୨୧ ତାରିଖ ଶନିବାର । ଷ୍ଟେସନରେ ଗାଡ଼ି ଲାଗିଲା । କଡ଼ା ପୋଲିସ ପହରା । ସ୍ୱେଚ୍ଛାସେବୀମାନେ ଦଳ ଦଳ ହୋଇ କର୍ତ୍ତବ୍ୟ ତୁଲାଇବାରେ ବ୍ୟସ୍ତ । ମହାତ୍ମାଜୀଙ୍କୁ ଗୋପବନ୍ଧୁ ଆଦି କେତେଜଣ ପରିଚିତ ଲୋକ ନିଜ ଗହଣରେ ଆଣି ଆଗେଇ ଆସିଲେ । ତାଙ୍କୁ ଗାଡ଼ିରେ ବସାଇ ଦଶ ହଜାର ଲୋକ ଶ୍ରେଣୀ କରି ତାଙ୍କ ବିଶ୍ରାମସ୍ଥଳକୁ ଚାଲିଲେ । ଜନଗହଳି ମଝିରୁ ହରିବୋଲ, ହୁଳହୁଳି ଓ ଶଙ୍ଖ ବାଦନ ହେଉଥାଏ । ମହାତ୍ମା ଗାନ୍ଧି ଗାଡ଼ି ଉପରୁ ହାତଯୋଡ଼ି ସମସ୍ତଙ୍କୁ ନମସ୍କାର କରୁଥାନ୍ତି । ବଡ଼ଦାଣ୍ଡରେ ପ୍ରାୟ ୫୦ ହଜାର ଲୋକଙ୍କ ସମାଗମ ।

ସାଧାରଣ ସଭା ତା' ପରଦିନ ରବିବାର ୨୭।୩।୧୯୨୧ ତାରିଖ ସନ୍ଧ୍ୟାରେ ହେଲା । ପ୍ରାୟ ତିରିଶ ହଜାର ଲୋକ ଉପସ୍ଥିତ ଥା'ନ୍ତି । ପ୍ରଥମେ ଗୋପବନ୍ଧୁ ମହାତ୍ମାଙ୍କ ପରିଚୟ ଦେବାକୁ ଠିଆହେଲେ । ଅଜସ୍ର କରତାଳି ଧ୍ୱନିରେ ସଭାସ୍ଥଳ ମୁଖରିତ ହେଲା । ଏପରିକି କଥା କହିବା ବି ସମ୍ଭବ ହେଲନାହିଁ । ଗୋପବନ୍ଧୁବାବୁ କହିଲେ—"ଭାଇମାନେ, କରତାଳି ବନ୍ଦକର । ବିହାର-ଓଡ଼ିଶା ସରକାର ଶାନ୍ତିଭଙ୍ଗର ଆଶଙ୍କା କରିଛନ୍ତି । ଏପରିକି ଏ କରତାଳିରେ ବି ତାଙ୍କର ତଥାକଥିତ ଶାନ୍ତି ଭାଙ୍ଗି ଯାଇପାରେ ।" ଗୋପବନ୍ଧୁ ଛଳେଇ କରି କହିଲେ..."ଭାରତର ପଞ୍ଚତିରିଶ କୋଟି ଲୋକ ଯଦି କେବଳ ତାଳିମାରି ଦିଅନ୍ତି ତେବେ ଏ ଦେଶରେ ଥିବା ଲକ୍ଷେ ଇଂରେଜ ଉଡ଼ିଯାଇ ଦରିଆପାରିରେ ପଡ଼ିବେ । ଶୁଣାଅଛି ଯେ କଟକରେ କୌଣସି କଲେକ୍ଟର ଓ ଖୋର୍ଦ୍ଧାର ଜଣେ ଏସ୍. ଡି. ଓ. ତାଙ୍କ ନିଦରେ ବ୍ୟାଘାତ ଆଣୁଥିବା ରାତ୍ରୀର ଭୁକିଲା କୁକୁର ଓ ଶିଆଳ ବିରୁଦ୍ଧରେ ମଧ୍ୟ ମକଦ୍ଦମା ଆରୋପ କରୁଥିଲେ—ଏପରିକି ସଙ୍କୀର୍ତ୍ତନକୁ ମଧ୍ୟ ବେଆଇନ କରୁଥିଲେ । ତେଣୁ ଭାଇମାନେ, ତୁମେ ତାଳି ମାରିବା ବନ୍ଦକର । ତା'ହେଲେ ଅହିଂସା ଓ ଶାନ୍ତିପୂର୍ଣ୍ଣ ଭାବରେ ସଭାକାର୍ଯ୍ୟ ଚଳେଇ ପାରିବା ।"

"ମୁଁ କେଉଁ ଭାଷାରେ ତୁମ ପାଖରେ ମହାତ୍ମାଙ୍କ ପରିଚୟ ଦେବି ଜାଣିପାରୁନାହିଁ । ଏଇ ମହାତ୍ମାଙ୍କ ଶରୀର କ୍ଷୀଣ ଓ ଗଠନଟି ଛୋଟ ; କିନ୍ତୁ ସେଇ ଛୋଟ ଶରୀର ଓ ବିରାଟ ବ୍ୟକ୍ତିତ୍ୱ ହଜାର ହଜାର ଲୋକଙ୍କୁ ମନ୍ତ୍ରମୁଗ୍ଧ କରିପାରୁଛି । ଏଇ ବ୍ୟକ୍ତିତ୍ୱ ଦକ୍ଷିଣ ଆଫ୍ରିକାରେ ବର୍ଣ୍ଣବୈଷମ୍ୟ ଦୂର କରିବାରେ ଭାରତୀୟମାନଙ୍କୁ ବିଜୟ ଆଣି ଦେଇଛି; ପୁଣି ଚମ୍ପାରନ୍ ଜିଲ୍ଲାରେ ଦୁର୍ଦ୍ଧର୍ଷ ବ୍ୟବସାୟୀଙ୍କ ଅତ୍ୟାଚାରରୁ ଦରିଦ୍ର ଚାଷୀମାନଙ୍କୁ ଉଦ୍ଧାର କରିପାରିଛି । ପୁରୀ ଜିଲ୍ଲାର ଘରେ ଘରେ ସେ ପରିଚିତ । ଯେତେବେଳେ ବିହାର-ଓଡ଼ିଶା ବଡ଼ଲାଟ ପୁରୀଜିଲ୍ଲା ବନ୍ୟାପ୍ରପୀଡ଼ିତ ଜନତାର ଦୁଃଖ ବୁଝିବାରେ ଉଦାସୀନ, ସେଇ ମହାତ୍ମା, ଆମ ହୃଦୟର ଅଧ୍ୟୁଷିତ ବଡ଼ଲାଟ ଆମ ଦୁଃଖରେ କାତର ହୋଇ ପଡ଼ିଥିଲେ । ସେ ହିଁ ପ୍ରଥମେ ପୁରୀରେ ଦୁର୍ଭିକ୍ଷ ପଡ଼ିଛି ବୋଲି ଘୋଷଣା କଲେ । ତାଙ୍କରି ଅନୁରୋଧରେ ଭାରତର ସବୁ ଅଞ୍ଚଳରୁ ବହୁ ପରିମାଣରେ ସାହାଯ୍ୟ ପୁରୀ ବନ୍ୟାପ୍ରପୀଡ଼ିତ, ଦୁର୍ଭିକ୍ଷଗ୍ରସ୍ତ ଦରିଦ୍ର ଲୋକଙ୍କ ପାଖରେ ପହଞ୍ଚି ପାରିଥିଲା । ଭାଇମାନେ, ଆମ ପ୍ରାଣଦାତା, ମହାପୁରୁଷ ମହାତ୍ମା ଗାନ୍ଧି ଆଜି ଆମ ସମକ୍ଷରେ ଉପସ୍ଥିତ । ମୁଁ ଦୁର୍ଭିକ୍ଷବେଳେ ତୁମ୍ଭମାନଙ୍କୁ ଦେଖିଛି । ଶହ ଶହ ଆମର ଭାଇ ଖାଇବା ବିନା ମରି ଶୋଇଲେ । ଏଇ ପାପ ପାଇଁ ସରକାରହିଁ ଦାୟୀ । ପଞ୍ଜାବରେ ଯେଉଁ ଦୁର୍ଘଟଣା ଘଟିଥିଲା—ସେ ସବୁ ଆମ ଭାରତ ପାଇଁ ଘୋର ଦୁଃଖର କାହାଣୀ, ଇତିହାସର ବିକଟ ଉପହାସ ହୋଇ ରହିଯିବ । ଏ ସବୁ ପାଇଁ ମୁଁ ବ୍ୟବସ୍ଥା ସଭା ତ୍ୟାଗ କରିଛି । ଯାହାକିଛି ଅନ୍ୟାୟ ଘଟିଯାଉଛି ଜଣେ ସଭ୍ୟ ଭାବରେ ମୁଁ ତା'ର ପାପରେ ବି ଭାଗୀଦାର । ମୁଁ ତେଣୁ ଏହି ପାପୀ ଶାସକମାନଙ୍କୁ ଛାଡ଼ି ଆସିଛି । ଏହାହିଁ ମହାତ୍ମାଙ୍କ ଅସହଯୋଗର ବାର୍ତ୍ତା । ଏହା ଭାରତୀୟ ଜାତୀୟ କଂଗ୍ରେସର ଉଦ୍‌ଘୋଷଣା ।"

ଗୋପବନ୍ଧୁ ପୁଣି କହିଲେ—"ମୁଁ ମହାତ୍ମାଙ୍କୁ ଆପଣମାନଙ୍କ ତରଫରୁ ଜଣାଇବାକୁ ଚାହେଁ ଓଡ଼ିଶା ଅସହଯୋଗର ଦୀକ୍ଷା ବରଣ କରି ଭାରତ ପ୍ରତି ତା'ର କାତୀୟତାର ପ୍ରମାଣ ଦେଇଛି। ଏ କାତୀୟ ଯୁଦ୍ଧରେ ଓଡ଼ିଶା ପାଇଁ ବହୁତ କିଛି କରିବାର ଅଛି। ଅତୀତରେ ଓଡ଼ିଶା ତା'ର ସହନଶୀଳତା ଓ ଜାତି ପାଇଁ ତ୍ୟାଗର ବହୁ ଦୃଷ୍ଟାନ୍ତ ଦେଖାଇ ଆସିଛି। ପୁରୀ ଏକ ପୁରାତନ ତୀର୍ଥକ୍ଷେତ୍ର। ଏଠାରେ ଗୌତମ ବୁଦ୍ଧଙ୍କ ଦନ୍ତ, କବୀରଙ୍କ କବର, ରାମାନୁଜଙ୍କ ଆଶ୍ରମ ରହିଛି। ଗୁରୁନାନକଙ୍କ ଧର୍ମସଙ୍ଗୀତ ପୁରୀ ସମୁଦ୍ର ବେଳାରେ ପ୍ରତିଧ୍ୱନିତ ହୋଇଛି। ଏଇଠି ପରମ ବୈଷ୍ଣବ ଶ୍ରୀ ଚୈତନ୍ୟ ପ୍ରେମଧର୍ମ ପ୍ରଚାର କରିଛନ୍ତି। ସମଗ୍ର ପ୍ରଦେଶରେ ତାର ଉଦାର ସ୍ମୃତି ବହି ରହିଛି। କବୀର ହିନ୍ଦୁ ଓ ମୁସଲମାନଙ୍କ ମିଳନ କାମନା କରିଥିଲେ, କିନ୍ତୁ ତାଙ୍କ ଆଶା ଅପୂର୍ଣ୍ଣ ରହିଗଲା। ଆଜି ମହାତ୍ମା ସେଇ ଅପୂର୍ଣ୍ଣ କାର୍ଯ୍ୟର ଗୁରୁଭାର ଗ୍ରହଣ କରି କି ହିନ୍ଦୁ କି ମୁସଲମାନ ସମସ୍ତଙ୍କ ମନରେ ଜାତିପ୍ରେମର ସ୍ରୋତ ବୁହାଇ ଦେଇଛନ୍ତି। ପ୍ରୟାଗରେ ଗଙ୍ଗାଯମୁନାର ଧାର ମିଶିଥିଲା ପରି ଆଜି ଭାରତୀୟ ମୁକ୍ତିସଂଗ୍ରାମରେ ହିନ୍ଦୁ ମୁସଲମାନ ମିଶି ଯାଇଛନ୍ତି। ଯାହାଙ୍କ ପାଇଁ ଏହା ସମ୍ଭବ ହୋଇଛି ସେଇ ଦେବଦୂତ ମହାମାନବ ମହାତ୍ମା ଗାନ୍ଧି ଆଜି ପୁରୀର ଶରଧାବାଲିରେ ଦଣ୍ଡାୟମାନ।"

ପୁଣି ଜୋରରେ କରତାଳି ଧ୍ୱନିହେଲା। 'ମହାତ୍ମା ଗାନ୍ଧିକି ଜୟ' ଶବ୍ଦରେ ଶରଧାବାଲି କମ୍ପି ଉଠିଲା। ମହାତ୍ମା ଗାନ୍ଧି ଅଧୀର ହୋଇ ହସି ଉଠିଲେ। ତାଙ୍କ ପାଦତଳେ ବସିଥାନ୍ତି କସ୍ତୁରବା—ମହାତ୍ମାଙ୍କ କର୍ମସାଥୀ।

ମହାତ୍ମା ଗାନ୍ଧି ଅନେକ କଥା ଭିତରେ କହିଲେ—"ହିନ୍ଦୁର ପବିତ୍ର ତୀର୍ଥ ପୁରୀଧାମ। ହିନ୍ଦୁର ଦେବତା ଜଗନ୍ନାଥ; କିନ୍ତୁ ମୁଁ ଗଭୀର ଦୁଃଖ ଅନୁଭବ କରୁଛି ଯେ ଆପଣମାନେ ନିଜ ଦେବତାଙ୍କୁ ବିଦେଶୀ କରିଦେଇଛନ୍ତି, ବିଦେଶୀ ଲୁଗା ପିନ୍ଧାଇଛନ୍ତି।" ସେ ଅସହଯୋଗ ବିଷୟ ବୁଝାଇ କହିଲେ—"ସରକାରଙ୍କ ପାପରୁ ଦେଶରେ ମଡ଼କ ପଡ଼ୁଛି। ସରକାରଙ୍କୁ ସହଯୋଗ କରିବା ଅର୍ଥ ଏହି ପାପକୁ ପ୍ରଶ୍ରୟ ଦେବା। ଏ ସଇତାନ୍, ରାକ୍ଷସ ସରକାରଙ୍କୁ ନିକାଲି ଦେବାକୁ ହେବ। ନଚେତ୍ ଦେଶପାଇଁ ଶାନ୍ତିନାହିଁ।" ସେଦିନର ଉତ୍ତେଜନା ପ୍ରତ୍ୟକ୍ଷଦର୍ଶୀ କେହି ଥିଲେ କହିବେ। ପୁରୀ ଶରଧାବାଲିରେ ଯେ କି ଉତ୍ତେଜନା —ତାହା କହିହେବାର ନୁହେଁ।

'ତିଲକ ସ୍ୱରାଜ ପାଣ୍ଠି' ପାଇଁ ଚାନ୍ଦା ଆଦାୟ ହେଲା। ପୁରୀ ମୁଣ୍ଡିମୁହାଣରେ ଶ୍ରୀଯୁକ୍ତ କୁଳମଣି ସାମନ୍ତରାୟ ଏକହଜାର ଟଙ୍କା ସଭାସ୍ଥଳରେ ଦାନ କଲେ। ସ୍ୱେଚ୍ଛାସେବୀମାନେ ସଭାରେ ବୁଲି ବୁଲି ଚାନ୍ଦା ସଂଗ୍ରହ କରୁଥାନ୍ତି। ଏହାପରେ ଗୋପବନ୍ଧୁ ଓ ଗାନ୍ଧି ବ୍ରହ୍ମପୁର ଅଭିମୁଖେ ଯାତ୍ରାକଲେ। ଗାନ୍ଧିଙ୍କୁ ବାଟରେ ଅତୁଳ ଅତୁଳ ଓଡ଼ିଶାର ଦୁଃଖ, ଦୁର୍ଦ୍ଦଶା ଓ ରାଜନୈତିକ ଦୁରବସ୍ଥାର ଚିତ୍ର ଗୋପବନ୍ଧୁ ଦେଉଥିଲେ। ମହାତ୍ମାଙ୍କର ହୃଦ୍‌ବୋଧ ହେଲା। ସେ କହିଲେ—"Orissa is the epitome of India's poverty."

ଗାନ୍ଧି ଯିବାପରେ ଏହି ଅସହଯୋଗ ଓଡ଼ିଶାରେ ଖୁବ୍ ବ୍ୟାପକ ଆକାର ଧାରଣ କଲା । ପୋଲିସ ତରଫରୁ ସେହିପରି ଜୁଲମ, ଅତ୍ୟାଚାର, ଗ୍ରାମପୋଡ଼ି ଓ ଧର୍ଷଣ ବି ଆରମ୍ଭ ହୋଇଗଲା । ସ୍ୱେଚ୍ଛାସେବକମାନେ ମୁଷ୍ଟିଭିକ୍ଷା ସଂଗ୍ରହରେ ଲାଗିଲେ । ହାଣ୍ଡି ବସିଲା, ସପ୍ତାହକୁ ସପ୍ତାହ ଚାଉଳ ସଂଗ୍ରହ ହେଲା । ସେଥିରେ କର୍ମୀ ଚଳିଲେ, ନାନା ସ୍ଥାନରେ କଂଗ୍ରେସ ଆଶ୍ରମ ବସିଲା । ଚର୍ଖା ପତାକା ଉଡ଼ିଲା, ଲୋକେ ସୂତା କାଟିଲେ, ଖଦଡ଼ ପିନ୍ଧିଲେ ।

## ବ୍ରହ୍ମପୁରରେ ମହାତ୍ମାଜୀ

୨୧।୩।୧୯୨୧ ତାରିଖ ସକାଳ ୮ ଘଣ୍ଟାରେ ମହାତ୍ମା ଗାନ୍ଧି ଓ ଗୋପବନ୍ଧୁ ଆଦି ବ୍ରହ୍ମପୁର ଷ୍ଟେସନରେ ପହଞ୍ଚିଲା ବେଳକୁ ପ୍ରାୟ ୩୦ ହଜାର ଲୋକ ଏକାଠି ହୋଇଥିଲେ । ଏକ ପଟୁଆରରେ ଜାତୀୟ ନେତାମାନଙ୍କୁ ଆଗେଇ ନିଆଗଲା । ମହାତ୍ମା ଗାନ୍ଧି ମଧୁମନ୍ଦିରରେ ବିଶ୍ରାମ ନେଲେ । ତେଲଙ୍ଗା, ଓଡ଼ିଆ ଓ ମୁସଲମାନମାନେ ସମସ୍ତେ ଅଭ୍ୟର୍ଥନାରେ ଯୋଗ ଦେଇଥିଲେ । ରସଲକୁଣ୍ଡା, ଆସିକା, ଇଚ୍ଛାପୁର, ପାରଳାଖେମୁଣ୍ଡି, ଛତ୍ରପୁର ଓ ଟୀକାଲିରୁ ଅନେକ ଲୋକ ମହାତ୍ମାଙ୍କୁ ଦେଖିବା ସକାଶେ ଜମା ହୋଇଥିଲେ । ଗଞ୍ଜାମର ଓଡ଼ିଆ ତେଲଙ୍ଗା ସମସ୍ୟା ବିଷୟରେ ମହାତ୍ମା ଗାନ୍ଧି ଓଡ଼ିଆ ଓ ତେଲଙ୍ଗା ନେତାମାନଙ୍କର ଏକ ବୈଠକ କରାଇଥିଲେ । ସେତେବେଳେ ଆନ୍ଧ୍ର ପ୍ରଦେଶର ନେତା ଭେଙ୍କଟାପୟା, ବ୍ରହ୍ମପୁରର ସରକାରୀ ଓକିଲ ଶ୍ରୀ ଯୋଗାୟା, ଗୋପବନ୍ଧୁ ବାବୁ ଓ ବାରିଷ୍ଟର ବିଶ୍ୱନାଥ ମିଶ୍ର ବିଶେଷ ଭାବରେ ଏ ବୈଠକର ଆଲୋଚନାରେ ଭାଗ ନେଇଥିଲେ । ମହାତ୍ମା ଗାନ୍ଧି କହିଲେ—“ଗାର୍ହସ୍ଥ୍ୟ କଳହ ଭାଙ୍ଗିବାକୁ ନିଖିଳ ଭାରତ କଂଗ୍ରେସ କମିଟି ବା ସରକାର ଯଦି ପ୍ରୟୋଜନ ତେବେ ଆମ୍ଭେମାନେ ସ୍ୱରାଜ୍ୟ ପାଇବାକୁ ଉପଯୁକ୍ତ ନୋହୁଁ ବୋଲି ବିବେଚିତ ହେବ । ଏ ବିବାଦ ଆପୋଷ ଆଲୋଚନାରେ ତୁଟାଇବାକୁ ହେବ ।”

ସନ୍ଧ୍ୟା ୭ଟାରେ ବାରିକ୍ସ ପଡ଼ିଆରେ ୪୦ ହଜାର ଲୋକଙ୍କ ଉପସ୍ଥିତିରେ ବିରାଟ ଜନସଭା ହେଲା । ଗୋପବନ୍ଧୁ ବାବୁ ମହାତ୍ମାଙ୍କ ପରିଚୟ ଦେବାକୁ ଯାଇ କେତୋଟି କଥା ମଧ୍ୟରେ କହିଲେ—“ବର୍ତ୍ତମାନ ଅସହଯୋଗ କାଳରେ ସ୍ୱରାଜ୍ୟ ଆମ୍ଭମାନଙ୍କର ଏକମାତ୍ର ଲକ୍ଷ୍ୟ । ଓଡ଼ିଆ ତେଲଙ୍ଗା ବିବାଦ ପରି ଏକ ଗୃହ ଛିଦ୍ରକୁ ଆମ୍ଭମାନଙ୍କୁ ଶୀଘ୍ର ଦୂରେଇ ଦେବାକୁ ହେବ । ଆସନ୍ତା ସୂର୍ଯ୍ୟ ଉଦୟ ପୂର୍ବରୁ ହୃଦୟକୁ ନିର୍ମଳ ରଖି ଆନ୍ଧ୍ର ଉତ୍କଳୀୟ ଲୋକମାନେ ମହାତ୍ମାଙ୍କ ନିର୍ଦ୍ଦେଶକୁ ଶିରୋଧାର୍ଯ୍ୟ କରନ୍ତୁ—ଏତିକି ମୋର ବିନୀତ ନିବେଦନ । ମହାତ୍ମାଙ୍କ ବ୍ରହ୍ମପୁର ଅବସ୍ଥିତି ଗଞ୍ଜାମ ପକ୍ଷରେ ଏକ ମାହେନ୍ଦ୍ର ବେଳା । ଏଠାରୁ ସମସ୍ତେ ଦୃଢ଼ସଂକଳ୍ପ ହୋଇ ଏ ବର୍ଷ ଭିତରେ ସ୍ୱରାଜ୍ୟ ପାଇବାକୁ ମନସ୍ଥ କରି

ଯାଆନ୍ତୁ । ପୁଣି ବେଲ ଯଡ଼ଏ, ଯେ ଯାହା ଚଳକ ସ୍ୱରାଜ୍ୟ ପାଣ୍ଡିକୁ ଦେବାର ଦଥନ୍ତୁ ।”

ମହାତ୍ମା ଗାନ୍ଧି ଏ ସନ୍ଧରେ ସଙ୍କୀର୍ଣ୍ଣ ପ୍ରାଦେଶିକତା ଭୁଲି ମହାଭାରତୀୟ ଭାବ ପୋଷଣ କରିବା ନିମନ୍ତେ ଆହ୍ୱାନ କରିଥିଲେ । ସାହସ ଧରିବାକୁ ଓ ବିଶ୍ୱାସ ରଖିବାକୁ ସମସ୍ତଙ୍କୁ ଉପଦେଶ ଦେଲେ । ପୁଣି କହିଲେ, “ଦରିଦ୍ର ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଉତ୍କଳରେ ଘରକରି ରହି ଲୋକଙ୍କ ସେବା କରିବା ତାଙ୍କର ଇଚ୍ଛା; କିନ୍ତୁ ଭଗବାନ ତାହା କରେଇ ଦେଉ ନାହାନ୍ତି । ମୁଁ ଉତ୍କଳକୁ ଛାଡ଼ି ଯାଉଥିଲେ ମଧ୍ୟ ତାଙ୍କୁ ଭୁଲିପାରିବି ନାହିଁ ।

## ଅରଟ ଓ ସ୍ୱାବଲମ୍ବନଶୀଳତା

୧୯୨୧ ମସିହା । ବିଦେଶୀ ବର୍ଜନ ଓ ଅସହଯୋଗ ଆନ୍ଦୋଳନର ବାର୍ତ୍ତା ଭାରତର ପୁରପଲ୍ଲୀରେ ବିପୁଳ ବେଗରେ ଖେଳିଗଲା । ମହାତ୍ମାଜୀ ଅରଟକୁ ଜାତୀୟ ଅର୍ଥନୀତିର ପ୍ରଧାନ ଆୟୁଧ ଭାବରେ ଉତ୍ତୋଳିତ କଲେ । ହଜାର ହଜାର ଗାଣ୍ଠି ବିଦେଶୀ ସୂତା ଓ ଲୁଗା ଜାହାଜରେ ପଡ଼ିରହିଲା । ଜାତୀୟ ନେତାମାନେ ସଭାସମିତିରେ ସୂତାକଟାକୁ ଏକ ଯଜ୍ଞ କର୍ମ ଭାବରେ ସାଧାରଣ ଭାରତବାସୀଙ୍କ ଆଗରେ ଥୋଇଲେ । ଗାନ୍ଧିଙ୍କ ମନରେ ଏ ଶ୍ରେଷ୍ଠ କଥାଟି ଏକ ମହାନ୍ ପରିକଳ୍ପନା ଭାବରେ ସ୍ୱପ୍ନାୟିତ ହୋଇ ଉଠିଥିଲା । ବିଦେଶୀ ଅର୍ଥନୀତି ଭୁଷୁଡ଼ି ପଡ଼ିବ, ଲୋକେ ସ୍ୱାବଲମ୍ବୀ ଓ ଆତ୍ମନିର୍ଭରଶୀଳ ହେବେ । ଘରେ ଘରେ ଅରଟ ଓ ଖଦଡ଼ ଲୁଗାର ପ୍ରଚଳନ ହେବ ।

ଅସହଯୋଗ ଆନ୍ଦୋଳନର ମହାନ୍ ଦୀକ୍ଷା ବରଣ କରି ଗୋପବନ୍ଧୁ ଭାରତୀୟ ଜାତୀୟ କଂଗ୍ରେସ ମଣ୍ଡପରୁ ଫେରି ଆସିଥିଲେ । ଅବଶ୍ୟ ସେତେବେଳେ ଏ ସ୍ୱରାଜ୍ୟ ଆନ୍ଦୋଳନ ନେଇ ମଧୁବାବୁଙ୍କ ସହିତ ତାଙ୍କର କେତେକ ମତଦ୍ୱୈଧ ହୋଇଥିଲା । ତଥାପି ସେ ନିଜ ଚିନ୍ତାରେ ଅଟଳ ରହିଲେ । ନିଜଠାରେ ଓ ଗୃହରେ ସେ ଏ ମହାନ୍ ଅର୍ଥନୈତିକ ବିଶ୍ୱାସର ପରୀକ୍ଷା କରିବାକୁ ଲାଗିଲେ । ଗୋପବନ୍ଧୁ ବାବୁ ଦୁଇଟି ଅରଟ ଆଣି ତାଙ୍କ ଦୁଇ ଝିଅଙ୍କୁ ସୂତା କାଟିବାକୁ ଦେଇଥାନ୍ତି । ସେମାନେ ସୂତା କାଟିବାକୁ କାଳେ ଅରାଜି ହେବେ ସେଥିପାଇଁ ତାଙ୍କୁ ବରାବର ସୂତା କାଟିବା ବିଷୟରେ ବୁଝାଉଥା’ନ୍ତି ।

ଥରେ ତାଙ୍କ ନିଜ ଝିଅଶାଶୁ-ଜ୍ୱାଇଁ ଖୁବ୍ ସଫା ସୁତୁ କଲିକୁଣା ଧୋତିଟିଏ ପିନ୍ଧି ତାଙ୍କୁ ନମସ୍କାର କଲେ । ଗୋପବନ୍ଧୁ ବାବୁ କହିଲେ—“ଦେଖ, ଏ ସବୁ ଲୁଗାପଟା କାଢ଼ିପକା, ଲଙ୍ଗଳ କାନ୍ଧରେ ହାତ ପକାଅ ।”

ସମସ୍ତେ ବିସ୍ମିତ ହେଲେ, କାରଣ ସେତେବେଳେ ଓ ଆଜି ବି ବ୍ରାହ୍ମଣ ସମାଜରେ ଏ

ପ୍ରଥା ପ୍ରଚଳିତ ନଥିଲା ବା ହୋଇନାହିଁ । ଗୋପବନ୍ଧୁଙ୍କ ଏ ଉତ୍ତରରେ ଝିଅଶାଶୁମାନେ ଅତି ଲଜ୍ଜିତ ଓ ସଙ୍କୁଚିତ ହୋଇ ପଡ଼ିଲେ । ଗୋପବନ୍ଧୁ ତାଙ୍କୁ ଗୋଟିଏ ଅରଟ କିଣି ନିଜେ ସୂତା କାଟି ଲୁଗା ପିନ୍ଧିବାକୁ ଉପଦେଶ ଦେଲେ ।

ଆଉଥରେ ନିଜ ସାନ ଜ୍ୱାଇଁ ନାରାୟଣ ମିଶ୍ରେ ପଢ଼ାପାଇଁ ଟଙ୍କା ମାଗିବାକୁ ଆସିଥାନ୍ତି । ଗୋପବନ୍ଧୁ କହିଲେ—"ଆଉ ମୁଁ ଟଙ୍କା ପଇସା ଦେଇପାରିବି ନାହିଁ । ତୁମେ ଏଣିକି ଆଳୁ ଓ ସାରୁ ମୁଣ୍ଡରେ ଧରି ବଜାରରେ ବୁଲି ବିକାବିକି କର ।"

ଏଥିରେ ସାନ ଜ୍ୱାଇଁ ନାରାଣ ମିଶ୍ରେ ବଡ଼ ଆହତ ହେଲେ । ଅନେକ ଦିନ ଯାଏ ଆଉ ଶ୍ୱଶୁରଙ୍କୁ ଦେଖା କରିନଥିଲେ । ହୁଏତ ମନେ ମନେ ଅପମାନରେ ଅନେକ ରାଗିଥିବେ ।

ଗୋପବନ୍ଧୁ ପରାମର୍ଶ ଦେଲେ—"ଅରଟ କିଣି ନିଜ ଲୁଗା ନିଜେ ବୁଣ, ଆତ୍ମନିର୍ଭରଶୀଳ ହୁଅ । ପରମୁଖାପେକ୍ଷିତା ଜୀବନ ପାଇଁ ଏକ କଳଙ୍କର ବ୍ୟାଧି ।" କଠୋର କର୍ମ ନିକଟରେ ସେ ଆପଣା ପରର ବାଛ ବିଚାର ରଖି ନଥିଲେ । ସମସ୍ତଙ୍କ ପାଇଁ ତାଙ୍କର ସମାନ ଉପଦେଶ—"ସୂତା କାଟ, ନିଜ ଲୁଗା ନିଜେ ବୁଣ, ସ୍ୱାବଲମ୍ବନଶୀଳ ହୁଅ ।"

ଗୋପବନ୍ଧୁ ନିଜ ଝିଅ ବୁଢ଼ୀଙ୍କୁ ବରାବର କହୁଥିଲେ, "କିଛି କାମ ନକରି ଖାଇବା ପାପ, ଅନ୍ୟାୟ । ବିନାଶ୍ରମରେ ରୋଜଗାର କରିଥିବା ଧନ ବିଷଠାରୁ ଆହୁରି ଭୟଙ୍କର ।" ଅତି ପିଲାବେଳୁ ମଧ୍ୟ ତାଙ୍କର ଏହିପରି ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ପ୍ରକାଶ ପାଇଲା ।

ଗୋପବନ୍ଧୁଙ୍କ ଦୁଇଝିଅ ଅତି ଗରିବ ଘରେ ବିଭା ହୋଇଥିଲେ । ଶାଶୁଘରକୁ ଆସି ସାରିବା ପରେ ସାନଝିଅ କେତେଥର ଦେଖା ନନାଙ୍କ ପାଖକୁ ଚିଠି ଲେଖିଥାନ୍ତି—"ନନା, ବଡ଼ ଅଭାବରେ ମୁଁ ଅଛି, କିଛି ଟଙ୍କା ପଠାଇବ ।"

ଗୋପବନ୍ଧୁ ଉତ୍ତର ଦେଲେ—"ଦେଶର ଲୋକେ ଖାଇବାକୁ ପାଉନାହାନ୍ତି । ସବୁଆଡ଼େ ଧୋଇ ମରୁଡ଼ି, ଉତ୍କଟ ଅଭାବ ଲାଗି ରହିଛି । ସେତେବେଳେ ତୋ ଅଭାବ ବଡ଼ କଥା ନୁହେଁ । ଆମ ଦେଶର ସ୍ତ୍ରୀଲୋକମାନେ ପଇସାପତ୍ର କାରବାର କରନ୍ତୁନି । ଶେଷକୁ ଲେଖିଥାନ୍ତି—କେତେକେତେ ବିପତ୍ତି ନ ପଡ଼ିଲା, କୃଷ୍ଣ ଥିବାରୁ କିଛି ନ ବାଧିଲା ।

ସବୁ ଚିଠିରେ ଏହିପରି ଧର୍ମ ମମତାପୂର୍ଣ୍ଣ ଉପଦେଶ । ନିଜ ଦୁଃଖକୁ ବନ୍ଧୁ ପଦପାତରେ ଭସାଇଦେଇ ନିର୍ଲିପ୍ତ ହେବାର ଆକୁଳ ଅନୁଯୋଗ । ସେଥିରେ ଶାନ୍ତି ଅଛି, ଆନନ୍ଦ ଅଛି । ଦୁଃଖ ଅଳୀକ; ମଣିଷ ପାଇଁ ଏକ ପରୀକ୍ଷା ମାତ୍ର ।

ମା' ଚିଉଣ୍ଡ ଅଳଅଳୀ ସାନଝିଅ ପାଇଁ ଯେଉଁ ଭାବ, ପରିଚିତ ଓ ଅପରିଚିତ ଏ ଦେଶର ସମସ୍ତ ସନ୍ତାନ ପାଇଁ ସେଇଭାବ—'ନିଜ ଦୁଃଖ ନିଜେ ମୋଚନ କରିବାର ନ୍ୟାୟପୂର୍ଣ୍ଣ ପନ୍ଥା ଧର । ଘରେ ଘରେ ସୂତାକାଟ, ବିଦେଶୀ ଜିନିଷ ପରିହାର କର ।'

ଆଉ ଦିନକର କଥା । ସତ୍ୟବାଦୀରେ ଠାଏ ଭଙ୍ଗଖିଆ ଓ ଗଞ୍ଜପା ଖେଳା ମୁରବି ସ୍ଥାନୀୟ ଲୋକେ ଠୁଆହୋଇଥିଲେ । ସେମାନଙ୍କ ଭିତରେ କୌଣସି କାରଣରୁ ଉତ୍ତେଜନା ପ୍ରକାଶ ପାଇଥାଏ । ସେମାନଙ୍କୁ ଦେଖି ଓ ଶିଖି ପିଲାମାନେ ବି ଟେଲା ଟେଲା ଖେଳ

ଯାଇବା ଅଭ୍ୟାସ କରୁଥାନ୍ତି । ବସ୍ତୁତଃ ପୁରୀ ସହର ଓ ତା' ଆଖପାଖ ଗ୍ରାମାଞ୍ଚଳରେ ଏହା ଏକ ନିତିଦିନିଆ ବ୍ୟାପାର ।

ଗୋପବନ୍ଧୁ କହିଲେ—"ଆପଣମାନେ ଠିକେ ଭାବନ୍ତୁ । ଦେଶର ଏ ଯେଉଁ ଅବସ୍ଥା ସେଥିରେ ଏତେ କାମ ରହିଛି ଯେ ନିଃଶ୍ୱାସ ମାରିବାକୁ ତର ନାହିଁ । ସବୁ ଦିନେ କ'ଣ ମଣିଷର ବେଉସା ହୋଇଥିବ ଖାଲି ଭାଙ୍ଗ ବାଟି ପିଇବା ଆଉ ଗଞ୍ଜପା ଖେଳିବା ? ନା ଆଉ କିଛି କାମଧାମ ଅଛି ? ସେତିକି ସମୟ ଅରଟରେ ସୂତା କାଟିଲେ ହୁଅନ୍ତା ନାହିଁ ?" ଏକଥା ଶୁଣି କେହି ଜଣେ ଉପହାସ ବି କଲା ।

ତାପରେ ଆପଣେ ସମାଲୋଚନା ଓ ଉପହାସକୁ ଖାତିର ନକରି ନିଜ କଥା ପ୍ରତିଷ୍ଠାପିତ କରି ଚାଲିଲେ । ସ୍ୱାଧୀନତା ସଂଗ୍ରାମର ରଥ ଚକ ଓଡ଼ିଶାରେ ଗଡ଼ିଚାଲିଲା । ଗୋପବନ୍ଧୁ ସାରଥି ପରି ସେ ରଥର ଲଗାମ ଭିଡ଼ି ଧରିଲେ । ଘରୁ ଗ୍ରାମକୁ, ଗ୍ରାମରୁ ସହରକୁ, ସହରରୁ ସମଗ୍ର ଜନପଦକୁ ସେ ମହାରଥ ଗଡ଼ିଚାଲିଲା । ମହାତ୍ମା ଗାନ୍ଧିଙ୍କ ମନ୍ତ୍ରଦୀକ୍ଷାରେ ମରୁଆଳି ବାଙ୍ଗର ମଣିଷ ଗୋପବନ୍ଧୁ ସବୁଠାରେ ସବାଗ୍ରେ ବରଜିତ ହେଲେ । ନୂତନ ଦୀପ୍ତିରେ ସେ ଦେହ ଓ ଉନ୍ନତ କପାଳ ଦେଦୀପ୍ୟମାନ ହୋଇଉଠିଥିଲା ।

## ଅସହଯୋଗ ଓ ମଧୁବାବୁ

ମଧୁବାବୁ ଏହି ଅସହଯୋଗ ଆନ୍ଦୋଳନରୁ ନିଜକୁ ଦୂରେଇ ରଖିଥିଲେ । କାରଣ ଏହି ସ୍ୱରାଜ୍ୟ ସଂଗ୍ରାମ ମୁଖ୍ୟତଃ ଜାତୀୟ କଂଗ୍ରେସ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ମଧୁବାବୁଙ୍କ ମନ ଓ ପ୍ରାଣରେ ଏ କଂଗ୍ରେସ ପ୍ରତି ଉତ୍କଳ ସମ୍ମିଳନୀ ଆରମ୍ଭ କାଳରୁ ଅବିଶ୍ୱାସ ଜନ୍ମିଥିଲା । ତା'ର ସବୁଠାରୁ ବଳି ବଡ଼ କାରଣ ହେଲା···୧୯୦୩ ମସିହାରେ ମାନ୍ଦ୍ରାଜ ସହରରେ ଶ୍ରୀ ଲାଲ ମୋହନ ଘୋଷଙ୍କ ସଭାପତିତ୍ୱରେ କଂଗ୍ରେସର ଯେଉଁ ବାର୍ଷିକ ଅଧିବେଶନ ବସିଥିଲା ସେଥିରେ ଗଞ୍ଜାମ ଓ ଭିଶାଖାପାଟଣା ଜିଲ୍ଲା ମାନ୍ଦ୍ରାଜରୁ ଆସି ଓଡ଼ିଶାରେ ମିଶିବା କଳ୍ପନା ବିରୁଦ୍ଧରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହା ଶୁଣି ମଧୁବାବୁ କଂଗ୍ରେସ ସହିତ ଓଡ଼ିଶାର ସମ୍ପର୍କ ଛିଡ଼ାଇ ଦେଇ ଓଡ଼ିଆ ଜାତିର ସ୍ୱତନ୍ତ୍ର ଗୌରବ ଉଦ୍ଧାର ପାଇଁ 'ଉତ୍କଳ ସମ୍ମିଳନୀ' (୧୯୦୩) ଗଢ଼ିଲେ । ସେ ସମୟରେ ବଡ଼ଲାଟଙ୍କ ଶେଡିଇଛା ସତ୍ତ୍ୱେ କଂଗ୍ରେସର ପ୍ରସ୍ତାବ ଯୋଗୁ ଗଞ୍ଜାମ ଓ ଭିଶାଖାପାଟଣା ମାନ୍ଦ୍ରାଜ ପ୍ରଦେଶ ସହିତ ମିଶି ରହିଲା; କିନ୍ତୁ ଚକ୍ରଧରପୁର ସମ୍ମିଳନୀ (୧୯୨୦)ରେ ଭାରତର ସ୍ୱାଧୀନତାକୁ 'ଉତ୍କଳ ସମ୍ମିଳନୀ'ର ମୁଖ୍ୟ ଲକ୍ଷ୍ୟ ଭାବରେ ଗ୍ରହଣ କରା ନଆ ଯିବାରେ ୧୮ ବର୍ଷ ଧରି ମଧୁବାବୁଙ୍କ ନେତୃତ୍ୱରେ ଚାଲି ଆସୁଥିବା ଓଡ଼ିଶାର ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରସ୍ତାବ ଭିନ୍ନ ରୂପ ଧାରଣ କଲା । ଓଡ଼ିଶାର ଏକ ସର୍ବବୃହତ୍ତ ଦାବୀ ଏହାଦ୍ୱାରା ଶିଥିଳ ହୋଇଗଲା ବୋଲି ମଧୁବାବୁ ମନେକଲେ ।

ଓଡ଼ିଶାକୁ ରାଜନୈତିକ ସ୍ୱାତନ୍ତ୍ର୍ୟ ତଥା ଅର୍ଥନୈତିକ ସ୍ୱଚ୍ଛଳତା ଆଣିଦେବା ମଧୁବାବୁଙ୍କର ଦୁଇଟି ମୁଖ୍ୟ ପରିକଳ୍ପନା ଥିଲା । ଏକ ଅନୁନ୍ନତ ଅଞ୍ଚଳ ପକ୍ଷରେ ନିକଟବର୍ତ୍ତୀ ଲକ୍ଷ୍ୟ ହାସଲ ନ ହୋଇଥିଲେ ଭାରତ ମହାଜାତିର ଲକ୍ଷ୍ୟରେ ଆତ୍ମହୁତି ଦେବା ଏକ ଅବାଞ୍ଛିତ ବ୍ୟାପାର ବୋଲି ମଧୁବାବୁ ଗ୍ରହଣ କରି ନେଇଥିଲେ । ଏହାଦ୍ୱାରା ମୂଳ ଲକ୍ଷ୍ୟ ଚହଲି ଯିବାର ସମ୍ଭାବନା ସେ ଦେଖିଥିଲେ ।

ଏହି ସମୟରେ ଗୋପବନ୍ଧୁଙ୍କ ପ୍ରେରଣାରେ ସ୍ୱରାଜ୍ୟ ସଂଗ୍ରାମ ଓ ଅସହଯୋଗ ଆନ୍ଦୋଳନରେ ଝାସଦେଇଥିବା ଯୁବକମାନେ ମଧୁବାବୁଙ୍କ ପ୍ରତି ଘୋର ବିରକ୍ତି ପ୍ରକାଶ କରିଥିଲେ । ଏପରିକି ତାଙ୍କୁ ଭେଟିଥିବା କଲେଜ ଛାତ୍ରମାନଙ୍କ ମତ ସହିତ ସେ ଆଦୌ ଏକମତ ହୋଇପାରୁନଥିଲେ । ବିଶେଷତଃ ବିହାର-ଓଡ଼ିଶା ଆସେମ୍ବ୍ଲି ପାଇଁ ୧୯୨୦ ମସିହା ଶେଷ ଭାଗରେ ଯେଉଁ ନିର୍ବାଚନ ହୋଇଥିଲା ସେଥିରେ ନିଯୁକ୍ତ ହେଲା ପରେ ମଧୁବାବୁଙ୍କୁ ମନ୍ତ୍ରୀପଦ ଦିଆଯାଇଥିଲା । ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ୧୯୨୧ ମସିହା ଆଦ୍ୟରେ କଟକ ସହରର ତତ୍କାଳୀନ ବହୁ ବିଶିଷ୍ଟ ବ୍ୟକ୍ତି—ଶ୍ରୀ ନିମାଇଁ ଚରଣ ମିତ୍ର, ପାରେଶ୍ୱର ମହାନ୍ତି, ବିଚିତ୍ରାନନ୍ଦ ଦାସ, ଭିକାରି ଚରଣ ପଟ୍ଟନାୟକ, ବ୍ରଜସୁନ୍ଦର ଦାସ ପ୍ରମୁଖଙ୍କ ସ୍ୱାକ୍ଷରରେ ଏକ ପ୍ରଚାର-ପତ୍ର ବଣ୍ଟାଯାଇଥିଲା । କଟକ ଟାଉନହଲରେ ଏ ସଭା ଆୟୋଜିତ ହୋଇଥାଏ । ଅସହଯୋଗ ଆନ୍ଦୋଳନ କାଳରେ କେତେକ ସ୍ୱରାଜ୍ୟକାମୀ ଯୁବକଙ୍କ ମନରେ ଏପରି ଆୟୋଜନ ବହୁ ପ୍ରତିକ୍ରିୟା ସୃଷ୍ଟି କରିବା ସ୍ୱାଭାବିକ । ସେମାନେ 'ଅର୍ଚ୍ଚନା ନା ଶୋଚନା' ଶିରୋନାମାରେ ଏକ ପ୍ରଚାରପତ୍ର ଲେଖି ସହରରେ ବାଣ୍ଟିଲେ ଓ ସଭା ପୂର୍ବରୁ ଧୂନ ଦେଇ ମଧୁବାବୁଙ୍କର ଏକ ମାଟି ଶବକୁ ନେଇ ଟାଉନହଲ ନିକଟରେ ପୋଡ଼ିଥିଲେ । ସେମାନେ ଟାଉନହଲର ସବୁ ସ୍ଥାନ ଦଖଲ କରିନେଲେ । ଫଳରେ ଉଦ୍ୟୋକ୍ତା ତଥା ସହରର ବିଶିଷ୍ଟ ବ୍ୟକ୍ତିମାନେ ମଧୁବାବୁଙ୍କୁ ଘୋଡ଼ାଗାଡ଼ିରେ ଆଣି ପହଞ୍ଚିଲାବେଳକୁ ବସିବାକୁ ସ୍ଥାନ ଖାଲି ନଥିଲା । ସମ୍ବର୍ଦ୍ଧନା ସଭା ବନ୍ଦ ରହିଲା । ଏହି ତରୁଣମାନଙ୍କ ମଧ୍ୟରେ ସେତେବେଳେ ଭାଗୀରଥି ମହାପାତ୍ର ଓ ପଦ୍ମମଣି ମଙ୍ଗରାଜ ପ୍ରଧାନ ଉଦ୍ୟୋକ୍ତା ଥିଲେ । ପରେ ଅନେକ ଦିନ ଧରି ମଧୁବାବୁ ଆଉ କୌଣସି ସମ୍ବର୍ଦ୍ଧନା ସଭାରେ ଯୋଗ ଦେଉନଥିଲେ । ସେ ସବୁବେଳେ ଅସହଯୋଗକୁ ଉପଲକ୍ଷ୍ୟ କରି କହୁଥିଲେ— "ମାଙ୍କଡ଼ ଗୁମ୍ଫ ଗଛରେ ବସି ଅମ୍ବ ଖାଇଯାଉଛି । ତାକୁ ଅନୁନୟ କରି ହାତଯୋଡ଼ି କହିଲେ ସେ ଉଠିଯିବ ନାହିଁ । ବାଡ଼ିଖଡ଼ା ଧରି ଦ' ବାଡ଼ି କଷିଦେଲେ ସେ ବଳେ ବଳେ ଗଛ ଛାଡ଼ି ଚାଲିଯିବ । ଏ ଅସହଯୋଗରେ ମୋର ପ୍ରତ୍ୟୟ ନାହିଁ ।" ସେ ଅରବିନ୍ଦ ଘୋଷ, ଚିତ୍ତରଞ୍ଜନ ଆଦିଙ୍କ ଚିନ୍ତାଧାରାକୁ ସମର୍ଥନ କରୁଥା'ନ୍ତି ।

ଏହି ବର୍ଷ ମାର୍ଚ୍ଚ ମାସ ବେଳକୁ ଗାନ୍ଧିଜୀ ଓଡ଼ିଶାକୁ ଆସିବା ପୂର୍ବରୁ କଟକ ସହରରେ ବ୍ରଜସୁନ୍ଦର ଦାସଙ୍କ ସଭାପତିତ୍ୱରେ ଏଥିପାଇଁ ପ୍ରାରମ୍ଭିକ ଆଲୋଚନା ହୋଇଥିଲା । ଗାନ୍ଧିଙ୍କୁ ଓଡ଼ିଶା ଆଣିବା ପାଇଁ ଏ ସଭା ସ୍ଥିର କରି ମଧୁବାବୁଙ୍କୁ ପୂର୍ଣ୍ଣ ଦାୟିତ୍ୱ ଦେବାର ନିଷ୍ପତ୍ତି

କରିଥିଲା । ବ୍ରଜସୁନ୍ଦର ଦାସଙ୍କ ଠାରୁ ନେଇ ଶେଷକୁ ଯଦୁମଣି ମଙ୍ଗରାଜ, ଭାଗୀରଥି ମହାପାତ୍ର ପ୍ରମୁଖ କେତେଜଣ ତରୁଣ ବ୍ୟକ୍ତି ମଧୁବାବୁଙ୍କୁ ଭେଟିଥିଲେ । ଅଭ୍ୟର୍ଥନା ସଭାର ସଭାପତି ଦାୟିତ୍ୱ ଗ୍ରହଣ କରିବାକୁ ସେମାନେ ଅନୁରୋଧ କରିଥିଲେ; କିନ୍ତୁ ମଧୁବାବୁ ଏଥିରେ ଅତ୍ୟନ୍ତ ବିରକ୍ତ ହୋଇ ଉଠିଲେ । ମୋଟ ଉପରେ ସେ ଅସହଯୋଗ ଆନ୍ଦୋଳନ ଓ ଓଡ଼ିଶାକୁ ଗାନ୍ଧି ଆସି ନେତୃତ୍ୱ ବିସ୍ତାର କରିବା ସପକ୍ଷରେ ନଥିଲେ ।

ତେଣୁ ୧୯୨୧ ମାର୍ଚ୍ଚ ମାସରେ ଗାନ୍ଧି ଓଡ଼ିଶା ଆସିଲାବେଳକୁ ମଧୁବାବୁ ପାଟଣାରେ ରହିଥିଲେ ଓ ଗୋପବନ୍ଧୁ ହିଁ ମହାତ୍ମା ଗାନ୍ଧିଙ୍କୁ ସମସ୍ତ ସଭାରେ ସ୍ୱାଗତ କଣାଇଥିଲେ । ଅସହଯୋଗର ସୁଅରେ ଭାସିଯିବାକୁ ଓଡ଼ିଶା ସେତେବେଳେ ଅପେକ୍ଷା କରିଥିଲା । ତରୁଣ କଂଗ୍ରେସ ଯୁବକମାନଙ୍କ ଉନ୍ମାଦନା ବନ୍ଦ ହେବାର ନୁହେଁ । ଏକ ଉନ୍ମୁଖ ସ୍ରୋତ ବିରୁଦ୍ଧରେ ପ୍ରତିକୂଳତା ସେତେବେଳର ପରିସ୍ଥିତିରେ ଏକ ଅଳୀକ ବ୍ୟାପାର ଥିଲା । ଗୋପବନ୍ଧୁ ଚକ୍ରଧରପୁର "ଉତ୍କଳ ସମ୍ମିଳନୀ"ରେ ନେତୃତ୍ୱ ନେଇଥିଲେ । ଅସହଯୋଗର ନେତୃତ୍ୱ ମଧ୍ୟ ଆପେ ଆପେ ତାଙ୍କ ହାତକୁ ଆସିଗଲା । ମଧୁବାବୁ ନିଜର ଦୃଢ଼ ଚିନ୍ତାଧାରାରେ ଅଟଳ ରହିଲେ; ସରକାରଙ୍କ ସହିତ ସହଯୋଗ କଲେ । ଓଡ଼ିଶାର ସ୍ୱାର୍ଥକୁ ବଳିଦେଇ ସେ ଏହି ମହାଭାରତୀୟ ଉଦ୍‌ଯୋଗ ପର୍ବରେ ଭାସିଯିବାକୁ ଚାହିଁ-ନଥିଲେ । ସହଜେ କାତୀୟ କଂଗ୍ରେସ ପ୍ରତି ଆଗରୁ ତାଙ୍କର ଅନାସ୍ଥା ଜନ୍ମିଥିଲା । ତେଣୁ ଏହି ଅସହଯୋଗ ଆନ୍ଦୋଳନ ପରିବେଶରେ ଗୋପବନ୍ଧୁ ହିଁ ଓଡ଼ିଶାର ରାଜନୈତିକ ନେତା ଭାବରେ ଅଧିକ ସମ୍ମାନିତ ହେଲେ । ତାଙ୍କ ନିର୍ଦ୍ଦେଶ ଓ ଇଙ୍ଗିତକୁ ସମଗ୍ର ଓଡ଼ିଶା ଅପେକ୍ଷା କରି ରହିଲା ।

## ସତ୍ୟାଗ୍ରହ ସପ୍ତାହ

ମହାତ୍ମା ଗାନ୍ଧିଙ୍କ ଆହ୍ୱାନ କ୍ରମେ ତା ୬ । ୪ । ୨୧ରୁ ସପ୍ତାହବ୍ୟାପୀ ଭାରତଯାକେ ହରତାଳ ପାଳିତ ହେଲା । କାୟିକ ଓ ମାନସିକ ଶୁଦ୍ଧି ସାଧନାଦ୍ୱାରା ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଗାନ୍ଧିଙ୍କର ଏ ଆହ୍ୱାନ ସମଗ୍ର ଭାରତରେ ପ୍ରତିଧ୍ୱନିତ ହୋଇଉଠିଲା । ଦୋକାନ, ହାଟ, ବଜାର ସବୁ ବନ୍ଦ ରହିଲା । ସାଧାରଣ ଜୀବନଯାତ୍ରା ସତେ ଯେପରି ହଠାତ୍ ନିସ୍ତବ୍ଧ ହୋଇ ଅଟକି ଯାଇଥିଲା । ଓଡ଼ିଶାରେ କୌଣସି କୌଣସି ସହରରେ ହରତାଳ କରାଇ ନଦେବା ପାଇଁ ପୋଲିସ ତରଫରୁ ପ୍ରବଳ ଉଦ୍ୟମ ହୋଇଥିଲା; ତଥାପି ଭାରତଯାକେ ପୂର୍ଣ୍ଣ ହରତାଳ ପାଳିତ ହେଲା ।

ଏହାର ପୂର୍ବଦିନ ସନ୍ଧ୍ୟା ୫ ଘଣ୍ଟାରେ କାଠଯୋଡ଼ି ବାଲିରେ ବିରାଟ ଜନସଭା ହୋଇଥିଲା । ଏଠାରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ତରଫରୁ ପଣ୍ଡିତ ଗୋପବନ୍ଧୁ

ହରତାଳ ପାଇଁ ଆହ୍ୱାନ ଦେଇଥିଲେ । ଶେଷରେ ସ୍ୱରାଜ୍ୟାଶ୍ରମବାସୀ ଓ ଅନ୍ୟମାନେ ମିଳି ରାତି ୧୧ଟା ପର୍ଯ୍ୟନ୍ତ ସଂକୀର୍ତ୍ତନ ସହ ନଗର ପରିକ୍ରମା କରିଥିଲେ । ୬ ତାରିଖ ସନ୍ଧ୍ୟାରେ ପୁଣି କାଠଯୋଡ଼ି ବାଲିରେ ବିରାଟ ଜନସଭା ଅନୁଷ୍ଠିତ ହେଲା । ଲୋକେ କାଣିପାଣି ଧାରଠାରୁ ବନ୍ଧ ପର୍ଯ୍ୟନ୍ତ ପୂରି ରହିଥିଲେ । ଦଳକୁ ଦଳ ସଂକୀର୍ତ୍ତନ କରି ସଭାସ୍ଥଳକୁ ଯାଉଥାଆନ୍ତି । ପଣ୍ଡିତ ଗୋପବନ୍ଧୁ ତାଙ୍କ ଉଚ୍ଛ୍ୱସିତ ବକ୍ତୃତା ଶେଷରେ ଜାତୀୟ କଲ୍ୟାଣ ଓ ମୁକ୍ତି ନିମନ୍ତେ ସଭାସ୍ଥଳରେ ହୃଦୟ ଖୋଲି ଦୀର୍ଘ ଉପାସନା କରିଥିଲେ । ସେ ଉପାସନା ଦେଖିବାର କଥା । ଗୋପବନ୍ଧୁଙ୍କ ଦେହ ଓ ମୁହଁରୁ ଜାତିପ୍ରେମର ଉଜ୍ଜ୍ୱଳ ଜ୍ୟୋତି ନିର୍ଗତ ହେଉଥିଲା । ସଭା ଭଙ୍ଗ ପରେ ପୁଣି ନଗର ସଂକୀର୍ତ୍ତନ ହେଲା । ଏପରି ଉତ୍ସାହ ଆଉ ଏକତା କଟକ ସହରରେ ଆଗରୁ ଦେଖାଯାଇନଥିଲା ବୋଲି ଲୋକେ କହନ୍ତି ।

ପୁରୀ, ବାଲେଶ୍ୱର, ସମ୍ବଲପୁର—ସବୁଆଡ଼େ ଏ ହରତାଳ ପାଳିତ ହୋଇଥିଲା । ଏପରିକି ବିଚ୍ଛିନ୍ନ ଅଞ୍ଚଳରେ ଏହାର ଆବାଜ୍ ବେଶ୍ ଅନୁଭୂତ ହୋଇଥିଲା । ନୂଆ ଉନ୍ମାଦନାରେ ଲୋକେ ମାତି ଉଠିଲେ । ସବୁଆଡ଼େ ନୂତନ ସ୍ପନ୍ଦନର ଏକ ବାତ୍ୟା ପ୍ରବଳ ବେଗରେ ପ୍ରବାହିତ ହେବାକୁ ଲାଗିଲା । ଗୋପବନ୍ଧୁ ସହରରୁ ସହରକୁ, ଗ୍ରାମରୁ ଗ୍ରାମାନ୍ତରକୁ, ନଗରରୁ ଜନପଦକୁ ଯାଇ ଲୋକଙ୍କ ମନରେ ମୁକ୍ତି ସଂଗ୍ରାମର ଆଗ୍ନେୟ ଆକାଙ୍କ୍ଷା ଜାଳିଦେଲେ । ଏ ସମୟରେ ଓଡ଼ିଶାସାରା ତାଙ୍କୁ ଅନବରତ ବୁଲିବାକୁ ହେଉଥିଲା । ପୁଣି 'ଭାରତ ସ୍ୱରାଜ୍ୟ ସେବକ ସଂଘ' ଗଠନ କରିବାର ଗୁରୁ ଦାୟିତ୍ୱ ତାଙ୍କ ସହିତ ଆଉ କେତେଜଣ ନେତାଙ୍କ ଉପରେ ପଡ଼ିଥିଲା । ଅନ୍ତତଃ ବର୍ଷକ ପାଇଁ ସ୍କୁଲ, କଲେଜ, ଚାକିରି ଛାଡ଼ି ଆସୁଥିବା ଅଠର ବର୍ଷରୁ ଊର୍ଦ୍ଧ୍ୱ ଯୁବକ ଯୁବତୀଙ୍କୁ ଏହି ସଂଘରେ ନିଆଯାଉଥିଲା ଓ ମୁକ୍ତି ସଂଗ୍ରାମ ପାଇଁ ତାଲିମ ଦିଆଯାଉଥିଲା । ଅରଟରେ ସୂତା କାଟିବା, ଦେଶ ବିଷୟରେ ସାଧାରଣ ଲୋକଙ୍କୁ ସଚେତନ କରିବା ଓ ସମ୍ପୂର୍ଣ୍ଣ ଅସହଯୋଗୀ ଜୀବନ ଯାପନ କରିବା ଏହି ତରୁଣ ସେନାର ମୁଖ୍ୟ କର୍ତ୍ତବ୍ୟ ଥିଲା । ପରେ ଏହି ସଂଘ ଗଢ଼ିଥିବା ଅଭିଯୋଗରେ ଗୋପବନ୍ଧୁଙ୍କୁ କାରାବରଣ କରିବାକୁ ହୋଇଥିଲା ।

ଗଞ୍ଜାମ, ସତ୍ୟବାଦୀ, ଖୋର୍ଦ୍ଧା, ଯାଜପୁର, ବାଣପୁର, ଜଗତସିଂହପୁର, ଚମ୍ପାରତକଡ଼ା, ସୋର, ଧାମନଗର, ଝାରସୁଗୁଡ଼ା, ଟାକଟି—ସବୁଆଡ଼େ ଏହି ସତ୍ୟାଗ୍ରହ ସପ୍ତାହ ପାଳିତ ହୋଇ ବ୍ୟାପକ ଭାବରେ ସୂତାକଟା ଓ ପାଣ୍ଠି ସଂଗ୍ରହ କାର୍ଯ୍ୟ ହୋଇଥିଲା । ଗ୍ରାମେ ଗ୍ରାମେ ଏଥିପାଇଁ ସଭା ସମିତିମାନ ହେଲା ଓ ସାଧାରଣ ଜନତା ମଧ୍ୟରେ ଏହାର ଉନ୍ମାଦନା ବେଶ ପରିଲକ୍ଷିତ ହେଲା ।

# ସଭା ଓ ସରକାରୀ ପ୍ରତିକ୍ରିୟା

ଅସହଯୋଗ ଆନ୍ଦୋଳନ ଓ ସତ୍ୟାଗ୍ରହ ସଭା ଓଡ଼ିଶାରେ ବ୍ୟାପକ ଭାବରେ ଚାଲିଲା । ଏଥିରେ ସରକାରୀ କର୍ମଚାରୀ ଓ ସହଯୋଗୀମାନଙ୍କ ମଧ୍ୟରେ ପ୍ରବଳ ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ସେମାନେ କ୍ରମେ ଆତଙ୍କିତ ହୋଇ ଦମନ ଓ ଜୁଲମ ଆରମ୍ଭ କରି ବସିଲେ । ଏହିପରି କେତୋଟି ନିର୍ଦ୍ଦିଷ୍ଟ ଘଟଣା ସେତେବେଳେ ଘଟିଥିଲା ।

ଝଲକୋଟ ଗଡ଼ରେ ପ୍ରଚାରକ ବୈକୁଣ୍ଠନାଥ ନାୟକ ଅସହଯୋଗ ସଭା କରିବା ପାଇଁ ନାଗରା ଦେବାରୁ ମ୍ୟାନେଜର ଉତ୍ତମ୍ ପ୍ରାଣ ତାଙ୍କୁ ଡକାଇ କିଛି ନକହି ନିଜ ହାତରେ ଧକ୍କା ମାରି ତଡ଼ିଦେଲେ । ବୈକୁଣ୍ଠବାବୁ ସଭା ବନ୍ଦ କରିବାର ଲିଖିତ ନିର୍ଦ୍ଦେଶ ମାଗିବାରୁ ସାହେବ ରାଗିଯାଇ ତତ୍‌କ୍ଷଣାତ୍ ପ୍ରଚାରକଙ୍କୁ ଚପରାସୀ ଦ୍ୱାରା ଧକ୍କା ମାରି ଗଡ଼ ମଧ୍ୟରୁ ବାହାର କରିଦେଲେ । ବୈକୁଣ୍ଠବାବୁ ଏ ବିଷୟରେ ପ୍ରତିକାର କରିବା ପାଇଁ ପରାମର୍ଶ କରିବାକୁ ଗୋପବନ୍ଧୁଙ୍କ ପାଖକୁ କଟକ ଆସିଲେ । ଝଲକୋଟର ଲୋକେ ଅସହଯୋଗ ପ୍ରତି ଆଗ୍ରହ ଦେଖାଇଥିଲେ ମଧ୍ୟ ସାହେବଙ୍କୁ ଡରି କିଛି କହି ପାରୁ ନଥିଲେ ।

ସେହିପରି କେନ୍ଦୁଝରର ସୁପରିଣ୍ଟେଣ୍ଡେଣ୍ଟ୍ ସାହେବ ଭୟଭୀତ ହୋଇ ଗୋଟିଏ ନୋଟିସ୍ ଜାରି କଲେ—ଗାନ୍ଧିଙ୍କ ସମ୍ବନ୍ଧରେ ଯେ କଥାବାର୍ତ୍ତା କରିବ ପୋଲିସ ତାକୁ ଚାଲାଣ କରିବ । ଗାଁ ଗାଁ ଢେଙ୍କୁରା ଦିଆହୋଇ ଲୋକମାନଙ୍କୁ ଏ ବିଷୟରେ ସତର୍କ କରି ଦିଆଗଲା । ଦୁଇ ତିନି ଜଣଙ୍କୁ ପୋଲିସ ଚାଲାଣ ମଧ୍ୟ କଲେ । କେନ୍ଦୁଝରର ଜୁନାପଦା ନାମକ ଏକ ଦଣ୍ଡପାଟରେ ଦୁଇପଞ୍ଝା ସଙ୍କୀର୍ତ୍ତନ ଦଳ ମଧ୍ୟରେ ବିବାଦ ହୋଇଥିବାରୁ ସେମାନଙ୍କ ମଧ୍ୟରେ ମିଳାମିଶା କରିବା ପାଇଁ କେତେଜଣ ଲୋକ ଏକାଠି ହୋଇଥିଲେ । କେହି ସ୍ଥାନୀୟ ସରକାରୀ କର୍ମଚାରୀ ଏହାକୁ ଅସହଯୋଗ ସଭା ବୋଲି କର୍ତ୍ତୃପକ୍ଷଙ୍କ ନିକଟକୁ ତାର କରିବାରୁ ପରେ ପରେ ବହୁ ସଂଖ୍ୟକ ପୋଲିସ ଫୌଜ ଆସି ସବ୍‌ଡିଭିଜନ ଅଫିସର ଘଟଣାସ୍ଥଳରେ ପହଞ୍ଚିଲେ । ନିରୀହ ଲୋକଙ୍କ ଉପରେ ଧମକ ଚମକ ଓ ମାଡ଼ଧର ହୋଇଥିଲା । ସମ୍ବଲପୁରରେ ମଧ୍ୟ ସରକାରୀ କର୍ମଚାରୀମାନେ ଏହିପରି ଆତଙ୍କ ସୃଷ୍ଟି କରି ବସିଲେ ।

ତା ୨୫ । ୪ । ୨୧ରେ ଗୋପବନ୍ଧୁ ସମ୍ବଲପୁରରେ ପହଞ୍ଚି ଏକ ଜନସଭାରେ ଉଦ୍‌ବୋଧନ ଦେଇଥିଲେ । ଲୋକମାନଙ୍କ ମନରୁ ଭୟ ଦୂରକରି ଜାତୀୟ ସଂଗ୍ରାମ ପ୍ରତି ମନୁଆଁଇ କରିବା ତାଙ୍କର ଲକ୍ଷ୍ୟ ଥିଲା । ଏ ସଭାରେ ସେ ଗୀତାର ସେହି ମହାନ୍‌ବାଣୀ— "ହତୋ ବା ପ୍ରାପ୍ସ୍ୟସି ସ୍ୱର୍ଗଂ ଜିତ୍ୱା ବା ଭୋକ୍ଷ୍ୟସେ ମହୀଂ"ର ଭାବକୁ ସମ୍ପ୍ରସାରିତ କରି ଉପସ୍ଥିତ ପ୍ରାୟ ପାଞ୍ଚ ହଜାର ଲୋକଙ୍କ ମନରେ ଅଭୟ ଆଣିଥିଲେ ।

ଏହି ସମୟରେ କଟକ ଜିଲ୍ଲାର ବାଙ୍କୀରେ ଏକ ସଭା କରିବା ପାଇଁ ଗୋପବନ୍ଧୁ ପହଞ୍ଚିବା ପୂର୍ବରୁ ତାଙ୍କୁ କେହି ବାସଗୃହ ଓ ଖାଦ୍ୟସାମଗ୍ରୀ ନମିଳିବ ସେଥିପାଇଁ କର୍ତ୍ତୃପକ୍ଷ କଡ଼ା ବ୍ୟବସ୍ଥା କରି ଦେଇଥିଲେ । ଲୋକେ ସଭାରେ ଯୋଗ ନଦେବାକୁ ମଧ୍ୟ ସତର୍କ କରି ଦିଆଯାଇଥିଲା । ସ୍ଥାନୀୟ ଲୋକେ ଡରିହରି ଅତି ଗୋପନରେ କଥାବାର୍ତ୍ତା ହେଉଥିବାର ଗୋପବନ୍ଧୁ ସ୍ପଷ୍ଟ ଲକ୍ଷ୍ୟ କଲେ । ରାସ୍ତାରେ ଓ ସଦର ମହକୁମାରେ ପୋଲିସ କର୍ମଚାରୀ ଜଗି ବସିଥିଲେ । ସେତେବେଳେ ବାଙ୍କୀ ତହସିଲଦାର ଆପଣାକୁ ବାଙ୍କୀର ରାଜା ପରି ମନେକରି ଲୋକଙ୍କ ପ୍ରତି ଅତି ନ୍ୟୁନ ଭାବ ପୋଷଣ କରୁଥିଲେ ।

ସନ୍ଧ୍ୟାରେ ସଭା ହେଲା । ତିନି ହଜାର ଲୋକ ସଭାରେ ଏକାଠି ହେଲେ । ଗୋପବନ୍ଧୁଙ୍କ ବକ୍ତୃତା ପରେ ବାଙ୍କୀର କୋର୍ଟ ଇନସ୍‌ପେକ୍‌ଟର ଜଣେ ବଙ୍ଗାଳୀ ମୁସଲମାନ ଓ ଆଉ ଜଣେ ସରକାରୀ କର୍ମଚାରୀ ଅସହଯୋଗ ବିରୁଦ୍ଧରେ ବକ୍ତୃତା ଦେଇ ଧମକ ଦେବାରୁ ଡରୁଆ ଲୋକମାନେ ଉଠିବାକୁ ବସିଲେ । ପୁଣି ଗୋପବନ୍ଧୁ ବାବୁ ପ୍ରତିବାଦ କରି ଲୋକଙ୍କ ମନରେ ସାହସ ଆଣିବାରୁ "ମହାତ୍ମା ଗାନ୍ଧିଙ୍କ ଜୟ" ଧ୍ୱନି ଉଚ୍ଛୁଳି ଉଠିଲା, ଲୋକମାନେ ବସି ରହିଲେ ।

ଏହାପରେ ଚର୍ଚ୍ଚିକାରେ ସଭା ହୋଇଥିଲା । ଏ ସଭାରେ ଯୋଗ ନଦେବାକୁ ପ୍ରଜାଙ୍କ ଉପରେ ପରବାନା ଜାରି ହୋଇଥିଲା । ସ୍ଥାନୀୟ କର୍ମଚାରୀମାନେ ଉତ୍କଟ ପ୍ରଭୁଭକ୍ତି ଦେଖାଇ ସର୍ବଦା ଅସହଯୋଗ ନୀତିର ବିରୁଦ୍ଧାଚରଣ କରୁଥିଲେ । ତଥାପି ମେ ୫ ତାରିଖ ସନ୍ଧ୍ୟାରେ ଚର୍ଚ୍ଚିକା ସଭାରେ ପ୍ରାୟ ସାଢ଼େ ତିନି ହଜାର ଲୋକ ଉପସ୍ଥିତ ଥିଲେ । ସେତେବେଳେ ବାଙ୍କୀ ଚର୍ଚ୍ଚିକାରେ ଜୁଲମ ହୋଇ ଇଉନିୟନ ଟ୍ୟାକ୍‌ସ ଆଦାୟ ହେଉଥିଲା । ପଲ୍ଲୀବାସୀମାନେ ଅକାରଣ କର ପୀଡ଼ାରେ ଅତିକ୍ରାନ୍ତ ହେଉଥିଲେ । ଲୋକଙ୍କ ଘରେ ମେହେନ୍ତ୍ରମାନେ ପଶି ଟ୍ୟାକ୍‌ସ ନିମନ୍ତେ କଂସା, ତାଟିଆ ଘେନିଯାଉଥିଲେ । ଗୋପବନ୍ଧୁ କହିଲେ..."ସ୍ୱରାଜ୍ୟ ନହେବା ଯାଏ ଆମ ଆପତ୍ତି କିଏ ଶୁଣିବ ?"

ଏହି ସମୟରେ ଅସହଯୋଗ ଆନ୍ଦୋଳନରେ ମାତି କେନ୍ଦୁଝରର ପ୍ରଜାମାନେ ରାଜାଙ୍କ ରସଦ୍ କର ପ୍ରଥା ବିରୁଦ୍ଧରେ ବିକ୍ଷୋଭ କରିଥିଲେ । ଦୋକାନ ବଜାର ବନ୍ଦ ରଖିଥିଲେ । ରାଜାଙ୍କ ସୁପରିଣ୍ଟେଣ୍ଡେଣ୍ଟ୍ ପ୍ରାଇସ୍ ସାହେବ କେତେକ ନିରୀହ ଦୋକାନୀ ଓ ପ୍ରଜାମାନଙ୍କ ପ୍ରତି ଅମାନୁଷିକ ବ୍ୟବହାର ଦେଖାଇଥିଲେ । ୧୭।୫।୨୧ ତାରିଖରେ ଗଡ଼ଜାତର ପଲିଟିକାଲ୍ ଏଜେଣ୍ଟ୍ କେନ୍ଦୁଝର ଆସିବା ଶୁଣି ବେଠି ଓ ରସଦ ପ୍ରଥା ବିରୁଦ୍ଧରେ ଲୋକମାନେ ପ୍ରତିବାଦ ଓ ବିକ୍ଷୋଭ କରିଥିଲେ । ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀ ନୀଳମଣି ଚନ୍ଦ୍ର ଦେ ଦୋକାନୀମାନଙ୍କ ପ୍ରତି ନିର୍ମମ ଭାବରେ ବେତ ପ୍ରହାର କରିଥିଲେ । ନିରୀହ ଅସହଯୋଗୀମାନଙ୍କ ବିରୁଦ୍ଧରେ ସରକାରଙ୍କ ତରଫରୁ ମକଦ୍ଦମା ଆରୋପ ହେଲା । ବିଚାରରେ ଶ୍ରୀ ନନ୍ଦ ପ୍ରଧାନ ଓ ଶ୍ରୀ ଜଗବନ୍ଧୁ ଚକ୍ରବର୍ତ୍ତୀଙ୍କୁ ୭ ବର୍ଷ ଦ୍ୱୀପାନ୍ତର ଓ ଅନ୍ୟ ସାତଜଣଙ୍କୁ ସଶ୍ରମ କାରାଦଣ୍ଡ ହୁକୁମ ହୋଇଥିଲା । ସେତେବେଳେ ଅସହଯୋଗ ଆନ୍ଦୋଳନ

ପାଇଁ ସମଗ୍ର ଭାରତରୁ ସ୍ୱାମୀ ସତ୍ୟାନନ୍ଦଙ୍କ ପରି ମାତ୍ର କେତେ ଜଣଙ୍କୁ ଦ୍ୱୀପାନ୍ତରିତ କରାଯାଇଥିବା ବେଳେ ଓଡ଼ିଶାର ଅନ୍ଧାରି ମୂଲକ ଗଡ଼ଜାତ କେନ୍ଦୁଝରରୁ ଦୁଇଜଣ ସେହି ନିର୍ବାସନ ଦଣ୍ଡ ଭୋଗିଥିଲେ । ସତ୍ୟବାଦୀ ସ୍କୁଲର ଦୁଇଜଣ ଛାତ୍ର ଶ୍ରୀମାନ ବଂଶୀଧର ଓ ଭିକାରି ଚରଣଙ୍କୁ ମଧ୍ୟ କଚ୍ଛତନ ପାଇଁ ଏହି ଜେଲ୍‌ଦଣ୍ଡ ଭୋଗ କରିବାକୁ ହୋଇଥିଲା ।

ଏଥିପାଇଁ ଗୋପବନ୍ଧୁଙ୍କ ନେତୃତ୍ୱରେ ପ୍ରଥମେ କଟକର କାଠଯୋଡ଼ି ବାଲିରେ ଓ ପରେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ପ୍ରତିବାଦ ସଭା ହୋଇଥିଲା । ଏଥିରେ ପଣ୍ଡିତ ଗୋପବନ୍ଧୁ ଅସହଯୋଗ ନୀତି ଓ ଅହିଂସା ବିଷୟରେ ଛାତ୍ରମାନଙ୍କୁ ବୁଝାଇଥିଲେ । ଛାତ୍ରମାନେ ଜାତି କାର୍ଯ୍ୟରେ ଅଗ୍ରସର ହେବାକୁ ଶପଥ ନେଇଥିଲେ । ଏହି ସଭାରେ ଗୃହୀତ ଏକ ପ୍ରସ୍ତାବରେ ମାନବପ୍ରେମୀ ସାର୍ ଆଣ୍ଡ୍ରୁଜଙ୍କୁ କେନ୍ଦୁଝର ଓ ଅନ୍ୟାନ୍ୟ ଅନ୍ଧାରି ମୂଲକର ପରିସ୍ଥିତି ଅନୁସନ୍ଧାନ କରିବାପାଇଁ ଅନୁରୋଧ କରାଯାଇଥିଲା । ସତ୍ୟବାଦୀର ଛାତ୍ର ଓ କେନ୍ଦୁଝରର କାରାଦଣ୍ଡିତ ତଥା ନିର୍ବାସିତ ଅଧିବାସୀଙ୍କ ବୀରତ୍ୱ ପାଇଁ ଅଭିନନ୍ଦନ ଜଣାଇ ଦିଆଯାଇଥିଲା । ଏହି ବ୍ୟାପାରେ ଏକ ନିରପେକ୍ଷ ତଦନ୍ତ ପାଇଁ ଏ ସଭା ଉତ୍କଳ ପ୍ରଦେଶ ଓ ନିଖିଳ ଭାରତ କଂଗ୍ରେସ କମିଟିକୁ ଅନୁରୋଧ କରିଥିଲା ।

ଗୋପବନ୍ଧୁ ପୁରୀ ଜିଲ୍ଲାର ପ୍ରତ୍ୟେକ ସଦର ବଜାରରେ, କଟକର କେନ୍ଦ୍ରାପଡ଼ା, କେନ୍ଦୁପାଟଣା, ବରଡ଼ା, ଜଗତସିଂହପୁର, କସରଦା, ନୂଆ ପାଟଣା, ଗଜରାଜପୁର, ଭଦ୍ରପୁର, ବାଲକୁଦା, ବୋରିକନା, ଝଙ୍କଡ଼, ସୋମପୁର, ଅଶୋକ ନଗର, ବଡ଼କୁଦ, ଖୁଣ୍ଟୁଡ଼ା, ମାହାଙ୍ଗା, ଟାଙ୍ଗୀ; ବାଲେଶ୍ୱର ଜିଲ୍ଲାର, ଭଦ୍ରକ, ସୋରୋ, ବାଲେଶ୍ୱର; ଗଞ୍ଜାମ ଜିଲାର ବ୍ରହ୍ମପୁର, ପୁରୁଷୋତ୍ତମପୁର, ବୋଇରାଣୀ, ଅସିକା, ବାଲିପଦର, ବୁଗୁଡ଼ା, ପୋଲସରା, ରସଲକୁଣ୍ଡା, ବେଲଗୁଣ୍ଠା, ସୋରଡ଼ା, ଦିଗପହଣ୍ଡି, ଚିକିଟୀ, ଇଚ୍ଛାପୁର, ପାରଳାଖେମୁଣ୍ଡି, ରମ୍ଭା ଆଦିରେ ଅସହଯୋଗ ପ୍ରଚାର ନିମନ୍ତେ ସଭା କରିଥିଲେ । ପ୍ରାୟ ୧୯୨୧ ମସିହା ଏପ୍ରିଲ୍‌ଠାରୁ ଜୁନ ମାସ ଶେଷ ପର୍ଯ୍ୟନ୍ତ ଏସବୁ ସଭାମାନଙ୍କରେ ଯୋଗ ଦେବାରେ ସେ ପୁରାପୁରି ସମୟ ଦେଇଥିଲେ । ଏପରିକି ଅପ୍ରେଲ ୨୩ ତାରିଖରେ ଚକ୍ରଧରପୁର ଶିଳ୍ପାଞ୍ଚଳରେ ଓ ତା’ ପରଦିନ ଗୁଇଁବସାରେ କେତୋଟି ଶ୍ରେଷ୍ଠବଡ଼ ସଭାରେ ସେ ବିହାର କଂଗ୍ରେସ ନେତା ରାଜେନ୍ଦ୍ର ପ୍ରସାଦଙ୍କ ସହିତ ଉଦ୍‌ବୋଧନ ଦେଇଥିଲେ । ୨୬।୪।୨୧ ତାରିଖରେ ଝାରସୁଗୁଡ଼ାରେ ହୋଇଥିବା ବିରାଟ ଜନସଭାରେ ସେ ଉପସ୍ଥିତ ଜନତାଙ୍କୁ ଏପରି ଭାବରେ ଉଦ୍‌ବୋଧିତ କରିଥିଲେ ଯଦ୍ଦ୍ୱାରେ ସେ ସଭାରେ ଥିବା କେତେକ ବଙ୍ଗାଳୀ ଦେଶସେବୀ ଓ ରାଜେନ୍ଦ୍ର ପ୍ରସାଦ ତାଙ୍କୁ ବଙ୍ଗଳାର ପୁରୁଲିଆରେ ଆୟୋଜିତ ବିରାଟ ଜନସଭାକୁ ଏକ ପ୍ରକାର ବାଧ୍ୟ କରି ନେଇଥିଲେ । ତା’ ପରଦିନ ତା ୨୭।୪ ରେ ଏହି ସଭା ପୁରୁଲିଆରେ ଆୟୋଜିତ ହୋଇଥିଲା ।

# ସ୍ୱୟଂସେବକ ସଂଗ୍ରହ

ଆଗରୁ କୁହାଯାଇଛି ଯେ, ୧୯୨୧ ମସିହା ଆରମ୍ଭରୁ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଯାଇଥିଲା । ପ୍ରାୟ ଛ' ମାସ ବିତିଗଲା ପରେ ନିଖିଳ ଭାରତ କଂଗ୍ରେସ କମିଟିଙ୍କ ସିଦ୍ଧାନ୍ତ ଅନୁସାରେ ଦେଶସାରା ଦୁଇ ଲକ୍ଷ ସ୍ୱୟଂସେବକ ସଂଗ୍ରହ କାର୍ଯ୍ୟ ଆରମ୍ଭ ହେଲା । ଏହା ପରେ ଆଉ ଜନ ଅମାନ୍ୟ ଆନ୍ଦୋଳନ ସୁରୁ ହେବାକଥା । କଂଗ୍ରେସର ନିର୍ଦ୍ଦେଶ ଘେନି ଗୋପବନ୍ଧୁ ଓଡ଼ିଶାକୁ ଫେରି ସ୍ୱୟଂସେବକ ସଂଗ୍ରହ କାର୍ଯ୍ୟରେ ଲାଗିପଡ଼ିଲେ ।

ଏ କାମ ପ୍ରଥମେ କଟକ ସହରରେ ନାନା କାରଣରୁ ଆରମ୍ଭ କରାହେଲା । ଦଳେ କର୍ମୀଙ୍କୁ ଧରି ଗୋପବନ୍ଧୁ ସ୍ୱରାଜାଶ୍ରମରୁ ବାହାରିଲେ । ବାହାରିଲାବେଳେ ସାଙ୍ଗରେ ଥିଲେ ତିରିଶଜଣ କର୍ମୀ; କିନ୍ତୁ ତିନିକୋଣିଆ ବଗିଚାରେ ପହଞ୍ଚିଲା ବେଳକୁ ମାତ୍ର ଚାରିଜଣ ଥା'ନ୍ତି । ବାଟରେ ସେବକ ସଂଗ୍ରହ କରିବା ସହିତ ନିଜେ ଗୋପବନ୍ଧୁ 'ସମାଜ' ସାପ୍ତାହିକର ମଧ୍ୟ ପ୍ରଚାର କରୁଥାନ୍ତି । ସେତେବେଳେ ସାକ୍ଷୀଗୋପାଳରୁ ଆସୁଥିବା ସାପ୍ତାହିକ 'ସମାଜ'କୁ କର୍ମୀମାନେ ବୁଲି ବିକ୍ରି କରୁଥା'ନ୍ତି । ସାଙ୍ଗରେ ଥା'ନ୍ତି ଏହିପରି ଜଣେ କର୍ମୀ ଶ୍ରୀ ବୈଦ୍ୟନାଥ ତ୍ରିପାଠୀ । ବାଲୁବଜାରର ଜଣେ ଚଷମା ଦୋକାନୀଙ୍କୁ ଶ୍ରୀ ତ୍ରିପାଠୀ ବହୁତ ବୁଝାଇଲା ପରେ ବି ସେ 'ସମାଜ' ଖଣ୍ଡେ କିଣିବାକୁ ମନ କରୁ ନ ଥାଏ । ତ୍ରିପାଠୀ ନିରାଶ ହୋଇ ଫେରି ଆସିବାର ଦେଖି ନିଜେ ଗୋପବନ୍ଧୁ ଯାଇ ମୁସଲମାନ ଚଷମା ଦୋକାନୀକୁ ବୁଝାଇଲେ, "ଦେଖ ଏଥିରେ ସାତ ଦିନର ଦେଶର ଖବର ଲେଖା ରହିଛି । ତିନୋଟି ପଇସା ଦେଇ କାଗଜ ଖଣ୍ଡିଏ କିଣିଲେ ଦେଶର ଏତେ ଭଲ ମନ୍ଦ ଖବର ଜାଣିପାରିବ ।" ଚଷମା ଦୋକାନୀ ସମାଜ ଖଣ୍ଡିଏ କିଣିଲା । ଗୋପବନ୍ଧୁ ସେବକ ଓ କର୍ମୀମାନଙ୍କୁ ଏହିପରି ବୁଝାଇ କାଗଜ ବିକ୍ରି ପାଇଁ ପରାମର୍ଶ ଦେଲେ ।

ତିନିକୋଣିଆ ବଗିଚା ପର୍ଯ୍ୟନ୍ତ ଗୋପବନ୍ଧୁ ପ୍ରତ୍ୟେକ ଘରର ଦ୍ୱାରସ୍ଥ ହୋଇ ସ୍ୱୟଂସେବକ ହେବା ପାଇଁ ବୁଝାଉଥାନ୍ତି । ସେତେବେଳକୁ ପ୍ରାୟ ଚାରିଶହ ସ୍ୱୟଂସେବକ ପ୍ରତିଜ୍ଞାପତ୍ରରେ ଦସ୍ତଖତ ଦେଇସାରିଥାନ୍ତି । ଗୋପବନ୍ଧୁ ତିନିକୋଣିଆ ବଗିଚାର ପ୍ରଧାନଦ୍ୱାରରେ ଠିଆ ହୋଇଥାନ୍ତି । ପାଖରେ ସେଠ୍ ଶିବଚାନ୍ଦ ରାୟ । ଅଟଳବାବୁ ଘର ଘର ବୁଲୁଥାନ୍ତି । ଗୋପବନ୍ଧୁ ଶେଠ୍ ଶିବଚାନ୍ଦଙ୍କୁ କହିଲେ—"ଦେଖ ଶିବଚାନ୍ଦ, ଅଟଳଟି ବଡ଼ ନିଷ୍ଠାପର କର୍ମୀ । ଆମେ ଆଶ୍ରମରୁ ବାହାରିଲାବେଳେ କେତେଲୋକ ନ ଥିଲେ, ବାଟରୁ ସମସ୍ତେ ଖସିଗଲେ । ଯଦୁମଣି କେଉଁଠି ମଝିରେ ରହିଗଲା । ଆଉ ତ କେହି ଦିଶୁ ନାହାନ୍ତି । ଅଟଳ ବରାବର ଘରକୁ ଘର ପଶି ତା' ଦାୟିତ୍ୱ କରିଚାଲିଛି । ଦେଶର ୩୩ କୋଟି ଲୋକଙ୍କ ଭିତରୁ ଦୁଇ ଲକ୍ଷ ସ୍ୱୟଂସେବକ ଯେକୌଣସିମତେ ସଂଗ୍ରହ କରିବାକୁ ମହାତ୍ମା ଗାନ୍ଧିଙ୍କ ନିର୍ଦ୍ଦେଶ । ଦେଖ ଶିବଚାନ୍ଦ, ଜଣେ ନିଷ୍ଠାପର କର୍ମୀ ଯାହା କରିପାରିବ ଗୋଡ଼ାଏ ଉପରଠାଉରିଆ

କର୍ମୀଙ୍କ ଦ୍ୱାରା ତାହା ହେବନି । କଟକରେ ଅଟଳ ପର ନିଷ୍ଠାପର କର୍ମୀ ଆଉ କାହାକୁ ଦେଖୁନାହିଁ ।"

"ଚାଲ ଆମେ ଆମ କର୍ତ୍ତବ୍ୟ ତୁଲାଇବା । ଦୁଇ ତିନଦିନ ଲାଗି ଯେତେ ପାରିବା ପ୍ରତିଜ୍ଞାପତ୍ର ସ୍ୱାକ୍ଷର କରାଇବା । ଯେପରି ହେଉ ଓଡ଼ିଶା ଭାଗ ପୂରଣ କରିବାକୁ ହିଁ ହେବ । ମହାତ୍ମାଙ୍କ ନିର୍ଦ୍ଦେଶ ଯେନି ମୁଁ ଫେରିଚି—ମୋତେ କରିବାକୁହିଁ ହେବ । ବର୍ତ୍ତମାନର କାର୍ଯ୍ୟପାଇଁ ହତାଶ ହେଲେ ଚଳିବ ନାହିଁ । ଗୀବଣ୍ଟନ, ତୁମେ ତିନଦିନ ଯେପରି ଏ କାମରେ ମୋ ସାଙ୍ଗେ ସାଙ୍ଗେ ରହିବ ।"

ଗୋପବନ୍ଧୁଙ୍କ ଜୀବନରେ ହତାଶା ନଥିଲା । ତାଙ୍କର ନିଷ୍ଠା ଓ ଦାୟିତ୍ୱ ଓଡ଼ିଶା କଂଗ୍ରେସରେ ଆଉ ଦ୍ୱିତୀୟ ବ୍ୟକ୍ତିଠାରେ ପ୍ରକାଶ ପାଇନାହିଁ ।

## ବିଦେଶୀ ବସ୍ତ୍ର ଦାହ

ଶନିବାର ତା ୭ । ୮ । ୨୧ ସନ୍ଧ୍ୟାରେ ପୁରୀ ବଡ଼ ଦାଣ୍ଡରେ ଏକ ବଡ଼ ସଭା ହୋଇଥିଲା । ଏଣିକି ସ୍ୱରାଜ୍ୟ ଆନ୍ଦୋଳନରେ କ'ଣ କରିବାକୁ ହେବ ପଣ୍ଡିତ ଗୋପବନ୍ଧୁ ସେ ସମ୍ପର୍କରେ ବକ୍ତୃତା ଦେଉଥିଲେ । ବମ୍ବେରେ ବିଦେଶୀ ବର୍ଜନ ଲାଗି ଯେ ତୀବ୍ର ଆନ୍ଦୋଳନ ମୁଣ୍ଡ ଟେକିଛି ତାହା ଶୁଣି ପୁରୀର ଲୋକେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ବକ୍ତୃତା ମଧ୍ୟରେ ସଭା ସ୍ଥଳରେ ଅନେକ ପୁରୁଣା ବିଦେଶୀ ଲୁଗା ଜମା ହେଲା । ସେଥିରେ ଅନେକ ଦାମୀ ପୋଷାକ ମଧ୍ୟ ଥିଲା । ସମସ୍ତଙ୍କଠାରୁ ଅନୁମତି ନେଇ ଗୋପବନ୍ଧୁ ସେଥିରେ ନିଆଁ ଲଗାଇଲେ । ସେ କହିଲେ—"ପାପ ଏତେଦିନ ଯାଏ ଆମ୍ଭମାନଙ୍କ କାୟା ଭ୍ରଷ୍ଟ କରୁଥିଲା—ଆଜି ତାହା ଦଗ୍ଧ ହେଲା । ଏଣିକି ଶୁଦ୍ଧ ସ୍ୱଦେଶୀ ବସ୍ତ୍ରରେ ଅଙ୍ଗ ଆବୃତ କରିବାକୁ ହେବ ।" ଅନେକ ଲୋକ ଶାମୁଖ୍ୟ ଘରର ପାଲଟି ପିନ୍ଧିଥିବା ବିଦେଶୀ ଲୁଗାକୁ ନିଆଁରେ ପକାଇ ଦେଇଥିଲେ । କେହି ଛତା, କେହି କୁର୍ତ୍ତା, କେହି ବା ବ୍ୟବହାର କରୁଥିବା ଅନ୍ୟ କିଛି ବିଦେଶୀ ଜିନିଷ ନିଆଁକୁ ଫୋପାଡ଼ିଥିଲେ । ଲୋକଙ୍କ ମନରେ ବିଦେଶୀ ବର୍ଜନର ଉନ୍ମାଦନା ଓ ସଂକଳ୍ପ ଯୁଗପତ୍ ପ୍ରକାଶ ପାଇଲା ।

ତା ୧୩।୮।୨୧ ଓ ତା' ପରଦିନ କଟକ ଟାଉନହଲରେ ଗୋପବନ୍ଧୁ ଓ ଯଦୁମଣି ବିଦେଶୀ ବସ୍ତ୍ର ବର୍ଜନ ବିଷୟରେ ବକ୍ତୃତା ଦେଇଥିଲେ । ଲୋକମାନଙ୍କ ତ୍ୟାଗ ପରୀକ୍ଷା କରିବା ପାଇଁ ସେମାନେ ଆହ୍ୱାନ କଲେ ଓ ସଭା ସ୍ଥଳରେ ବହୁ ପରିମାଣରେ ବିଦେଶୀ ଦ୍ରବ୍ୟ ଜମା ହେଲା । ୧୪ ତାରିଖ ସକାଳେ ସହରରେ କୀର୍ତ୍ତନ କରି ବୁଲିବାରୁ ଅନେକ ମୂଲ୍ୟବାନ୍ ବିଦେଶୀ ପରିଧାନ ମିଳିଥିଲା । ବକ୍ତୃତା ପରେ ବିଦେଶୀ ବସ୍ତ୍ର ଯଜ୍ଞରେ ଏସବୁ ନିକ୍ଷେପ କରାଗଲା । ସ୍ୱେଚ୍ଛାସେବୀମାନେ ଅଗ୍ନିଶିଖାର ଚାରି ପାଖରେ ବୁଲି କୀର୍ତ୍ତନ

'କରୁଥିଲେ । ଶେଷରେ ଅନେକ ଲୋକ କେବଳ ଗାମୁଛା ଖଣ୍ଡେ ପିନ୍ଧି ଘରକୁ ଫେରିବାର ଦେଖାଯାଉଥିଲା ।

ଅଗଷ୍ଟ ୨୨ ତାରିଖରୁ ୩୦ ତାରିଖ ପର୍ଯ୍ୟନ୍ତ କଟକ ଜିଲ୍ଲାର ଯାଜପୁର ସବ୍‌ଡିଭିଜନରେ ଗୋପବନ୍ଧୁ ଗସ୍ତ କରିଥିଲେ । ଛତିଆ, ଜେନାପୁର, ବରି, କୋରାଇ, ବରୁଆଁ ଆଦି ସବୁ ସ୍ଥାନରେ ଏକ ଯଜ୍ଞକର୍ମ ଭାବରେ ବିଦେଶୀ ବସ୍ତ୍ରଦାହ ପାଳିତ ହୋଇଥିଲା । ଏହାପରେ ଓଡ଼ିଶା ସାରା ଏହିପରି ସଭା ସମିତି ହୋଇ ବସ୍ତ୍ରଦାହ କରାଗଲା । ଉତ୍କଳ ପ୍ରଦେଶ କଂଗ୍ରେସର ବିଭିନ୍ନ ନେତାମାନେ ପ୍ରଦେଶସାରା ବୁଲିଇ ହୋଇ ଏ କାର୍ଯ୍ୟ ଅତି ଉତ୍ସାହର ସହିତ ତୁଲାଉଥିଲେ । କୌଣସି ସ୍ଥାନରେ ହିଂସାତ୍ମକ ନୀତି ଆଚରଣ କରିବାକୁ ଦିଆଯାଉ-ନଥିଲା । ଅସହଯୋଗ ମହାଯଜ୍ଞର ଉତ୍କଳ ପୁରୋଧା ଗୋପବନ୍ଧୁ ସବୁଠାରେ ଶାନ୍ତି ଓ ମୈତ୍ରୀର ପ୍ରେମବାଣୀ ପ୍ରଚାର କରୁଥିଲେ ।

## କଲିକତାରେ ଶ୍ରମିକ ଆନ୍ଦୋଳନ

ପାଟଣା ଯିବା ରାସ୍ତାରେ ଦାସେ ଆପଣେ ଦିନେ ଦି'ଦିନ କଲିକତାରେ ଅଟକି ଯାଉଥିଲେ ଓ ସେଠାରେ ଥିବା ଓଡ଼ିଆ ଶ୍ରମିକ ଓ ପରିଚିତ ଓଡ଼ିଆ ବ୍ୟବସାୟୀଙ୍କୁ ବରାବର ଭେଟୁଥିଲେ । ତାଙ୍କ କଲିକତା ରହଣୀକାଳ ମଧ୍ୟରେ ସେ ପ୍ରାୟ ଗାଲିନ୍ କାରଖାନାକୁ ଯାଇ ସେଠାରେ ରହୁଥିବା ଯାଜପୁର ଅଞ୍ଚଳର ଲୋକମାନଙ୍କୁ ଭେଟୁଥିଲେ । ଜଣେ ଗୋରାସାହେବ ମିଃ ଗାଲିନ୍ ଜ୍ୱରର ଔଷଧ ଜାରମଲିନ୍ ତିଆରି କରି ଭାରତରେ ବେଶ୍ ପରିଚିତ ହୋଇପାରିଥିଲେ ଓ ବହୁ ଅର୍ଥ ରୋଜଗାର କରି ପାରିଥିଲେ । ସାହେବ ସବୁଦିନ ପାଇଁ ଭାରତ ଛାଡ଼ି ବିଲାତ ଯିବା ପୂର୍ବରୁ ଏ କାରଖାନାର ମାଲିକାନା ଯାଜପୁରର ଜଣେ ଶିଷ୍ଟ କରଣ ଶ୍ରୀ ପଦ୍ମଲୋଚନ ମହାନ୍ତିଙ୍କୁ ଦେଇଯାଇଥିଲେ ।

କିନ୍ତୁ ସେଦିନ ଗାଲିନ୍ କାରଖାନା ଯାଇ ଯାଉ ବାଟରେ ଆଖିରେ ପଡ଼ିଲା ଆଉ ଗୋଟିଏ ଦୃଶ୍ୟ । ଗୋଟିଏ ଅନ୍ଧାରୁଆ ଘରେ ଦଶ ବାର ଜଣ ଓଡ଼ିଆ ବସିଛନ୍ତି । ଦେହ ଫୁଙ୍ଗା । ରୋଷେଇ ଚାଲିଚି ସେଇ ବାରଣ୍ଡାରେ । ସେଇ ଗୋଟିଏ ବୋଲି ବଖରା । ସେଇଠି ରହିବା, ଖାଇବା, ଶୋଇବା—ସବୁକାମ ସେଇଠି । ସେମାନଙ୍କ ଦୁର୍ଦ୍ଦଶା ଗୋପବନ୍ଧୁ ଆଖିରେ ଦେଖିଲେ, ପଚାରି ମଧ୍ୟ ବୁଝିଲେ । ତାଙ୍କ ଦରଦୀ ଅନ୍ତରର ବ୍ୟଥା ଆଖିର ଅଶ୍ରୁରେ ବିଗଳିତ ହୋଇପଡ଼ିଲା ।

ସେମାନଙ୍କୁ ଗୋପବନ୍ଧୁ ପଚାରିଲେ—"ତୁମେ ସେଉଁମାନେ କଲିକତାରେ କାମ କରୁଛ କେବେ ଏକାଠି ମିଶ ?" ସେମାନେ କହିଲେ, "ଦଶ ପାଞ୍ଚ ଜଣ ହୋଇ ଅଲଗା ଅଲଗା ରହୁ । କେବେକଦବା ଏକାଠିହେଉ ।"

ତହୁଁ ଗୋପବନ୍ଧୁ ପଚ୍ଚରିଲେ—"କାହାର ଦେହ ମୁଣ୍ଡ ଖରାପ ହେଲେ ପଚ୍ଚରି ଉଚଯ କର ?" ସେମାନେ ଚୁପ୍‌ରହିଲେ ।

ଗୋପବନ୍ଧୁ କହିଲେ—"ଯାଅ ଭାଇମାନଙ୍କୁ କୁହ ସେମାନେ ଆଜ ସନ୍ଧ୍ୟାରେ କେଉଁଠି ହେଲେ ଏକାଠି ହୁଅନ୍ତୁ । ମୁଁ ସେଠାରେ ସମସ୍ତଙ୍କୁ ଦେଖାକରିବ ।"

ସେଦିନ ସନ୍ଧ୍ୟାରେ ଗୋଟିଏ ଛକ ଜାଗାରେ ଅନେକ ଓଡ଼ିଆ ଶ୍ରମିକ ଏକାଠି ହେଲେ । ସେମାନଙ୍କ ସମସ୍ୟା ବିଷୟରେ ବହୁ ଆଲୋଚନା ହେଲା । ଭଲମନ୍ଦ, ସେମାନଙ୍କର ଖାଇବା, ରହିବା, ଘରଦ୍ୱାର, ବ୍ୟବସାୟ ସବୁ କିଛି ଆଲୋଚନା ପରେ ସେମାନଙ୍କର ଗୋଟିଏ ସଂଗଠନ ତିଆରି ହେଲା । ପରସ୍ପରର ସୁଖ ଦୁଃଖରେ ସାହା କରିବାକୁ, ଅଣ୍ଟା ଭିଡ଼ି ବାହାରିବାକୁ, ଶ୍ରମ ସମସ୍ୟାରେ ସମସ୍ତେ ଏକଜୁଟ ହୋଇ ଦାବି ହାସଲ କରିବାକୁ ଏ ଯେଉଁ ସଂଗଠନ ଗଢ଼ାହେଲା ସେଥିରେ ଓଡ଼ିଆମାନଙ୍କ ମଧ୍ୟରେ ଆଶା ତେଜ ଉଠିଲା, ମେଣ୍ଟ ଗଢ଼ି ଉଠିଲା ।

## ମୁକୁଟହୀନ ସମ୍ରାଟ

ଏହାପରେ ଆସିଲା ନନ୍ କୋ-ଅପରେସନ ମୁଭମେଣ୍ଟ । ସମଗ୍ର ଭାରତରେ ଅସହଯୋଗର ଏ ବାତ୍ୟା କଲିକତା ଶ୍ରମଜୀବୀ ଓଡ଼ିଆମାନଙ୍କ ମଧ୍ୟ ଛୁଇଁଲା । ୧୯୨୧ ସାଲ ସେପ୍‌ଟେମ୍ବର ମାସରେ ବିଲାତି ଲୁଗା ବର୍ଜନ ପ୍ରଚାର କରିବାକୁ ଗୋପବନ୍ଧୁ କଲିକତା ଆସିଲେ । ତା ୪ । ୯ । ୨୧ରେ ଏଥିପାଇଁ ଏକ ବିରାଟ ସଭା ବସିଲା । କଲିକତାରେ ବିଲାତି ଲୁଗା ବିକିର ପେଣ୍ଠ "ବଲାଇପଟି" । ମାରୱାଡ଼ିମାନେ ଭାରତର ଅନ୍ୟସବୁ ସହର ପରି ଏଠାରେ ମଧ୍ୟ ଲୁଗା ଦୋକାନଗୁଡ଼ିକର ଏକଚ୍ଛତ୍ରିଆ ମାଲିକ । ଗୋପବନ୍ଧୁ ସେମାନଙ୍କୁ ବିଲାତି ଲୁଗା ଆମଦାନି ନକରିବାକୁ ଅନୁରୋଧ କଲେ; କିନ୍ତୁ ସେମାନେ ଗୋପବନ୍ଧୁଙ୍କ କଥାରେ କାନ ଦେଲେ ନାହିଁ । ତାପରେ ଓଡ଼ିଆ ଶ୍ରମିକମାନଙ୍କୁ ଏକଜୁଟ କରି ବାହାରୁ ଆସିଥିବା ଲୁଗାଗାଣ୍ଠି ଉଠେଇବାକୁ ଗୋପବନ୍ଧୁ ମନା କରିଦେଲେ । ପର୍ବତ ଆକାରରେ ଲୁଗା ଓ ସୂତା ଗାଣ୍ଠି ବନ୍ଦରରେ ଓ ଜାହାଜରେ ଜମା ହୋଇ ରହିଲା । ବେପାରୀ ମାରୱାଡ଼ିମାନେ ପ୍ରତିଶୋଧ ନେଲେ । କେତେଜଣ ଓଡ଼ିଆ ଶ୍ରମିକଙ୍କୁ ମିଛ ଆଇନରେ ପକାଇ ଜେଲ୍ ଦିଆଇଲେ । ସାତଦିନ ସେମାନେ ଜେଲ୍‌ରେ ରହିଲେ, ତଥାପି ଓଡ଼ିଆ ଶ୍ରମିକମାନେ ଲୁଗାଗାଣ୍ଠି ଉଠାଇଲେ ନାହିଁ ; କାରଖାନାରେ କାମ କଲେ ନାହିଁ । ଫଳରେ କଲକାରଖାନା ଅଚଳ ହୋଇପଡ଼ିଲା । ବନ୍ଦର ଶ୍ରମିକମାନଙ୍କୁ ସହାନୁଭୂତି ଦେଖାଇ ଅନ୍ୟ ଶ୍ରମିକମାନେ କାମ ବନ୍ଦ କଲେ, ସତ୍ୟାଗ୍ରହ କଲେ । କଲିକତାରେ ଘୋର ଉତ୍ତେଜନା ଖେଳିଗଲା । ଚିତ୍ତରଞ୍ଜନ ଦାସ ପ୍ରମୁଖ କଲିକତାର ନେତାମାନେ

ଗୋପବନ୍ଧୁଙ୍କୁ ସହଯୋଗ କଲେ । ଇଂରେଜୀ କାଗଜ ମାନଙ୍କରେ ପ୍ରକାଶ ପାଇଲା—“Gopabandbu, the uncrowned king of Orissa.” ସମଗ୍ର କଲିକତା ବିସ୍ମିତ ହୋଇ ଓଡ଼ିଆ ଶ୍ରମଜୀବୀ ସଂଗଠନର କରାମତି ଦେଖୁଥାଏ । ଶ୍ରମିକଙ୍କ ଭିତରେ ବିପୁଳ ଉତ୍ସାହ ଖେଳି ଯାଇଥାଏ । ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ସାହାଯ୍ୟ କରୁଥାନ୍ତି ।

ପଣ୍ଡିତ ଗୋପବନ୍ଧୁ ନିଷ୍ପତ୍ତି କଲେ—ଜେଲ ଯାଇଥିବା ଶ୍ରମିକମାନେ ଯେମିତି ଜେଲ୍‌ରୁ ଖଲାସ ହେବେ ସେମାନଙ୍କୁ ଗଙ୍ଗାର ଜଗନ୍ନାଥ ଘାଟକୁ ସ୍ନାନ ନିମନ୍ତେ ନିଆଯିବ । ଇଂରେଜ ସରକାରଙ୍କ ଜେଲ୍‌ରେ ଥିବାରୁ ସେମାନଙ୍କ ପବିତ୍ର ଦେହ ପାଇଁ ପ୍ରାୟଶ୍ଚିତ୍ତ ଦରକାର । ଏହାଦ୍ୱାରା ଲୋକଙ୍କ ଉପରେ ପ୍ରଭାବ ମଧ୍ୟ ପଡ଼ିବ ।

ସେଦିନ ଆସିଲା । ଲୋକେ ଏକ ସପ୍ତାହ ପରେ ଜେଲ୍‌ରୁ ଖଲାସ ହେଲେ । ତା’ ପରେ ଜଗନ୍ନାଥ ଘାଟକୁ ଏକ ଶୋଭାଯାତ୍ରାରେ ସେମାନଙ୍କୁ ନିଆଗଲା । କଲିକତା ସହର ଉଠୁଥାଏ ପଡ଼ୁଥାଏ । ବଡ଼ବଜାର୍‌ରେ ଏ ଦୃଶ୍ୟ ଦେଖିବାପାଇଁ ସତୁରି ହଜାର ଲୋକଙ୍କର ସମାଗମ । ସରକାରଙ୍କ ପକ୍ଷରୁ କଟକଣା ହୋଇ ସବୁ ଯାନବାହନ ବନ୍ଦ କରାଯାଇଥାଏ । ରାସ୍ତାର ଦୁଇ ପାଖରେ ସଶସ୍ତ୍ର ଘୋଡ଼ାସବାର ଠିଆହୋଇଥାନ୍ତି ।

ସକାଳ ୮’ଟା ପରେ ଶୋଭାଯାତ୍ରା ବାହାରି ଜଗନ୍ନାଥ ଘାଟକୁ ଆସିଲା । ଘାଟରେ ଶ୍ରମିକ କଏଦୀଙ୍କୁ ଖିଅର କରାଇ ସ୍ନାନ ପରେ ନୂଆ ଲୁଗା ପିନ୍ଧାଇ ଆଣିଲା ବେଳକୁ ଦିନ ଦୁଇଟା ।

ତା’ପରେ ହାଲିଡେ ପାର୍କରେ ଶ୍ରମିକମାନଙ୍କର ଏକ ସଭା ହେଲା ସନ୍ଧ୍ୟାରେ । ଗୋପବନ୍ଧୁ ପୁରୋଧା । କଲିକତାରେ ଓଡ଼ିଆ ଶ୍ରମିକ ଅଫିସ ଖୋଲିବା ନିଷ୍ପତ୍ତି ହେଲା ଓ ଭବାନୀପୁରରେ ଅଫିସ ଖୋଲା ହେଲା । କଲିକତାରେ ଥିବା ଓଡ଼ିଆମାନଙ୍କର ଏକ ଗଣନା କର୍‌ଯିବାରେ ସେମାନଙ୍କ ସଂଖ୍ୟା ହେଲା ଦେଢ଼ଲକ୍ଷ । ପ୍ରତି ଶନିବାର ଦିନ ପ୍ରତ୍ୟେକ ଶ୍ରମିକ ଓଡ଼ିଆ ସଂଘ ପାଇଁ ପଇସାଟିଏ ଚାନ୍ଦା ଦେବାର ସ୍ଥିର ହେଲା । ସେଥିରେ ଅଫିସ ଚାଲିଲା ଓ ଲୋକଙ୍କ ହାନିଲାଭରେ ସେଇଥିରୁ ଖର୍ଚ୍ଚ ହେବାର ବ୍ୟବସ୍ଥା ରହିଲା ।

କଲିକତାରେ ଥିବା ମାରୱାଡ଼ି ଆସୋସିଏସନ୍‌ର ପ୍ରତିନିଧି ଗୋପବନ୍ଧୁଙ୍କୁ ଲକ୍ଷେ ଟଙ୍କାର ପ୍ରଲୋଭନ ଦେଖାଇଲେ । ଲକ୍ଷେ ଟଙ୍କା ନେଇ ଏ ହରତାଳ ବନ୍ଦ କରିବାକୁ ଅନୁରୋଧ କଲେ । ଛ’ ସାତ ଦିନ ହେବ ସେମାନଙ୍କ ବ୍ୟବସାୟ ବନ୍ଦ । କ୍ଷତିର ସୀମା ନାହିଁ । ପୁଣି ଜାହାଜ ବନ୍ଦରରେ ଅଟକିରହିଥିବାରୁ ଅଯଥା ଡାମ୍‌ରେଜ ବି ପଡ଼ୁଥାଏ ।

ପଣ୍ଡିତ ଗୋପବନ୍ଧୁ ସେମାନଙ୍କୁ ବୁଝାଇ କହିଲେ—“ମତେ ଲେଖିଦିଅ ବିଲାତି ଲୁଗା ଆଉ ଆମଦାନି କରିବ ନାହିଁ ।” ସେମାନେ ଗୋପବନ୍ଧୁଙ୍କ ସର୍ତ୍ତ ପାଖରେ ମୁଣ୍ଡ ନୁଆଁଇଲେ ।

ବଣିକ ସଂଘ ବୈଠକରେ ନିଷ୍ପତ୍ତି ହେଲା ଡିସେମ୍ବର ୩୧ ତାରିଖ ମଧ୍ୟରେ ସେମାନେ ଆଉ ବିଦେଶୀ କପଡ଼ା ଆମଦାନି କରିବେ ନାହିଁ । ସମଗ୍ର କଲିକତା ସେଦିନ ଓଡ଼ିଶାର ଏଇ

ଜନନେତାଙ୍କର କଣମତରେ ବିବୃତ୍ତି ପ୍ରକାଶ କରିଥିଲ । ସରକାର ବିଚଳିତ ହୋଇ-ପଡ଼ିଥିଲେ ।

## ଶ୍ରମିକ ସଭାରେ ମହାତ୍ମାଜୀ

ସେପ୍ଟେମ୍ବର ମାସରେ ମହାତ୍ମାଗାନ୍ଧି ଅସହଯୋଗ ପ୍ରଚାରରେ କଲିକତା ଆସିଥା'ନ୍ତି । ଓଡ଼ିଆ ଶ୍ରମିକମାନଙ୍କ ସଭାରେ ଉଦ୍‌ବୋଧନ ଦେବାକୁ ଗୋପବନ୍ଧୁ ତାଙ୍କୁ ଅନୁରୋଧ କରିଥିଲେ । ପୁଣି ଓଡ଼ିଆ ଶ୍ରମିକମାନେ ଜାହାଜରୁ ବିଦେଶୀ ଲୁଗା ଗାଣ୍ଠି ବୋହିବା ବନ୍ଦକରି ସମଗ୍ର କଲିକତାରେ ଏକ ଚହଳ ପକାଇ ଦେଇଥିଲେ । ମହାତ୍ମାଗାନ୍ଧି ୧୧ ତାରିଖ ସନ୍ଧ୍ୟାରେ ହାଲିଡେ ପାର୍କରେ ଓଡ଼ିଆ ଶ୍ରମିକମାନଙ୍କ ସଭାରେ ଭାଷଣଦେଲେ । କେହି କେହି ଶ୍ରମିକ ପୂର୍ବ ସଭାରେ ମୋଟ ନବୋହିବାକୁ ପ୍ରତିଜ୍ଞା କରି ମାଲିକର ଧମକରେ ପୁଣି ବୋହିବାରୁ ଗାନ୍ଧି ବ୍ୟଥିତ ହୋଇ କହିଲେ—"ଈଶ୍ୱର, ଧର୍ମ ଓ ଦେଶକୁ ଧୋକ୍କା ଦିଅ ନାହିଁ । ପ୍ରତିଜ୍ଞା ଭଙ୍ଗକଲେ କରିବା ଲୋକର ତ ପାପ ହୁଏ, କରାଇବା ଲୋକକୁ ମଧ୍ୟ ଦୋଷ ଲଗେ । ବିନା ଆତ୍ମଶୁଦ୍ଧିରେ ଈଶ୍ୱର ଦର୍ଶନ ମିଳେ ନାହିଁ । କୋରାନ୍ ଓ ଗୀତାରେ ଏହା କୁହାଯାଇଛି । ଧର୍ମରକ୍ଷା ଓ ଆଜ୍ଞା ପାଳନରେ ଜେଲ୍ ଯିବା ମଧ୍ୟ ଏକ ଧର୍ମକାର୍ଯ୍ୟ । ଯଦି ସବୁ ଲୋକ ଜେଲ୍ ଯିବାକୁ ତିଆର ହୋଇଯିବେ ତେବେ ସ୍ୱରାଜ୍ୟର ଦରଜା ଆପେ ଆପେ ଖୋଲିଯିବ ।"

ଗୋପବନ୍ଧୁ ମହାତ୍ମାଜୀଙ୍କ କଥା ଓଡ଼ିଆ ଭାଷାରେ ଲୋକମାନଙ୍କୁ ବୁଝାଇଦେଇ କହିଲେ—"ମୁଁ ଚାହେଁ କଲିକତାର ଦେଢ଼ଲକ୍ଷ ଓଡ଼ିଆ କୀଟ ପତଙ୍ଗ ପରି ନରହି ମନୁଷ୍ୟ ପରି ରହନ୍ତୁ ଏବଂ ମରିବେ ତ ମଣିଷ ପରି ମରନ୍ତୁ । ଭୋକରେ ମରିଯିବା ବରଂ ଭଲ, ମାତ୍ର ନିଜର ପ୍ରତିଜ୍ଞା ଭଙ୍ଗ କରି ଦେଶର ଓ ଆପଣାର ଅପମାନ କରିବା ଉଚିତ ନୁହେଁ ।"

ଏହାପରେ ଗୋପବନ୍ଧୁ ବାବୁ କଲିକତାରେ ଥିବା ବିଭିନ୍ନ ଶ୍ରେଣୀର ଓଡ଼ିଆମାନଙ୍କୁ ବହୁ ସଭାରେ ଏକାଠିକଲେ । ସେମାନଙ୍କ ଭିତରୁ କେହି ପାଣିକଲ, କେହି ଗ୍ୟାସ୍ ଆଲୁଅ, କେହି ବିଜୁଳି ଆଲୁଅ, ଲୁହାପଟି ଆଦିରେ କେହି ବା ଓଡ଼ିଆ ବ୍ରାହ୍ମଣ ପୂଜକ ଓ ଖାନସମା ଭାବରେ କାମ କରୁଥିଲେ । ସେମାନଙ୍କର ଏକ ସ୍ଥାୟୀ ସଙ୍ଗଠନ ଗଢ଼ି କର୍ମକର୍ତ୍ତା ନିର୍ବାଚନ କରିଦେଲେ । ଭିନ୍ନ ଭିନ୍ନ ବିଭାଗରୁ ଏହି ସାଙ୍ଗଠନିକ ଦାୟିତ୍ୱରେ ପ୍ରତିନିଧି ମନୋନୀତ ହେଲେ । ଗୋପବନ୍ଧୁ ସେମାନଙ୍କୁ ସେମାନଙ୍କ କର୍ତ୍ତବ୍ୟ ବିଷୟରେ ବହୁ ସଭାରେ ବୁଝାଇଲେ । ସେମାନଙ୍କ ସମସ୍ୟା ସମାଧାନ ପାଇଁ ଉଦ୍ୟମ କଲେ, ଅଧିକ ମଜୁରି ପାଇଁ ଦାବୀ କଲେ । ଅନେକ କ୍ଷେତ୍ରରେ ଶ୍ରମିକମାନଙ୍କର ମଜୁରି ବଢ଼ି ଗଲା । ଫଳରେ ଗୋପବନ୍ଧୁ କ୍ରମେ ସେମାନଙ୍କର ଅତି ପ୍ରିୟ ଜନନାୟକ ଭାବରେ ପୂଜିତ ହେଲେ । ଏମାନଙ୍କ ସଙ୍ଗଠନ

ଅଫିସ୍ ହ୍ୱାରିସନ୍ ରୋଡ୍‌ର ଭବାନୀ ଦତ୍ତ ଲେନ୍‌ରେ ଅନୁଷ୍ଠିତ ହେଲା । କଂଗ୍ରେସ କର୍ମୀ ଶ୍ରୀ ପୂର୍ଣ୍ଣଚନ୍ଦ୍ର ବୋଷ, ଶ୍ରୀ ନରସିଂହ ଷଡ଼ଙ୍ଗୀ, ଶ୍ରୀ ଅଲେଖ ପ୍ରସାଦ ଦାସ ଆଦି ସଙ୍ଗଠନ ଦାୟିତ୍ୱରେ ରହିଲେ । ଶ୍ରମିକମାନଙ୍କ ଭିତରେ ଅଭୂତ ଜାଗରଣ ଦେଖାଦେଲା ।

ଏହି ସମୟରେ ଗୋଟିଏ ନିର୍ଦ୍ଦିଷ୍ଟ ଘଟଣା ଘଟିଥିଲା । ବିଲାତି କପଡ଼ା ଉଠାଇବାକୁ ମନାକରିବାରୁ କଲିକତା ମୁରୁଗୀହଟାର ଜଣେ ମାରୁଆଡ଼ି ଓଡ଼ିଆ ଶ୍ରମିକ ମୁଖିଆ ରାଉତକୁ ଖୁବ୍ ମାଡ଼ଦେଲା । ମାଡ଼ଖାଇ ମୁଖିଆ ମରିଯାଇଛି ବୋଲି ଖୁବ୍ ଶୀଘ୍ର ଏକ ଗୁଜବ ଚାରିଆଡ଼େ ରଷ୍ଟ୍ର ହୋଇଗଲା । ପ୍ରାୟ ୨ଘଣ୍ଟା ମଧ୍ୟରେ କୋଡ଼ିଏ ପଚିଶ ହଜାର ଲୋକ ମାରୁଆଡ଼ିର ଦୋକାନ ଚାରିପାଖେ ଜମିଗଲେ । ମାରୁଆଡ଼ି ଘରୁ ବାହାରିଲା ନାହିଁ କିମ୍ବା ଲୋକଙ୍କୁ ବି ବାହାର କଲାନାହିଁ । ଜୀବନ ଭୟରେ ଚାରିଆଡ଼ୁ କବାଟ କଲି ଘରେ ଲୁଚି ରହିଲା । ଏଥିରେ ଲୋକମାନଙ୍କର ଅଧିକ ସନ୍ଦେହ ହେଲା । ଲୋକେ ଲୁଟତରାଜ କରିବାକୁ ପ୍ରସ୍ତୁତ ହୋଇଗଲେ । ବହୁ ସଂଖ୍ୟାରେ ସଶସ୍ତ୍ର ପୋଲିସ୍ ଆସି ଦୋକାନ ଜଗି ରହିଲେ । ସ୍ୱାମୀ ବିଶ୍ୱାନନ୍ଦ ଲୋକଙ୍କୁ ଶାନ୍ତ ହେବାକୁ ଅନୁରୋଧ କରୁଥା'ନ୍ତି ।

ଶେଷରେ ରାତି ୧୨ଟା ବେଳେ ସ୍ୱାମୀ ବିଶ୍ୱାନନ୍ଦଙ୍କ ସଙ୍ଗେ ଗୋପବନ୍ଧୁ ମାରୁଆଡ଼ି ଘର ଭିତରେ ପଶିଲେ । ମାତ୍ର ସେଠାରେ ମାଡ଼ ଖାଇଥିବା ଲୋକର ସନ୍ଧାନ ମିଳିଲା ନାହିଁ । ଗୋପବନ୍ଧୁ ବହୁ କଷ୍ଟରେ ଲୋକଙ୍କୁ ଶାନ୍ତ କରି ଫେରାଇଦେଲେ । ମାରୁଆଡ଼ିର ନିରାପତ୍ତା ପାଇଁ ତା' ଘରେ ଓ ଦୋକାନ ଚାରିପାଖରେ କଂଗ୍ରେସ ଓ ଖିଲାଫତ୍ ସ୍ୱେଚ୍ଛାସେବୀମାନେ ଜଗୁଆଳି ରହିଲେ ।

ତା' ପରଦିନ କଲେଜଛକ ରାସ୍ତାରେ ପଡ଼ିଥିବା ଏକ ଶବକୁ ମୁଖିଆ ରାଉତର ଶବ ବୋଲି ମନେକରି କଲିକତାରେ ଓଡ଼ିଆମାନେ ସେଠାରେ ଏକାଠି ହୋଇଥିଲେ । ମାରୁଆଡ଼ି କୌଶଳକ୍ରମେ ରାତିରେ ମୁଖିଆର ଶବକୁ ସେଠାରେ ପକାଇ ଦେଇଛି ବୋଲି ସମସ୍ତଙ୍କର ଦୃଢ଼ ଧାରଣା ହୋଇଥିଲା ; କିନ୍ତୁ ପରେ ମୁରୁଗୀହଟାର କେହି କେହି ଓଡ଼ିଆ ଶ୍ରମିକ ଆସି ଶବକୁ ଚିହ୍ନଟ କରିବାରେ ତାହା ଏକ ଭିକାରିର ବୋଲି ଜଣାପଡ଼ିଲା ।

ପରେ ମୁଖିଆ ସହିତ ଗୋପବନ୍ଧୁଙ୍କର ସାକ୍ଷାତ ହେଲା । ସେ ମାରୁଆଡ଼ିଠାରୁ ଅନେକ ଟଙ୍କା ନେଇ ସତ୍ୟକୁ ଗୋପନ କରିଥିଲା । ଏ କଥା ନେଇ ଦୁଇଦିନ କାଳ ଓଡ଼ିଆ ଶ୍ରମିକଙ୍କ ମଧ୍ୟରେ ନାହିଁ ନଥିବା ଉତ୍ତେଜନା ଓ ଚହଳ । ଓଡ଼ିଆ ଶ୍ରମଜୀବୀମାନେ ଯେ ସଂଗଠନର ସ୍ୱାଦ ଅନୁଭବ କରିଛନ୍ତି ଏକଥା ଜାଣିବାକୁ ଆଉ ବାକି ରହିଲା ନାହିଁ । ଗୋପବନ୍ଧୁ ଏଥିରେ ଆନ୍ତରିକ ଖୁସିହୋଇଥିଲେ ।

# ମୂକ ମିନତ

ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ଯେତିକି ଅଗ୍ରସର ହେଉଥିଲା ସରକାରୀ ମହଲରେ ସେତିକି ଅଧିକ ପ୍ରତିକ୍ରିୟା ପ୍ରକାଶ ପାଉଥିଲା । କଲିକତାରେ ଗୋପବନ୍ଧୁଙ୍କ ଶ୍ରମିକ ସଙ୍ଗଠନ ଓ ଆନ୍ଦୋଳନ ଦେଖି ବିହାର-ଓଡ଼ିଶା ସରକାର ବିସ୍ମିତ ହୋଇଯାଇଥିଲେ । ଏ ପର୍ଯ୍ୟନ୍ତ ତାଙ୍କୁ ଜଣେ ନିଃସ୍ୱାର୍ଥ ଦେଶସେବୀ ଭାବରେ ସେମାନେ ଗ୍ରହଣ କରିଥିଲେ; କିନ୍ତୁ କଲିକତାର ଇଂରେଜୀ ଓ ବଙ୍ଗଳା କାଗଜଗୁଡ଼ିକ ତାଙ୍କ ସମ୍ପର୍କରେ ବିଶେଷ ମନ୍ତବ୍ୟ ପ୍ରକାଶ କରିବା ପରେ ସରକାର ଏହି ବାଙ୍ଗ୍ମୀର ମଣିଷଟିର ପ୍ରବଳ କର୍ମମତା ଅନୁଭବ କରିଥିଲେ । ଓଡ଼ିଶାରେ ଏହାର ସ୍ପଷ୍ଟ ପ୍ରତିଫଳନ ପ୍ରକାଶ ପାଇଲା ।

ତା ୮ । ୯ । ୨୧ କଲିକତାରୁ ଫେରି ଗୋପବନ୍ଧୁ କଟକରେ ପହଞ୍ଚିବା ମାତ୍ରେ ଦିନ ୩ଟା ବେଳେ କଟକ ଟାଉନ୍ ପୋଲିସ ଇନସ୍‌ପେକ୍ଟର ତାଙ୍କୁ କଟକ ମାଜିଷ୍ଟ୍ରେଟ୍‌ଙ୍କ ୧୪୪ ଧାରା ହୁକୁମନାମା ଦେଖାଇଲେ । ଓଡ଼ିଶାର ସ୍ୱରଅଞ୍ଚଳ ବୁଲି ସେ ନିଃସ୍ୱାର୍ଥ ଓଡ଼ିଆମାନଙ୍କୁ ପ୍ରବର୍ତ୍ତାଉଥିବାରୁ ଶାନ୍ତି ଭଙ୍ଗର ଆଶଙ୍କା କରି ଏ ନୋଟିସ ଜାରି ହୋଇଥିଲା । ଗତ ଅଗଷ୍ଟ ୧୪ ତାରିଖ କଟକ ଟାଉନହଲ ସଭାରେ କପଡ଼ାର ନକଲି ସାହେବ ମୂର୍ତ୍ତି ଓ ବିଦେଶୀ ଲୁଗା ପୋଡ଼ାଯାଇଥିବାରୁ ଓ ବିଦେଶୀ ବସ୍ତ୍ର ବର୍ଜନ ପାଇଁ ତାଙ୍କ ବକ୍ତୃତାରେ ବଳପ୍ରୟୋଗର ସୂଚନା ଥିବାରୁ ଏ ନୋଟିସ୍ ଦିଆଯାଇଥିବା ଉଲ୍ଲେଖ ଥିଲା । ଏହାଦ୍ୱାରା ଦୁଇମାସ ପାଇଁ ସଭା ଓ ଶୋଭାଯାତ୍ରା ଆଦିରୁ ତାଙ୍କୁ ଅଇନ୍ ବଳରେ ଦୂରରେ ରଖାଗଲା । କେବଳ ଧର୍ମ ଓ ବିବାହ ବ୍ରତାଦି ନିମନ୍ତ୍ରଣ ପତ୍ର ଆଦିରେ ସେ ଯୋଗଦେଇ ପାରିବେ ବୋଲି ନୋଟିସରେ ଉଲ୍ଲେଖ ଥିଲା । ସେତେବେଳେ କଟକର ମାଜିଷ୍ଟ୍ରେଟ ଥିଲେ ଶ୍ରୀ ବି. ଏନ୍. ରାୟ ।

ତା ୧୦ । ୯ । ୨୧ ସନ୍ଧ୍ୟା ୫ ଘଣ୍ଟାରେ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ ଶ୍ରୀ ଡି. ଏନ୍. ଦାସଙ୍କ ୧୪୪ ଧାରା ନୋଟିସ ଗୋପବନ୍ଧୁଙ୍କୁ ଦିଆଯାଇଥିଲା । ସେତେବେଳେ ସେ କଲିକତା ଯାତ୍ରା ଉଦ୍ଦେଶ୍ୟରେ ପୁରୀ ଷ୍ଟେସନରେ ପହଞ୍ଚିଥାନ୍ତି । ଏଥିରେ ମଧ୍ୟ ଦୁଇମାସ ପାଇଁ ତାଙ୍କୁ ସଭା ସମିତି ବନ୍ଦକରିଯାଇଥିଲା ।

ତା ୨୭ । ୯ । ୨୧ ରେ ଗୋପବନ୍ଧୁଙ୍କ ବ୍ରହ୍ମପୁରରେ ପହଞ୍ଚି ଏକ ସଭାରେ ଭାଷଣ ଦେବାର ଥିଲା । ତାଙ୍କ ଆଗମନ ପାଇଁ ଗଞ୍ଜାମ ଜିଲ୍ଲା କଂଗ୍ରେସ ତରଫରୁ ବ୍ୟାପକ ଆୟୋଜନ ହେଉଥିଲା । ସେଦିନ ଷ୍ଟେସନଠାରେ ପୋଲିସ କର୍ମଚାରୀମାନେ ତାଙ୍କର ଅନୁସନ୍ଧାନ କରିଥିଲେ । ମାତ୍ର ସେଦିନ ନଯାଇ ୨୮ ତାରିଖ ସକାଳେ ସେ ବ୍ରହ୍ମପୁରରେ ମାନ୍ଦ୍ରାଜ ଡାକ ଗାଡ଼ିରୁ ଓହ୍ଲାଇଲେ । ଗଞ୍ଜାମରେ ଓଡ଼ିଆ ତେଲେଙ୍ଗା ସମସ୍ୟା ତଦନ୍ତ କରି ମୀମାଂସା କରିବାକୁ ଉଭୟ ଆନ୍ଧ୍ର ଓ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ନିଯୁକ୍ତ କରିଥିଲେ । ଗୋପବନ୍ଧୁ ଓଡ଼ିଶାରୁ ଏହି କମିଟିର ସଭ୍ୟ ଥିଲେ । ଏଥିର ସେଇ

ଉଦ୍ଦେଶ୍ୟରେ ସେ ଗଞ୍ଜାମ ଆସିଥିଲେ । ୨୮ ତାରିଖ ଅପରାହ୍ଣ ୪ ଘଣ୍ଟାରେ ବ୍ରହ୍ମପୁର ଉତ୍କଳ ସ୍ୱରାଜାଶ୍ରମଠାରେ ୧୪୪ ଧାରା ହୁକୁମ ନୋଟିସ ପଢ଼ାଇ ଦିଆଗଲା । ପୁରୀ ଓ କଟକର ୧୪୪ ଧାରା ନୋଟିସ୍ ଭାଷା ସହିତ ଏହି ନୋଟିସର ଅକ୍ଷରେ ସାମ୍ୟ ଥିଲା; କିନ୍ତୁ ଓଡ଼ିଆ ତେଲେଙ୍ଗା ପ୍ରସଙ୍ଗରେ କିଛି ଆଲୋଚନା କରିବାରେ ବାଧାନାହିଁ ବୋଲି ଏ ହୁକୁମନାମାରେ ସ୍ପଷ୍ଟ ଲେଖାଥିଲା । ଏଥିରେ ମଧ୍ୟ ଦୁଇମାସ ପାଇଁ ତାଙ୍କ ମୁହଁ ବନ୍ଦକରି ଦିଆଯାଇଥିଲା ।

ଏହାପରେ ଖୋରଧା, ବାଲେଶ୍ୱର, ଭଦ୍ରଖ ସବୁଠାରେ ତାଙ୍କ ଉପରେ ସେହି ୧୪୪ ଧାରାର ସମନ୍ ଜାରିହେଲା । ତଥାପି ଗୋପବନ୍ଧୁ ଡରିଲେ ନାହିଁ । ନିଜ ହାଡ଼ ମାଂସକୁ ଟିକି ଟିକି ନିକ୍ଷେପ କରି ସେ ସ୍ୱାଧୀନତା ପଥର ସବୁ ଖାଲଖମାକୁ ପୂର୍ଣ୍ଣକରି ଦେବାର ସଂକଳ୍ପ ନେଇଥିଲେ । ଆତ୍ମବିଶ୍ୱାସ ଓ ଉଗ୍ର ଜାତୀୟ ଚେତନାରେ ସେ ପ୍ରଜ୍ୱଳିତ ଅଗ୍ନିପିଣ୍ଡ ପରି ଦେଦୀପ୍ୟମାନ ଥିଲେ ।

ଏହି ସମୟରେ କଟକ ଓ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଅନ୍ୟାୟ ୧୪୪ ଧାରା ହୁକୁମକୁ ଲକ୍ଷ୍ୟ କରି ସେ ମୂକ ମିନତି ନାମରେ ଏକ କବିତା 'ସମାଜ' ସ୍ତମ୍ଭରେ ତା ୨୪ । ୧ । ୨୧ରେ ଲେଖିଥିଲେ ।

"ପୁରୀ ଆଉ କଟକର ଜିଲ୍ଲା ମେଜେଷ୍ଟର
ଏକଶତ ଚୌରାଳିଶ ଦଫାରେ ଅର୍ଡ଼ର
ଜାରି କରି ମୋର ମୁଖ କରିଛନ୍ତି ବନ୍ଦ ;
ସେଥିଲାଗି ନୁହେଁ ମୁହିଁ ଟିକେ ନିରାନନ୍ଦ ।
ହୁକୁମ ନ ମାନି କାର୍ଯ୍ୟ କରିବାକୁ ଭାଇ,
ମୋ ହୃଦେ ଶକତି ଦେଇଛନ୍ତି ବିଶ୍ୱସାଇଁ ।
କିନ୍ତୁ କଂଗ୍ରେସର ନାହିଁ ସେପରି ଆଦେଶ,
ତେଣୁ ଏ ମୂକ ମିନତି କଲି ପରିତୋଷ ।
ହେ ପ୍ରିୟ ଉତ୍କଳବାସୀ ମୋ ଭାଇ ଭଉଣୀ
କାତର ନହୁଅ କେହି ଏ ବାରତା ଶୁଣି ।
ଯାହା କହିବାର ମୋର ଥିଲା ଦରକାର
କହିଅଛି ସମସ୍ତଙ୍କୁ ଦେଶେ ବାରବାର ।

× × ×

ସହିବା ଯେ ସବୁ ଧରି ପଥରର ଗ୍ରୀବ
ଚିର ଦିନ ନଥିବ ଏ ଅମାବାସ୍ୟା ରାତି ।
ସହିଛଇ କେତେକାଳ କେତେ ଅତ୍ୟାଚାର,
ସିଝିଁପଡ଼ି ହେଲାଣି ଏ ଦେଶ ଗ୍ରୀରଖାର ।

କି ସୁଖ ଅଛି ଜୀବନେ ତେବେ କିଁପା ଭସ୍ମ,
ସହିଲେ ସକଳ ଦୁଃଖ ଶେଷେ ହେବ ଜୟ ।
ଅହିଂସା ପରମ ଧର୍ମ ଏ ମହାମନ୍ତ୍ର,
ସଦା ଜପି ହୃଦେ ହୁଅ କାର୍ଯ୍ୟେ ଅଗ୍ରସର ।
ଧୀରତା ସଂଯମ ଶାନ୍ତି ରଖ ଅବିରତ,
ଭାରତେ ସ୍ୱରାଜ୍ୟ ଲଭି ଏହି ଏକା ପଥ ।
ହେ ଉତ୍କଳବାସୀ, ରଖ ଏ ମୂକ ମିନତି,
ଅଛି ଯେବେ ସ୍ନେହ ଦୟା ଅକିଂଚନ ପ୍ରତି ।

ଗୋପବନ୍ଧୁ ଛାତ୍ରମାନଙ୍କ ପଛଘୁଞ୍ଚାଣିରେ ବ୍ୟଥିତ ହୋଇ ଏହି କବିତାରେ ଲେଖିଥିଲେ—

ହେ ଛାତ୍ରମଣ୍ଡଳି କର କେତେ ବାହାଦୂରି,
ଦେଶର ଉଦ୍ଧାର ପାଇଁ ପକାଅ ତ ହୁରି ।
ହସାଇ କନ୍ଦାଇ ଦେଲେ ଗଲା ଏବେ ଜଣା,
ତୁମ୍ଭ ଦେଶ ଅନୁରାଗ କପଟ୍ୟ ଛଳନା ।

ବହୁ ସଂଖ୍ୟାରେ ଛାତ୍ର ସ୍କୁଲ କଲେଜ ଛାଡ଼ି ଅସହଯୋଗ ଆନ୍ଦୋଳନରେ ଯୋଗ ଦେବେ ବୋଲି ଆଶା କରାଯାଇଥିଲା; କିନ୍ତୁ ବାସ୍ତବ କ୍ଷେତ୍ରରେ ତା' ନହେବାରୁ ଗୋପବନ୍ଧୁ ସ୍ପଷ୍ଟ ଭାଷାରେ ଏ ଖେଦ ପ୍ରକାଶ କରିଥିଲେ । ସେହିପରି ଓକିଲମାନଙ୍କ ଉଦାସୀନତା ପାଇଁ ସେ ବ୍ୟଥିତ ହୋଇଥିଲେ ।

ଓଡ଼ିଶାରେ କିନ୍ତୁ ଅସହଯୋଗର ଉଦ୍ଦାମ ଜୁଆର ପ୍ରତିହତ ହେଲାନାହିଁ । ଗାଁ ଗହଳରେ ଗଡ଼ଜାତର ଅଧିବାସୀ ମୁଲକରେ ତା'ର ଆବାଜ ଶୁଭିଲା । ସରକାରଙ୍କ ଦମନନୀତି ଆହୁରି ଆହୁରି ବଢ଼ିବାରେ ଲାଗିଲା ।

## ସତ୍ୟହୋଇଥିଲେ ସାଙ୍ଘାତିକ

୧୯୨୧ ମସିହା ଅଗଷ୍ଟ ୧୩ ତାରିଖ ସାପ୍ତାହିକ 'ସମାଜ'ରେ 'ସତ୍ୟ ହୋଇଥିଲେ ସାଙ୍ଘାତିକ' ଶିରୋନାମାରେ ଏକ ଖବର ନିଜ ମନ୍ତବ୍ୟ ସହିତ ଗୋପବନ୍ଧୁ ପ୍ରକାଶ କରିଥିଲେ । ବ୍ରହ୍ମଗିରି ଓ ପୁରୀର ସମ୍ବାଦଦାତା ଶ୍ରୀ ମୁରାରି ତ୍ରିପାଠୀଙ୍କ ରିପୋର୍ଟ ଉପରେ ଏ ବିବୃତିଟି ଆଧାରିତ ହୋଇଥିଲା । ସେଥିରେ ଲେଖାଥିଲା—"ଶୁଣାଯାଏ, ଗଲା ସପ୍ତାହ ଗୋଟିଏ ପିଲା ଜଣେ ମୂଲିଆ ସହିତ ତା'ର ଯୁବତୀ ଭଉଣୀକୁ ଶାଶୁଘର ନେଇ ବେଗୁନିଆ ବାଟେ ଯାଉଥିଲା । ବେଗୁନିଆ ହାଟର କିଛିଦୂରରେ ଠିକ୍ ସନ୍ଧ୍ୟା ପୂର୍ବରୁ ଘଟିଟି ଭଉଣୀ

ଓ ମୂଲିଆକୁ ବାଟପାଖରେ ବସାଇ ପୋଖରୀପାଣି ଗଲା । ମୂଲିଆ ସ୍ତ୍ରୀଲୋକଟିକ ସେଠାରେ ଗ୍ରୁଡ଼ି ପାନ କିଣିବାକୁ ଯାଇଛି, ଏହି ଅବସରରେ ଦୁଇଜଣ କନେଷ୍ଟବଲ ମାଇପିଟିକୁ ଓଟାରି ନେଇ ବହୁଦୂରରେ ଗୋଟିଏ ଘରଭିତରେ ବନ୍ଦ କରିଦେଲେ । ଦୁଆରରେ ଗୋଟିଏ ତାଲା ପକାଇ ଗ୍ରୁବି ନିଜ ହାତରେ ରଖି ବାହାରେ ବସି ରହିଲେ । ଭାଇ ପୋଖରୀପାଣି ଆସି ଭଉଣୀକୁ ନଦେଖି କାନ୍ଦି କାନ୍ଦି ନାନା ଲୋକଙ୍କୁ ପଚାରିଲା । ପାଖରେ କେତେଗୁଡ଼ିଏ ପିଲା ଖେଳୁଥିଲେ । କନେଷ୍ଟବଲ ଦୁହେଁ ମାଇପିଟିକୁ ଟାଣିନେଲାବେଳେ ଏମାନେ ଦେଖିଥିଲେ । ଭାଇ ଏମାନଙ୍କଠାରୁ ସମ୍ବାଦପାଇ କନେଷ୍ଟବଲଙ୍କୁ ଭଉଣୀ କଥା ପଚାରିବାରେ ସେମାନେ ନାସ୍ତି କଲେ । ଦୁଆର ଫିଟାଇବା ପାଇଁ ଅନେକ ପ୍ରକାର ପ୍ରାର୍ଥନା କଲା । କନେଷ୍ଟବଲମାନେ ଓଲଟି ତାକୁ ବହୁତ ମାଡ଼ ଦେଲେ । ପିଲା ମାଡ଼ଖାଇ କାନ୍ଦି କାନ୍ଦି ଆସୁଛି ଏହି ସମୟରେ ଖୋର୍ଦ୍ଧାର ସବ୍‌ଡିଭିଜନ୍ ଅଫିସର୍ ଅଜୟ ବାବୁ ମଟରକାରରେ ଆସିବାର ଦେଖିପାରିଲା । ସେ ଦୌଡ଼ି ଦୌଡ଼ି ଯାଇ ସଡ଼କରେ ପଡ଼ି ତାଙ୍କଠାରେ ଗୁହାରି କଲା । ଅଜୟ ବାବୁ ମଟରକାର ବନ୍ଦକରି ଘଟଣା ସ୍ଥାନକୁ ଗଲେ । କନେଷ୍ଟବଲମାନଙ୍କୁ ଘର ଫିଟାଇ ଦେବାକୁ ଗ୍ରୁବି ମାଗିଲେ । କନେଷ୍ଟବଲମାନେ ନାସ୍ତି କରିବାରୁ ନିଜ ଗୋଡ଼ରେ କବାଟ ଭାଙ୍ଗି ଘରଭିତରେ ପଶିଲେ । ଦେଖିଲେ ଯୁବତୀଟି ଲଙ୍ଗଳା ହୋଇ ନିଜ ପିନ୍ଧା ଲୁଗାରେ ଦୌଡ଼ିଦେଇ ପ୍ରାଣ ହରାଇ ଦେଇଛି । ଏସବୁ ଏକ ଘଣ୍ଟାର ଘଟଣା । ସେ ଲାସ୍ ଓ କନେଷ୍ଟବଲଙ୍କୁ ଗ୍ରୁଲାଣ ଦେଇଛନ୍ତି । ଉପରିସ୍ଥ ପୁଲିସ କର୍ମଚାରୀ କେହି କେହି ଗ୍ରୁଲାଣ ହୋଇଯିବାର ଶୁଣାଯାଏ, କିନ୍ତୁ ଏହାର ସଠିକ୍ ବିବରଣୀ ଆମ୍ଭେମାନେ ପାଇନାହୁଁ ।"

ଏହି ସନ୍ଧାନରେ ପୁଣି ତା ୨୮ । ୧୦ । ୨୧ 'ସମାଜ'ରେ ଏହା ଜନରବ ବୋଲି ଲେଖି ଗୋପବନ୍ଧୁ ସତ୍ୟାସତ୍ୟ ପ୍ରକାଶ କରିଥିଲେ । ଜନରବ ଅନୁସାରେ ଏ ଘଟଣା ଯେତେବେଳେ ପ୍ରଚାରିତ ହେଲା ସେହି ସମୟରେ ଜଣେ ପଞ୍ଜାବୀ ବେଗୁନିଆ ଅଞ୍ଚଳରେ ଜଣେ ସ୍ତ୍ରୀଲୋକଙ୍କୁ ନେଇଯାଉଥିବାବେଳେ କଟଣୀଠାରେ ଧରାପଡ଼ିଲା ଓ ସେଠାରେ ତାକୁ ଗ୍ରୁଡ଼ି ଗ୍ରୁଲାଗଲା । ଏହାର ଅଳ୍ପଦିନ ତଳେ ବୋଲଗଡ଼ ଅଞ୍ଚଳରେ ଏକ ନରହତ୍ୟା ହୋଇଥିଲା । ଖୋରଧା ସବ୍‌ଡିଭିଜନ୍ ଅଫିସର୍ ଶ୍ରୀ ଅଜୟ ଚନ୍ଦ୍ର ଦାସ ତାହା ସେହି ସମୟରେ ତଦନ୍ତ କରୁଥିଲେ । ଏ ଉଭୟ ଘଟଣାର ମିଶ୍ରଣରେ ଏ ଜନରବ ଉତ୍ପତ୍ତି ହୋଇଥିବା କଥା ଗୋପବନ୍ଧୁ ସ୍ପଷ୍ଟ ସ୍ୱୀକାର କରିଥିଲେ ।

ଏ ଭ୍ରମ ସଂଶୋଧନ ପରେ ଏ ଘଟଣାର ଇତି ହେବା କଥା ; କିନ୍ତୁ ତତ୍‌କାଳୀନ ପୁରୀ-ଜିଲ୍ଲା ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ୍ ଗାଇସ୍ ସାହେବ ପୋଲିସ୍ କନେଷ୍ଟବଲ ବେଗୁନିଆ ଥାନାର କାସିମ ମହମ୍ମଦ ପ୍ରଭୃତି କେତେଜଣଙ୍କୁ ମଡେଇ 'ସମାଜ'ର ମୁଦ୍ରାକର ଓ ପ୍ରକାଶକଙ୍କ ନାମରେ ଦଣ୍ଡବିଧି ଆଇନର ୫୦୦ ଦଫାରେ ମାନହାନି ଫୌଜଦାରୀ ମୋକଦ୍ଦମା ଖୋର୍ଦ୍ଧା ଏସ୍. ଡି. ଓ.ଙ୍କ କୋର୍ଟରେ ଦାଏର କଲେ । ଖୋର୍ଦ୍ଧାର ଦ୍ୱିତୀୟ

ଅଫିସର୍ ଶ୍ରୀ ସୁରେଶ ଚନ୍ଦ୍ର ବୋଷଙ୍କ ମହକୁମାରେ ଏହାର ବିଗ୍ଭର କାର୍ଯ୍ୟ ୮।୧୧।୨୧ ତାରଖରେ ଆରମ୍ଭହେଲା ।

ପ୍ରାୟ ଦନ ୧୨ ଘଣ୍ଟା ସୁଦ୍ଧା ପୁରୀର ସବୁଆଡ଼ୁ ୩୦୦୦ ଯାଏ ଲୋକ ଆସି ଖୋର୍ଦ୍ଧା କଚେରୀ ହତାରେ ଜମା ହୋଇଗଲେ । ମୁଦେଇମାନଙ୍କ ତରଫରୁ ପୁରୀର କୋର୍ଟ ଇନସ୍‌ପେକ୍‌ଟର ମୋକଦ୍ଦମା ଚଳାଉଥିଲେ । ଗୋପବନ୍ଧୁ ବାବୁ ଅସହଯୋଗୀ ଥିବାରୁ ନଜ ପକ୍ଷ ସମର୍ଥନ ପାଇଁ ଓକିଲ ଦେଇ ମୁଦେଇ ତରଫ ସାକ୍ଷୀମାନଙ୍କୁ ଜେରା କରି-ନଥିଲେ । ସେଦନ ୧୨ ଜଣ ପୋଲିସ କର୍ମଗ୍ଭରୀ ସାକ୍ଷୀ ଦେଲେ ଓ ସମସ୍ତେ କହିଲେ— ଏ ଘଟଣା ସେମାନେ 'ସମାଜ'ରୁ ପଢ଼ିଛନ୍ତି, ଅନ୍ୟଠୁ ଶୁଣିନାହାନ୍ତି । "ଏ ସମ୍ବାଦ ପଢ଼ି ଦେଖୁନଥିଲେ କନେଷ୍ଟବଲଯାକ ଖରାପ ଲୋକ ବୋଲି ଆମେମାନେ ବିଗ୍ଭରିଲୁ ।" ପୁରୀର ପୋଲିସ୍ ଏସ୍. ପି. ଗାଲ୍ଭିସ୍ ସାହେବ ଅନ୍ୟତମ ସାକ୍ଷୀ ଥିଲେ । ସେ ତାଙ୍କ ମୁହଁରେ ମାନଲେ ଯେ, ତାଙ୍କ ପରାମର୍ଶ ଅନୁସାରେ ଏ ମୋକଦ୍ଦମା ଦାଏର ହୋଇଥିଲା । ଏହାପରେ ତା ୧୨।୧୧।୨୧ କୁ ମୋକଦ୍ଦମା ମୁଲତବି ରଖାଗଲା । ହାକିମ ଗୋପବନ୍ଧୁଙ୍କୁ ଯାମିନ ଜମା ମୁଚୁଲିକାରେ ଯିବାପାଇଁ ପଗ୍ଭରିବାରୁ ସେ କହିଲେ, "ମୁଁ ଅସହଯୋଗୀ, ଧର୍ମତଃ ଯାମିନ ନେବ ନାହିଁ । ମୋ କଥାରେ ବିଶ୍ୱାସ ଥାଏ ତ ଛାଡ଼ିଦିଅନ୍ତୁ । ନହେଲେ ମୁଁ ହାଜତ ଯିବାକୁ ତିଆର ଅଛି ।"

ଗୋପବନ୍ଧୁ ବାବୁ ମୁକ୍ତିଆରଖାନାରେ ଆସି ବସିଛନ୍ତି, ତାଙ୍କ ଅଜାଣତରେ ପୁରୀର ଓକିଲ ଶ୍ରୀ ବନମାଳି ଦାସ ତାଙ୍କ ପାଇଁ ଯାମିନଦାର ହୋଇ ତାଙ୍କୁ ଖଲାସ କର ଆଣିଲେ; କିନ୍ତୁ ଗୋପବନ୍ଧୁ ଏଥିରେ ରୁଷ୍ଟ ହୋଇ ହାକିମଙ୍କ ପାଖକୁ ତୁରନ୍ତ ଗୋଟିଏ ପତ୍ର ଲେଖି ହାଜତ ଯିବାକୁ ତିଆର ହେଲେ ।

"ମହାଶୟ,

ମୋତେ ମୋ କଥାରେ ବିଶ୍ୱାସ କର ଆପଣ ଛାଡ଼ିବେ କି ନା ଏହା ଜାଣିବା କାରଣ ଆପଣଙ୍କ ଉତ୍ତର ପ୍ରତୀକ୍ଷାରେ ମୁଁ ମୁକ୍ତାରଖାନାରେ ବସିଥିଲି । ଶୁଣିଲି ଇତିମଧ୍ୟରେ ପୁରୀର ଓକିଲ ବାବୁ ବନମାଳୀ ଦାସ ମୋ ସକାଶେ ଯାମିନ ହୋଇ ମୋତେ ଖଲାସ କରି ଆଣିଛନ୍ତି । ଯଦ ବନମାଳୀ ବାବୁ ବା ଅନ୍ୟ କେହି ମୋତେ ଏହି ପ୍ରକାର ଅନୁଗ୍ରହ ଦେଖାଇଥା'ନ୍ତି ଏହା ମୋ ପକ୍ଷରେ କେବେହେଁ ଅନୁଗ୍ରହ ନୁହେଁ ବରଂ ଅପମାନର କଥା । ଆପଣ ଯଦ ସାଧୁ ଭାବରେ ଏହି ଯାମିନ ଉପରେ ମୋତେ ଛାଡ଼ିଦେଇଥାନ୍ତି ମୁଁ ଆପଣଙ୍କୁ ଜଣାଉଛି ଯେ, ଏହା ମୋର ସମ୍ପୂର୍ଣ୍ଣ ଇଚ୍ଛାବିରୁଦ୍ଧ । ଅସହଯୋଗୀ ହୋଇ ଯାମିନରେ ଖଲାସ ହେବା ମୋ ପକ୍ଷରେ ପାପ । ତେଣୁ ଏ ଯାମିନ ସକାଶେ ମୁଁ ଘୋର ଆପତ୍ତି କରୁଛି ଓ ହାଜତ ସକାଶେ ପ୍ରସ୍ତୁତ ଅଛି ।"

ମାଜିଷ୍ଟ୍ରେଟ ଶ୍ରୀ ବୋଷ ଏ ଚିଠି ପାଇ ଯାମିନ ରଦ୍ଦ କଲେ । ଗୋପବନ୍ଧୁ ବାବୁ

ହସି ହସି ହାଜତକୁ ଗଲେ । ତାଙ୍କ ପଛେ ପଛେ ଜୟ ଧ୍ୱନି ଦେଇ ଜନତା ଜେଲ ହତା ପର୍ଯ୍ୟନ୍ତ ଅନୁସରଣ କରିଥିଲେ ।

ନଭେମ୍ବର ୯ ତାରିଖ ଦିନ ୩ ଟା ବେଳକୁ ପୁଣି ମୋକଦ୍ଦମା ବିଚାର ହେଲା । ସେତେବେଳକୁ ଖୋର୍ଦ୍ଧା କଚେରୀ ହତାରେ ପ୍ରାୟ ୭।୮ ହଜାର ଲୋକ ଜମା ହୋଇ ଯାଇଥିଲେ । ଗୋପବନ୍ଧୁ ଜେଲଖାନାରୁ କଚେରୀକୁ ଆସିଲା ବେଳେ ଲୋକମାନେ ପଣ୍ଟୁଆରରେ ଘେନି ଆସିଲେ । ତାଙ୍କ ଉପରେ ଚାରିଆଡ଼ୁ ପୁଷ୍ପ ବୃଷ୍ଟି ହେଉଥିଲା ଓ ସମସ୍ତଙ୍କ ମୁହଁରେ 'ମହାତ୍ମା ଗାନ୍ଧୀକି ଜୟ' 'ହରିବୋଲ' ଧ୍ୱନିତ ହେଉଥିଲା । ସେଦିନ କଚେରୀ ଘର ବାରଣ୍ଡା ଓ ଅଗଣା ଜନପୂର୍ଣ୍ଣ ହୋଇଥିଲା । ଏ କୋଳାହଳ ବନ୍ଦ କରିବା ପାଇଁ କଚେରୀ ହତା ବୁଢ଼ା ଓସ୍ତଗଛ ମୂଳେ ବିଚାର କାର୍ଯ୍ୟ ଚଳାଇବାକୁ ଗୋପବନ୍ଧୁ ପ୍ରସ୍ତାବ କରିଥିଲେ । ତାହାହିଁ ହେଲା । ଅତୀତରେ ଏଇ ଓସ୍ତଗଛ ପାଇକମେଳିର ମୂକ ସାକ୍ଷୀ ଭାବେ କେତେ ବୀରତ୍ୱର କାହାଣୀ ଧରି ରଖିଥିଲା । ତାର ସ୍କନ୍ଧର ଗର୍ଭରେ କେତେ ଭଙ୍ଗାଗଢ଼ାର ଇତିହାସ ମିଶି ରହିଥିଲା । ତାରି ଗ୍ରାଇତଳେ ଠିଆ ହେଲେ ଏବେ ଆଉ ଜଣେ ଜାତୀୟ ବୀର, ନିର୍ଭୀକ ସୈନିକ ପଣ୍ଡିତ ଗୋପବନ୍ଧୁ ଦାସ । ତାଙ୍କୁ ଦେଖିବାକୁ ଓ ଜବାବ ସୁଆଲ ଶୁଣିବାକୁ ଲୋକେ ମାଡ଼ି ପଡ଼ିଲେ, ଖୁବ୍ ଗୋଳ ବି ଲଗି ରହିଲା । ବିଚାରକଙ୍କ ବାରମ୍ବାର ନିବେଦନ ସତ୍ତ୍ୱେ ଜନତା ନୀରବ ହେଲା ନାହିଁ । ଗୋପବନ୍ଧୁ ବେଞ୍ଚ ଉପରେ ଠିଆହୋଇ ହାତଯୋଡ଼ି ନିବେଦନ କଲେ—"ଆପଣମାନେ ଶାନ୍ତିପୂର୍ଣ୍ଣ ଅସହଯୋଗ ଦୀକ୍ଷା ଗ୍ରହଣ କରିଛନ୍ତି । ଯଦି ଗୋଳମାଳ ବନ୍ଦ ନ କରନ୍ତି ଓ ସ୍ଥିର ଭାବରେ ନ ବସନ୍ତି ତେବେ ନିନ୍ଦା ହେବ ।" ଚାହୁଁ ଚାହୁଁ ଚାରିଆଡ଼େ ନୀରବ ଓ ନିଷ୍କଳ ହୋଇଗଲା । ସେଦିନ ଦଶଜଣ ଲୋକ ପୋଲିସ ତରଫରୁ ସାକ୍ଷୀ ଦେଇଥିଲେ ।

ବେଗୁନିଆଁର ଛ'ଜଣ ସାକ୍ଷୀଙ୍କୁ ବିଚାରପତି ପଚାରିଲେ—"ଆପଣମାନେ ବେଗୁନିଆଁରେ ମାଇକିନିଆ ମରିବା ଖବର ସମାଜରୁ ଶୁଣିଛନ୍ତି କି ?" ପ୍ରାୟ ସମସ୍ତେ ଉତ୍ତର ଦେଲେ—"ନା ଆଠ ଦଶଦିନ ଆଗରୁ ଆମେ ଏ ଖବର ବେଗୁନିଆଁ ହାଟରୁ ଶୁଣିଥିଲୁ ।"

'ସମାଜ' କାଗଜ ସବୁବେଳେ ସରକାରୀ କର୍ମଚାରୀଙ୍କ ବିରୁଦ୍ଧରେ ଲେଖେ କି ବୋଲି ଜଣେ ସରକାରୀ କର୍ମଚାରୀ ସାକ୍ଷୀକୁ ପଚାରିବାରୁ ସେ କହିଲେ—"ସମାଜରେ ସରକାରୀ କର୍ମଚାରୀଙ୍କ ବିରୁଦ୍ଧରେ ସତ୍ୟ ଓ ଉପଯୁକ୍ତ ସମ୍ବାଦ ପ୍ରକାଶ ପାଏ, ତାହା ସପକ୍ଷ ଓ ବିପକ୍ଷ ହୋଇପାରେ ।"

ଏ ମୋକଦ୍ଦମାର ପୂର୍ବ ଦିନଠାରୁ ଏସ୍. ପି. ମିଷ୍ଟର୍ ଗାଇସ୍ ସାହେବ ଆସି ଖୋର୍ଦ୍ଧାରେ ବସିଥିଲେ । ଏ ମୋକଦ୍ଦମାରେ ତାଙ୍କ ଉଦ୍ୟମ ସବୁଠାରୁ ବେଶି ଥିଲା । ସେଦିନ ଏତିକି ସୁଆଲ ପରେ ମୋକଦ୍ଦମା ତା ୧୬ । ୧୧କୁ ମୁଲତବୀ ରହିଲା ।

ତୃତୀୟ ଦିନ ୧୬ ତାରିଖ ନଭେମ୍ବର ମାସ, ଦିନ ଦୁଇଟା ବେଳେ ମକଦ୍ଦମାର ବିଚାର ଆରମ୍ଭ ହେଲା । ଏଥର ସରକାରୀ ଓକିଲ ଶ୍ରୀ ରାଧାଶ୍ୟାମ ମହାନ୍ତି ପୁରୀରୁ ଆସି ଅଭିଯୋଗ-

ତାଙ୍କ ତରଫରୁ ମକଦ୍ଦମା ଚଳାଇଲେ । ପୁଲିସ ପକ୍ଷରୁ ଦୁଇଜଣ ସାକ୍ଷୀ ନିଆ ହେଲେ । ଜଣେ ପୁରୀଜିଲ୍ଲା ସ୍କୁଲ୍ ଶିକ୍ଷକ ଶ୍ରୀ ମାଗୁଣି ଦାସ, ଅନ୍ୟ ଜଣକ ଚାକିରୀରୁ ବରଖାସ୍ତ ହୋଇଥିବା ପୋଲିସ କର୍ମଚାରୀ । ଶେଷ ସାକ୍ଷୀ ଜଣକ କହିଲେ ଯେ, "ସେ ବେଗୁନିଆଁ ଖବର ପ୍ରଥମେ 'ସମାଜ'ରୁ ପଢ଼ିଥିଲେ । ଗୋପବନ୍ଧୁଙ୍କ ପ୍ରସ୍ତାବମତେ ହାକିମ ତାଙ୍କୁ 'ସମାଜ' ପଢ଼ିବାକୁ ଦେଲେ । ସାକ୍ଷୀ ଅକ୍ଷର ଚିହ୍ନି ଚିହ୍ନି ୫।୭ ମିନିଟ ବିତିଗଲା । ତେଣିକି ଆଉ ପଢ଼ିବା ଲୋଡ଼ା ହେଲା ନାହିଁ ।

ଗୋପବନ୍ଧୁ ବାବୁ ସତ୍ୟାଗ୍ରହୀ ହିସାବରେ ନିଜ ପକ୍ଷରୁ ଓକିଲ ଦେଇ ନ ଥିଲେ ; କିନ୍ତୁ ଏକ ଦୀର୍ଘ ଲିଖିତ ଜବାବ ଦେଇଥିଲେ । ସେଥିରେ ଗୋଟିଏ ସ୍ଥାନରେ ସେ ଲେଖିଥିଲେ —"କୌଣସି କାରଣ ନ ଥାଇ ମୋତେ ହିନସ୍ତା ଓ ହଇରାଣ କରିବା ପାଇଁ ଏ ମକଦ୍ଦମା କରାଯାଇଅଛି । ମୋର ବିଶ୍ୱାସ ପୁରୀର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଗାଇସ ସାହେବଙ୍କର ମୋ ପ୍ରତି ବିଦ୍ୱେଷ ଓ ଈର୍ଷା ଏ ମୋକଦ୍ଦମାର କାରଣ । ତା ୨୭ । ୧ । ୨୧ 'ସମାଜ' ରେ ଗାଇସ୍ ସାହେବଙ୍କର ପୁରୀର କେତେକ ମାରବାଡ଼ିଙ୍କ ସହିତ ଘଟିଥିବା କଥୋପକଥନ ବିଷୟ ପ୍ରକାଶ ପାଇଥିଲା । ଗାଇସ୍ ସାହେବ ସ୍ୱଦେଶୀ ପ୍ରଚାର ବନ୍ଦ କରିବା କାରଣ ଗୋଟିଏ ଅସହଯୋଗ ବିରୁଦ୍ଧ ସଭାରେ ସଭାପତି ହୋଇଥିଲେ । ଏ ସଭାରେ ମାରବାଡ଼ି ବ୍ୟବସାୟୀମାନେ ତାଙ୍କର କେତେକ ପ୍ରଶ୍ନର ଯେ ଉତ୍ତର ଦେଇଥିଲେ ସେଥିରେ ସେ ଅବାକାବା ହୋଇଯାଇଥିଲେ । ସେହିଦିନଠାରୁ ଗାଇସ ସାହେବ ମୋ ବିରୁଦ୍ଧରେ ନାନା ସ୍ଥାନରେ ନାନା କଥା କହିବା ମୁଁ ଜାଣେ । ବିଶେଷରେ ମୁଁ ଓଡ଼ିଶାରେ ଜଣେ ଅସହଯୋଗୀ ନେତା ଭାବରେ ପରିଚିତ । ଏ 'ସମାଜ' ଖବରକାଗଜର ମୋ ସହିତ ସମ୍ପର୍କ ଅଛି ଏବଂ ଏହା ଅସହଯୋଗ ଆନ୍ଦୋଳନର ଏକ ପ୍ରଧାନ ମୁଖପତ୍ର । ମୋ ବିରୁଦ୍ଧରେ ଏ ବିରକ୍ତିକର ଓ ବିଦ୍ୱେଷ ମୂଳକ ମୋକଦ୍ଦମା ଦାଏରର ପ୍ରଧାନ ଉଦ୍ଦେଶ୍ୟ ମୋତେ ଓ 'ସମାଜ'କୁ ହିରକତରେ ପକାଇ ଓଡ଼ିଶାରେ ଏ ଆନ୍ଦୋଳନର ଗତି କେବଳ ବନ୍ଦ କରିଦେବା । ଉପସଂହାରରେ ମୋର ବକ୍ତବ୍ୟ ଯେ, ସାଧାରଣ ପ୍ରେସ କାର୍ଯ୍ୟରେ ରହି ମୁଁ ସମାଜ ପ୍ରତି ମୋ କର୍ତ୍ତବ୍ୟକୁ ବଡ଼ ପବିତ୍ର ଜ୍ଞାନ କରେ । ଏ କର୍ତ୍ତବ୍ୟ କଲାବେଳେ କୌଣସି ବିଶେଷ ଜାତି ବା ସମ୍ପ୍ରଦାୟ ପ୍ରତି ଘୃଣା ବା ବିଦ୍ୱେଷ ରଖିବା ମୋର ଧର୍ମ ନୁହେଁ । ଏ କର୍ତ୍ତବ୍ୟ ଦେଶର ଜନସାଧାରଣଙ୍କ ଉପକାରାର୍ଥେ କରିବାକୁ ହୁଏ । ଇଂରେଜ ସାମ୍ରାଜ୍ୟରେ ସମ୍ବାଦପତ୍ରର ଏହି ପ୍ରକାର କାର୍ଯ୍ୟ ଶାସନ ନୀତିର ଏକ ଅଙ୍ଗ ବୋଲି ବିଦିତ । ଉପସ୍ଥିତ ଘଟଣା ଏହା ତୁଳନାରେ ଅକିଞ୍ଚିତ୍କର ହେଲେ ମଧ୍ୟ ମୁଁ ଏହା ପ୍ରକାଶ କରିବା ଦ୍ୱାରା ଜନସାଧାରଣଙ୍କ ପ୍ରତି କର୍ତ୍ତବ୍ୟ କରିଛି ବୋଲି ମୋର ବିଶ୍ୱାସ ଓ ଏହା ମୋର ବିବେକସଙ୍ଗତ ।

ଗୋପବନ୍ଧୁ ସତ୍ୟପ୍ରତି ଅନୁରାଗ ଦେଖାଇ ନିଜ ପକ୍ଷ ସମର୍ଥନ ପାଇଁ କୌଣସି ଓକିଲ ଦେଲେ ନାହିଁ । ଏପରିକି କୌଣସି ପ୍ରଶ୍ନର ଉତ୍ତର ମଧ୍ୟ ଦେଲେ ନାହିଁ । କେବଳ ନୀରବରେ କାଠ ଅଡ଼ାରେ ଠିଆ ହୋଇ ରହିଲେ । କିନ୍ତୁ ସୁରେଶ ବାବୁ ତାଙ୍କ ଅଭିଜ୍ଞତା

ଏହି ପ୍ରସଙ୍ଗରେ ଲେଖିଛନ୍ତି—"ଯେଉଁ କେତେ ଦିନ ଧରି ମକଦ୍ଦମାର ବିଚାର ହେଲା, ପ୍ରତିଦିନ ହଜାର ହଜାର ଲୋକ ମକଦ୍ଦମା ଦେଖିବା ପାଇଁ ଭିଡ଼ ହେଉଥିଲେ । ମଫସଲ ଅଞ୍ଚଳରୁ ଶହ ଶହ ଲୋକ ଶଗଡ଼ରେ ଆସୁଥିଲେ । × × × ରାୟ ଶୁଣାଇବା ତାରିଖ ଦିନ ସକାଳେ ଦେଖାଗଲା କଚେରି ଘରପଟେ ସହର ଭିତରେ ୩୦ ହଜାରରୁ ଊର୍ଦ୍ଧ୍ୱ ଲୋକ ଗୋପବନ୍ଧୁଙ୍କ ବିରୁଦ୍ଧରେ ମାନହାନି ମକଦ୍ଦମାର ରାୟ ଶୁଣିବାକୁ ଜମା ହୋଇଛନ୍ତି । ରାୟ ଶୁଣାଇବା ଦିନ ସକାଳେ ମୁଁ ଘରେ ରାୟ ଲେଖୁଥିଲି ବେଳେ ସବ୍‌ଡିଭିଜନ ଅଫିସର ରାୟ ବାହାଦୁର ଅଜୟ ଚନ୍ଦ୍ର ଦାସ ମୋ ବଙ୍ଗଳାକୁ ଆସିଲେ । ଖୋର୍ଦ୍ଧା ଭଳି ଛୋଟ ସହରରେ ଯେପରି ଭାବରେ ଏ ବିରାଟ ଜନସମୁଦ୍ର ଘରଆଡ଼େ ଘେରି ରହିଛି ସେଥିରେ ସେ ଭାରି ଆତଙ୍କିତ ହୋଇପଡ଼ିଥିଲେ ।"

ଅଜୟ ବାବୁ ମକଦ୍ଦମାର ବିଚାରକ ସୁରେଶ ବାବୁଙ୍କୁ ଅତି କାତର କଣ୍ଠରେ କହିଲେ—"ବଢ଼ି ପାଣି ମାଡ଼ି ଆସିଲା ପରି ଲୋକେ ମଫସଲରୁ ଧାଇଁଲେଣି । ଆଜି ଆପଣଙ୍କ ଉପରେ ଆମମାନଙ୍କ ଧନଜୀବନ ନିର୍ଭର କରୁଛି । ମୋ ସରକାରୀ ବସା କି ତ ଛଣ ଛପର । ଆପଣ ଯଦି ଗୋପବନ୍ଧୁଙ୍କୁ ଦଣ୍ଡିବେ ତେବେ ଲୋକେ ଆମ ଟ୍ରେଜେରି ପୋଡ଼ିବେ, ତା'ପରେ ମୋର ଘରେ ନିଆଁ ଲଗାଇବେ ।"

ଡେପୁଟି କଲେକ୍ଟର ଶ୍ରୀ ବୋଷ ଅତି ଦେଶପ୍ରେମୀ ଥିଲେ । କଟକର ତତ୍କାଳୀନ ବିଖ୍ୟାତ ଓକିଲ ଜାନକୀ ବାବୁ ମଧ୍ୟ ପୁଅକୁ ଏହି ମକଦ୍ଦମାର ରାୟ ଗୋପବନ୍ଧୁଙ୍କ ସପକ୍ଷରେ ଦେବାପାଇଁ ବହୁତ ପ୍ରବର୍ତ୍ତାଇଥିଲେ । ଶେଷକୁ ସୁରେଶ ବାବୁ ରାୟ ଶୁଣାଇ ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଖଲାସ କରିଦେଲେ । ସମଗ୍ର ଜନତାର ବିପୁଳ ଜୟଧ୍ୱନି ସମଗ୍ର ଖୋର୍ଦ୍ଧା ଆକାଶକୁ ମୁଖରିତ କଲା । କଚେରି ହତା ସାମ୍ନା ପଡ଼ିଆରେ ବିପୁଳ ଜନସଭାର ଆୟୋଜନ ହେଲା । ହରିବୋଲ ହୁଳହୁଳିର ଧ୍ୱନି, ଫୁଲମାଳରେ ଗୋପବନ୍ଧୁ ପୋତି ହୋଇ ପଡ଼ିଲେ । ଲୋକମାନଙ୍କର ଏପରି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଓଡ଼ିଶାର ଅନ୍ୟ କାହା ଭାଗ୍ୟରେ ଘଟି ନାହିଁ ।

ସେଦିନ ଥିଲା ୨୧।୧୧।୧୯୨୧ ତାରିଖ । ଗୋପବନ୍ଧୁଙ୍କୁ ନିର୍ଦ୍ଦୋଷରେ ଖଲାସ କରି ନିଜେ ବିଚାରପତି ମିଶନ ଉପରୁ ତାଙ୍କୁ ନମସ୍କାର କରିଥିଲେ । ଗୋପବନ୍ଧୁ ଜଣାଇଲେ ପ୍ରତି ନମସ୍କାର ଏହି । ରାୟରେ ସରକାର ବିଚଳିତ ହୋଇ ସୁରେଶ ବାବୁଙ୍କୁ ଖୋର୍ଦ୍ଧାରୁ ଅନ୍ୟତ୍ର ବଦଳି କରିଦେଲେ । ସୁରେଶ ବାବୁ ମଧ୍ୟ ଏହି ଘଟଣାରେ ନିଜର ଟେକ ରଖି ଚାକିରିରୁ ଇସ୍ତଫା ଦେଇଦେଲେ । ପରେ ସୁରେଶବାବୁ କୌଣସି ପ୍ରସଙ୍ଗରେ ଗୋପବନ୍ଧୁଙ୍କ ସମ୍ପର୍କରେ କହିଥିଲେ, "ଗୋପବନ୍ଧୁଙ୍କର ଅନେକ ଗୁଣ ଥିଲା । କେତେକ କ୍ଷେତ୍ରରେ ମହାତ୍ମାଗାନ୍ଧିଙ୍କ ଅପେକ୍ଷା ତାଙ୍କୁ ମୁଁ ଉଚ୍ଚ ଆସନ ଦିଏ ।" ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱକୁ ଚିହ୍ନି ଓ ସମ୍ମାନ ଦେଇ ସୁରେଶବାବୁ ଯେ ବଡ଼ ହୋଇଥିଲେ—ଏଥିରେ ଅତ୍ୟୁକ୍ତି ନାହିଁ ।

ସେଦିନ ଗୋପବନ୍ଧୁଙ୍କୁ ଲୋକେ ଏକ ପଟୁଆରରେ ଜେଲ୍‌ଖାନା ପାଖ ପଡ଼ିଆକୁ

ପହଞ୍ଚିଲେ । ଏଠାରେ ଆୟୋଜିତ ସଭାରେ ଜନସାଧାରଣଙ୍କ ଶ୍ରଦ୍ଧା ଓ ଧୈର୍ଯ୍ୟ ସକାଶେ ଗୋପବନ୍ଧୁ ଅନ୍ତରର ଧନ୍ୟବାଦ ଜଣାଇଥିଲେ । ଲୋକମାନଙ୍କର ଏହି ସ୍ନେହ କଥା ବର୍ଣ୍ଣନା କଲାବେଳେ ତାଙ୍କ ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ୁଥିଲା । ସେଦିନ ସହରସାରା ପଟୁଆରରେ ଲୋକେ ତାଙ୍କୁ ବୁଲାଇଲେ । ୨୨ ତାରିଖ ଦିନ ପୁରୀରେ ପହଞ୍ଚିଲା ବେଳକୁ ୫ ହଜାର ଲୋକ ତାଙ୍କୁ ପଟୁଆରରେ ଜଗନ୍ନାଥ ଦର୍ଶନ କରାଇ ସମୁଦ୍ର କୂଳ ସଭା ସ୍ଥାନକୁ ନେଇ ଯାଇଥିଲେ । ତା’ ପରଦିନ ସତ୍ୟବାଦୀରେ ତାଙ୍କୁ ସେହିପରି ଅଭ୍ୟର୍ଥନା କରାଯାଇଥିଲା ।

## ଧଳା, କଳା ଓ ପୀତ—ମାତ୍ର ତିନୋଟି ଜାତି

ମହାତ୍ମାଗାନ୍ଧି ହରିଜନମାନଙ୍କୁ ସମସ୍ତ ସାମାଜିକ ଅଧିକାର ଦେବାରେ ଯେଉଁ ପଦକ୍ଷେପ ନେଇଥିଲେ ତହିଁରେ ରାଜନୈତିକ ଉଦ୍ଦେଶ୍ୟ ଅତି ପ୍ରଚ୍ଛନ୍ନଭାବରେ ମିଶି ରହିଥିଲା । ସାମାଜିକ ଦୈନ୍ୟ ଓ ବୈଷମ୍ୟରେ ସଢ଼ୁଥିବା ଏ ଦେଶର ଅଗଣିତ ଜନତା ଏ ଜାତିର ଗଣ୍ଡି ସ୍ୱରୂପ । ସେମାନଙ୍କ ମଧ୍ୟରେ ସାମାଜିକ ବ୍ୟବଧାନ ଯୋଗେ ଜାତୀୟ ଜାଗରଣ ପାଇଁ ଚେତନା ନ ଆସୁଥିବା ସ୍ୱାଭାବିକ । ଫଳରେ ଜାତିର ବହୁଭାଗ ଲୋକେ ସ୍ୱାଧୀନତା ସଂଗ୍ରାମ ପାଇଁ ଉଦାସୀନତା ପ୍ରକାଶ କରୁଛନ୍ତି । ସ୍ୱାଧୀନତାର ଲୋଭ ତଥାପି ତାଙ୍କ ମନରୁ ସାମାଜିକ ପରାଧୀନତା ତଥା ହୀନମନ୍ୟତା ଦୂରେଇ ଦେଇ ପାରୁ ନାହିଁ । ପାଣିପବନ ପରି ସାମାଜିକ ବିଶ୍ୱର ମୌଳିକ ଅଧିକାରକୁ ସେମାନଙ୍କ ପାଇଁ ସାବ୍ୟସ୍ତ କରିବା ଦିଗରେ ଗାନ୍ଧିଜୀ ତେଣୁ ବିଶେଷ ଦୃଷ୍ଟି ଦେଇଥିଲେ ।

ଗୋପବନ୍ଧୁ ବହୁ ଆଗରୁ ଓଡ଼ିଶାରେ ସେହି ସାମାଜିକ ଆନ୍ଦୋଳନର ପ୍ରବକ୍ତା ହୋଇଥିଲେ । ସତ୍ୟବାଦୀ ବନବିଦ୍ୟାଳୟ ଏହି ସାମାଜିକ ସମତାର ଆଦର୍ଶ ଉପରେ ଗଢ଼ାହୋଇଥିଲା । ଏବେ ମହାତ୍ମାଗାନ୍ଧିଙ୍କ ଆହ୍ୱାନ ଏଥିରେ ମିଶିଗଲା । ୧୯୨୧ ମସିହାର ଶେଷ ଭାଗ ହେବ । ଗଞ୍ଜାମର ଆସ୍କାରେ ହରିଜନଙ୍କ ମନ୍ଦିର ପ୍ରବେଶ ନେଇ ଏକ ସମ୍ମିଳନୀ ହେଉଥାଏ । ଓଡ଼ିଶାର ରକ୍ଷଣଶୀଳ ପଣ୍ଡିତମାନେ ଏହି ହରିଜନ ଅଧିକାରର ପ୍ରତିରୋଧ କରି ଏହି ସମ୍ମିଳନୀ ଡାକିଥିଲେ । ତେଣୁ ବହୁ ଅଞ୍ଚଳର ନ୍ୟାୟିକ ପଣ୍ଡିତମାନେ ଏଠାରେ ସମବେତ ହେଲେ । ସେମାନେ ଏହି ସମ୍ମିଳନୀର ଦାୟିତ୍ୱ ଗୋପବନ୍ଧୁଙ୍କ ଉପରେ ଦେଇ ତାଙ୍କୁ ପୂର୍ବରୁ ନିମନ୍ତ୍ରଣ କରିଥିଲେ । ଦାସେ ଆପଣେ ସଭାପତି ହୋଇଥିଲେ ।

ପଣ୍ଡିତମାନଙ୍କର ସମସ୍ତ ବିରୋଧ ଯୁକ୍ତି ତଥା ଜାତୀୟବାଦୀମାନଙ୍କର ପ୍ରଗତି ପନ୍ଥୀ ଦୃଷ୍ଟିଭଙ୍ଗୀ ବୁଝିବା ପରେ ସଭାପତି ଆସନରୁ ଗୋପବନ୍ଧୁ କହିଲେ—“ପୁରୀରେ ବଡ଼ ଦେଉଳ ଓ ବଡ଼ଦାଣ୍ଡ, ସେଠି ତ ଅସ୍ପୃଶ୍ୟତା ନାହିଁ । ଆନନ୍ଦ ବଜାରରେ ସମସ୍ତେ ଏକତ୍ର

ଅଭଡ଼ା ଖାଆନ୍ତି । ଧୋବା ଯାଇ ମୁକ୍ତିମଣ୍ଡପ ପାଖ ଦକ୍ଷିଣ ଦ୍ୱାରରୁ ଜଗନ୍ନାଥଙ୍କ ଲୁଗା ସଫା କରିବାକୁ ଆଣେ । ଚମାରମାନେ ଅଣସର ଚାଟି ନେଇ ଦେଉଳ ମଧ୍ୟରେ ବାନ୍ଧନ୍ତି । ହାଡ଼ି ଓ ମେହେନ୍ତରମାନେ ବେଢ଼ା ଓଳାନ୍ତି ଓ ସେଥିପାଇଁ ସେମାନଙ୍କର ଖଞ୍ଜା ମଧ୍ୟ ଅଛି । ଏମାନେ ରଜାଙ୍କ ଘରୁ ପୁଣି ବାର୍ଷିକ ଶାଢ଼ି ପାଆନ୍ତି । ରଥ ଉପରେ ବାଉରି ବସି ରଥର ବ୍ରେକ୍ ଧରେ । ସେଠି ଅନ୍ୟମାନେ ପଶିବାର ନିୟମ ନାହିଁ । ପୁଣି ପୁରୀ ଠାକୁରରଜା ମେହେନ୍ତର ବେଶରେ ଛେରା ପହଁରା କରନ୍ତି ।”

ପଣ୍ଡିତମାନେ ତାଙ୍କ ବକ୍ତବ୍ୟର ଦୃଷ୍ଟିଭଙ୍ଗୀ ଦେଖି ବିଚଳିତ ହେଲେ । ଶେଷରେ ଗୋପବନ୍ଧୁ କହିଲେ—“ଓଡ଼ିଶାର ପ୍ରାଚୀନ ଲୋକେ ବଡ଼ ବୁଦ୍ଧିମାନ୍ ଥିଲେ । ଖାଲି ବ୍ରାହ୍ମଣ, କରଣ, ହାଡ଼ି, କଣ୍ଡରା ନୁହଁନ୍ତି—ଜଗନ୍ନାଥ ଧାମରେ ପୃଥିବୀର ସମସ୍ତ ଜାତିର ସମନ୍ୱୟ ହୋଇଅଛି ।

ପୃଥିବୀରେ ଏତେ ଜାତି ନାହିଁ । ମାତ୍ର ତିନୋଟି ଜାତି ଅଛି—ଧଳା, କଳା, ଓ ପୀତ (White, Black and Yellow) । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା—ଏହି ତିନି ଜାତିର ପ୍ରତୀକ । ସେଠାରେ ତେଣୁ ପୃଥିବୀର ସବୁ ଜାତିର ସମନ୍ୱୟ ହୋଇଅଛି । ତେଣୁ ସେ ଜଗନ୍ନାଥ । ତେଣୁ ଏ ଅସ୍ପୃଶ୍ୟତା ଜଗନ୍ନାଥ ବାରଣ ନ କରୁଥିବା ବେଳେ ଆମେ କାହିଁକି ତା ବାରଣ କରିବା ? ଆମର ଶାସ୍ତ୍ରକୁ ଆମେ ସମ୍ମାନ ଦେଉଛୁ; କିନ୍ତୁ ବଡ଼ଠାକୁର ହିଁ ଆମର ଧର୍ମ ଓ ସାକ୍ଷୀ ।”

ସବୁ ପଣ୍ଡିତମାନେ ଉଠିଯିବାକୁ ଲାଗିଲେ । କେହି ପ୍ରତିବାଦ କରିବାର ଅବକାଶ ନଥିଲା । କଂଗ୍ରେସ ଲୋକମାନେ ଖୁବ୍ ଖୁସି ହେଲେ । ଜାତୀୟ ଆନ୍ଦୋଳନ ଗଞ୍ଜାମରେ କ୍ରମେ ତେଜି ଉଠିଲା । ହରିଜନମାନେ ଗୋପବନ୍ଧୁଙ୍କୁ ସାକ୍ଷାତ ଅବତାର ପରି ମଣିଲେ ।

## କଂଗ୍ରେସର ରଥଚକ

ଓଡ଼ିଶାରେ ଜାତୀୟ କଂଗ୍ରେସର ପ୍ରଥମ ଚେତନା ଗୋପବନ୍ଧୁ ଆଣିଥିବା କଥା ଆଗରୁ ସୂଚିତ ହୋଇଛି । ପୁଣି ଏ ସଙ୍ଗଠନ ପାଇଁ ତାଙ୍କର ପ୍ରାଣପାତ୍ ଉଦ୍ୟମ ତାଙ୍କୁ ଓଡ଼ିଶାରେ କଂଗ୍ରେସ ଦଳର ଅପ୍ରତିଦ୍ୱନ୍ଦ୍ୱୀ ନେତାଭାବରେ ପରିଚିତ କରାଇଥିଲା । ଅସହଯୋଗ ଓ ବିଦେଶୀ ବର୍ଜନର ବିପୁଳ କର୍ମ ପ୍ରେରଣା ଭିତରେ ଓଡ଼ିଶା କଂଗ୍ରେସ କ୍ରମେ ଦୃଢ଼ ଓ ସମର୍ଥ ହେଉଥିଲା । ଅନ୍ୟାନ୍ୟ ପ୍ରଦେଶ ତୁଳନାରେ ଏ ସମୟକୁ ଓଡ଼ିଶାରେ ଏ ଜାତୀୟ ଅନୁଷ୍ଠାନ ଅର୍ବାଚୀନ ଥିବାରୁ ଲୋକଙ୍କ ମଧ୍ୟରେ କଂଗ୍ରେସର ଚିନ୍ତା ଆଣିବା ପାଇଁ ନେତାମାନଙ୍କୁ ଅଧିକ ଆୟାସ ଓ ଶ୍ରମ ସ୍ୱୀକାର କରିବାକୁ ହେଉଥିଲା । ନାଗପୁର କଂଗ୍ରେସ ପରେ ପରେ

ଓଡ଼ିଶା ପ୍ରଦେଶର ସର୍ବପ୍ରଥମ ପ୍ରାଦେଶିକ କମିଟି ଗୋପବନ୍ଧୁଙ୍କ ସଭାପତିତ୍ୱରେ ଗଠିତ ହୋଇଥିଲା ଓ ଏ କମିଟି ମାଧ୍ୟମରେ ଅସହଯୋଗର କାର୍ଯ୍ୟକ୍ରମ 'ତିଲକ ସ୍ୱରାଜ୍ୟ ପାଣ୍ଠି' ପାଇଁ ଅର୍ଥ ଆଦାୟ, ଖଦଡ଼ ପ୍ରଚାର, ଜାତୀୟ ସ୍ୱେଚ୍ଛାସେବୀ ବାହିନୀ ଗଠନ, ଉତ୍କଳ ସ୍ୱରାଜ୍ୟ ଶିକ୍ଷା ପରିଷଦ ଆଦି କାର୍ଯ୍ୟାବଳୀ ପରିଚାଳିତ ହେଉଥିଲା ।

୧୯୨୧ ମସିହା ଡିସେମ୍ବର ଅହମଦାବାଦ କଂଗ୍ରେସ ଅଧିବେଶନ ପୂର୍ବରୁ ଓଡ଼ିଶାରେ ତେଷଠି ହଜାର ଲୋକ କଂଗ୍ରେସର ପ୍ରାଥମିକ ସଭ୍ୟଶ୍ରେଣୀଭୁକ୍ତ ହୋଇଥିଲେ ଓ ତିଲକ ସ୍ୱରାଜ୍ୟ ପାଣ୍ଠି ପାଇଁ ମାତ୍ର ୩୮ ହଜାର ଟଙ୍କା ଆଦାୟ ହୋଇଥିଲା । ଏହା ଓଡ଼ିଶା ପାଇଁ ନିର୍ଦ୍ଧାରିତ ଲକ୍ଷ୍ୟ ତୁଳନାରେ ଢେର କମ୍ ଥିଲା; କିନ୍ତୁ ଆଶାନୁରୂପ ଭାବରେ ଓଡ଼ିଶାରେ ଚରଖା ପ୍ରବର୍ତ୍ତିତ ହୋଇପାରିଥିଲା । ୧୯୨୨ ମସିହା ନିମନ୍ତେ ୧୯୨୧ ନଭେମ୍ବର ମାସରେ ଉତ୍କଳ ପ୍ରଦେଶ କମିଟି ପାଇଁ ନିର୍ବାଚନ ହୋଇଥିଲା । ଏଥିରେ ସର୍ବସମ୍ମତିକ୍ରମେ ଗୋପବନ୍ଧୁ ସଭାପତି ଓ ପୁରୀର ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ସହକାରୀ ସଭାପତି ମନୋନୀତ ହୋଇଥିଲେ । ଶ୍ରୀଯୁକ୍ତ ଭଗୀରଥି ମହାପାତ୍ର ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ସମ୍ପାଦକ ରୂପେ ମନୋନୀତ ହୋଇଥିଲେ । ଏମାନଙ୍କ ବ୍ୟତୀତ ଏକରାମ୍ ରସୁଲ୍, ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ, ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକ, ଶ୍ରୀଯୁକ୍ତ ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ନୀଳକଣ୍ଠ ଦାସ, ଶ୍ରୀ ବ୍ରଜମୋହନ ପଣ୍ଡା ଓ ଶ୍ରୀ ଅଟଳ ବିହାରୀ ଆଚାର୍ଯ୍ୟ ଏହି କମିଟିର ସଭ୍ୟ ମନୋନୀତ ହେଲେ । ଅନ୍ୟ ଗୋଟିଏ ସ୍ଥାନ ଛିନ୍ନାଞ୍ଚଳ ପାଇଁ ଉଦ୍ଦିଷ୍ଟ ରହିଥିଲା, ତେଣୁ ଏ ସ୍ଥାନଟି ଶୂନ୍ୟ ରହିଥିଲା ।

୧୯୨୧ ମସିହା ଡିସେମ୍ବର ୧୦ ତାରିଖରେ ପୋଲିସ ଜିଲ୍ଲା ଓ ପ୍ରଦେଶ କଂଗ୍ରେସ କମିଟି ମୁଖ୍ୟ କାର୍ଯ୍ୟାଳୟମାନଙ୍କୁ ଘେରାଉ କଲେ । ସରକାର ବିରୋଧୀ ଗୁପ୍ତ କାଗଜପତ୍ର ଜବତ କରିବା ଏହି ତନଖିର ଉଦ୍ଦେଶ୍ୟ ଥିଲା । ଗୋପବନ୍ଧୁ ସେଦିନ ସାକ୍ଷୀଗୋପାଳରେ ଥିଲେ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ଓ ଛାତ୍ରାବାସ, ଗୋପବନ୍ଧୁଙ୍କ ରହିବା ଘର ଖାନତଲାସ କରିବା ପାଇଁ ବହୁ ସଂଖ୍ୟାରେ ଲାଠିଧାରି ପୋଲିସ ସତ୍ୟବାଦୀରେ ପହଞ୍ଚିଲେ । ଗୋପବନ୍ଧୁ ସେମାନଙ୍କୁ ବାଧା ଦେଲେନାହିଁ, ବରଂ ନୀରବରେ ଷ୍ଟେସନ ଅଭିମୁଖେ ଆସି କଟକ ଯାତ୍ରା କଲେ । କଟକରେ ପ୍ରାଦେଶିକ କଂଗ୍ରେସ କମିଟିର ଏକ ବୈଠକ ସେଦିନ ବସିବାର ଥାଏ । କଟକରେ କଂଗ୍ରେସ ଅଫିସ ସେତେବେଳକୁ ପୋଲିସ ଘେରାଉ କରି ସାରିଥିଲେ । ପୋଲିସର ଏହି ଆକସ୍ମିକ ଅବାଞ୍ଛିତ କାର୍ଯ୍ୟ ବିଜୁଳି ବେଗରେ ଓଡ଼ିଶାସାରା ଖେଳିଗଲା । ଅସହଯୋଗର ଶୃଙ୍ଖଳା ଦେଶବାସୀ ଅନୁଭବ କଲେ । ସେମାନଙ୍କ ମନରେ ଭୀତି ଓ ଶଙ୍କା ଲାଗିରହିଲା । ଓଡ଼ିଶା-ବିହାର ସମେତ ସମଗ୍ର ଭାରତସାରା ବ୍ୟାପକ ଭାବରେ ଏପରି ଖାନତଲାସ ଓ ଜୁଲମ କରାଯାଇଥିଲା । ପୋଲିସ ପ୍ରତି କ୍ରମେ ଲୋକମାନଙ୍କ ମନରେ ଘୃଣା ଆସିଲା । ଓଡ଼ିଶା ବାହାରେ ବହୁ ସ୍ଥାନରେ ଏହି ଘୃଣା ହିଂସାକାଣ୍ଡରେ ମଧ୍ୟ ପରିଣତ ହେଲା ।

ଏହି ଖାନତଲାସ ପରେ ଗୋପବନ୍ଧୁ ଓଡ଼ିଶାବାସୀଙ୍କ ଉଦ୍ଦେଶ୍ୟରେ ତା ୧୭।୨।୨୨ରେ ଏକ ବାର୍ତ୍ତା ପ୍ରକାଶ କରି ଦେଶବାସୀଙ୍କ ବୃଥାଭୟ ଭାଙ୍ଗିବାକୁ ଉଦ୍ୟମ କରିଥିଲେ—“ମୋର ବିଶ୍ୱାସ ଅସହଯୋଗ ଆନ୍ଦୋଳନ ଦେଶର ଶିରାପ୍ରଶିରାରେ ଭେଦି ଅଛି । ପଲ୍ଲୀଗ୍ରାମର କୃଷକ, ମୂଲିଆ, ମଜୁରଦାରମାନେ ଏ ଆନ୍ଦୋଳନର ସୈନିକ । ଆଜି ଭାରତର ଏହି ଶାନ୍ତି ଯୁଦ୍ଧରେ ଲକ୍ଷ ଲକ୍ଷ ଦୀନଦରିଦ୍ର କୃଷକ, ବ୍ୟବସାୟୀ, ଶ୍ରମଜୀବୀ, ବାଳକ, ଯୁବା, ବୃଦ୍ଧ, “ସର୍ବେହୋଇଣ ଏକ ମୁଖ ବୋଇଲେ ନାରାୟଣ ରଖ” ସ୍ୱୟଂ ଭଗବାନ ନାୟକ ରୂପେ ଏ ଶାନ୍ତିସେନାକୁ ଚଳାଇବେ । ଉତ୍କଳବାସୀମାନେ ଏହାହିଁ ବିଶ୍ୱାସ ରଖ । ବିଶ୍ୱାସଠାରୁ ବଳ ଆଉ ଅଧିକ ବଳ କିଛି ନାହିଁ । ଏହି ବିଶ୍ୱାସ ହୃଦୟରେ ଦୃଢ଼ ହେଲେ ପୁଲିସ ଭୟ ଆଉ ରହିବ ନାହିଁ । ସର୍ବସ୍ୱାନ୍ତ ହେଲେ ସୁଦ୍ଧା ତୁମେ ବିଚଳିତ ହେବ ନାହିଁ । ପ୍ରାଣ ଗଲେ ସୁଦ୍ଧାପଛ ଘୁଞ୍ଚା ଦିଅନାହିଁ । ସବୁବେଳେ ମନେରଖ—

“ଯତ୍ର ଯୋଗେଶ୍ୱରଃ କୃଷ୍ଣୋ
ଯତ୍ର ପାର୍ଥୋ ଧନୁର୍ଦ୍ଧରଃ,
ତତ୍ର ଶ୍ରୀ ର୍ବିଜୟୋଭୂତି
ର୍ଧ୍ରୁବାନୀତିର୍ମତିର୍ମମ ।”

“ଭଗବାନ ଶ୍ରୀକୃଷ୍ଣ ଯେଉଁ ପକ୍ଷରେ ଏବଂ ଧନୁର୍ଦ୍ଧର ଅର୍ଜୁନ ଯେଉଁ ପକ୍ଷରେ ସେ ପକ୍ଷର ଜୟ ନିଶ୍ଚୟ ।” ଅଉ ଏକ ନିର୍ଦ୍ଦେଶନାମାରେ ସେ ଓଡ଼ିଶା କଂଗ୍ରେସ କର୍ମୀମାନଙ୍କୁ ବର୍ତ୍ତମାନ ପାଇଁ ସମସ୍ତ ସଭା, ଶୋଭାଯାତ୍ରା, ପଟୁଆର ବନ୍ଦ କରିବାକୁ କହିଥିଲେ । ଏପରିକି କୌଣସି କଂଗ୍ରେସ ନେତା ବା କର୍ମୀ ଗିରଫ ହୋଇ ଜେଲ୍ ଗଲେ ମଧ୍ୟ ଅନ୍ୟମାନେ ଉତ୍ତେଜନା ପ୍ରକାଶ ନ କରିବାକୁ ଓ ଶାନ୍ତିଶୃଙ୍ଖଳା ସହିତ କେବଳ ସୂତାକଟା, କପାଚାଷ, ଆଦି ଗଠନମୂଳକ କାର୍ଯ୍ୟ ଚଳେଇ ରଖିବାକୁ ସ୍ପଷ୍ଟ କହିଥିଲେ । ଏହା ପରେ ପରେ ପଣ୍ଡିତ ମୋତିଲାଲ ନେହରୁ, ଲାଲା ଲାଜପତ୍ ରାୟ, ଦେଶବନ୍ଧୁ ଚିତ୍ତରଞ୍ଜନ ଆଦି କଂଗ୍ରେସ ନେତାମାନେ ବନ୍ଦୀଶାଳାରେ ସ୍ଥାନନେଲେ । ପୋଲିସ ପକ୍ଷରୁ ବ୍ୟାପକ ଗିରଫ କରାଗଲା । କାରାଗାରରେ ହଜାର ହଜାର ଜାତୀୟ କର୍ମୀ ପଶିବାକୁ ପ୍ରସ୍ତୁତ ହୋଇଗଲେ । କାରାଗାର ହେଲା ସେମାନଙ୍କର ତୀର୍ଥକ୍ଷେତ୍ର । ଅମଲାତନ୍ତ୍ର ସହିତ ସହଯୋଗ ନ କରିବାକୁ ଓ ଶାନ୍ତିର ସହିତ ସଂଗ୍ରାମ ଚଳେଇବାକୁ ସେମାନେ ଆହ୍ୱାନ କଲେ ।

ଅହମଦାବାଦ କଂଗ୍ରେସରେ ‘ଶାନ୍ତିପୂର୍ଣ୍ଣ ଭାବରେ ଆଇନ ଲଙ୍ଘନ’ କାର୍ଯ୍ୟକ୍ରମ ଗୃହୀତ ହୋଇଥିଲା । ଏହି ସମୟରେ ମହାତ୍ମାଗାନ୍ଧି ଗୁଜୁରାଟର ବର୍ଦ୍ଦୋଲି ଠାରେ ଗଣ ଅସହଯୋଗ ଆନ୍ଦୋଳନର ଯୋଜନା କଲେ ; କିନ୍ତୁ ଯୁକ୍ତପ୍ରଦେଶ ଗୋରଖପୁରର ଚୌରିଚୌରା ଗ୍ରାମରେ ଉତ୍ତ୍ୟକ୍ତ ଦଳେ ଜନତା ଏକ ଥାନା ପୋଡ଼ିଦେଲେ ଓ ସେମାନଙ୍କୁ ଅପମାନିତ କରିଥିବା ପୋଲିସଙ୍କୁ ହତ୍ୟା କରିଥିଲେ । ମହାତ୍ମାଗାନ୍ଧି ଏଥିରେ ବିଚଳିତ ହୋଇପଡ଼ିଲେ ।

ଏ ଆଇନ ଅମାନ୍ୟ ଆନ୍ଦୋଳନକୁ ସେ ଏକ 'Himalayan Blunder' ବୋଲି କହି ଏହାକୁ ବନ୍ଦ କରିବାକୁ ଡାକରା ଦେଲେ । ସେ ବ୍ୟକ୍ତିଗତ ଆତ୍ମଶୁଦ୍ଧି ପାଇଁ ପାଞ୍ଚଦିନ ଅନଶନ କରିଥିଲେ । ଏପରି ଅବସ୍ଥାରେ ମଧ୍ୟ ଭାଇସରାୟ ଲର୍ଡ଼ ରିଡ଼ିଂ ତାଙ୍କୁ ଗିରଫ କରିବାକୁ ଆଦେଶ ଦେଇଥିଲେ । ରାଜଦ୍ରୋହମୂଳକ ଲେଖା ଲେଖିଥିବା ଅପରାଧରେ ତାଙ୍କୁ ଅଭିଯୁକ୍ତ କରାଯାଇଥିଲା । ଗାନ୍ଧି କିନ୍ତୁ ସଦର୍ପରେ ହସିହସି କହିଲେ—"ଆଇନରେ ଯାହାକୁ ଅପରାଧ ବୋଲି କୁହାଯାଉଛି ସେଥିପାଇଁ ମୁଁ ସର୍ବୋଚ୍ଚ ଦଣ୍ଡ ଭୋଗିବାକୁ ପ୍ରସ୍ତୁତ; କିନ୍ତୁ ମୋର ଯାହା ପରମ କର୍ତ୍ତବ୍ୟ ମୁଁ ତାହା ହିଁ କରୁଛି ।" ଜାତୀୟ କଂଗ୍ରେସ ନିଷ୍ପତ୍ତି ନେଲା— "ଜେଲ୍‌ରେ ସଢ଼ି ଓ ଫାଶୀ ଖୁଣ୍ଟରେ ଚଢ଼ି ଆମକୁ ଆଗେଇ ଯିବାକୁ ହେବ ।" ଇତିହାସର ସକଳ ଭ୍ରୂକୁଟୀକୁ ଉପହାସ କରି ଜାତୀୟ କଂଗ୍ରେସର ରଥଚକ ଆଗକୁ ଆଗକୁ ଗଡ଼ିଚାଲିଲା । ସରକାରଙ୍କ ନିର୍ମମ ନିଷ୍ପେଷଣ ପାଖରେ ଜାତୀୟ ନେତାମାନେ ମୁଣ୍ଡ ନୋଇଁଲେ ନାହିଁ; କିନ୍ତୁ ଏକବର୍ଷ ମଧ୍ୟରେ ସ୍ୱାଧୀନତା ନ ଆସିବାରୁ ସାଧାରଣ ଲୋକଙ୍କ ମନରେ ନିଷ୍କ୍ରିୟତା ଓ ବିରତି ଦେଖାଗଲା । ସେମାନେ କ୍ରମେ ଧୈର୍ଯ୍ୟହରା ହୋଇପଡ଼ିଲେ ।

## ୧୪୪ ଧାରାର ଜାଲ

୧୯୨୨ ଜାନୁୟାରୀ ୧୧ ତାରିଖରେ ଗୋପବନ୍ଧୁ କଟକ କାଠଯୋଡ଼ି ବାଲିରେ ଏକ ସଭାରେ ଅହମଦାବାଦ କଂଗ୍ରେସର ନିର୍ଦ୍ଧାରିତ କେତେକ ପ୍ରସଙ୍ଗରେ ଆଲୋଚନା କରିବେ ବୋଲି ସହରରେ ପ୍ରଚାରିତ ହେଲା । ମାତ୍ର ତାଙ୍କ ଉପରେ ୧୦ ତାରିଖଠାରୁ ସରକାରଙ୍କ ୧୪୦ ଧାରା ନୋଟିସ୍ ଜାରି ହୋଇଗଲା । ୧୪୪ ଧାରା ଅମାନ୍ୟ ନକରି ଗୋପବନ୍ଧୁ ତାଙ୍କ ବକ୍ତୃତା ଲିଖିତ ଆକାରରେ ସଭାକୁ ପଠାଇଦେଲେ । ଏଥିରେ ଜିଲା ମାଜିଷ୍ଟ୍ରେଟ ସମ୍ଭବତଃ ଅପମାନିତ ବୋଧକଲେ । ସେ ସଙ୍ଗେ ସଙ୍ଗେ ତା ୧୩।୧।୨୨ରେ ଲିଖିତ ବକ୍ତୃତା ଉପରେ ମଧ୍ୟ ୧୪୪ ଧାରା ଜାରି କରିଦେଲେ । ଏହାପରେ ଗୋପବନ୍ଧୁ ସିଂହଭୂମ ଓ ଚକ୍ରଧରପୁର ଅଞ୍ଚଳକୁ ଯାତ୍ରାକଲେ । ଅଳ୍ପଦିନ ମଧ୍ୟରେ ସେଠାରେ ଇଂରେଜ ସରକାରଙ୍କ ୧୪୪ ଧାରା ନୋଟିସ୍‌ର ଜାଲ ବିଛାଇ ହୋଇଗଲା । ଏପରି କି ଗୋପବନ୍ଧୁ ଏହି ସମୟରେ ଝାରସୁଗୁଡ଼ା, ବରଗଡ଼ ଓ ସମ୍ବଲପୁର ସମ୍ମିଳନୀ କାର୍ଯ୍ୟ ସାରି ଫେରୁଥିବାବେଳେ ବାଟ ଜଗି ବାଲେଶ୍ୱର ଜିଲା ହାକିମଙ୍କ ୧୦୪ ଧାରା ହୁକୁମ ରେଲଗାଡ଼ି ମଧ୍ୟରେ ଜାରି କରାଯାଇଥିଲା । ସାରା ଉତ୍କଳରେ ଜନଜାଗରଣର ନୂତନ ବନ୍ୟା ପ୍ରବାହିତ ହେଉଥିଲା ଏବଂ ପ୍ରତ୍ୟେକ ସଭାସମିତିରେ ଗୋପବନ୍ଧୁଙ୍କ ଉପସ୍ଥିତିକୁ ଜନତା ବ୍ୟାକୁଳ ଭାବରେ ଚାହିଁରହୁଥିଲା । ଅନ୍ୟ ଦିଗରେ ଗୋପବନ୍ଧୁଙ୍କର ସକଳ କାର୍ଯ୍ୟକ୍ରମ ପ୍ରତିହତ କରିବା ପାଇଁ ସରକାରଙ୍କ ତରଫରୁ ସମସ୍ତ ପ୍ରକାର ନିଷେଧାଜ୍ଞା ଜାରି କରାଯାଉଥିଲା । ଏହି ନିଷେଧନାମାର ଏକମାତ୍ର ଅସ୍ତ୍ର ଥିଲା ୧୪୪

ଧାରା ନୋଟିସ । କଂଗ୍ରେସର ସଭ୍ୟ ତାଲିକାଭୁକ୍ତ ହୋଇ ସ୍ୱରାଜ୍ୟ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିବା, ଉତ୍କଳରେ ଗାନ୍ଧି ଦିବସ ପାଳନ ପୂର୍ବକ ସ୍ୱରାଜ୍ୟ ଆନ୍ଦୋଳନ ଉଦ୍ଦେଶ୍ୟରେ ଅର୍ଥସଂଗ୍ରହ, ବିଦେଶୀ ଲୁଗା ପୋଡ଼ି—ଏହାହିଁ ଗୋପବନ୍ଧୁଙ୍କ ପ୍ରଚାରର ଆଭିମୁଖ୍ୟ ଥିଲା । ତେଣୁ ଓଡ଼ିଶାରେ ଇଂରେଜ ସରକାରଙ୍କ ଦମନ ନୀତିର ସେ ଶରବ୍ୟ ହେଲେ ।

ଏଣେ ମହାତ୍ମା ଗାନ୍ଧିଙ୍କ କହିବା ଅନୁଯାୟୀ ୧୯୨୧ ମସିହାରେ ସ୍ୱରାଜ୍ୟ ଆସିଲାନାହିଁ । ଲୋକମାନଙ୍କ ମନରେ ଉଦ୍‌ବେଗ ଓ ଅନାସ୍ଥା ଯୁଗପତ୍ ଦେଖାଗଲା । ସେମାନେ କ୍ରମେ ନିରାଶ ହୋଇ ପଡ଼ିଲେ । ସାହେବମାନେ ଅଧିକରୁ ଅଧିକ ଭାବରେ ଦମନ ନୀତି ଚଳାଇଲେ । ସାଧାରଣ ଦେଶୀ ବ୍ୟବସାୟୀମାନେ ସେମାନଙ୍କ ଦୈନନ୍ଦିନ ବ୍ୟବସାୟରେ ନାନା ଅସୁବିଧା ଭୋଗି ସ୍ୱରାଜ୍ୟ ଆନ୍ଦୋଳନ ପ୍ରତି ଅନାସକ୍ତ ହୋଇ ପଡ଼ିଲେ । ଦେଖାଗଲା ଚକ୍ରଧରପୁର ଓ ସିଂହଭୂମରେ ବିହାରୀ ବେପାରୀମାନେ ଆନ୍ଦୋଳନକୁ ସମର୍ଥନ ନ ଜଣାଇ ଆଡ଼େଇ ହୋଇ ରହିଲେ । ସେଠାରେ ଆନ୍ଦୋଳନ ଚଳାଇବା ଭାର ବସ୍ତୁତଃ ଓଡ଼ିଆମାନଙ୍କ ଉପରେ ନ୍ୟସ୍ତ ରହିଲା । ଆଗରୁ କୁହାଯାଇଛି ଗୋଦାବରୀଶବାବୁ ସେଠାରେ ରହି ସ୍କୁଲ ସ୍ଥାପନ ଓ ଆନ୍ଦୋଳନର ଦାୟିତ୍ୱ ନେଇଥିଲେ । ଏ ପରିସ୍ଥିତିରେ ଓ ଉତ୍କଟ ଅର୍ଥାଭାବରେ ଗୋଦାବରୀଶ ଧୈର୍ଯ୍ୟ ହରାଇ ବସିଲେ । ଅବସ୍ଥା ସୁଧାରିବା ଲାଗି ସେ ସିଂହଭୂମ ଜିଲା ସାରା ଗୋପବନ୍ଧୁଙ୍କୁ ବୁଲାଇ ଆଣିବାକୁ ସ୍ଥିର କରି ତାଙ୍କ ପାଖକୁ ପତ୍ର ଲେଖିଲେ । ଗୋପବନ୍ଧୁଙ୍କ ପାଇଁ ସପ୍ତାହକର ଗୋଟିଏ ଗସ୍ତ ନିର୍ଘଣ୍ଟ ସ୍ଥିର ହେଲା । ଯିବା ଆସିବା ପାଇଁ ମୋଟର ଖଣ୍ଡିଏ ମଧ୍ୟ ଯୋଗାଡ଼ ହୋଇଗଲା । ପୋଡ଼ାହାଟଠାରେ ସଭା ଶେଷକରି ଗୋପବନ୍ଧୁ କୋହ୍ଲାଣ ଉଦ୍ଦେଶ୍ୟରେ ଯାତ୍ରା କଲେ । ପରବର୍ତ୍ତୀ ଘଟଣାର ବିବରଣୀ ପଣ୍ଡିତ ଗୋଦାବରୀଶ ତାଙ୍କ ଆତ୍ମଜୀବନୀରେ ନିମ୍ନଲିଖିତ ଭାବେ ଉଲ୍ଲେଖ କରିଛନ୍ତି ।

"ଘାଇଁବସାରେ ପହଞ୍ଚି ଦେଖିଲୁ ଯେ ସେଠାରେ ସବ୍‌ଡିଭିଜନାଲ ଅଫିସର ଗୋପବନ୍ଧୁ ବାବୁଙ୍କୁ ଡକାଇଛନ୍ତି । ପୂର୍ବେ କେବେ ସେ ପୁରୀରେ ଡେପୁଟୀ କଲେକ୍‌ଟର ଥିଲେ । ସେତେବେଳେ ଗୋପବନ୍ଧୁ ବାବୁଙ୍କ ସଙ୍ଗେ ତାଙ୍କର ସୌହାର୍ଦ୍ଦ୍ୟ ଥିଲା । ସେହି ସୌହାର୍ଦ୍ଦ୍ୟ ବନ୍ଧନରେ ଗୋପବନ୍ଧୁ ବାବୁ ଯିବାକୁ ବସିଲେ--ତା' ପୁଣି କଚେରୀରେ ତାଙ୍କ ମିଶଲ ଉପରକୁ । ମୁଁ ଆଖିଆଗରେ ୧୪୪ ଧାରା ନୋଟିସ୍ ଜଳଜଳ ଦେଖିପାରିଲି । ମୋ କଥା ଶୁଣି ଗୋପବନ୍ଧୁ ବାବୁ କହିଲେ—"ଯାଅ, ତୁମେ ଭାରି ସନ୍ଦେହୀ ହୋଇଗଲଣି । ପୁରୁଣା ସାଙ୍ଗଟା ମୋ ଆସିବା ଖବର ପାଇ ଡକାଇଛି କ'ଣ ୧୪୪ ଧାରା ନୋଟିସ୍ ଦେବାକୁ ? ନା, ମୁଁ ତୁମ କଥା ଶୁଣିବି ନାହିଁ ।"

ମୁଁ ଉତ୍ତରରେ କହିଲି—"ଆଜ୍ଞା, ଏମାନେ ପରା ସବୁ ଇଂରେଜର ଗୋଲାମ । ଦରକାର ପଡ଼ିଲେ ମଧୁଶଯ୍ୟା ବେଳେ ମାଇପ ଗୁଡିରେ ଛୁରୀ ବସାଇ ଦେବେ ।"

ଗୋପବନ୍ଧୁ ବାବୁ ଶୁଣିଲେ ନାହିଁ—ଗଲେ । ମୋତେ ଡକରା ନଥିଲେ ମଧ୍ୟ ମୁଁ

ଗଡ଼କୃଷ୍ଣଙ୍କୁ ଧରି ତାଙ୍କ ସଙ୍ଗେ ଗଲି । ହାକିମ ଗୋପବନ୍ଧୁ ବାବୁଙ୍କୁ ଅଭିବାଦନ କରି ବସିବାକୁ କହିଲେ ଓ ନିଶ୍ୱାସ ରୁଦ୍ଧ କାଗଜ କଲମ ଧରି ଚରଚର ଲେଖିବାରେ ଲାଗିଲେ—ରାମ କି କୃଷ୍ଣ ପଦେ କଥା କହିଲେ ନାହିଁ । ସେ ଲେଖୁଥା'ନ୍ତି କାଟୁଥା'ନ୍ତି; ପୁଣି ଲେଖନ୍ତି କାଟନ୍ତି; କଥାରେ ଅଛି ଗୋଦରା କୋଡ଼େ ଯେତେ ମାଡ଼େ ସେତେ ।

୪୦ ମିନିଟ୍ ଚାଲିଗଲା । ତଥାପି ତାଙ୍କର ଦଶଧାଡ଼ିକାନ୍ତର ଲେଖା ସରିଲା ନାହିଁ । ଖାଲି ଲେଖୁଥାନ୍ତି କାଟୁଥା'ନ୍ତି । କାଗଜ ଉପରେ ମୟୂର ପକ୍ଷୀ କଲମ ଚରଚର ଚାଲୁଥାଏ । ଦେହରୁ ଗମ୍‌ଗମ୍ ଝାଳ ବୋହିଯାଉଥାଏ । ପଞ୍ଚାବନ ମିନିଟ୍ ବସିବା ପରେ ମୁଁ ଗୋପବନ୍ଧୁ ବାବୁଙ୍କୁ କହିଲି, "ଆଜ୍ଞା ଏଟା ୧୪୪ ଧାରା ନୋଟିସ୍ ଲେଖୁଚ । ନୋହିଲେ ଚଉଷଠି ଶିର ଦୁହାଇଁ କାମରେ ଲାଗିଥାନ୍ତା ନା ?"

ଉତ୍ତରରେ ଗୋପବନ୍ଧୁ କହିଲେ—"ସତେ ତ—କ'ଣ କରିବା ?"

ମୁଁ କହିଲି—"ଚାଲନ୍ତୁ, ପଳାଇବା ।"

ସେ କହିଲେ—" ଛି ହୁଁ, ପଳାଇବା; ଡାକି ଆଣି ବସାଇଛି, ଅଭଦ୍ରତା ହେବ ।" ତା'ପରେ ସେ ଓ ମୁଁ ଦୁହେଁ ଦୁଇଚାରି ମିନିଟ୍ ଚୁପ୍‌ଚାପ୍ ହେଲୁ । ଶେଷରେ ଗୋପବନ୍ଧୁ ବଙ୍ଗଳାରେ କହିଲେ—"ଆପଣ ତ କାମରେ ଲାଗିଛନ୍ତି, ଫୁରସତ୍ ନାହିଁ । ମୁଁ ଏବେ ଯାଏଁ ପରେ ଦେଖାହେବ ।"

ହାକିମ ଉତ୍ତରରେ କହିଲେ—"ନାଇଁ ସରିଲାଣି, ମିନିଟିଏ ଆଉ ବସନ୍ତୁ ।"

ଗୋପବନ୍ଧୁ ବାବୁ ବସିବାକୁ ଯାଉଥିଲେ; ତା ଦେଖି ମୁଁ କହିଲି—"ଆମର ବଡ଼ ଜରୁରୀ କାମ ଅଛି, ଆମେ ଯାଉଛୁ । ଆପଣ ପରେ ପଠାଇଦେବେ ।"

ଆମେ ହାକିମଙ୍କ ମିଶନ୍ ଗ୍ରୁଡ଼ ସଙ୍ଗେ ସଙ୍ଗେ ଯାଇ ମଟରରେ ବସିଲୁ । ସଭା କୋହ୍ଲାଣ ଜଗନ୍ନାଥପୁରରେ ହେଲା । ଗୋପବନ୍ଧୁ ବାବୁଙ୍କ କଥାରେ କ'ଣ ଥାଏ କେଜାଣି ଶ୍ରୋତା ଯେପରି ହସନ୍ତି, କାନ୍ଦନ୍ତି, ସେହିପରି ଉତ୍ସାହରେ ମାତି ଉଠନ୍ତି । ସେ ଦିନ ସଭାରେ କୋହ୍ଲାଣବାସୀଙ୍କ ଭିତରେ ଏତେ ଉତ୍ସାହ ଖେଳିଗଲା ଯେ, ଗୁଣ୍ଡିବସା ମହକୁମା ସବ୍‌ଡିଭିଜନାଲ୍ ଅଫିସର ଯଦି ସନ୍ଦେହରେ ସେଠାକୁ ଆସି ଯାଇଥାନ୍ତେ, ତେବେ ମୁଣ୍ଡ ଘେନି ପୁଣି ଫେରିଥା'ନ୍ତେ କି ନା ସନ୍ଦେହ । ଗୋପବନ୍ଧୁ ବାବୁଙ୍କର ସବୁ ଅହିଂସା ମନ୍ତ୍ର ଢଳେ କାମ ଦେଖାଇନଥାନ୍ତା ।

ସେଦିନ ଜଗନ୍ନାଥପୁର ସଭାରୁ ଅମେମାନେ ଫେରି ମଟରରେ ଖୁବ୍ ବେଗରେ ଛୁଟିଲୁ । ମୁଁ ଡ୍ରାଇଭରକୁ କହିଲି—"ଦେଖ ବାଟରେ କେହି ହାତ ଦେଖାଇଲେ ରହିବ ନାହିଁ ।" ଏହା ଶୁଣି ଗୋପବନ୍ଧୁ ବାବୁ କହିଲେ—"ତୁମକୁ ଖାଲି ୧୪୪ ଧାରା ନୋଟିସ ଭୋଲକ ଗୋଡ଼ାଇଛି । କାହାରି କ'ଣ ବିପଦ ଆପଦ ହେଲେ ବାଟରେ ସେ ସାହାଯ୍ୟ ପାଇଁ ମଟର ଅଟକାଇ ନପାରେ ?"

କଥାବାର୍ତ୍ତା, ହସ କୌତୁକ ହୋଇ ଆମେମାନେ ଯାଉଛୁ । ହଠାତ୍ କଣେ ଲୋକ

ବାଟରେ ସାଇକେଲରୁ ଓହ୍ଲାଇ ମୋଟର ଅଟକାଇବାକୁ ହାତ ଦେଖାଇଲା । ଗୋପବନ୍ଧୁ ବାବୁ କହିଲେ, "ରହିବା ।" ମୁଁ ମନାକଲି । କିଛି ବାଟ ଗଲା ପରେ ଦେଖିଲୁ ଯେ ଆଉ ଦୁଇଜଣ ଲୋକ ରାସ୍ତା ଉପରେ ସାଇକେଲ ଶୁଆଇ ଦେଇ ନିଜେ ରହି ରହିଛନ୍ତି । ବାଟ ତ ବନ୍ଦ ହୋଇଗଲା, ସୁତରାଂ ରହିବାକୁ ପଡ଼ିଲା । ସଙ୍ଗେ ସଙ୍ଗେ ସେ ଲୋକମାନେ ଆସି ଗୋପବନ୍ଧୁ ବାବୁଙ୍କ ହାତରେ ଖଣ୍ଡିଏ କାଗଜ ଧରାଇଦେଲେ । ତାହା ତାଙ୍କର ପୁରାତନ ବନ୍ଧୁ ସବ୍‌ଡିଭିଜନାଲ୍ ଅଫିସର୍‌ଙ୍କ ସ୍ନେହର ସମ୍ଭାଷଣ ପତ୍ର—କେବଳ ସରକାରୀ କାଗଜରେ ଫୌଜଦାରୀ କାର୍ଯ୍ୟବିଧି ଆଇନରେ ୧୪୪ ଧାରା ଅନୁସାରେ ଲିଖିତ ।

ତା' ପରଦିନ ଗୋପବନ୍ଧୁ ବାବୁଙ୍କର ଯୋଣ୍ଡଆରେ ବକ୍ତୃତା ଦେବା କଥା । ଆମେମାନେ ସକାଳୁ ଯାଇ ସେଠାରେ ପହଞ୍ଚିଲୁ । ଦଶ ହଜାର ପର୍ଯ୍ୟନ୍ତ ଶ୍ରୋତା ସେଠାରେ ରୁଣ୍ଡ ହୋଇଥିଲେ । ଗୋପବନ୍ଧୁ ବାବୁ ନିଜର ବକ୍ତବ୍ୟ ମୋତେ ଡାକି ଯାଇଥିଲେ ଓ ମୁଁ ଲେଖିପକାଇଥିଲି । ୧୪୪ ଧାରା ନୋଟିସ୍ ଅମାନ୍ୟ କରିବାର ବେଳ ଆସି ନଥିଲା । ଗୋପବନ୍ଧୁ ବାବୁ ସେଦିନ ସଭାରେ ବକ୍ତୃତା କରି ଧରା ହୋଇ ଯାଇଥା'ନ୍ତେ । ସେଥିପାଇଁ ପୋଲିସ ଫୌଜ ମଧ୍ୟ ମହଜୁଦ ଥିଲେ । ମୁଁ ଗୋପବନ୍ଧୁ ବାବୁଙ୍କ ବକ୍ତବ୍ୟ ଗ୍ରାମ୍‌ଫୋନ୍ ରେକର୍ଡ଼ ପରି ପଢ଼ି ଚାଲିଲି । ଦଶ ହଜାର ଲୋକଙ୍କ ସହିତ ନିଜେ ଗୋପବନ୍ଧୁ ବାବୁ ମଧ୍ୟ ବସି ଶୁଣିଲେ । ସଭାଶେଷରେ ପୋଲିସ୍ କର୍ମଚାରୀ କହିଲେ—"ଖୁବ୍ ତ ପାନେ ଆଜି ଦେଲେ ! ଆମରି ଶରରେ ଆମକୁ ବିନ୍ଧି ପକାଇଲେ ।" (ଗୋଦାବରୀଶ ଗ୍ରନ୍ଥାବଳୀ, ପୃ ୧୨୦ସ୍ଥା)

ସମ୍ବଲପୁର ଜିଲ୍ଲାର ଝାରସୁଗୁଡ଼ା, ସମ୍ବଲପୁର ଓ ବରଗଡ଼ଠାରେ ଗୋପବନ୍ଧୁ ସଭା କରିବା ପାଇଁ ସମସ୍ତ ନିର୍ଦ୍ଧାରିତ ହୋଇଥିଲା । ଏଥିପାଇଁ କଂଗ୍ରେସ କର୍ମୀମାନେ ପ୍ରଚୁରପଣ ବାଣ୍ଟିଥିଲେ । ଝାରସୁଗୁଡ଼ାରେ ତା ୨୦।୨।୨୨ ସକାଳେ ସେ ପହଞ୍ଚିବା ମାତ୍ରେ ଜିଲ୍ଲା ମାଜିଷ୍ଟ୍ରେଟ୍ ୧୪୪ ଧାରା ଅନୁସାରେ ସାଧାରଣ ହୁକୁମ ଜାରିକଲେ । ଏପରିକି ନିର୍ଦ୍ଧାରିତ ସ୍ଥାନ ନିକଟବର୍ତ୍ତୀ ପୋଷ୍ଟ ଅଫିସର ୫ ମାଇଲ ଆଭ୍ୟନ୍ତ ସ୍ଥାନ ମଧ୍ୟରେ ସାଧାରଣ ସଭା ହୋଇପାରିବ ନାହିଁ ବୋଲି ଏହି ୧୪୪ ଧାରା ନୋଟିସରେ ଘୋଷଣା କରାଯାଇଥିଲା । ତଥାପି କଂଗ୍ରେସ ନିରୂପିତ ବିଧାନ ଅନୁସାରେ ସଭା ହୋଇଥିଲା ଓ ସବୁ ସ୍ଥାନରେ ଗୋପବନ୍ଧୁଙ୍କ ଲିଖିତ ବକ୍ତୃତା ପଢ଼ାଯାଇଥିଲା । 'ସମ୍ବଲପୁର ସଭାରେ ନିଜେ ଗୋପବନ୍ଧୁ ଉପସ୍ଥିତ ଥିଲେ ।

ସମ୍ବଲପୁରରୁ କଲିକତା ଦେଇ ଗୋପବନ୍ଧୁ ବାଲେଶ୍ୱର ଆସିଲେ । ବାଲେଶ୍ୱରରେ ତାଙ୍କର ଓହ୍ଲାଇବା କାର୍ଯ୍ୟକ୍ରମ ନଥିଲେ ମଧ୍ୟ କର୍ତ୍ତୃପକ୍ଷ ଆଶଙ୍କା କରି ଷ୍ଟେସନରେ ତାଙ୍କ ବାଟ ଜଗି ବସିଥିଲେ । ବାଲେଶ୍ୱର ଷ୍ଟେସନଠାରେ ଗାଡ଼ି ପହଞ୍ଚିବା ମାତ୍ରେ ପୋଲିସ ଇନ୍‌ସପେକ୍ଟର ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ୧୪୪ ଧାରା ନୋଟିସ ଗାଡ଼ି ଭିତରେ ଜାରିକଲେ ।

ତା ୩୦ । ୧ । ୨୨ରେ ପୁରୀରେ ମଧ୍ୟ ସେହିପରି ଏକ ୧୪୪ ଧାରା ନୋଟିସ ତାଙ୍କ

ପ୍ରତି ଜାରି ହୋଇଥିଲା । ଏଥିରେ ପ୍ରକାଶ ପାଇଥିଲା ଯେ, ପୁରୀର କୁଣ୍ଡେଇବେଣ୍ଟ ସାହିର ଶ୍ରୀ ଜଗବନ୍ଧୁ ସିଂହଙ୍କ ଘରେ ଗୋପବନ୍ଧୁ ସମେତ ୧୦ ଜଣ ମିଟିଙ୍ଗ୍ କରି ବେପାରୀମାନଙ୍କୁ ଜାହାଜରେ ଚାଉଳ ଚାଲାଣ ଦେବା ବନ୍ଦ କରିଛନ୍ତି । ଚାଉଳ ଚାଲାଣ ବନ୍ଦ ପାଇଁ ଢେଣ୍ଡୁରା ଦିଆଇଛନ୍ତି । ଏପରି କାର୍ଯ୍ୟ ଆପତ୍ତି ଓ ଉପଦ୍ରବଜନକ ଏବଂ ଏଥିରେ ଲୋକେ ଉତ୍ତେଜିତ ହୋଇପାରନ୍ତି, ଶାନ୍ତି ଭଙ୍ଗ କରିପାରନ୍ତି । ସେଥିପାଇଁ ଜାହାଜ ନିର୍ମାଣ କମ୍ପାନୀ କିମ୍ବା ବେପାରୀମାନଙ୍କୁ ବାଧା ଦେବା ପାଇଁ ଲୋକ ଜମା କରିବା ବା ବକ୍ତୃତା ମାଧ୍ୟମରେ ଉତ୍ତେଜିତ କରିବା ଅପରାଧଜନକ ବୋଲି ଏଥିରେ ଲେଖାଥିଲା ।

ତା ୩ । ୨ । ୨୨ରେ ଖୋର୍ଦ୍ଧାଠାରେ ଏକ ସଭା ଆୟୋଜନ ହୋଇଥିଲା । ଖୋର୍ଦ୍ଧା ପୋଲିସ ତରଫରୁ ୧୪୪ ଧାରା ନୋଟିସ ଦିଆଯାଇ ସଭାକୁ ବେଆଇନ ବୋଲି ଘୋଷଣା କରାଯିବା ସତ୍ତ୍ୱେ ଓ ସଭାକୁ ନଯିବାକୁ ଢେଣ୍ଡୁରା ଦେଇ ବାରଣ କରାଯିବା ସତ୍ତ୍ୱେ ପାଞ୍ଚଶହ ଲୋକ ଏ ସଭାରେ ଏକାଠି ହୋଇଥିଲେ । ରାସ୍ତାବାଟେ ଆସୁଥିବା ଲୋକଙ୍କୁ ପୋଲିସ ଭୟ ପ୍ରଦର୍ଶନ କରୁଥିବାରୁ ଏମାନେ ଲୁଚି ବିଲ ଓ ଗଳିବାଟ ଦେଇ ଆସିଥିଲେ । ଏ ସଭାରେ ମଧ୍ୟ ଗୋପବନ୍ଧୁଙ୍କ ଲିଖିତ ବକ୍ତବ୍ୟ ପଢ଼ାଯାଇଥିଲା । ଶାନ୍ତିପୂର୍ଣ୍ଣ ଆଇନ ଅମାନ୍ୟ ନୀତି ପ୍ରଚଳନ ପାଇଁ ଗୋପବନ୍ଧୁ ଆହ୍ୱାନ ଦେଇଥିଲେ ।

## ସରକାରଙ୍କର ହାଇକୋର୍ଟ ଅପିଲ

'ସମାଜ' ସଂକ୍ରାନ୍ତ ମାନହାନି ମକଦ୍ଦମାରେ ପଣ୍ଡିତ ଗୋପବନ୍ଧୁଙ୍କୁ ଖୋର୍ଦ୍ଧାରେ ଡେପୁଟି ମାଜିଷ୍ଟ୍ରେଟ୍ ଶ୍ରୀ ସୁରେଶ ଚନ୍ଦ୍ର ଘୋଷ ନିର୍ଦ୍ଦୋଷରେ ଖଲାସ କରିଦେବା ପରେ ସରକାରଙ୍କ ତରଫରୁ ହାଇକୋର୍ଟରେ ଅପିଲ ହୋଇଥିଲା । ଗୋପବନ୍ଧୁ ହାଇକୋର୍ଟର ସମନ ପାଇଲା ପରେ ଓକିଲ ଦେଇନଥିଲେ ବା ନିଜେ ମଧ୍ୟ ହାଜର ହୋଇନଥିଲେ । ୧୯୨୨ ମସିହା ଫେବୃୟାରୀ ୨୭ ତାରିଖରେ ଏହି ଅପିଲର ବିଚାର ହେଲା । ସେତେବେଳେ ବିହାର-ଓଡ଼ିଶା ପାଇଁ ଗୋଟିଏ ମାତ୍ର ହାଇକୋର୍ଟ ପାଟଣା ସହରରେ ଥାଏ । ପାଟଣା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ରସ୍ ସାହେବଙ୍କ ପାଖରେ ଏ ମକଦ୍ଦମାର ବିଚାର ହେଉଥାଏ । ସେ ସରକାରୀ ଓକିଲଙ୍କଠାରୁ ୨୭ ତାରିଖ ଦିନ ମକଦ୍ଦମା ସମ୍ପର୍କରେ କେତେକ କଥା ଶୁଣିବା ପରେ ୨୮ ତାରିଖକୁ ଶୁଣାଣି ମହଲତ ରଖିଲେ । ଗୋପବନ୍ଧୁଙ୍କଠାରୁ ଅନୁମତି ଓ ଓକିଲତି-ନାମା ନପାଇ ମଧ୍ୟ ହାଇକୋର୍ଟ ଓକିଲ ଶ୍ରୀରାଜେନ୍ଦ୍ର ପ୍ରସାଦ ଦାସ ଅଯାଚିତ ଭାବେ ଗୋପବନ୍ଧୁଙ୍କ ପାଇଁ ଓକିଲତି କରିବାକୁ ଅନୁମତି ନେଇଥିଲେ । କେବଳ ଆଇନଗତ ପ୍ରସଙ୍ଗରେ ଆଲୋଚନା କରିବାକୁ ମୁଖ୍ୟ ବିଚାରପତି ରସ୍ ସାହେବ ତାଙ୍କୁ ଅନୁମତି ଦେଇଥିଲେ । ତା'ପର ଦିନ ମୁଖ୍ୟ ବିଚାରପତି ନିଷ୍ପତ୍ତି ଦେଇ ନିମ୍ନ ଅଦାଳତର ରାୟକୁ

କାଏମ ରଖିଥିଲେ । ସରକାରଙ୍କ ଅଫିଲ ନାମଞ୍ଜୁର ହୋଇଗଲା ପରେ ଗୋପବନ୍ଧୁଙ୍କ ଉପରେ ଓଡ଼ିଶା ପୋଲିସର ସମସ୍ତ କ୍ରୋଧ ପୁଞ୍ଜୀଭୂତ ହେବାକୁ ଲାଗିଲା । ଏପରିକି ଏହାପରେ ୨୫ । ୨ । ୨୨ ତାରିଖରେ ଖୋର୍ଦ୍ଧାରେ ଗୋପବନ୍ଧୁ ସଭା କଲାବେଳେ ଲୋକମାନଙ୍କ ଉପରକୁ ମଦ ଓ ଛେପ ପକାଇବାକୁ ପୋଲିସ ଲୋକେ ମେହେନ୍ତରମାନଙ୍କୁ ପ୍ରବର୍ତ୍ତାଇ ଦେଇଥିଲେ । ସଭାକୁ ଯାଉଥିବା ଲୋକଙ୍କ ଉପରେ ବାଟଜଗି ମେହେନ୍ତରମାନେ ମଦ ଓ ଛେପ ପକାଇଲେ । ପୋଲିସ ଲୋକେ ମୁଖ୍ୟ ରାସ୍ତା ଓ ଛକମାନଙ୍କରେ ଲାଠି ଧରି ଜଗି ରହିଲେ । ତଥାପି ବିଲ ଓ ଗଳିରାସ୍ତାବାଟେ ପାଞ୍ଚଶହ ଲୋକ ଆସି ସଭାରେ ଯୋଗ ଦେଇଥିଲେ । ଖୋର୍ଦ୍ଧାବାସୀମାନେ ଉତ୍ତ୍ୟକ୍ତ ହୋଇ ମେହେନ୍ତରମାନଙ୍କୁ କୌଣସି ପ୍ରକାର ବଜାର ସଉଦା ନ ଦେବାପାଇଁ ସ୍ଥିର କଲେ । ଏଥିରେ ମେହେନ୍ତରମାନେ ବଡ଼ ଅଡ଼ୁଆରେ ପଡ଼ି ୫ । ୨ । ୨୨ ତାରିଖରେ ଏକ ସ୍ଥାନୀୟ ସଭାରେ ଖୋର୍ଦ୍ଧାବାସୀଙ୍କୁ କ୍ଷମା ପ୍ରାର୍ଥନା ମାଗିଥିଲେ । ବାରମ୍ବାର ପରାଜୟ ଓ ଗ୍ଲାନିରେ ଖୋର୍ଦ୍ଧା ପୋଲିସ ବଡ଼ ସଙ୍କୁଚିତ ହୋଇପଡ଼ିଥିଲେ ।

## ଉତ୍କଳରେ ଗାନ୍ଧି ଦିବସ

ମହାତ୍ମାଗାନ୍ଧିଙ୍କ ଓଡ଼ିଶା ଆଗମନ ଗୋପବନ୍ଧୁଙ୍କ ରାଜନୈତିକ ଜୀବନର ଏକ ମୁଖ୍ୟ କାହାଣୀ । ବସ୍ତୁତଃ ଏହା ପରେ ପରେ ରାଜନୈତିକ ସଂଗ୍ରାମରେ ଗୋପବନ୍ଧୁ ଅଧିକ ଭାବରେ ଅଗ୍ରସର ହୋଇଥିଲେ । ମହାତ୍ମାଗାନ୍ଧିଙ୍କ ବାଣୀ ତାଙ୍କ ସ୍ମୃତିରେ ବାରମ୍ବାର ଉଜ୍ଜୀବିତ ହେଉଥିଲା । ସେହି ଚିନ୍ତା ଓ ମାର୍ଗରେ ସେ ନିଜକୁ ନିଷ୍ଠାପର ଭାବରେ ପରିଚାଳିତ କରୁଥିଲେ । ମହାତ୍ମାଗାନ୍ଧି ତାଙ୍କ ପାଇଁ ଆଧ୍ୟାତ୍ମିକ ଚେତନାର ଏକ ବ୍ୟାପକ ସତ୍ତା ଭାବରେ ଦେଖାଦେଲେ । ସମଗ୍ର ଭାରତୀୟ ଚିନ୍ତାଧାରାରେ ଏକ ଆଲୋଡ଼ନର ଚିତ୍ର ଗୋପବନ୍ଧୁ ସ୍ପଷ୍ଟ ଅନୁଭବ କରୁଥିଲେ । ୧୧ । ୩ । ୨୨ ତାରିଖ 'ସମାଜ'ରେ ମାର୍ଚ୍ଚ ୨୩ ତାରିଖ ଚୈତ୍ର ଗୁରୁବାର ଦଶମୀ ତିଥିରେ ଓଡ଼ିଶା ସାରା ଗାନ୍ଧି ଦିବସ ପାଳନ ପାଇଁ ସେ ଏକ ଆହ୍ୱାନ ଦେଇଥିଲେ । "ଏ ଦିନ ଉତ୍କଳର ସହର ଓ ମଫସଲର ପ୍ରତି ଘରେ ପରିବାରର ସମସ୍ତେ ଏକତ୍ର ବା ଅଲଗା ଅଲଗା ବସି ସ୍ୱରାଜ୍ୟ ପ୍ରାପ୍ତି ନିମନ୍ତେ ଆପଣା ଆପଣା ଇଷ୍ଟଦେବତାଙ୍କ ନିକଟରେ ପ୍ରାର୍ଥନା କରିବେ ଏବଂ ଘରେ ସ୍ତ୍ରୀ ପୁରୁଷ ପିଲା ବୁଢ଼ା ଯେତେ ଥିବେ ପ୍ରତ୍ୟେକ ଅତି କମ୍‌ରେ ଗୋଟିଏ ଲେଖାଏଁ ତମ୍ବା ପଇସା ସ୍ୱରାଜ୍ୟ ନିମନ୍ତେ ଉତ୍ସର୍ଗ କରି ଦିଅଁଙ୍କ ଖଟୁଲିରେ ପୂଜା ପେଡ଼ିରେ କମ୍ବା ଅନ୍ୟ କୌଣସି ଶୁଦ୍ଧ ସ୍ଥାନରେ ବା ଶୁଦ୍ଧପାତ୍ରରେ ଅଲଗା କରି ରଖିଦେବେ । ଯେଉଁ ଗ୍ରାମରୁ ଏ ଗାନ୍ଧି ଦିବସରେ ଯାହା ଆଦାୟ ହେବ ତାହା ଯଥା ସମୟରେ ଖବରକାଗଜରେ ପ୍ରକାଶିତ ହେବ ।" ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ

ସେ ଏଥିପାଇଁ ଅନୁରୋଧ କରି ଗୋଟିଏ ଶ୍ରେଷ୍ଠ କବିତା ପ୍ରକାଶ କରିଥିଲେ—

"କୃଷ୍ଣ ଦଶମୀ ଗୁରୁବାରେ, ଗାନ୍ଧି ଦିବସ ଉତ୍କଳରେ ।
ମାର୍ଚ୍ଚ ତେଇଶି ତାରିଖ , ଉତ୍କଳବାସୀ ମନେରଖ ।
ହୋଇଣ ସର୍ବେ ଶୁଚିବନ୍ତ, ପାଳିବ ସ୍ୱରାଜ୍ୟ ବ୍ରତ ।
ମାନ ଯେ ଯାହା ଧର୍ମରୀତି, ପ୍ରଭୁଙ୍କଠାରେ କର ସ୍ତୁତି ।
ଯାହାକୁ ଯେ ଅବା ମିଳିବ, ସ୍ୱରାଜ୍ୟ ହିତେ ଉତ୍ସର୍ଗିବ ।
ପୁରୁଷ ସ୍ତ୍ରୀ ପୁଅ ଝିଅ, ସ୍ୱହସ୍ତେ ତମ୍ବା ଦାନ ଦିଅ ।
ମଙ୍ଗଳମୟ ବାଞ୍ଛାନିଧି, କରିବେ ତୁମ୍ଭ ବାଞ୍ଛା ସିଦ୍ଧି ।

## କନିକା ଅତ୍ୟାଚାର

ଓଡ଼ିଶାର ଗଡ଼ଜାତମାନଙ୍କରେ ସେତେବେଳେ ନିରୀହ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର ହେଉଥିଲା । ରାଜାର ଖିଆଲରେ ଅସହାୟ ପ୍ରଜାମାନେ ଆତ୍ମସମର୍ପଣ କରି ମଧ୍ୟ ସେମାନଙ୍କ ଦୁଃଖ ଘୁଞ୍ଚୁ ନଥିଲା । ଢେଙ୍କାନାଳର ସତନଗରର ସେହି ନଗ୍ନ ଅତ୍ୟାଚାରର ବିକଟ ଉପହାସ ଭାବରେ ମଣିଷ ସଭ୍ୟତାକୁ ଆଜି ବି ବିଦ୍ରୂପ କରୁଛି । ଓଡ଼ିଶାର ଉପକୂଳ ଅଞ୍ଚଳରେ କନିକା ରାଜାଙ୍କ ଅତ୍ୟାଚାର ଏବେ ବି ଇତିହାସର କରୁଣ ଅଶ୍ରୁଲିପି ଭାବରେ ମଣିଷ ମନରେ ଏକ ଭୟାତୁର ସ୍ମୃତିକୁ ଜାଗ୍ରତ କରୁଛି । ଜାତୀୟ କଂଗ୍ରେସର ସୃଷ୍ଟି ଓ ଇତିହାସ ସହିତ ଏହିପରି ଅନ୍ୟାୟ ଅତ୍ୟାଚାରର ପ୍ରତିରୋଧ ଅତି ନିବିଡ଼ ଭାବରେ ସଂଶ୍ଳିଷ୍ଟ । ମହାତ୍ମାଗାନ୍ଧିଙ୍କ ଅହିଂସା ସତ୍ୟାଗ୍ରହ ଏହି ଅବିଚାରର ବିରୋଧ ପାଇଁ ଅଭିପ୍ରେତ ଥିଲା । କେଉଁଠି ନିଷ୍ଠୁର ଶାସକ ବିରୁଦ୍ଧରେ, ମିଲ୍ ମାଲିକ ବିରୁଦ୍ଧରେ, କେଉଁଠି ବା ଜମିଦାର ବିରୁଦ୍ଧରେ, ଏହି ସତ୍ୟାଗ୍ରହର ବ୍ୟାପକ ପରୀକ୍ଷା ସଂଶିତ କାଳରେ ଜାତୀୟ କଂଗ୍ରେସ ପାଇଁ ଏକ ଗୌରବାବହ ଅଧ୍ୟାୟରେ ପରିଣତ ହୋଇଥିଲା ।

କନିକା ରାଜାଙ୍କ ଉତ୍କଟ ରକ୍ତଶୋଷୀ କର ଉତ୍ପୀଡ଼ନ ବିରୁଦ୍ଧରେ ସେହିପରି ପ୍ରଜା-ମେଳି ହୋଇଥିଲା । ବିଶେଷତଃ ଭାରତୀୟ ମୁକ୍ତି ସଂଗ୍ରାମ ଓ ସତ୍ୟାଗ୍ରହର ବାର୍ତ୍ତା କନିକାର ଦରିଦ୍ର ନିଃସ୍ୱ ଜନତା ପ୍ରାଣରେ ଅଦମ୍ୟ ଉତ୍ସାହ ଓ ପତିଆର ଆଣିଥିଲା । ଫଳରେ ରାଜାଙ୍କ ଅତ୍ୟାଚାର ବିରୁଦ୍ଧରେ ପ୍ରଜାମାନେ ଏକଜୁଟ ହୋଇ ଠିଆହେଲେ । ଏହି ମେଳି ଓ ବିଦ୍ରୋହକୁ ଦମନ କରିବା ପାଇଁ ରାଜାଙ୍କ ତରଫରୁ ବ୍ୟବସ୍ଥା ଗ୍ରହଣ କରାଗଲା । ମେଦପୁର ବର୍ତ୍ତିକ ଓ ହାଡ଼ିଆପଦା ଆଦି ଅଞ୍ଚଳରେ ପୋଲିସ ଫୌଜ ନେଇ ନିଜେ ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀକୃଷ୍ଣ ମହାପାତ୍ର ପହଞ୍ଚିଲେ । ଦରିଦ୍ର ପ୍ରଜାମାନଙ୍କୁ ୧୦୭ ଓ ୧୪୪ ଧାରାରେ ବହୁ ମକଦ୍ଦମାରେ ସଂପୃକ୍ତ କରାଗଲା । ବହୁ ସଂଖ୍ୟାରେ ଲୋକ

ଗିରଫ ହେଲେ । ତଥାପି ସେମାନେ ଅବଦମିତ ହେଲେ ନାହିଁ । ରଜାଘର ଲୋକେ ନିରୀହ ପ୍ରଜାମାନଙ୍କ ଉପରେ ଅଧିକରୁ ଅଧିକ ଅତ୍ୟାଚାର କରିବାରେ ଲାଗିଲେ । ସ୍ତ୍ରୀଲୋକ-ମାନଙ୍କ ଦେହରୁ ବୃଙ୍କି ଖଜଣା ଅପୁଲ ଆଳରେ ଜୋର୍ କରି ଗହଣା ଛଡ଼ାଇ ନିଆଗଲା । ଘରେ ପଶି ସମ୍ପତ୍ତି ନଷ୍ଟ କଲେ । ଘରେ ନିଆଁ ଲଗାଇ ଦେଲେ; କେଉଁଠି ବା ଟଙ୍କା ପଇସା ଓ ମୂଲ୍ୟବାନ୍ ଜିନିଷ ଲୁଟି ନେଲେ । ରାଜାଙ୍କ ଲୋକ ଭୟରେ ସ୍ତ୍ରୀଲୋକମାନେ ନଈ ପୋଖରୀରେ ପଶି ଆତ୍ମରକ୍ଷା କରୁଥିଲେ । କନିକାର ଅଧିକାଂଶ ଲୋକେ ଏହି ଅତ୍ୟାଚାର ଭୟରେ ଘର ଛାଡ଼ି ଚାନ୍ଦବାଲି, ଆଳି, କାସ୍ତେମା ଅଞ୍ଚଳକୁ ପଳାଇ କୌଣସି-ମତେ ଜୀବନ ବଞ୍ଚାଇଥିଲେ ।

ପଣ୍ଡିତ ମଦନ ମୋହନ ମାଲବ୍ୟଙ୍କ ଗୁପ୍ତ ନିର୍ଦ୍ଦେଶ ଓ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ନିଷ୍ପତ୍ତି ମତେ ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟ ଓ ପୂର୍ଣ୍ଣାନନ୍ଦ ରାଉତରାୟ କନିକା ବିଷୟ ଅନୁଧ୍ୟାନ କରିବାକୁ ଯାଇ ରହିବାକୁ ସ୍ଥାନ ବା ଖାଇବାକୁ ଖାଦ୍ୟ ମଧ୍ୟ ପାଇ ନଥିଲେ । ଲୋକେ ଏତେ ଭୟଭୀତ ହୋଇପଡ଼ିଥିଲେ ଯେ, ଏ କଂଗ୍ରେସ ଲୋକଙ୍କୁ ସ୍ଥାନ ଦେଇ ଅଧିକ ବିପଦରେ ପଡ଼ିବାକୁ ସେମାନଙ୍କର ସାହସ ନଥିଲା । ରାଜାଙ୍କ ଲୋକେ ସ୍ଥାନେ ସ୍ଥାନେ ବିଜ୍ଞାପନ ଦେଇ ଘର ଲୁଟି କରୁଥିଲେ । ଏହିପରି ଏକ ବିଜ୍ଞାପନ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ କେନ୍ଦ୍ରାପଡ଼ାରୁ ଚାଲି ଚାଲି ଚାନ୍ଦବାଲି ଆସୁଥିବା ବାଟରେ ପାଇ ପରେ 'ସମାଜ'ରେ ପ୍ରକାଶ କରିଥିଲେ । ଏଥିରେ ଏହି ଲୁଣ୍ଠନ ପାଇଁ ସ୍ଥାନ ଓ ତାରିଖ ସ୍ପଷ୍ଟ ଜଣାଇ ଦିଆଯାଇଥିଲା ।

ଏହି ସମୟରେ ଶ୍ରୀକୃଷ୍ଣ ମହାପାତ୍ର ଓଡ଼ିଶାର ଉଚ୍ଚପଦସ୍ଥ ପୋଲିସ କର୍ମଚାରୀ ଥିଲେ । କନିକା ରାଜା ତାଙ୍କ ସହିତ ଏକ ଷଡ଼ଯନ୍ତ୍ରରେ ଏକାଠି ହୋଇ ନିରୀହ ପ୍ରଜାମାନଙ୍କୁ ଦମନ କରିବାର ଉପାୟ ସ୍ଥିର କଲେ । ଏସ୍.ଡି.ଓ. ସାହେବ ନିଜେ ଆସି ଲୋକଙ୍କ କଥା ବୁଝିବେ ବୋଲି ଆଗରୁ ପ୍ରଚାରିତ ହେଲା । ଘଟଣାଦିନ ସାହେବଙ୍କୁ ଦୁଃଖ ଜଣାଇବାକୁ ବହୁ ସଂଖ୍ୟାରେ ଲୋକ ମେଳହୋଇ ଆସୁଥିବାର ଦେଖି ଶ୍ରୀ ମହାପାତ୍ର ସାହେବଙ୍କୁ ବୁଝାଇଦେଲେ ଯେ, ଉତ୍ତ୍ୟକ୍ତ ଜନତା ସାହେବଙ୍କୁ ଆକ୍ରମଣ କରିବାକୁ ଆସୁଛନ୍ତି । ସେମାନଙ୍କ ଉପରେ ଗୁଳି ଚଳାଇବାକୁ ସେ କୌଣସିମତେ ସାହେବଙ୍କଠାରୁ ଅନୁମତି କରାଇନେଲେ । ଗୁଳି ଚାଲିଲା, ଦୁଇଜଣ ଲୋକ ଘଟଣା ସ୍ଥଳରେ ଢଳି ପଡ଼ିଲେ । ପନ୍ଦର ଜଣ ଲୋକ ଆହତ ହେଲେ । ଶହ ଶହ ସଂଖ୍ୟାରେ ଦରିଦ୍ର କୃଷକ ଗିରଫ ହେଲେ । ସ୍ତ୍ରୀଲୋକମାନଙ୍କ ଉପରେ ରାଜକର୍ମଚାରୀମାନେ ଅଶ୍ଳୀଳ ଅତ୍ୟାଚାର ଚଳାଇଲେ । ବହୁ ସ୍ଥାନରେ ଘର ପୋଡ଼ି-ଦେଲେ । ଏ ଘଟଣା ପରେ ଲୋକମାନେ ଅଧିକ ଉତ୍ତ୍ୟକ୍ତ ହୋଇ ପଡ଼ିଲେ । ସେମାନଙ୍କ ଭିତରେ ବିଦ୍ରୋହର ଅଗ୍ନିଶିଖା ଆହୁରି ଆହୁରି ଜଳିଉଠିଲା ।

ଏହି ସମୟରେ ଗୋପବନ୍ଧୁ 'ସମାଜ' ସ୍ତମ୍ଭରେ ଏହି ଅତ୍ୟାଚାରର ଲୋମହର୍ଷଣକାରୀ ବିବରଣୀ ଧାରାବାହିକ ଭାବରେ ପ୍ରକାଶ କରୁଥିଲେ । କଂଗ୍ରେସ ଅନୁଷ୍ଠାନ ମଧ୍ୟ ଏ ଦିଗରେ

କର୍ମପନ୍ଥା ଗ୍ରହଣ କରିବାକୁ ସ୍ଥିର କଲେ । ଇଂରେଜ ଶାସନ ମଧ୍ୟ ସେତେବେଳର ପରିସ୍ଥିତିରେ ସ୍ୱାଭାବିକ ଭାବରେ ଅନୁଭବ କଲା ଯେ, ଏ ବିଦ୍ରୋହ ପଛରେ ସମ୍ପୂର୍ଣ୍ଣ ଭାବରେ ଓଡ଼ିଶା କଂଗ୍ରେସର ହାତ ରହିଛି । ଫଳରେ ଓଡ଼ିଶା କଂଗ୍ରେସ ସଭାପତି ଓ 'ସମାଜ' ସମ୍ପାଦକ ଗୋପବନ୍ଧୁଙ୍କ ପ୍ରତି କନିକା ରାଜା ତଥା ବ୍ରିଟିଶ ସରକାରଙ୍କର ସମସ୍ତ ରାଗ ପୁଞ୍ଜୀଭୂତ ହେବା କଥା । ରାଜାସାହେବ ଏହି ସମୟରେ ଗୋପବନ୍ଧୁଙ୍କ ନାମରେ ମାନହାନି ମକଦ୍ଦମା କେତୋଟି ରୁଜୁ କଲେ ।

ଗୋପବନ୍ଧୁ କିନ୍ତୁ ଏଥିରେ ବିଚଳିତ ହେଲେ ନାହିଁ । ୧୯୨୨ ମସିହା ମେ ୧୪ ତାରିଖରେ ବାଲେଶ୍ୱରରେ ପ୍ରଦେଶ କଂଗ୍ରେସ କମିଟି ବସିଲା । କନିକା ଅତ୍ୟାଚାର ସମ୍ପର୍କରେ ତଥ୍ୟାତଥ୍ୟ ସଂଗ୍ରହ କରିବା ପାଇଁ ଏହି କମିଟିରେ ପ୍ରସ୍ତାବ ପାଶ୍ ହେଲା । ନିଜେ ଗୋପବନ୍ଧୁ ଏବଂ ପ୍ରଦେଶ କଂଗ୍ରେସ ସଂପାଦକ ଶ୍ରୀ ଭାଗୀରଥି ମହାପାତ୍ର ମେ ୧୬ତାରିଖରେ ଭଦ୍ରଖରେ ପହଞ୍ଚିଲେ । କର୍ତ୍ତୃପକ୍ଷ ତାଙ୍କ ଆଗମନରେ ଶାନ୍ତିଭଙ୍ଗର ଆଶଙ୍କା କରି ସଭା ସମିତି ନକରିବା ପାଇଁ ୧୪୪ ଧାରା ନୋଟିସ ଜାରିକଲେ । ଅନେକ କାରଣରୁ ଗୋପବନ୍ଧୁ ଏହି ଆଦେଶକୁ ଏଠାରେ ଲଙ୍ଘନ କରିବାକୁ ଉଚିତ ମନେକଲେ ନାହିଁ ; କିନ୍ତୁ କଂଗ୍ରେସ କର୍ମୀ-ମାନଙ୍କ ଏକ ଗୁପ୍ତ ଘରୋଇ ବୈଠକରେ ଭାଷଣ ଦେଇଥିଲେ । ଏକ ଅବରୁଦ୍ଧ ସ୍ଥାନରେ ଟିକେଟ ବ୍ୟବସ୍ଥା ଭିତରେ ଏପରି ସଭା କରିବା ଆଇନ ବିରୋଧୀ ନଥିଲା । ତଥାପି ରେଲରୁ ଓହ୍ଲାଇ ହୁକୁମ ଅବମାନନା କରିଥିବାରୁ ସଭାପତି ଗୋପବନ୍ଧୁ ଓ ସମ୍ପାଦକ ଭାଗୀରଥି ବାବୁଙ୍କ ନାମରେ ୧୮୮ ଧାରାରେ ଭଦ୍ରଖ ସବ୍‌ଡିଭିଜନ ମାଜିଷ୍ଟ୍ରେଟଙ୍କ ତରଫରୁ ମକଦ୍ଦମା ଆଗତ ହୋଇଥିଲା । ଗୋପବନ୍ଧୁ ସତ୍ୟବାଦୀକୁ ଫେରି ଆସିଲେ ଓ ଏହି ସମୟରେ ସେ ବେରାମ୍ ଥିଲେ । ମେ ୨୯ ତାରିଖରେ ସେ ପୁରୀ ଫେରି ଆସିଲେ । ସେଦିନ ପୁରୀଠାରେ ତାଙ୍କୁ ଭଦ୍ରଖ ଏସ୍. ଡି. ଓ. ଙ୍କ ତରଫରୁ ୧୪୪ ଧାରା ଅମାନ୍ୟ ଅଭିଯୋଗରେ ହୋଇଥିବା ମକଦ୍ଦମାର ନୋଟିସ ଜଣାଇ ଦିଆଯାଇଥିଲା । ଏହାର ଦୁଇଦିନ ପରେ ଗୋପବନ୍ଧୁଙ୍କୁ ଗିରଫ କରାଗଲା ।

ପରେ ଅବଶ୍ୟ କନିକା ରାଜାଙ୍କ ତରଫରୁ ରୁଜୁ କରାଯାଇଥିବା ମାନହାନି ମକଦ୍ଦମା-ଗୁଡ଼ିକ ସତ୍ୟ ପ୍ରକାଶ ଭୟରେ ରାଜାସାହେବ ଉଠାଇ ଆଣିଥିଲେ । ନିଜେ ଏସ୍. ଡି. ଓ. ଧର୍ମପ୍ରାଣ ଭାନ୍ ଗୀଯ୍‌ରସନ୍ ସାହେବ ଘଟଣାର ସତ୍ୟାସତ୍ୟ ବୁଝିବାପରେ ବଡ଼ ବିଚଳିତ ହୋଇପଡ଼ିଲେ ଓ ଅନେକ ଦିନ ଯାଏ ଅନୁତାପରେ ସମସ୍ତ କାର୍ଯ୍ୟ ଛାଡ଼ି ବସିଥିଲେ । ନିଜ ଆଖିରେ ମଣିଷ ରକ୍ତର ଯେଉଁ ହୋରିଖେଳ ସେ ଦେଖିଥିଲେ ସେଥିରେ ତାଙ୍କ ପ୍ରାଣ କାନ୍ଦି ଉଠିଥିଲା । ତାଙ୍କୁ ସେଇଦିନର ଘଟଣାଠାରୁ ଏପରି ଏକ ରୋଗ ଆକ୍ରମଣ କଲା ଯେ ସେ କ୍ରମେ ଶଯ୍ୟାଶାୟୀ ହୋଇପଡ଼ିଲେ । ବୋଟ୍‌ରେ ତାଙ୍କୁ କଟକ ବଡ଼ଡାକ୍ତରଖାନାକୁ ଅଣାଯିବା ଅବକାଶରେ ବାଟରେ ତାଙ୍କର ମୃତ୍ୟୁ ହୋଇଥିଲା ।

କନକା ଅତ୍ୟାଚାର ଗୋପବନ୍ଧୁଙ୍କ ସ୍ୱଭୂପ୍ରାଣ ହୃଦୟକୁ ଅତି ଗମ୍ଭୀର ଭାବରେ ଆଲୋଡ଼ିତ କରିଥିଲା । ପରେ ଯେତେବେଳେ ତାଙ୍କୁ କଟକରୁ ହଜାରୀବାଗ ଜେଲ୍‌କୁ ରାଜନୈତିକ ବନ୍ଦୀ ଭାବରେ ନିଆଗଲା, ଭଦ୍ରଖ ପାଖରେ ରେଲଗାଡ଼ି ପହଞ୍ଚିଲା ବେଳେ ତାଙ୍କ ମନରେ ଯେଉଁ ସମସ୍ତ ଭାବ ଉଦ୍ରେକ ହୋଇଥିଲା, ତାହା ସେ 'ବନ୍ଦୀର ଆତ୍ମକଥା' କବିତା ସଂକଳନରେ ଲିପିବଦ୍ଧ କରିଛନ୍ତି । ଏହି କବିତାରେ ପ୍ରକଟିତ ହୋଇଥିବା କାରୁଣ୍ୟ ଏବେ ବି ଓଡ଼ିଶାର ଏକ କରୁଣ ଇତିକଥାର ଦରଦଭରା କାହାଣୀକୁ ଶୋକାପ୍ଲୁତ କରିଥାଏ ।

× × ×

"ଯେତେକାଳ ମୋର ଥିବ ଭବେ ଆୟୁ
ବହୁଥିବ ଯେତେଦିନ ପ୍ରାଣବାୟୁ,
ଥାଏ ଯହିଁ ତହିଁ ଦୂରେ ବା ନିକଟେ,
ରହିବ ସେ ଦୁଃଖ ଦାଗ ଚିତ୍ତପଟେ ।
ଦୁଃଖିନୀ କନକା କରୁଣ କୁହାଟ
ଲଗେ ଯେହ୍ନେ ଭେଦି ଶିଳ ବନ ପାଟ,
ସାଲନ୍ଦୀ ସଲିଳେ ପ୍ରତିଧ୍ୱନି ତାନେ
କୁଳୀଶ ନିନାଦ ବାଜଇ ମୋ କାନେ ।

× × ×

ଉଡ଼ିଯାଇ ଦେଖି ଆସିଆ'ନ୍ତି ଥରେ
କନକା ପ୍ରଜାଙ୍କୁ ରକ୍ତ ଭଙ୍ଗାଘରେ ।
ଆଉଁସି ପିଠିରୁ ପ୍ରହାର-ପରସ
ହରି ପାଇଥାନ୍ତି ପରାଣେ ଆଶ୍ୱାସ ।
ପତରପୁରର ସର ସନ୍ନିଧାନେ
ମଲେ ପ୍ରଜାବେନି ଯହିଁ ଅଗ୍ନିବାଣେ
ନିରୀହ ନିର୍ଦ୍ଦୋଷ ପବିତ୍ର ଶୋଣିତ
କରିଛି କନକା ଭୂମି ଯହିଁ ସିକ୍ତ ।
ସେ ଶୁଚି ମୃତ୍ତିକା ଲଗାଇ ମୁଁ ଶିରେ
ତେଜି ନେତ୍ରନୀର ସରୋବର ତୀରେ
ଲଭିଥା'ନ୍ତି ଥରେ ଅନ୍ତରେ ସାନ୍ତ୍ୱନା
ଅପୂର୍ଣ୍ଣ ରହିଲା ଆହା ଏ ବାସନା
କନକାର ରାଜଧାନୀ ଚଉପାଶେ
ପ୍ରେତ ଆତ୍ମା ବେନି ଉଡ଼ଇ ଆକାଶେ ।
ବିନ୍ଦୁ ବିନ୍ଦୁ ରକ୍ତ ପଡ଼େ ତହୁଁ ତଳେ

ସେ ରକ୍ତେ ସ୍ପର୍ଶେ ଅଗ୍ନିଶିଖା ଜଳେ ।
ସିକ୍ତ ସିକ୍ତ ଶୁଖେ ଗଙ୍ଗାନଦୀ ଜଳ
ନ ଲିଭେ ପ୍ରବଳ ଜଳେ ସେ ଅନଳ ।
ଶୁଭେ ଚଉଦଗେ କାତର ଚିତ୍କାର
ପଳାଏ ପର୍ଜା ଛାଡ଼ି ଘରଦ୍ୱାର ।
ପଥେ ଗର୍ଭିଣୀର ଭୟେ ଗର୍ଭସ୍ରାବ
ଉଠଇ ଗୋଗୋଷ୍ଠେ ବିକଟାଳ ରାବ ।
ମହା ବିପର୍ଯ୍ୟୟ, ମହା ବିଭୀଷିକା
କଂପେ ମହାଭଙ୍ଗେ ଦୁଃଖିନୀ କଳିକା ।

## ଗିରଫ ପରୱାନା

୧୯୨୨ ମସିହା ମେ' ମାସ ୩୧ ତାରିଖ ସକାଳ । ସମୁଦ୍ର ପବନର ଉଜ୍ଜ୍ୱଳ ସ୍ପର୍ଶରେ ଶ୍ରୀମନ୍ଦିର ନେତ ଥରଉଠିଥିଲା । ପୁରୀ ବଡ଼ଦାଣ୍ଡରେ ଜନତାର ସ୍ରୋତ ଲାଗି ନଥିଲା । ସହର ତଥାପି ନିଦ୍ରାଗତ । ଗୋପବନ୍ଧୁ ନରେନ୍ଦ୍ର ପୋଖରୀରେ ସ୍ନାନ ସାରି ଫେରୁଥିଲେ । ଅନୁଚ୍ଚ ସ୍ୱରରେ ଉଚ୍ଚାରଣ କରୁଥିଲେ କେତୋଟି ବୈଦିକ ମନ୍ତ୍ର । ଏହି ସମୟରେ ପୁରୀର ପୋଲିସ୍ ଇନ୍‌ସପେକ୍ଟର ତାଙ୍କୁ କଟକ ଜିଲ୍ଲା କଲେକ୍ଟରଙ୍କ ୱାରେଣ୍ଟ ଦେଖାଇ ଗିରଫ କଲେ । 'ଉତ୍କଳ ସ୍ୱରାଜ୍ୟ ସେବକ ସଂଘ' ଓ ସ୍ୱେଚ୍ଛାସେବକ ଦଳ ଗଠନ କରିବା ଥିଲା ଗୋପବନ୍ଧୁଙ୍କ ବିରୁଦ୍ଧରେ ଏହି ଗିରଫ ପରୱାନାର ଅଭିଯୋଗ । ଫୌଜଦାରୀ ସଂଶୋଧନ ଆଇନର '୨୨' ଦଫାରେ ଏ ମକଦ୍ଦମା ରୁଜୁ ହୋଇଥିଲା । ଗିରଫଦାରୀ ୱାରେଣ୍ଟ କଥା ଶୁଣି ଗୋପବନ୍ଧୁ ଧୀର ସ୍ଥିର ଢଙ୍ଗରେ କହିଲେ—"ମୁଁ ତ ଏଥିପାଇଁ ଅନେକ ଦିନୁ ଅପେକ୍ଷା କରୁଥିଲି । ହଉ ଟିକିଏ ଅପେକ୍ଷା କରନ୍ତୁ । ମୁଁ ପୂଜା ସାରି ଆସେ । ଆପଣ ସିଂହଦ୍ୱାର ମୁହଁକୁ ଗୋଟିଏ ଘୋଡ଼ାଗାଡ଼ି ଡାକି ଆଣନ୍ତୁ ।"

ପୋଲିସ ଇନସ୍‌ପେକ୍ଟର ଅବୋଧ ବାବୁ ଅତି ମର୍ମାହତ ହୋଇ କହିଲେ—"ଆଜ୍ଞା, ଚାକିରି କରୁଛୁ ବୋଲି ସିନା, ପିଲାଛୁଆ ସଂସାର ମୁହଁରେ ଆହାର ଦେବା କଥା ନ ଥିଲେ ଏ କାମ କିଏ କରନ୍ତା ?"

ଗୋପବନ୍ଧୁ ବଡ଼ ପ୍ରସନ୍ନ ଦେଖା ଯାଉଥାନ୍ତି । ମୁହଁରେ ଟିକିଏ ହେଲେ ଉଦ୍‌ବେଗ ନଥାଏ । ସେ କହିଲେ—"ହଉ, ତୁମ କର୍ତ୍ତବ୍ୟ ତୁମେ କର, ଭିତରେ ଏମିତି ସ୍ନେହ ଥାଉ ।"

ଘଡ଼ିକ ଘଡ଼ିକେ ଏ ଘଟଣା ପୁରୀ ସହରସାରା ବିଜୁଳି ବେଗରେ ଖେଳିଗଲା । ବନ୍ଦୀ

ଗୋପବନ୍ଧୁଙ୍କୁ ବିଦାୟ ଦେବାପାଇଁ ଶୋକାକୁଳ ଜନତାର ଜୁଆର ପୁରୀ ଷ୍ଟେସନ ଆଡ଼େ ମାଡ଼ିଗଲାଥାଏ । ସମସ୍ତଙ୍କ ମୁହଁରେ ପ୍ରିୟ ମଣିଷଟିର ଜୟଧ୍ୱନି । ଆଖିରେ ଅଶ୍ରୁର ଧାର । କେହି କେହି ତାଙ୍କ ଉପରକୁ ଫୁଲ ପକାଉଥା'ନ୍ତି । ଜନତାର ଭିଡ଼କୁ ଠେଲି ତାଙ୍କ ନିକଟରେ ପହଞ୍ଚିବାକୁ ପ୍ରତ୍ୟେକ ଲୋକ ଉଦ୍ୟମରତ । ସତେ ଯେପରି ସେ ସବୁଦିନ ପାଇଁ ଆଖିର ଅନ୍ତରାଳରେ ଲୁଚି ଯାଉଛନ୍ତି । ଷ୍ଟେସନ ପରେ ଷ୍ଟେସନ । ପ୍ରତ୍ୟେକ ଷ୍ଟେସନରେ ବନ୍ଦୀ ଗୋପବନ୍ଧୁଙ୍କ ପାଇଁ ଉଚ୍ଛୁସିତ ସମ୍ବର୍ଦ୍ଧନା । ଗୋପବନ୍ଧୁ ହସି ହସି ସମସ୍ତଙ୍କଠାରୁ ବିଦାୟ ନେଉଥା'ନ୍ତି । ସମବେତ ଜନତା ଉଦ୍ଦେଶ୍ୟରେ ବିଦାୟ ବାର୍ତ୍ତା ଶୁଣାଉଥାନ୍ତି । ସେଇ ବାର୍ତ୍ତା—ଖଦଡ଼ ପରିଧାନ, କଂଗ୍ରେସର ପ୍ରଚାର, ଅନ୍ୟାୟର ଅହିଂସାତ୍ମକ ବିରୋଧ ଆଉ ସ୍ୱରାଜ୍ୟ ଆନ୍ଦୋଳନ । ଦେଶ ଓ ଜାତି ପାଇଁ ଆତ୍ମବଳି ଦେଇ ସର୍ବସ୍ୱ ତ୍ୟାଗ କରିବାକୁ ସେ ଆହ୍ୱାନ କରୁଥାନ୍ତି । ରେଲଗାଡ଼ି ତାଙ୍କୁ ଆଗକୁ ବୋହି ନେଉଥାଏ । ପଛରେ ପଡ଼ି ରହୁଥାଏ ଅତି ଆପଣାର ପ୍ରିୟ ମଣିଷମାନଙ୍କ ନିବିଡ଼ ମମତାର ଅଶ୍ରୁଳ ଇତିକଥା । ଅନେକ ଲୋକ ଅଧୈର୍ଯ୍ୟ ହୋଇ ଛୋଟ ଶିଶୁପରି କହି କହି କାନ୍ଦୁଥା'ନ୍ତି ।

ହାତକଡ଼ି ପଡ଼ିଥାଏ । ଗୋପବନ୍ଧୁ ସମସ୍ତଙ୍କୁ ସାନ୍ତ୍ୱନା ଦେଇ କହୁଥା'ନ୍ତି—"ବ୍ୟସ୍ତ ହେଉଚ କାହିଁକି, ନିଜ ନିଜ କର୍ତ୍ତବ୍ୟ ସମସ୍ତେ କର ।"

ବେଶ୍ ସ୍ପଷ୍ଟ; ସେତିକି ତାଙ୍କର ଜନତା ପ୍ରତି ବିଶ୍ୱାସଭରା ପ୍ରାଣର ଏକାନ୍ତ ଅନୁଯୋଗର ବାଣୀ । ରେଲଗାଡ଼ିରେ ଥାଇ ସେ ନିମ୍ନଲିଖିତ ବାର୍ତ୍ତାଟି ଲେଖି ନିରଞ୍ଜନ ବାବୁଙ୍କ ହାତରେ ଦେଇଥିଲେ—"ଫୌଜଦାରୀ ଆଇନର ୧୭ ଦଫା ଅନୁସାରେ ମୁଁ ଓ୍ୱାରେଣ୍ଟରେ ସିଧା ଧରା ହୋଇ ବର୍ତ୍ତମାନ ପୁରୀରୁ କଟକ ଯାଉଛି । ମୋର ଏ ମୋକଦ୍ଦମା ବିଚାର ଜୁନ୍ ୧୨ ତାରିଖରେ ହେବ । ଭଦ୍ରକଠାରେ ୧୪୪ ଧାରା ନୋଟିସ ଅମାନ୍ୟ କରିଥିବା ଅପରାଧରେ ମୋ ନାମରେ ୧୮୮ ଦଫାରେ ପୁଣି ମକଦ୍ଦମା କରାଯାଇଛି । ଜୁନ୍ ୬ ତାରିଖରେ ଏହାର ବିଚାର ହେବ । ମୁଁ ପୁଣି ଶୁଣିପାରୁଛି କନିକା ରାଜାଙ୍କର ଜଣେ ପ୍ରଜା ମୋ ବିରୁଦ୍ଧରେ ମାନହାନି ମକଦ୍ଦମା ଦାଏର କରି ସମନ ବାହାର କରିଛନ୍ତି । ମୋ ବିରୁଦ୍ଧରେ ଏ ଯେ ମାଲ୍-ମକଦ୍ଦମାର ସୃଷ୍ଟି ହେଉଛି ମୋର ଆଶଙ୍କା ଏହା କେବଳ ମୋତେ କନିକା ଅନୁସନ୍ଧାନରୁ ଅନ୍ତର କରି ଜବରଦ୍ କରି ରଖିବା ପାଇଁ କରାଯାଉଛି । କନିକାର ବର୍ତ୍ତମାନ ଅବସ୍ଥା ବିଷୟରେ ସ୍ୱାଧୀନ ଓ ପୁଙ୍ଖାନୁପୁଙ୍ଖ ଅନୁସନ୍ଧାନ କରାଯିବା ନିତାନ୍ତ ଦରକାର । ଦେଶବାସୀଙ୍କର ଏହା ପ୍ରଧାନ କର୍ତ୍ତବ୍ୟ । ମୁଁ ଏଥିପାଇଁ ବଡ଼ ଚିନ୍ତିତ । ଅବିଳମ୍ବେ ଏହା କାର୍ଯ୍ୟରେ ପରିଣତ କରିବାପାଇଁ ମୁଁ ବରାବର ଚେଷ୍ଟା କରୁଥିଲି । ଏ ପ୍ରକାର ଅନୁସନ୍ଧାନ ଦ୍ୱାରା କର୍ତ୍ତୃପକ୍ଷଙ୍କର ଧାସ୍ତ ସବୁବେଳେ ଆତଙ୍କ ଜନ୍ମିଥାଏ । ପୁରୀ ଦୁର୍ଭିକ୍ଷବେଳେ ଏହିପରି କରାଯାଇଥିଲା । ସେ ଅନୁସନ୍ଧାନ ଫଳରେ ସରକାରୀ କାରସାଦି ଓ ଅତ୍ୟାଚାରର ସବୁ ପ୍ରକାଶ ପାଇଥିଲା । ମୋର ମନେହୁଏ ବର୍ତ୍ତମାନ ଘଟଣାରେ କୌଣସି ଅନୁସନ୍ଧାନ କରେଇ ନ ଦେବା ପାଇଁ ସରକାରୀ ଲୋକେ ପ୍ରାଣପଣେ ଚେଷ୍ଟା କରୁଛନ୍ତି; କିନ୍ତୁ ମୁଁ ମୋର ଦେଶବାସୀ

ବିଶେଷତଃ ବିହାର, ବଙ୍ଗଳା ଓ ଓଡ଼ିଶାର ନେତାମାନଙ୍କଠାରେ ଦାବୀ କରେ କି ସେମାନେ କାଳବିଳମ୍ବ ନକରି ଅତିଶୀଘ୍ର ବିଚକ୍ଷଣତା ଓ ସାବଧାନତାର ସହିତ କନିକା ଅତ୍ୟାଚାରର ଅନୁସନ୍ଧାନ କରନ୍ତୁ । ମୋର ଆଶଙ୍କା ଇତିମଧ୍ୟରେ ସେଠା ଲୋକେ ସନ୍ତ୍ରସ୍ତ ଓ ମ୍ଳାନ ଚରିତ ହୋଇଗଲେଣି । ଆଉ କାଳ ବିଳମ୍ବ କଲେ ସେମାନଙ୍କ ଅବସ୍ଥା ବଦଳିବାର ଆଉ କୌଣସି ଆଶା ରହିବ ନାହିଁ; ବରଂ ଅତିଶୟ ଶୋଚନୀୟ ହେବ । ପ୍ରତ୍ୟେକ ଶିକ୍ଷିତ ଓ ସଭ୍ୟ ଜାତି ଲୋକଙ୍କର ଆତ୍ମୀୟ ଓ ପ୍ରତିବେଶୀମାନଙ୍କ ପ୍ରତି ନିଜନିଜର କର୍ତ୍ତବ୍ୟ ଅଛି । କନିକା ଘଟଣାର ଉପଯୁକ୍ତ ଅନୁସନ୍ଧାନ କରି ନ ପାରିଲେ ତାହା ଏକ କଳଙ୍କ ଓ ମନୁଷ୍ୟ ପ୍ରତି ମନୁଷ୍ୟର ଏହି କର୍ତ୍ତବ୍ୟରେ ଘୋର ତ୍ରୁଟି ଘଟିବ । ମୋର ଶରୀର ନିତାନ୍ତ ଅସୁସ୍ଥ ଥିବାରୁ ମୁଁ ୬/୭ ଦିନ ବିଶ୍ରାମ ନେଉଥିଲି । ମୋର ଆନନ୍ଦ ଯେ ସହକୋଶୀ ଲୋକେ ମୋତେ ଅଧିକ ଦିନ ବିଶ୍ରାମ ଦେବାକୁ ବ୍ୟାକୁଳ ହୋଇପଡ଼ିଛନ୍ତି ; କିନ୍ତୁ ଏ ବିଶ୍ରାମ ମୋ ପକ୍ଷରେ ସୁଖକର ହେବ କି ନା ଏହା କେବଳ ଦେଶବାସୀଙ୍କ ଉପରେ ନିର୍ଭର କରେ । ମୋର ଦେଶବାସୀ ନିଜନିଜର କର୍ତ୍ତବ୍ୟ କରି ଦେଶରେ ପୂର୍ଣ୍ଣ ସ୍ୱଦେଶୀର ଚଳନ କରି ପାରିଲେ ମୋ ପକ୍ଷରେ ତାହାହିଁ ପୂର୍ଣ୍ଣ ଆନନ୍ଦ ଓ ଶାନ୍ତିଦାୟକ ହେବ ।"

ଗୋପବନ୍ଧୁ ଗିରଫ ହୋଇ ପୁରୀରୁ କଟକ ଆସୁଥିବାବେଳେ ତାଙ୍କ ସହିତ ଟ୍ରେନ୍‌ରେ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଆସୁଥିଲେ । ନିରଞ୍ଜନ ବାବୁଙ୍କ ସହିତ ତାଙ୍କର ଯେଉଁ ଆଲୋଚନା ହୋଇଥିଲା ତାହାର ମର୍ମ ପରେ 'ସମାଜ'ରେ ପ୍ରକାଶ ପାଇଥିଲା । ଜେଲ୍‌ଯାତ୍ରା କାଳରେ ଗୋପବନ୍ଧୁ ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ନିମ୍ନଲିଖିତ ବାର୍ତ୍ତାଟି ଦେଇଥିଲେ—
"ଓଡ଼ିଶାର ଛାତ୍ରସମାଜ ଉପରେ ଦାବୀ ଅଛି । ସତ୍ୟବାଦୀ ସ୍କୁଲରେ ହେଉ ବା ବିଶ୍ୱ-ବିଦ୍ୟାଳୟର ସିନେଟ୍ ସିଣ୍ଡିକେଟ୍‌ରେ ହେଉ ମୋର ଅଧିକାଂଶ କାର୍ଯ୍ୟ ଶିକ୍ଷା ବିଷୟରେ । ଏ ନୂତନ ଆନ୍ଦୋଳନରେ ଛାତ୍ରମାନଙ୍କଠାରୁ ଯାହା ଆଶା କରାଯାଇଥିଲା ସେମାନେ ତାହା କରିନାହାନ୍ତି । ମହାତ୍ମା ଗାନ୍ଧି ଓଡ଼ିଶା ସମ୍ପର୍କରେ ଯାହା କହିଛନ୍ତି ବା ଯାହା ଲେଖିଛନ୍ତି ସେମାନଙ୍କର ସେ ସବୁ ସ୍ମରଣ ରଖିବା ଉଚିତ । ମୁଁ ବୋଧକରେ ମହାତ୍ମା ଗାନ୍ଧି ବର୍ତ୍ତମାନ ଜେଲ୍ ମଧ୍ୟରେ ଓଡ଼ିଶା କଥା ବିଚାରିଲାବେଳେ ବ୍ୟାକୁଳ ହେଉଥିବେ । ଛାତ୍ରସମାଜର ଓଡ଼ିଶା ପ୍ରତି କର୍ତ୍ତବ୍ୟ ଅଛି । ସମସ୍ତ ପ୍ରକାର ଦୁଃଖ କଷ୍ଟ ସହି ସେମାନେ ଏ କର୍ତ୍ତବ୍ୟ ପାଳନ କରିବା ଉଚିତ । କେବଳ ରାଜନୈତିକ ଅଧିକାର ଲଭ ସକାଶେ ଯେ ମୁଁ ଏ ଆନ୍ଦୋଳନରେ ଯୋଗ ଦେଇଛି ତା ନୁହେଁ; ଏହାଦ୍ୱାରା ଓଡ଼ିଶାର ନିରନ୍ନ ଲୋକଙ୍କୁ ଅନ୍ନ ଦେବା, ଓଡ଼ିଶାର ଦରିଦ୍ରତା ଦୂର କରିବା ମୋର ଉଦ୍ଦେଶ୍ୟ । ଏହାହିଁ ହୋଇ ପାରିଲେ ମୋର ପରମ ସନ୍ତୋଷ । ଯେଉଁ ଜାତିର ତ୍ୟାଗ ନାହିଁ, ସେ ଜାତିର ଅସ୍ତିତ୍ୱ ନାହିଁ । ମୋର ଶେଷ ଅନୁରୋଧ ଓଡ଼ିଶାର ଭାଇ,ଭଉଣୀମାନେ ଘରେ ଘରେ ଅରଟ ନ ଚଳାଇଲେ ବନ୍ଦୀଶାଳାରେ ମୋ ଦୁଃଖର ସୀମା ରହିବ ନାହିଁ । ବାସ୍ତବିକ ଜେଲ୍‌ଶାଳାରୁ ଫେରିବା-ବେଳେ ମୁଁ ଯଦି ଦେଖେ ଯେ ଓଡ଼ିଶାବାସୀ କିଛି କରି ନାହାନ୍ତି ତେବେ ଏ ରାଜ୍ୟରେ

ବାସ କରିବା ମୋ ପକ୍ଷେ ଅସମ୍ଭବ ହେବ ।"

ଗୋପବନ୍ଧୁ ଏ କଥା କହୁଥିଲାବେଳେ ତାଙ୍କ ଆଖି ଲୁହରେ ଛଳଛଳ ହୋଇଯାଉଥିଲା । ହୃଦୟର ଆବେଗରେ ସେ ଅନେକ ବେଳଯାଏ କଥା ସୁଦ୍ଧା କହିପାରିଲେ ନାହିଁ ; ଆଖିରୁ ଦୁଇଟୋପା ଲୁହ ଗଡ଼ି ପଡ଼ିଲା । କେତେ ସମୟ ନୀରବ ବସିବା ପରେ ନିରଞ୍ଜନ ବାବୁ ପଚାରିଲେ, "ଓଡ଼ିଶା ବାହାରର ଲୋକମାନଙ୍କ ପ୍ରତି ଆପଣଙ୍କର କିଛି କହିବାର ଅଛି କି ?"

କିଛି ସମୟ ପରେ ଗୋପବନ୍ଧୁ କହିଲେ—"ଓଡ଼ିଶା ବାହାରେ ବିଭିନ୍ନ ପ୍ରଦେଶର ନେତା ଓ ଜନସାଧାରଣଙ୍କ ପ୍ରତି ମୋର ଅନୁରୋଧ ଯେ ସେମାନେ ଏ ଦରିଦ୍ର ଉତ୍କଳୀୟଙ୍କ ପ୍ରତି ନିଜନିଜର କର୍ତ୍ତବ୍ୟ ଠିକ୍‌ଏ ସ୍ମରଣ ରଖିଥିବେ । ରାଜନୀତି କ୍ଷେତ୍ରରେ ଓଡ଼ିଶା ନିତାନ୍ତ ପଛରେ ପଡ଼ିଛି । ଲୋକମାନେ ନିତାନ୍ତ ଦରିଦ୍ର । ଫଳରେ ସେମାନଙ୍କ ଚରିତ୍ର ମଧ୍ୟ ନଷ୍ଟ ହୋଇଗଲାଣି । ଏତେବେଳେ ସେମାନେ ଓଡ଼ିଆମାନଙ୍କ ସହାୟତା ନକଲେ ଭାରତରେ ଜାତୀୟ ଜୀବନର ଅଖଣ୍ଡ ଓ ପୂର୍ଣ୍ଣ ବିକାଶ ହୋଇପାରିବ ନାହିଁ । ଓଡ଼ିଆ ଦେଶ ମିଶ୍ରଣ ସମସ୍ୟା ସେମାନେ ବେଳେବେଳେ ବିଚାରୁଥିଲେ । ଅନେକ କହନ୍ତି, ଓଡ଼ିଶାର ଏହି ଆନ୍ଦୋଳନ ଭାରତୀୟ ଆନ୍ଦୋଳନରେ ବାଧା ଦେଉଛି; କିନ୍ତୁ ଓଡ଼ିଶାର ଅସହଯୋଗୀମାନେ ଏ ସମ୍ପର୍କରେ ବିଭିନ୍ନ ପ୍ରଦେଶ ସହିତ ମତଭେଦ ମେଣ୍ଟାଇବା ପାଇଁ ଯଥେଷ୍ଟ କାର୍ଯ୍ୟ କରିଛନ୍ତି । ବାସ୍ତବିକ ଅସହଯୋଗ ସମ୍ପର୍କରେ ଭାରତୀୟ ରାଜନୈତିକ ଆନ୍ଦୋଳନରେ ଯୋଗଦେବା ଓଡ଼ିଆମାନଙ୍କ ପକ୍ଷରେ ଏହା ପ୍ରଥମ । ଓଡ଼ିଶାର ଜନସାଧାରଣ ନିତାନ୍ତ ଗରିବ ଓ ଚିରପ୍ରପୀଡ଼ିତ । ଏହି ନୂତନ ଆନ୍ଦୋଳନରେ ସେମାନଙ୍କ ଦୁଃଖ ଦୂର ହେବ ବୋଲି ସେମାନେ ଆଶା ଓ ବିଶ୍ୱାସ କରିଛନ୍ତି, ଏବଂ ଏହି ବିଶ୍ୱାସରେ ସେମାନେ ପାହୁଲାଏଠାରୁ ପଇସାଏ ପର୍ଯ୍ୟନ୍ତ 'ତିଳକ ସ୍ୱରାଜ୍ୟ ପାଣ୍ଠି'କୁ ଦାନ କରିଛନ୍ତି । ଶିକ୍ଷା ବିଷୟରେ ମଧ୍ୟ ଆମ୍ଭେମାନେ ଯାହା ପାରିଛୁ, କରିଛୁ । ମୋର ବିଶ୍ୱାସ ଦେଶର ସ୍ଥାୟୀ ବିଦ୍ୟାଳୟମାନଙ୍କ ମଧ୍ୟରେ ବୋଧହୁଏ ସର୍ବପ୍ରଥମେ ସତ୍ୟବାଦୀକୁ ଜାତୀୟ ବିଦ୍ୟାଳୟରେ ପରିଣତ କରାଯାଇଛି । ବର୍ଦ୍ଦୋଲି ଓ ଦିଲ୍ଲୀଠାରେ ସ୍ଥିର କରାଯାଇଥିବା କଂଗ୍ରେସ କାର୍ଯ୍ୟ ପନ୍ଥାରେ ମୋର ଅଟଳ ବିଶ୍ୱାସ । ବାସ୍ତବିକ ଅରଟ ପ୍ରଚଳନରେ ହିଁ ଏ ଦେଶର କୋଟି-କୋଟି ଲୋକଙ୍କ ଦୁଃଖଦୁର୍ଦ୍ଦଶା ଦୂର ହେବ । ବ୍ୟବସ୍ଥା ସଭାରେ ଲଢ଼େଇ କରିବା ଦ୍ୱାରା କୌଣସି ଲାଭ ନାହିଁ । ଏଥିରେ କେବଳ ସମୟ ଓ ଶକ୍ତି ନଷ୍ଟ ହୁଏ । ବ୍ୟବସ୍ଥା ସଭା କରି ଗ୍ରାମେ ଗ୍ରାମେ ନେଇ ସ୍ୱଦେଶ ଇତ୍ୟାଦି କାର୍ଯ୍ୟ କରାଯାଉଛି, ତାହାହିଁ ପ୍ରକୃତ କାର୍ଯ୍ୟ । ମୋ ମତରେ ବ୍ୟବସ୍ଥା ସଭାରେ କେବଳ ସରକାରଙ୍କ ସହିତ ଅଯଥା ଲଢ଼େଇ କରିବା ଅପେକ୍ଷା ବାହାରେ ଲୋକସେବା କରିବାରେ ଦେଶର ପ୍ରକୃତ ମଙ୍ଗଳ ସାଧିତ ହେବ ।"

ଗାଡ଼ି ଆସି କଟକ ଷ୍ଟେସନରେ ଲାଗିଲା । କଟକ ଷ୍ଟେସନରେ ବିକ୍ଷୁବ୍ଧ ଜନତା ଉଦ୍‌ବେଳ ହୋଇଉଠୁଥାଏ । ଷ୍ଟେସନରେ ଲୋକଗହଳି । ଗୋପବନ୍ଧୁଙ୍କୁ ଟ୍ରେନରୁ ଓହ୍ଲାଇ

ଜେଲ୍‌ଭ୍ୟାନ୍ ଯୋଗେ ହାଜତକୁ ନିଆହେଲ । ସଶସ୍ତ୍ର ଅଗ୍ରଳିତ ଜନତା ପଛେ ପଛେ ଧାଇଁଥାଏ । ତାଙ୍କୁ ବିଚାର ପର୍ଯ୍ୟନ୍ତ କଟକ ଜେଲ୍‌ରେ ରଖାଗଲା ।

## ଗୋପବନ୍ଧୁଙ୍କ ବିଚାର

ଗୋପବନ୍ଧୁଙ୍କୁ କଟକ ଜେଲ ହାଜତରେ ରଖାଗଲା । ଅଳକାଶ୍ରମରୁ ଭାଗୀରଥି ବାବୁଙ୍କୁ ମଧ୍ୟ ସମାନ ଅପରାଧରେ ଗିରଫ କରାଯାଇଥିଲା । ଏମାନଙ୍କୁ ଗିରଫ କରାଯିବା ପରେ ପରେ ପୁଣି ବ୍ୟାପକ ଭାବରେ ଜିଲ୍ଲା ଓ ସଦର ସ୍ୱରାଜ୍ୟାଶ୍ରମ ସବୁ ପୋଲିସ ତରଫରୁ ଖାନତଲାସ କରାଯାଇଥିଲା । ୩୧ । ୫ । ୨୨ ତାରିଖ ଦିନ ପଣ୍ଡିତ ଗୋପବନ୍ଧୁଙ୍କ ସୁଆଣ୍ଡୋ ଘର, ସତ୍ୟବାଦୀ ବିଦ୍ୟାଳୟ, ପୁରୀ ଆଶ୍ରମ ଆଦି ଖାନତଲାସ କରାଗଲା । ଏପରିକି ତାଙ୍କର ଅଟଳ ବିଶ୍ୱାସୀ ଆଚାର୍ଯ୍ୟଙ୍କ ଗ୍ରାମ ଘର କୋରଖ କରି ପୋଲିସ କଂସାବାସନ, ଔଷଧପତ୍ର, ସପ ମଶିଣା, ଧାନ ଚାଉଳ ଆଦି ଯାବତୀୟ ଜିନିଷ ବୋହିନେଲେ । ଏଥିଙ୍କ ଘରୁ ପରି ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ଛବି ମଧ୍ୟ ନେଇଯାଇଥିଲେ । ତାଙ୍କ ମା' ବୁଢ଼ୀ ଶୋଇବା ପାଇଁ ଖଣ୍ଡିଏ ସପ ଆଦି ନଥିଲା ବା ଖାଇବା ପାଇଁ ବାସନ ଖଣ୍ଡିଏ ବି ନଥିଲା । ଭଦ୍ରଖରେ ଶ୍ରୀ ଗୌରିଶ୍ୟାମ ମହାପାତ୍ର ସ୍ୱରାଜ୍ୟାଶ୍ରମ ପାଇଁ ଘରଟିଏ ଦାନ କରିଥିଲେ । ଏ ଘରକୁ ଫେରାଇ ନେବାପାଇଁ ତାଙ୍କୁ ଡାକି ପୋଲିସ ଧମକାଇବାରେ ସେ ଦତ୍ତ ପଦାର୍ଥ ପୁନର୍ଗ୍ରହଣ କରିବେନି ବୋଲି ଦୃଢ଼ତାର ସହି ଜବାବ ଦେଇଥିଲେ ।

ଏଣେ ହାଜତରେ ଦୁଃଖ କଷ୍ଟର ସୀମା ନଥିଲା । ବନ୍ଦୀ ନେତାମାନଙ୍କୁ ଘୃଣିତ ଉକାୟତ ପରି ବ୍ୟବହାର କରାଯାଉଥିଲା । ସେମାନଙ୍କ ସହିତ ବାହାର ଲୋକଙ୍କୁ ସାକ୍ଷାତ କରିବାର ସୁଯୋଗ ଦିଆଯାଉ ନଥିଲା । ଏପରିକି ପଢ଼ିବାକୁ ଖବରକାଗଜ ମଧ୍ୟ ଦିଆଯାଉ ନଥିଲା । ଏକ ପ୍ରକାର ସେମାନେ ବାହାର ଜଗତରୁ ବିଚ୍ଛିନ୍ନ ହୋଇ ରହୁଥିଲେ ।

ଭଦ୍ରଖରେ ୧୪୪ ଧାରା ନୋଟିସ ଅବମାନନା ଅପରାଧରେ ପୋଲିସ ତରଫରୁ ଫୌଜଦାରୀ ସଂଶୋଧନ ଆଇନର ୧୮୮ ଧାରାରେ ବାଲେଶ୍ୱର ଜିଲ୍ଲା କୋର୍ଟରେ ତାଙ୍କ ବିରୁଦ୍ଧରେ କେଶ୍ ଆଗତ ହୋଇଥାଏ । ସେଥିପାଇଁ ମକଦ୍ଦମା ତାରିଖ ପୂର୍ବଦିନ ରେଲ ଯୋଗେ ତାଙ୍କୁ ବାଲେଶ୍ୱର ଜିଲ୍ଲା କଚେରୀକୁ ନିଆଯାଏ, ଜବାବ ସୁଆଲ ପରେ ପୁଣି ରାତି ଗାଡ଼ିରେ କଟକ ଫେରାଇ ଅଣାହୁଏ । ଖୁବ୍ ଶୀଘ୍ର ବିଚାରର ରାୟ ପ୍ରକାଶ ପାଇଲା । ୧୪୪ ନୋଟିସ ଅବମାନନା ଅପରାଧରେ ତାଙ୍କୁ ପଚାଶ ଟଙ୍କା ଜୋରିମାନା ବା ଜୋରିମାନା ନଦେଲେ ଏକମାସ ଜେଲଦଣ୍ଡ ଆଦେଶ ହେଲା । ତା'ପରେ ସାଧାରଣ କଏଦୀ ପରି ତାଙ୍କ ହାତରେ କଡ଼ା ଓ ଅଣ୍ଟାରେ ଦଉଡ଼ି ବାନ୍ଧି ଅନ୍ୟ ମକଦ୍ଦମାର ବିଚାର ପାଇଁ ତାଙ୍କୁ କଟକ ଅଣାଗଲା । ରେଳ ଗାଡ଼ିରେ ମଧ୍ୟ ତାଙ୍କ ଅଣ୍ଟାରୁ ଦଉଡ଼ି ଓ ହାତରୁ କଡ଼ି ଫିଟାଇ ଦିଆ-

ଯାଇନଥିଲା । କଟକ ଷ୍ଟେସନରୁ ଚଳେଇ ଚଳେଇ ସହରରେ ଜେଲଯାଏ ଅଣା ଯାଇଥିଲା । ରାତି ଅନେକ ହୋଇଥିବାରୁ ସେଦିନ ଜେଲ୍‌ର ଦରଓ୍ବାନମାନେ ଫାଟକ ଖୋଲି ନ ଥିଲେ । ଶେଷରେ ପୋଲିସ ପହରା ଭିତରେ ତାଙ୍କୁ ଓ ଭଗୀରଥି ବାବୁଙ୍କୁ ଅଗତ୍ୟା ଫାଟକ ପାଖରେ ସେଇ ଅବସ୍ଥାରେ କାନ୍ଥକୁ ଆଉଜା ଛୋଳାଇବାକୁ ହୋଇଥିଲା । ସେଦିନ ରାତିରେ ସେମାନଙ୍କୁ ଖାଇବାକୁ ସୁଯୋଗ ମିଳିଲା ନାହିଁ । କଟକ ଜେଲରେ ସାଧାରଣ କଏଦୀ ପରି ତାଙ୍କ ପ୍ରତି ବ୍ୟବହାର କରାଗଲା ଓ ଲୁହା ଥାଲରେ ସମସ୍ତଙ୍କ ପରି ତାଙ୍କୁ ବି ନିକୃଷ୍ଟତମ ଖାଦ୍ୟ ଦିଆଗଲା । ପୋଇମଞ୍ଜି ପରି ମୋଟା ବଗଡ଼ା ଭାତ ଓ କଲମ ଶାଗ ପ୍ରତିଦିନର ଖାଦ୍ୟ ଥିଲା । ଏସବୁ ଖାଇ ପେଟ ଖରାପ ହେବାରୁ ମଝିରେ ମଝିରେ ତାଙ୍କୁ ଉପବାସ ରହିବାକୁ ପଡ଼ୁଥିଲା ।

କଟକ ଜିଲ୍ଲା କଲେକ୍ଟରଙ୍କ ତରଫରୁ Indian Criminal Law Amendment Actର ୧୭/୨ ଦଫାରେ 'ସ୍ୱରାଜ୍ୟ ସେବକ ସଂଘ' ଗଢ଼ିବା ଅପରାଧରେ ଯେଉଁ ମକଦ୍ଦମା ଆରୋପ ହୋଇଥିଲା ତାହାର ବିଚାର ଭାର କଟକର ଜଏଣ୍ଟ୍ ମାଜିଷ୍ଟ୍ରେଟ୍ ମିଃ ହ୍ୱାଇଟ୍‌ଓ୍ବେଟର ଆଇ. ସି. ଏସ୍.ଙ୍କ ଉପରେ ନ୍ୟସ୍ତ ଥିଲା । ବୋଧହୁଏ ଖୋର୍ଦ୍ଧା ମକଦ୍ଦମା ସମ୍ପର୍କୀୟ ଅନୁଭୂତି ସରକାରଙ୍କୁ ସତର୍କ କରାଇ ଦେଇଥିଲା । ତେଣୁ ଗୋପବନ୍ଧୁଙ୍କ ବିରୁଦ୍ଧରେ ଥିବା ଅଭିଯୋଗକୁ କୌଣସି ଦେଶୀ ଅଫିସରଙ୍କ ଦ୍ୱାରା ବିଚାର କରିବାକୁ ସରକାର ଆଉ ପ୍ରସ୍ତୁତ ନଥିଲେ । ତଥାପି ସର୍ବସାଧାରଣଙ୍କ ସମକ୍ଷରେ କଟକ କୋର୍ଟରେ ଜୁନ୍ ୧୧ ତାରିଖଠାରୁ ୨୯ ତାରିଖ ତିନିଦିନ କାଳ ଏ ବିଚାର ହୋଇଥିଲା । ପୋଲିସ୍, ଅସହଯୋଗୀ ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀଙ୍କୁ ମିଶାଇ ପ୍ରାୟ ୫୦ ଜଣ ବ୍ୟକ୍ତିଙ୍କ ନାମରେ ସାକ୍ଷ୍ୟ ସମନ ଦିଆଯାଇଥିଲା । ଏ ସମସ୍ତ ସାକ୍ଷୀଙ୍କଠାରୁ ପ୍ରମାଣ ନେବା ଦରକାର ହେଲା ନାହିଁ । ପୋଲିସ୍ ୯ ଜଣ ସରକାରୀ ଟ୍ରାନ୍‌ସ୍‌ଲେଟର, ସତ୍ୟବାଦୀ ପ୍ରେସ, ମୁକୁର ପ୍ରେସ୍ ଓ କଟକ ପ୍ରିଣ୍ଟିଂ କମ୍ପାନୀର ମ୍ୟାନେଜର ଏବଂ ଆଉ ୫ ଜଣ ଅସହଯୋଗୀଙ୍କ ଠାରୁ ସାକ୍ଷ୍ୟ ନେଇ ମାଜିଷ୍ଟ୍ରେଟ୍ ଆଉ ସାକ୍ଷୀମାନଙ୍କୁ ଡାକିବା ଦରକାର ମନେକଲେନାହିଁ । ସରକାରଙ୍କ ପକ୍ଷରୁ ନିଜେ ଶ୍ରୀକୃଷ୍ଣ ମହାପାତ୍ର ଓ ସରକାରୀ ଓକିଲ ଦୁର୍ଗାପ୍ରସନ୍ନବାବୁ ମୋକଦ୍ଦମା ଚଳାଇଥିଲେ । ମିଶିଲ୍ ଘରପାଖରେ ଓ ବାହାରେ ଲଠିଧାରୀ ପୋଲିସମାନେ ପହରା ଦେଉଥିଲେ ।

ପୋଲିସ୍ ପ୍ରଥମ ଦିନ ଗୋପବନ୍ଧୁ, ଭଗୀରଥି ଓ ଅଟଳବିହାରୀଙ୍କୁ ଜେଲ୍ ହାଜତରୁ ଚଲାଇ ଚଲାଇ କଚେରୀଯାଏ ଆଣିଥିଲେ; କିନ୍ତୁ ପରେ ଘୋଡ଼ାଗାଡ଼ିରେ ନେବା ଆଣିବା କରିଥିଲେ । ଗୋପବନ୍ଧୁ ୨୪ ତାରିଖରେ ତାଙ୍କ ଲିଖିତ ଜବାବ ଦାଖଲ କଲେ । ଅନ୍ୟ ଦୁହେଁ କୌଣସି ପ୍ରକାର ଜବାବ ଦେଇ ନଥିଲେ । ମିଶିଲରେ କେବଳ ନୀରବରେ ଠିଆ ହୋଇ ମକଦ୍ଦମା ବିଚାର ସହିତ ଅସହଯୋଗ କରୁଥିଲେ । ତଥାପି ଗୋପବନ୍ଧୁ ନିଜର ଦୀର୍ଘ ବିବୃତିରେ ସେମାନଙ୍କ କଥା ସ୍ପଷ୍ଟ ଉଲ୍ଲେଖ କରିଥିଲେ ।

# ଗୋପବନ୍ଧୁଙ୍କ ଲିଖିତ ଜବାବ

ଅସହଯୋଗର ସତ୍ୟାଗ୍ରହୀ ଭାବରେ ଭାରତର ସବୁ ବଡ଼ ବଡ଼ ବନ୍ଦୀ ନେତାଙ୍କ ପରି ଓଡ଼ିଶା କଂଗ୍ରେସର ନେତାମାନେ ଆତ୍ମପକ୍ଷ ସମର୍ଥନ ପାଇଁ ବିଚାରବେଳେ ଉତ୍ତର ଦେଇ ନଥିଲେ । ଓଡ଼ିଶାର ଅନ୍ୟାନ୍ୟ ବନ୍ଦୀମାନଙ୍କ ତରଫରୁ ଗୋପବନ୍ଧୁ ଏକ ଲିଖିତ ଜବାବ ଦେଇଥିଲେ ଯେ ତାଙ୍କ ସଙ୍ଗେ ଏକା ଦୋଷରେ ଅଭିଯୁକ୍ତ ହୋଇ ତାଙ୍କ ବନ୍ଧୁମାନେ କିଛି କହୁନାହାନ୍ତି । ସେମାନେ ବିଚାର ଅଦାଲତ ସଙ୍ଗେ ପୂର୍ଣ୍ଣ ଅସହଯୋଗ କରିଛନ୍ତି । ଅଦାଲତକୁ କିଛି ଲେଖିକରି ଦେବା ଏକ ପ୍ରକାର ସହଯୋଗ ହେଲେ ମଧ୍ୟ ସେଥିରେ କଂଗ୍ରେସର ଅମତ ନାହିଁ । ସେ ଯେ ତାଙ୍କ ସପକ୍ଷରେ ବିଚାରପତିଙ୍କୁ ଭୁଲାଇବେ ତା ନୁହେଁ । ସେ ଅନ୍ୟ ଅସହଯୋଗୀଙ୍କ ପରି ସରକାରଙ୍କ ଅସ୍ତିତ୍ୱ ଏକାବେଳକେ ଅସ୍ୱୀକାର କରିପାରୁନାହାନ୍ତି । ତେଣୁ ସରକାରଙ୍କୁ ଓଡ଼ିଶାର ଅସହଯୋଗ ସମ୍ପର୍କରେ ନିଜ କାର୍ଯ୍ୟକଳାପ ଜଣାଇବା ପାଇଁ ଏହା ଲେଖୁଛନ୍ତି । କେତେକ ଅସହଯୋଗୀ ସାକ୍ଷୀଙ୍କୁ କାହିଁକି ସେମାନେ ଅସହଯୋଗ ଦୀକ୍ଷା ନେଲେ ବୋଲି ପଚରାଯାଇଛି । ଅତଏବ ସେ ନିଜେ କାହିଁକି ଅସହଯୋଗୀ ହେଲେ ତାହା ବୁଝାଇବା ସଙ୍ଗତ ମନେକରୁଅଛନ୍ତି ।

ଲର୍ଡ଼ କର୍ଜନ ଓଡ଼ିଆଙ୍କ ମଧ୍ୟରେ କିଛିମାତ୍ର ରାଜନୈତିକ ଆନ୍ଦୋଳନ ନାହିଁ ବୋଲି କହିଥିଲେ । ଆଉଜଣେ ବଡ଼ଲାଟ କହିଥିଲେ, ଓଡ଼ିଶା ରାଜଭକ୍ତିରେ ସଢ଼ି ଗନ୍ଧେଇ ଗଲଣି । ବାସ୍ତବିକ ସମସ୍ତ କାର୍ଯ୍ୟରେ ଓଡ଼ିଶା କଂଗ୍ରେସରୁ ଅଲଗା ଥିଲା । ଏପରି ଲୋକଙ୍କ ଭିତରେ କିପରି ଅସହଯୋଗ ବ୍ୟାପିଗଲା ଅନେକଙ୍କୁ ତଥା ସରକାରଙ୍କୁ ବଡ଼ ବିଚିତ୍ର ଲାଗୁଥିବ । ସେ ସ୍ୱୀକାର କରିଛନ୍ତି ଯେ, ଏହି ଆନ୍ଦୋଳନ ପାଇଁ ସେ ନିଜେ କେତେକ ପରିମାଣରେ ଦାୟୀ । ଅସହଯୋଗ ପୂର୍ବରୁ ସେ ବେଳେବେଳେ କଂଗ୍ରେସରେ ଯୋଗଦେଉଥିଲେ; କିନ୍ତୁ ୧୯୨୦ ସେପ୍ଟେମ୍ବର କଲିକତା ବୈଠକରେ କଂଗ୍ରେସ ଯେତେବେଳେ ନିରୁପଦ୍ରବ ଅସହଯୋଗ ଗ୍ରହଣକଲା ସେତେବେଳେ ସେ କଂଗ୍ରେସରେ ସମ୍ପୂର୍ଣ୍ଣରୂପେ ଯୋଗ ଦେଇ ଅସହଯୋଗୀ ହେଲେ । ମହାତ୍ମାଗାନ୍ଧିଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି, କଂଗ୍ରେସ ଆନ୍ଦୋଳନରେ ତାଙ୍କର ଅଟଳ ବିଶ୍ୱାସ, କିନ୍ତୁ କେବଳ ଏହି ମାତ୍ର କାରଣରୁ ସେ ଅସହଯୋଗୀ ହୋଇନାହାନ୍ତି । ସରକାର ଓ ଲୋକଙ୍କ ଅବସ୍ଥା ବଦଳେଇବାରେ ଅସହଯୋଗ ଛଡ଼ା ଆଉ କିଛି ଉପାୟ ନାହିଁ, ଏହା ସେ ବହୁ ଦିନରୁ ବୁଝିଛନ୍ତି । ପୁଣି ନିରୁପଦ୍ରବ ଅସହଯୋଗରେ ମାନବଜାତିର ଶାନ୍ତି ଆସିବ, ଅତ୍ୟାଚାର ବିଭୀଷିକା ଲୋପ ପାଇବ ଏବଂ ଦୁରନ୍ତ ସାମ୍ରାଜ୍ୟ ସ୍ପୃହା, ଧନଗର୍ବ ଓ ଯୁଦ୍ଧର ମାରାତ୍ମକତା ପୃଥିବୀରୁ ଚିରଦିନ ପାଇଁ ଲୋପପାଇବ ବୋଲି ତାଙ୍କର ଦୃଢ଼ ବିଶ୍ୱାସ । ଅସହଯୋଗ ଗୋଟିଏ ଧର୍ମ ଆନ୍ଦୋଳନ । ଗୀତାର 'ଅସଙ୍ଗ' ଓ ବାଇବେଲର 'ମନ୍ଦକଥାର ଶାନ୍ତିରେ ପ୍ରତିକାର' ଏହି

ଅସହଯୋଗର ଇଙ୍ଗିତ ମାତ୍ର । ଏହିଠାରେ ସେ ସ୍ୱରାଜ୍ୟର ବ୍ୟାଖ୍ୟା କରି କହିଛନ୍ତି ସ୍ୱାୟତ୍ତଶାସନ ଏହାର ଅର୍ଥ ହେଲେହେଁ ପ୍ରକୃତ ସ୍ୱରାଜ୍ୟ ଏହାଠାରୁ ବଡ଼ । ଆତ୍ମଲବ୍ଧି ପ୍ରକୃତ ସ୍ୱରାଜ୍ୟ । ମାନବ ଜାତିର ଏହି ଆତ୍ମଲାଭ ନିରୁପଦ୍ରବ ଅସହଯୋଗର ଉଦ୍ଦେଶ୍ୟ ବୋଲି ତାଙ୍କର ବିଶ୍ୱାସ । କେବଳ ଭାରତ ପକ୍ଷରେ ବର୍ତ୍ତମାନ ପାଇଁ ସ୍ୱରାଜ୍ୟ କହିଲେ ସ୍ୱାୟତ୍ତ ଶାସନ ବୁଝାଯାଉଛି ।

ଏହି ଅସହଯୋଗ ନୀତିରେ ସେ ବହୁକାଳରୁ ବିଶ୍ୱାସୀ । କେବଳ 'ଅସହଯୋଗ' ଏହି ନାମଟି ତାଙ୍କ ପାଇଁ ନୂତନ । ସେ ପାଞ୍ଚବର୍ଷ ଆଗରୁ ବିଚାର ଅଦାଲତର ସୀଭସ୍ତ୍ରା ବୃତ୍ତି ଓକିଲାତି ଛାଡ଼ିଦେଇଛନ୍ତି । ଜାତୀୟ ଶିକ୍ଷା ପାଇଁ ବାରବର୍ଷ ସେ ସତ୍ୟବାଦୀ ସ୍କୁଲ ବସାଇଥିଲେ । ମାତ୍ର କେବଳ କାଳର ଘଟଣାରେ ବାଧ୍ୟହୋଇ ସେ ସ୍କୁଲକୁ ବିଶ୍ୱବିଦ୍ୟାଳୟରେ ଯୋଡ଼ିଦେଇଥିଲେ । ଏବେ ସେ ସ୍କୁଲ ପୁଣି ସ୍ୱାଧୀନ ହୋଇଅଛି । ଅରଟର ମହତ୍ତ୍ୱ ବୁଝିନଥିଲେହେଁ ବାକି ସବୁ ବିଷୟରେ କଲିକତାର ସ୍ୱଦେଶୀ ଆନ୍ଦୋଳନ ପୂର୍ବରୁ ସେ ସ୍ୱଦେଶୀ । ମାତ୍ର ଏସବୁ ସତ୍ତ୍ୱେ ସରକାରଙ୍କ ସହିତ ସହଯୋଗର ବିଶ୍ୱାସ ତାଙ୍କର ତୁଟିଯାଇ ନଥିଲା । ସେଥିପାଇଁ ବିହାର-ଓଡ଼ିଶା କାଉନ୍‌ସିଲ୍‌ର ସଭ୍ୟଭାବରେ ସେ ସହଯୋଗ କରିଥିଲେ । ବିଶ୍ୱବିଦ୍ୟାଳୟରେ ମଧ୍ୟ ଯୋଗଦେଇଥିଲେ । ସବୁଠାରେ ଲୋକଙ୍କ ଦରକାର ଅନୁସାରେ ସରକାରଙ୍କୁ ବଦଳାଇବା ପାଇଁ ଯତ୍ନ କଲେ ଏବଂ ଯୁଦ୍ଧ ସମୟରେ 'ପଇସା ପାଣ୍ଠି' ଗଢ଼ି ସରକାରଙ୍କୁ ସହଯୋଗ କରି ଏ ଅର୍ଥ ସାହାଯ୍ୟ ମେସୋପଟେମିଆଁ ପଠାଇଥିଲେ । ସବୁ କରି ମଧ୍ୟ ଏଥିରେ ତାଙ୍କର ବିଶ୍ୱାସ ହୋଇନଥିଲା । ଶେଷରେ ଓଡ଼ିଶା ଦୁର୍ଭିକ୍ଷ ତାଙ୍କ ଆଖି ଖୋଲିଦେଲା । ସରକାରଙ୍କ ନିଷ୍ଠୁର ଉଦାସୀନତା ପ୍ରମାଣ କରିଦେଲା ଯେ, ସହଯୋଗରେ କୌଣସି ଫଳ ଫଳିବ ନାହିଁ । ପଞ୍ଜାବ ଓ ଖିଲାଫତ୍ ପ୍ରଭୃତି ଘଟଣାରେ ତାଙ୍କର ସମ୍ପୂର୍ଣ୍ଣ ସହାନୁଭୂତି ଥିଲେହେଁ ଇଂରେଜ ରାଜତ୍ୱରେ ଓଡ଼ିଶାପ୍ରତି ଯେଉଁ ଅବିଚାର ହୋଇଛି ତାହା ଭାରତରେ ଅନ୍ୟତ୍ର ହୋଇନାହିଁ । ଇଂରେଜ ରାଜତ୍ୱ ଦୋଷରେ ଓଡ଼ିଶାର ସବୁ ଜମିଦାରୀ ଯାଇଛି । ଓଡ଼ିଶାରେ ସବୁବେଳେ ବନ୍ୟା ଓ ଦୁର୍ଭିକ୍ଷ ଲାଗିରହିଛି । ଓଡ଼ିଶାର ଲୋକେ ଦରିଦ୍ର ଓ ନିରାଶ୍ରୟ ହୋଇଛନ୍ତି । ଓଡ଼ିଶା ଖଣ୍ଡ ବିଖଣ୍ଡ ହୋଇ ଏହାର ଜାତୀୟତା ନଷ୍ଟ ହୋଇଛି । ଓଡ଼ିଶାର ଜଣେ କମିଶନର ଇଂରେଜ ରାଜତ୍ୱର ଏହି କାର୍ଯ୍ୟକୁ "ଡକାୟତି ଛଡ଼ା ଆଉ କିଛି ନୁହେଁ" ବୋଲି କହିଛନ୍ତି । ତା'ପରେ ଦଶପଲ୍ଲା ମେଳି ଓ ପୁରୀ ଦୁର୍ଭିକ୍ଷକୁ ସେ ଘୋର ବିଷାଦର ସହିତ ଲକ୍ଷ୍ୟ କରିଛନ୍ତି । ଦୁର୍ଭିକ୍ଷରେ ଲୋକେ ଅନାହାରରେ ପୋକ ମାଛି ପରି ମରିଗଲେ । ଲାଟ ସାହେବ ଆସି ଦେଖି କହିଲେ, "ସରକାରଙ୍କର ଯାହା କରିବା ଉଚିତ ତାହା କରାଯାଇ ନାହିଁ ।" କିନ୍ତୁ ଫଳ କିଛି ହେଲାନାହିଁ । ସରକାର ଲୋକଙ୍କୁ ମାରି ଚାକିରିଆଙ୍କ ଦରମା ବଢ଼ାଉଛନ୍ତି । ଲୋକେ ମରୁଛନ୍ତି; ସରକାର ସେ କଥା ଲୁଚାଉଛନ୍ତି, ଏପରି ସ୍ଥଳେ ଯାହାର ପ୍ରତିବେଶୀ ପ୍ରତି ଟିକିଏ ହେଲେ ସହାନୁଭୂତି ଅଛି ତା'ର ଏ ସରକାରରେ କାହିଁ ବିଶ୍ୱାସ ଆସିବ ?

ତତ୍ପୂରେ ଓଡ଼ିଶା ଦେଶ ମିଶ୍ରଣ କଥାକୁ ଲକ୍ଷ୍ୟ କରି ଗୋପବନ୍ଧୁ କହିଥିଲେ—ସରକାର ବାରମ୍ବାର ଏ କଥା ନ ଶୁଣିବାରୁ ଶେଷରେ ଶାସନ ସଂସ୍କାର ଫଳରେ ଏହା ନ ହେଲେ ସେ ସରକାର ସଙ୍ଗେ ଅସହଯୋଗ କରିବେ ବୋଲି ୧୯୧୮ ମସିହା ଉତ୍କଳ ସମ୍ମିଳନୀରେ କହିଥିଲେ । ଖିଲାପତ୍ ଓ ପଞ୍ଜାବ ଅତ୍ୟାଚାର ପରେ ଯେତେବେଳେ ଭାରତ ଜାତୀୟ ମହାସମିତି ଏହି ଅସହଯୋଗ ଗ୍ରହଣ କଲେ ସେତେବେଳେ ତାଙ୍କର ଏହି ଅସହଯୋଗ ବିଶ୍ୱାସ ସମସ୍ତ ଭାରତ ଜାତିର ସମର୍ଥନ ପାଇ ଦୃଢ଼ ହେଲି ମାତ୍ର । ଏ ଆନ୍ଦୋଳନର ଶାନ୍ତି ମନ୍ତ୍ର ତାଙ୍କୁ ଅଧିକ ଆସକ୍ତ କଲା । ଏଥିରେ ସେ ରାଜନୀତି ନଦେଖି ଧର୍ମନୀତି ଦେଖିଲେ । ସେ ଓଡ଼ିଶାରେ ଏ ସମ୍ପର୍କରେ ଯେତେ କାର୍ଯ୍ୟ କରିଛନ୍ତି ସବୁଠାରେ ପୂର୍ଣ୍ଣ ଶାନ୍ତି ପ୍ରକାଶ ପାଇଛି । କର୍ମୀମାନଙ୍କୁ ସେ ଏକଥା ସବୁବେଳେ ଭଲଭାବରେ ବୁଝାଇଛନ୍ତି । ଫଳରେ ଅସହଯୋଗ କାର୍ଯ୍ୟରେ ଓଡ଼ିଶାରେ କୌଣସିଠାରେ ଶାନ୍ତି ଭଙ୍ଗ ଘଟିନାହିଁ ।

× × × ଏ ଆନ୍ଦୋଳନରେ ସବୁ ପ୍ରକାଶ କରି ସତ କହିବାରୁ ସବଂଶ କପରି ଘଟଣା ଘଟୁଅଛି ତାହା ବୁଝାଇ 'ସ୍ୱରାଜ୍ୟ ସେବକ ସଂଘ'ର ପ୍ରତିଜ୍ଞାପତ୍ର ଏହି ନିରୁପଦ୍ରବ ଅସହଯୋଗ ପକ୍ଷେ ସୁନ୍ଦର ଓ ସମୀଚୀନ ବୋଲି ମତ ଦେଇଥିଲେ । ସେଥିରେ ସେ ସରକାରଙ୍କ ସମସ୍ତ ନୋଟିସ୍ ପାଇଥିଲେ ମଧ୍ୟ ଜାତୀୟ କଂଗ୍ରେସର ନିର୍ଦ୍ଦେଶାନୁସାରେ କାର୍ଯ୍ୟ କରିବା ଅଧିକ ଉଚିତ ମନେକରିଛନ୍ତି । ସରକାରଙ୍କର ଏପରି ବିଜ୍ଞାପନ ବେଆଇନ ଓ ଅସଙ୍ଗତ । ଏ ଆଇନ ଯେତେବେଳେ ହୋଇଥିଲି ସେତେବେଳେ ରାଜଦ୍ରୋହୀମାନେ ନରହତ୍ୟା ପର୍ଯ୍ୟନ୍ତ କରୁଥିଲେ ମଧ୍ୟ ଏ ଆଇନ କାର୍ଯ୍ୟକାରୀ ନକରିବା ପାଇଁ ଲୋକମାନେ ପ୍ରବଳ ଆପତ୍ତି କରୁଥିଲେ । ଓଡ଼ିଶା ଶାନ୍ତି ଶୃଙ୍ଖଳାର୍ ସହିତ ଅସହଯୋଗର ମହାରଥକୁ ଚଳାଇବାବେଳେ ଓଡ଼ିଶା ପ୍ରତି ଏ ଆଇନ୍ ପ୍ରଚଳନ ଅସଙ୍ଗତ ହୋଇଛି । ଦେଶରେ ଉପଦ୍ରବ ନ ହେଲେ ଏ ଆଇନ୍ ଲଗୁ ହେବାର ନୁହେଁ । ଓଡ଼ିଶାରେ ଯେ ସମ୍ପୂର୍ଣ୍ଣ ଶାନ୍ତି ଓ ନିରୁପଦ୍ରବତା ରକ୍ଷା କରାଯାଇଛି ସ୍ୱେଚ୍ଛାସେବୀମାନଙ୍କ ପାଇଁ ଯେଉଁ ଆଚରଣ ବଧ ହୋଇଛି ତାହା ଦେଖିଲେ ସ୍ପଷ୍ଟ ଜଣାଯିବ । ପୁନଶ୍ଚ କଂଗ୍ରେସ କର୍ମୀମାନେ ସ୍ୱେଚ୍ଛାସେବୀ ସଂଘ ଗଠନ ଛାଡ଼ି ଦୁଇ ମାସ ହେବ ଖଦଡ଼ ଓ ଅସ୍ପୃଶ୍ୟତା ନିବାରଣ କାମରେ ଲାଗିଛନ୍ତି । ତେଣୁ ଓଡ଼ିଶାରେ ସେମାନଙ୍କ ପ୍ରତି ତଥା କଂଗ୍ରେସ କର୍ମୀମାନଙ୍କ ପ୍ରତି କୌଣସି ପ୍ରକାର ଗିରଫ୍ ପରୱାନା ଓ ଜୁଲମ ଏକ ଚରମ ଅବସ୍ଥାର ପରିଚୟକୁ ସ୍ପଷ୍ଟ କରି ଦେଉଛି ।

ସ୍ୱାଧୀନ ଭାବରେ ବସି କଥାବାର୍ତ୍ତା ଆଳାପ ଆଲୋଚନା କରିବା ମଣିଷର ଜନ୍ମଗତ ଅଧିକାର । ଏ ଅଧିକାରରେ ବାଧାଦେଲେ ଆତ୍ମସମ୍ମାନ ଥିବା ଲୋକେ କପରି ରାଜଦଣ୍ଡକୁ ଡରିବେ ? ମଣିଷର ମୌଳିକ ସ୍ୱତ୍ୱ ଓ ଅଧିକାର ଆମେ ଦାବୀ କରୁଥିବାବେଳେ ଆମକୁ ସରକାର ବାନ୍ଧି ଆଣିଛନ୍ତି ।

ସ୍ୱେଚ୍ଛାସେବୀମାନଙ୍କ ପ୍ରତିଜ୍ଞାପତ୍ରରେ କପରି ନିର୍ମଳ ଧର୍ମ, ଆତ୍ମତ୍ୟାଗ ଓ ଆତ୍ମଶାସନ ଭିତ୍ତିରେ ଚରିତ୍ର ଗଠନ କରିବା ପାଇଁ ବ୍ୟବସ୍ଥା ହୋଇଛି ଏବଂ ସେଥିରେ ଅସହଯୋଗର

ଶାନ୍ତି ଧର୍ମ ଦୃଢ଼ରୁ ଦୃଢ଼ତର ହୋଇ ଭାରତ ତଥା ସମଗ୍ର ପୃଥିବୀରେ କପରି ସ୍ୱରାଜ୍ୟର ସ୍ୱର୍ଗରାଜ୍ୟ ସ୍ଥାପିତ ହେବ ତାହା ବୁଝାଇଥିଲେ । ଶେଷକୁ ସେ ଲେଖିଥିଲେ—"ମୁଁ ଜଣେ ଭାରତୀୟ, ବିଶେଷରେ ହିନ୍ଦୁ ବ୍ରାହ୍ମଣ । ମୋ ପାଇଁ ଶାନ୍ତିର ସ୍ଥାନ ସର୍ବୋପରି । ବିଶ୍ୱ ଶାନ୍ତି ମୋର ପ୍ରତିଦିନର ଉପାସନାର ଉଦ୍ଦେଶ୍ୟ ଏବଂ ମୋର ଦୃଢ଼ ବିଶ୍ୱାସ କଂଗ୍ରେସ ଯେପରି ସ୍ୱେଚ୍ଛାସେବୀ ଗୃହାନ୍ତି, ପୃଥିବୀର ଭିନ୍ନ ଭିନ୍ନ ଦେଶର ଲୋକଙ୍କ ମଧ୍ୟରେ ଯଦି ସେହିପରି ସ୍ୱେଚ୍ଛାସେବୀ ବାହାରନ୍ତି ଓ ଆତ୍ମତ୍ୟାଗ ତଥା ଶାନ୍ତିର ସାଧନାରେ ସିଦ୍ଧ ହୁଅନ୍ତି, ତେବେ ପୃଥିବୀରୁ ସଗ୍ରାମର ଅଶାନ୍ତି ଉଠିଯିବ ଏବଂ ପୃଥିବୀ ବ୍ୟାକୁଳ ହୋଇ ଯେଉଁ ଶାନ୍ତି ଲୋଡ଼ୁଅଛି ତାହା ପାଇପାରିବ ।"

## ବିଚାରରେ କାରାଗାର

ମିଃ ହାମିଲଟନ୍ ଏକ ସପ୍ତାହ ପରେ ରାୟ ଦେବାପାଇଁ ସମୟ ଧାର୍ଯ୍ୟ କଲେ । ରାୟ ଯଥା ସମୟରେ ପ୍ରକାଶ ପାଇଲା । ଗୋପବନ୍ଧୁ ଓ ଭାଗୀରଥିଙ୍କୁ ଦୁଇବର୍ଷ ଓ ଅଟଳବିହାରୀଙ୍କୁ ଏକବର୍ଷ କାରାଦଣ୍ଡ ନିର୍ଦ୍ଦେଶ ହେଲା । ସାହେବ ତାଙ୍କ ରାୟରେ ସ୍ପଷ୍ଟ ପ୍ରକାଶ କରିଥିଲେ—"ଗୋପବନ୍ଧୁ, ବିହାର-ଓଡ଼ିଶା ଆସେମ୍ବ୍ଲି ସଭ୍ୟ ଥିଲେ ଓ ତାଙ୍କର ଓଡ଼ିଶାରେ ଖୁବ୍ ପ୍ରଭାବ ଥିଲା । ସେ ଜାଣିଶୁଣି ଏପରି ରାଜଦ୍ରୋହ ଅପରାଧ କରିଛନ୍ତି । ସେ ନୀରବ ରହିବା ଦ୍ୱାରା ଅଭିଯୋଗ ସ୍ୱୀକାର କରୁଛନ୍ତି ବୋଲି ଧରି ନିଆଯାଉଛି ।" ଭାଗୀରଥି ବାବୁଙ୍କ ସମ୍ପର୍କରେ ସେହିପରି ଉଲ୍ଲେଖ ଥିଲା ଯେ, ସେ ବିଶ୍ୱବିଦ୍ୟାଳୟର ଉଚ୍ଚଶିକ୍ଷା-ପ୍ରାପ୍ତ ଯୁବକ, କଟକ ବାର୍‌ର ଜଣେ ଓକିଲ । ତେଣୁ କଟକ ସହରରେ ତାଙ୍କର ପ୍ରଭାବ ଅଛି । ସେ ଆଇନ୍-କାନୁନ୍ ଜାଣିଥିଲେ ମଧ୍ୟ ଏ ବେଆଇନ ସଭାକୁ ପରିଚାଳିତ କରୁଥିଲେ । ଏହା ସାକ୍ଷୀମାନଙ୍କଦ୍ୱାରା ଦାଖଲ କରାଯାଇଥିବା ତାଙ୍କ ହାତଲେଖା ଚିଠିରୁ ପ୍ରମାଣିତ । ଶ୍ରୀ ଅଟଳବିହାରୀ ଆଚାର୍ଯ୍ୟ 'ସ୍ୱରାଜ୍ୟ-ସେବକ ସଂଘ'ର ଜଣେ ସାଧାରଣ ସ୍ୱେଚ୍ଛାସେବୀ ଭାବରେ ଅଭିଯୁକ୍ତ ।" ଏହିପରି ଦୀର୍ଘ ମନ୍ତବ୍ୟ ଦେଇ ମିଃ ହାମିଲଟନ୍ ସାହେବ ରାୟରେ ଲେଖିଥିଲେ—"To meet the ends of the justice the first and the second accused should be sentenced to two years R. I. and the third accused proved to be led by these two elder politicians should be sentenced to one year R. I." ଏହା ପରେ ପରେ ଭାଗୀରଥି ବାବୁଙ୍କୁ ହଜାରିବାଗକୁ ପଠାଇ ଦିଆଗଲା । କନିକାର ଜଣେ ରାଜା ଯେଉଁ ମାନହାନି ମକଦ୍ଦମା କରିଥିଲେ ତା'ର ବିଚାର ପାଇଁ କଟକ ଜେଲ୍‌ରେ ଗୋପବନ୍ଧୁଙ୍କୁ ଓ ଅଟଳବିହାରୀଙ୍କୁ ରଖାଗଲା ।

ସେଦିନ କଟକ ସହରର ଉତ୍ତେଜନା କହିବାର ନୁହେଁ । ସବୁଆଡ଼େ ଜନତାର ପଟୁଆର ଓ ଜୟଧ୍ୱନି । କଚେରୀ ହତା ଲୋକାରଣ୍ୟ । ସହରସାରା ପୋଲିସ୍‌ର କଡ଼ା ପହରା । କଟକ ସହରରେ ହରତାଳ ପାଳିତ ହେଲା; ଦୋକାନ ବଜାର ବନ୍ଦ ରହିଲା । ଗୋପବନ୍ଧୁଙ୍କୁ ଦେଖିବାକୁ ସହର ଭିନ୍ନ ସ୍ଥାନରୁ ଲୋକମାନେ ଧାଇଁଆସିଲେ । ଜେଲ୍ ହତା ଜନତାରେ ଉଚ୍ଛୁଳିପଡ଼ିଲା ।

ଜେଲ୍‌କୁ ଆସିଲାବେଳେ ଗୋପବନ୍ଧୁ ତାଙ୍କ ସହକର୍ମୀ ନିରଞ୍ଜନ ପଟ୍ଟନାୟକଙ୍କ ଅନୁରୋଧକ୍ରମେ 'କନିକା ଅତ୍ୟାଚାର' ନେଇ ଗୋଟିଏ ବିବୃତି ଖବରକାଗଜକୁ ଦେଇଥିଲେ । ଏକ ନିରପେକ୍ଷ ତଦନ୍ତ ପାଇଁ ଏଥିରେ ଦାବୀ କରାଯାଇଥିଲା । ଓଡ଼ିଶା ସମେତ ବଙ୍ଗ ଓ ବିହାରବାସୀଙ୍କୁ ଏଥିପାଇଁ ଗୋପବନ୍ଧୁ ନିବେଦନ ଜଣାଇଥିଲେ । ତଦନ୍ତ ପାଇଁ ଶାସକଗୋଷ୍ଠୀ କିପରି ଭୟଭୀତ ଓ ଅପ୍ରସ୍ତୁତ—ତାହା ମଧ୍ୟ ଉଲ୍ଲେଖ କରିଥିଲେ । ଏପରିକି ଏହି ତଦନ୍ତକୁ ଏଡ଼ିଦେବାପାଇଁ ତାଙ୍କୁ ଜେଲ୍‌ଦଣ୍ଡ ଦିଆଯାଇଛି ଓ ଲୋକମାନଙ୍କୁ ଭୟଭୀତ କରାଯାଇଥିବା କଥା ସେ ସ୍ପଷ୍ଟ ପ୍ରକାଶ କରିଥିଲେ । ଏପରି ସମ୍ବାଦ ବିରୁଦ୍ଧରେ ପୋଲିସ ତରଫରୁ ମଧ୍ୟ ଏକ ମକଦ୍ଦମା ରୁଜୁ କରାଗଲା । ଗୋପବନ୍ଧୁ ଏହାକୁ ସ୍ୱାଗତକଲେ । କାରଣ ମକଦ୍ଦମାର ଜବାବ-ସୁଆଲବେଳେ ଅନେକ ସତ୍ୟ ପ୍ରକାଶ ପାଇପାରିବ ଓ ଏହାଦ୍ୱାରା କନିକାରେ ପୋଲିସ ଅତ୍ୟାଚାରର ଚିତ୍ର ପଦାରେ ପଡ଼ିଯିବ ।

ପରେ ଏ କେସ୍ ଚାଲୁ କରିବା ବିପଜ୍ଜନକ ଓ ସତ୍ୟ ପ୍ରକାଶ ପାଇଯିବ ବୋଲି ଆଶଙ୍କା କରି ପୋଲିସ ତଥା ରାଜାସାହେବ କେସ୍‌ଗୁଡ଼ିକ ଉଠାଇ ଆଣିଲେ । ଗୋପବନ୍ଧୁ ଅବଶ୍ୟ ଏହାର ପ୍ରତିବାଦ ଜଣାଇଥିଲେ । ତାଙ୍କ ସହିତ ଶ୍ରୀ ଅଟଳବିହାରୀ ଆଚାର୍ଯ୍ୟ ଓ ଶ୍ରୀ ସନ୍ତଚରଣ ବେହେରାଙ୍କୁ ପକ୍ଷଭୁକ୍ତ କରାଯାଇଥିଲା । ସେମାନେ ମଧ୍ୟ ଏ କେସ୍ ଉଠିଯିବା ବିରୁଦ୍ଧରେ ପ୍ରତିବାଦ ପ୍ରକାଶ କରିଥିଲେ; କିନ୍ତୁ ପୋଲିସ ନିଜ ଖୁସିରେ ନିଜ ତଣ୍ଟି କାଟିବାକୁ ଆଉ ପ୍ରସ୍ତୁତ ନଥିଲା ।

## ସତ୍ୟବାଦୀ ଜାତୀୟ କଲେଜ-୧୯୨୨

୧୯୨୨ ମସିହା ଶିକ୍ଷାବର୍ଷଠାରୁ ସତ୍ୟବାଦୀ ଜାତୀୟ ବିଦ୍ୟାଳୟକୁ ଜାତୀୟ କଲେଜରେ ପରିଣତ କରିବା ପାଇଁ ଗୋପବନ୍ଧୁ ପରିକଳ୍ପନା କରିଥାଇଥିଲେ । 'ଉତ୍କଳ ସ୍ୱରାଜ୍ୟ ଶିକ୍ଷା ପରିଷଦ' ବିଶ୍ୱବିଦ୍ୟାଳୟ ପରି ଜାତୀୟ ସ୍କୁଲ୍‌ଗୁଡ଼ିକର ପରୀକ୍ଷା ଫଳ ପ୍ରକାଶନର ଦାୟିତ୍ୱ ଆଗରୁ ନେଇଥିଲା । ଏବେ ଏହି ପରିଷଦ ଅଧୀନରେ ଜାତୀୟ କଲେଜ ଖୋଲିବାର ସିଦ୍ଧାନ୍ତ ଜାତୀୟ ଶିକ୍ଷା ପରିକଳ୍ପନାକୁ ସ୍ୱାଭାବିକ ଦ୍ରୁତତର କରିଥିଲା । ଜୁଲାଇ ୧୯୨୨ ଠାରୁ ଏହି କଲେଜ ପରିଚାଳିତ ହେବ ବୋଲି ୨୭।୧।୨୨ ତାରିଖରେ ସତ୍ୟବାଦୀ

ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ କୃପାସିନ୍ଧୁ ମିଶ୍ର ଏକ ବିଜ୍ଞାପନ ଦୈନିକ 'ସମାଜ'ରେ ପ୍ରକାଶ କରିଥିଲେ । ଓଡ଼ିଆ, ଇଂରାଜୀ, ଦର୍ଶନ, ସଂସ୍କୃତ ଓ ଇତିହାସରେ ଶିକ୍ଷାକ୍ରମ ପ୍ରଚଳନ କରାଯିବା ସ୍ଥିର ହୋଇଥିଲା । ଯେ କୌଣସି ବିଦ୍ୟାଳୟରୁ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ଛାତ୍ର ଗ୍ରହଣ କରାଯିବା ସ୍ଥିର କରାଗଲା । ସମ୍ବଲପୁର ଜାତୀୟ ବିଦ୍ୟାଳୟ ଛାଡ଼ି ପଣ୍ଡିତ ନୀଳକଣ୍ଠ ଦାସ ୧୯୨୨ ମସିହା ଅଗଷ୍ଟ ମାସରେ ଦର୍ଶନ ଓ ଓଡ଼ିଆ ଅଧ୍ୟାପକ ଭାବରେ ଏଠାରେ ଯୋଗଦେଲେ । କେତେ ଜଣ ଛାତ୍ର ମଧ୍ୟ ନାମଲେଖାଇଲେ; କିନ୍ତୁ ଏତେ ବଡ଼ ଉଦ୍ୟମ, ଗୋପବନ୍ଧୁଙ୍କ ବ୍ୟତିରେକେ ଚଳାଇବା ସମ୍ଭବ ନଥିଲା । ଗୋପବନ୍ଧୁ ଦୁଇବର୍ଷ ଜେଲରେ ରହିବା ଫଳରେ ସତ୍ୟବାଦୀ ଜାତୀୟ କଲେଜ ଦୁରନ୍ତ ଅର୍ଥ ଅନଟନ ଭିତରେ ସମ୍ପୂର୍ଣ୍ଣ ଅଚଳ ହୋଇଗଲା । ବସ୍ତୁତଃ ଓଡ଼ିଶାର ଜାତୀୟ ଜୀବନରେ ସତ୍ୟବାଦୀ ଥିଲା ଏକ ପରୀକ୍ଷା ଏବଂ ପ୍ରୟୋଗ-ପୀଠ । ଦେଶ ପାଇଁ ମଣିଷ ଗଢ଼ିବା ରାସ୍ତାରେ ଭଙ୍ଗା ଗଡ଼ାକୁ ଆପଣାର କରି, ଖାଲଖମାରେ ପଡ଼ି ଉଠି, ଅଭାବ ଅସୁବିଧାର ଘୋରଣାରେ ପେଷି ହୋଇ ସତ୍ୟବାଦୀର ଜୀବନନୌକା ଓଡ଼ିଶାର ବିକ୍ଷୁବ୍ଧ ସାଗରରେ ସ୍ଥିର ଲକ୍ଷ୍ୟରେ ଆଗଉଥିଲା । ସାର୍ଥକ କାଣ୍ଡାରୀ ଥିଲେ ପଣ୍ଡିତ ଗୋପବନ୍ଧୁ; କିନ୍ତୁ ତାଙ୍କ କାରାବରଣ ଫଳରେ ଏହି ଜାତୀୟ ତୀର୍ଥ କ୍ଷେତ୍ରର ସମସ୍ତ ଉତ୍ସାହ ଓ ଉଦ୍‌ଯୋଗ ପଦରେ କ୍ରମେ ବିପର୍ଯ୍ୟୟ ଦେଖାଦେଲା । ଝୁରିଅନା ଓ ବକୁଳ ବନର ନିରନ୍ଧ୍ର ଛାୟା ଓ ମୃଦୁପବନର ହିଲ୍ଲୋଳ ମଧ୍ୟରେ ସେହି ଜୀବନ ସ୍ମୃତିର କାରୁଣ୍ୟରେ ସମସ୍ତେ ଭାଙ୍ଗି ପଡ଼ୁଥିଲେ ।

## ହଜାରିବାଗ ଜେଲ୍

୧୯୨୩ ମସିହା ଜାନୁଆରୀ ୨୪ ତାରିଖରେ ଗୋପବନ୍ଧୁଙ୍କୁ ହଜାରିବାଗ ଜେଲ୍‌କୁ ଅଣାଗଲା । ହଜାରିବାଗ ଜେଲ ସେତେବେଳେ ବହୁ ଜାତୀୟବାଦୀଙ୍କ ପାଇଁ ଥିଲା ଏକ ତୀର୍ଥକ୍ଷେତ୍ର । ସୀମାନ୍ତ ଗାନ୍ଧି ଖାଁ ଅବଦୁଲ୍ ଗଫୁର୍ ଖାଁ, ଶ୍ରୀକୃଷ୍ଣ ସିଂହ, ସାହା ମହମ୍ମଦ ଯୁବେୟା, ଖାଁ ସାହେବ, ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ, ଭାରତୀକୃଷ୍ଣ ତୀର୍ଥସ୍ୱାମୀ ପ୍ରଭୃତି ଆଗରୁ ଏଠାରେ ବନ୍ଦୀଥିଲେ । ଏବେ ସେଇଠି ଆସି ପହଞ୍ଚିଲେ ଓଡ଼ିଶାର ଜନପ୍ରିୟ ନେତା ଗୋପବନ୍ଧୁ । ଆଗରୁ ଆସି ପ୍ରଥମ ନମ୍ବର ରାଜନୈତିକ ୱାର୍ଡ଼ର ୨ୟ କାମେରାରେ ରହିଥିଲେ ଶ୍ରୀ ଭଗୀରଥି ମହାପାତ୍ର । ଏବେ ଏକ ନମ୍ବର କାମେରାରେ ରହିଲେ ଗୋପବନ୍ଧୁ । ଓଡ଼ିଶାର ଏହି ରାଜନୈତିକ ବନ୍ଦୀମାନଙ୍କୁ ଯଦିଓ ସଶ୍ରମ କାରାଦଣ୍ଡ ଆଦେଶ ହୋଇଥିଲା କର୍ତ୍ତୃପକ୍ଷଙ୍କ ଗୁପ୍ତ ନିର୍ଦ୍ଦେଶକ୍ରମେ ଏମାନଙ୍କୁ ପ୍ରକୃତରେ ଅଶ୍ରମ କାରାଦଣ୍ଡ ହିଁ ଭୋଗିବାକୁ ପଡ଼ୁଥିଲା । ଗୋପବନ୍ଧୁଙ୍କ ଜେଲଯାତ୍ରା କାଳରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ଭାବରେ ଡା: ଏକରାମ ରସୁଲ ନିର୍ବାଚିତ ହୋଇଥିଲେ । ପରେ ପରେ

ସେ ମଧ୍ୟ ସମାନ ଅପରାଧରେ ଜେଲଦଣ୍ଡ ଭୋଗି ହଜାରିବାଗ ଜେଲରେ ରହିଲେ ।

ସେତେବେଳେ ମହାତ୍ମା ଗାନ୍ଧି, ଚିତ୍ତରଞ୍ଜନ, ଲାଲଲଜ୍‌ପତ, ତରୁଣ ଜବାହରଲାଲ ପ୍ରମୁଖ ବହୁ ନେତା ବିଭିନ୍ନ କାରାଗାରରେ ସ୍ୱାଧୀନତାର ସ୍ୱର୍ଣ୍ଣରଶ୍ମି ପାଇଁ ବ୍ୟାକୁଳ ପ୍ରାଣରେ ଗୁମ୍ଫି ରହିଥା'ନ୍ତି । ଜେଲର ଉର୍ଦ୍ଧ୍ୱ ପ୍ରାଚୀର ପାଖରେ ସେମାନଙ୍କ ଆକୁଳ ଆଶା ଚୂର ହୋଇ ଯାଉଥାଏ । ତଥାପି ଏକ ନୂତନ ପ୍ରଭାତର ସୂର୍ଯ୍ୟୋଦୟ ପାଇଁ ଭାରତର ନେତାମାନେ ପ୍ରତିଦିନ ପ୍ରାର୍ଥନା କରୁଥା'ନ୍ତି—"ହେ ପ୍ରଭୁ, ତୁମେ ସକଳ ସୃଷ୍ଟିର ଅଧିକର୍ତ୍ତା । ସବୁଠାରେ ବ୍ୟାପି ରହିଛ । ଭାରତ-ଆକାଶରୁ ଏ ଅଶୁଭ କଳା ବାଦଲ ଘୁଞ୍ଚାଇ ଦିଅ । ଭାରତର ଶିଶୁ ତା'ର ଜନ୍ମଗତ ସ୍ୱାଧୀନତାର ଅଧିକାର ନେଇ ହସିଉଠୁ ।"

ହଜାରିବାଗ ଜେଲର କଠୋର ପରିବେଶ । ବାରକ୍ ପରି ଘରେ ଗୋଟିଏ ଗୋଟିଏ ସେଲ୍ ଭିତରେ ବନ୍ଦୀମାନଙ୍କୁ ରହିବାକୁ ହୁଏ । ମୋଟାମୋଟା ଖାଦ୍ୟ—ଗୋପବନ୍ଧୁଙ୍କର ସେଥିପାଇଁ ଆପତ୍ତି ନଥାଏ । ଜୀବନରେ ସେ ଭଲ ଖାଇବା ଓ ପିନ୍ଧିବାର ପକ୍ଷପାତୀ ନ ଥିଲେ । ତେଣୁ ଏ ପରିବେଶ ତାଙ୍କୁ ବିଚଳିତ ନ କରିବା ସ୍ୱାଭାବିକ । କିନ୍ତୁ ପ୍ରିୟଜନମାନଙ୍କ ଦୃଷ୍ଟିର ଅନ୍ତରାଳରେ ଥାଇ ସେ ସବୁବେଳେ ଓଡ଼ିଶାର ଦୁର୍ଦ୍ଦଶା କଥା ଭାବି ଝୁରିହେଉଥିଲେ । କଥାବାର୍ତ୍ତାରେ, ସ୍ୱପ୍ନରେ, ଜାଗରଣରେ ଓଡ଼ିଶାର ପାଣି-ପବନ, ଧୂଳିମାଟି, ବଢ଼ିବାଣ୍ଡ, ବଢ଼ିହେଉଥିଲ ଜୀବନ୍ତ ହୋଇଉଠୁଥିଲା । ପୁଣି ସତ୍ୟବାଦୀ ସ୍କୁଲର ପରିସ୍ଥିତି ତାଙ୍କ ମନକୁ ଶୋକାଚ୍ଛନ୍ନ ରଖିଥିଲା । ସ୍ୱରାଜ୍ୟ ଆନ୍ଦୋଳନ କ୍ରମେ ଶିଥିଳ ହୋଇ ଯାଉଥିବା ଶୁଣି ସେ ଦୁଃଖ କରୁଥିଲେ । ଗାନ୍ଧିଙ୍କ ଖବର ପାଇବା ପାଇଁ ତାଙ୍କମନରେ ଅଧିକ ବ୍ୟାକୁଳତା ଓ ଉଦ୍‌ବେଗ ପ୍ରକାଶ ପାଉଥିଲା । ହଜାରିବାଗ କାରାକକ୍ଷର ମେଘନାଦ ପାଚେରି ପାଖରେ ତାଙ୍କର ଏ ଅନୁଯୋଗ ପ୍ରତିଧ୍ୱନିତ ହୋଇ ଫେରି ଆସୁଥିଲା । ତାଙ୍କ ଦୃଷ୍ଟିର ଦିଗନ୍ତ ପ୍ରିୟ କର୍ମଭୂମି ଓଡ଼ିଶାର ଆକାଶ ଛୁଇଁ ପାରୁନଥିଲା । ପୁଣି ଓଡ଼ିଶାରୁ ଦୈନିକ ବାର୍ତ୍ତା ତାଙ୍କ ପାଖରେ ପହଞ୍ଚିବାରେ ଘୋର କଟକଣା ଥିଲା । କର୍ତ୍ତୃପକ୍ଷ ବହୁ ଖବର ଯାଞ୍ଚ୍ କରି ଜଣାଉ-ଥିଲେ । ଓଡ଼ିଶାର ଦୁଃଖ ଓ ଦୁର୍ଦ୍ଦଶା ତାଙ୍କୁ ଏତେ ଭାବରେ ବିଚଳିତ କରୁଥିଲା ଯେ, କାରାକକ୍ଷରେ ନିଦ୍ରିତ ଥାଇ ବି ସେ ବେଳେବେଳେ ମା' ମା' ବୋଲି କରୁଣ ଚିତ୍କାର କରୁଥିଲେ । ଉତ୍କଳ-ଜନନୀଙ୍କୁ ସେ ଏହି ଭାବରେ ସମ୍ବୋଧନ କରୁଥିବା ତାଙ୍କ ବନ୍ଧୁମାନେ ଲକ୍ଷ୍ୟକରିଥିଲେ ।

କଟକରୁ ହଜାରିବାଗ ଆସିବା ବାଟରେ ତାଙ୍କ କବି-ପ୍ରାଣକୁ ପ୍ରିୟ ଜନ୍ମଭୂମିରୁ ବିଦାୟ-ଜନିତ ଦୁଃଖ ବିମଥିତ କରିଥିଲା । ତା'ର ସ୍ମୃତିରେ ସେ 'ବନ୍ଦୀର ଆତ୍ମକଥା' ନାମକ ଏକ ଖଣ୍ଡକାବ୍ୟ ଏହି କାରାଗାରରେ ରଚନା କରିଥିଲେ । ଓଡ଼ିଆ ସାହିତ୍ୟରେ ଏ କବିତାର ତୁଳନା ନାହିଁ । ଏ କବିତା ଗୁଡ଼ିକ ଭିତରୁ ସମାଲୋଚକ ଯେତେ ପ୍ରାଣଉଚ୍ଛୁଳା ଭାବ ଖୋଜିଛି —ପାଇଛି, ଯେତେ ହୃଦୟସ୍ପର୍ଶୀ ଲୋଡ଼ିଛି—ପାଇଛି । ସରସ, ସାବଲୀଳ, ଶୋକାତୁର ସେ ପଦାବଳୀ ଓଡ଼ିଆ ସାହିତ୍ୟର ଏକ ପୌରାଣିକ ସମ୍ପତ୍ତି । ପ୍ରିୟ ଜନ୍ମମାଟିର ଅନେକ

ଅନୁଭୂତର ସନ୍ଦଳତରଳ ସ୍ରୋତ ପ୍ରବାହରେ ଏ ଜାତ ପାଇଁ ଏହା ଏକାନ୍ତ ଆପଣାର ଏକ ମହାକାବ୍ୟ । ତା'ର କେତୋଟି ପଙ୍‌କ୍ତି ଏଠାରେ ଉଲ୍ଲେଖ କରିବାର ପ୍ରଲୋଭନ ମୁଁ ଏଡ଼ାଇ ପାରୁନାହିଁ—

"ଦେଶବାସୀ ବନ୍ଧୁ, ଆତ୍ମୀୟ ସୋଦର,
କାରାଦଣ୍ଡେ ମୋର ହେଲ କି କାତର ?
ଥିଲା ଏହା ଆଗୁଁ ଜଣା ଶୁଣା କଥା,
ସେଥିପାଇଁ ତେବେ କମ୍ପା ମନେ ବ୍ୟଥା ?
କାତରତା ସିନା କାପୁରୁଷ ପଣ,
ବୀର ମାରେ ଅବା ମରେ କରି ରଣ ।
ପଛଘୁଞ୍ଚା ନାହିଁ ବୀରର ଜାତକେ
ନମରେ ସେ କେବେଁ ସଗ୍ରଣ ଆତଙ୍କେ ।
ଜାଣିଛ ଲଗିଛି ଏ ଶାନ୍ତି-ସମର
ନାହିଁ ଏଥି ତୋପ ହାତହତିଆର ।
ବଳ ବା ବିଭବ ନାହିଁ ଏଥି ଲୋଡ଼ା,
ନାହିଁ ଲୋଡ଼ା ଯାନ, ରଥ, ହାତୀ, ଘୋଡ଼ା ।
ଆଧ୍ୟାତ୍ମିକ ବଳେ ଲାଗିଛି ଲଢ଼ାଇ
ଭାଙ୍ଗିବାକୁ ପଶୁ ବଳର ବଡ଼ାଇ ।
ଛାଡ଼ି ଧନ ଆଶା, ଘରଦ୍ୱାର ମାୟା
ଅସଙ୍ଗଶସ୍ତ୍ରେ ଯେ ସାଜିଅଛି କାୟା ।
ଅହିଂସା ବଳରେ ଯେଉଁ ବଳୀୟାନ
ଏ ରଣ ପ୍ରାଙ୍ଗଣେ ତା'ର ଏକା ସ୍ଥାନ ।
ଏଥିରେ ପ୍ରଥମ ଫଳ କାରାଦଣ୍ଡ,
ପଛେ ହୋଇପାରେ ଦେହ ଖଣ୍ଡ ଖଣ୍ଡ,
ବୁଝି ଏହା ମୁହିଁ ପଶିଛି ସଂଗ୍ରାମେ
ନାହିଁ ମୋ ବସ୍ତର ମାନ ଅପମାନେ ।
ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଗ୍ରଲ ଯାଆନ୍ତୁ ପିଠିରେ ।
ଦେଶର ସ୍ୱରାଜ୍ୟ-ପଥେ ଯେତେ ଗାଡ଼,
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।
ସ୍ୱାଧୀନତା ପଥେ ଚଳେ ହେଲେ ନର
ମୋ ଜୀବନ ଦାନେ ହେଉ ଅଗ୍ରସର ।

ମଙ୍ଗଳମୟଙ୍କ ସୁମଙ୍ଗଳ ଇଚ୍ଛା
ପୂରୁ ଏ ପରାଣେ ଏହି ଶେଷ ଭିକ୍ଷା ।''

ଏହା ବ୍ୟତୀତ 'ଧର୍ମପଦ', 'କାଟ୍-କବିତା', 'ନଚିକେତା ଉପାଖ୍ୟାନ' ଓ 'ଗୋ-ମହାତ୍ମ୍ୟ' ଆଦି କାବ୍ୟକବିତା ଏହି ହଜାରିବାଗ ଜେଲରେ ଥିବାବେଳେ ସେ ଲେଖିଥିଲେ । ଏଗୁଡ଼ିକ ମଧ୍ୟରୁ 'ଗୋ-ମାହାତ୍ମ୍ୟ' ଲେଖିବା ପାଇଁ ସେ ତାଙ୍କର ଅନ୍ୟତମ କାରାସାଥୀ ଶଙ୍କରାଚାର୍ଯ୍ୟ ଭାରତୀକୃଷ୍ଣ ତୀର୍ଥସ୍ୱାମୀଙ୍କ ଅନୁପ୍ରେରଣା ପାଇଥିଲେ । ତୀର୍ଥସ୍ୱାମୀଙ୍କ ସାହାଯ୍ୟରେ ଜେଲରେ ଗୋପବନ୍ଧୁ ସଂସ୍କୃତ ମହାଭାରତ, ଭଗବଦ୍‌ଗୀତା ଓ ରାମାୟଣ ଗୋଟିକ ପରେ ଗୋଟିଏ ପଢ଼ି ତା'ର ଆଲୋଚନାରେ ବହୁ ସମୟ ବିତାଉଥିଲେ ।

କାର୍ତ୍ତିକ ମାସସାରା ଗୋପବନ୍ଧୁ ହବିଷ୍ୟ ପାଳନ କରୁଥିଲେ ଓ ଭାଗବତ ପାରାୟଣ କରୁଥିଲେ । ଥରେ ଜେଲରେ ଏହିପରି ଭାଗବତ ପାରାୟଣ କରୁଥା'ନ୍ତି । ଶ୍ରୀକୃଷ୍ଣଙ୍କୁ ଯଶୋଦା ବାନ୍ଧିବା ପ୍ରସଙ୍ଗରେ ତାଙ୍କ ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ଭଗୀରଥି ବାବୁ ବିସ୍ମିତହୋଇ ପାଖରେ ଠିଆ ହୋଇଥାନ୍ତି । ଶେଷରେ ଭଗୀରଥି ବାବୁ ପଚାରିଲେ— ''ହାସେ ଆପଣେ, ଆପଣ କାନ୍ଦୁଥିଲେ କାହିଁକି ?''

ଗୋପବନ୍ଧୁ ଆଖିରୁ ଶେଷ ଅଶ୍ରୁଦାଗ ନିସାଡ଼ି ନିସାଡ଼ି ଉତ୍ତର ଦେଲେ—''ବୁଝିନାକି ଭଗୀରଥି, ମୋର ପୁଅ ନାହିଁ । ଝିଅ ଦୁହିଁଙ୍କଠାରୁ ତ ସବୁବେଳେ ଦୂରରେ ରହିଲି । ତେଣୁ ବାତ୍ସଲ୍ୟ ଜିନିଷଟି କ'ଣ ମୁଁ ଅନୁଭବ କରି ପାରିଲି ନାହିଁ । ଏଇ ଯେ ଯଶୋଦା ଶ୍ରୀକୃଷ୍ଣଙ୍କୁ ବାନ୍ଧୁଛନ୍ତି, ପୁଣି ମାରୁଛନ୍ତି—ଏଥିରେ କ'ଣ କମ୍ ମମତା ?''

ପୁଣି ଭାଗବତର ଶ୍ରୀକୃଷ୍ଣଙ୍କ ରାସ ପ୍ରସଙ୍ଗରେ ଗୋପବନ୍ଧୁ ତଦ୍‌ଗତ ହୋଇପଡ଼ୁଥିଲେ । ସେ ଭଗୀରଥି ବାବୁଙ୍କୁ କହିଲେ—ବୁଝିଲ ଭଗୀରଥି, ତନ୍ମୟ ନହେଲେ ଭଲ ପାଇ ହୁଏ ନାହିଁ । ଏପରିକି ପତ୍ନୀକୁ ଭଲପାଇବାରେ ମଧ୍ୟ ସେହିପରି ତନ୍ମୟତା ଦରକାର । ଓଡ଼ିଶା ଓ ଗୌଡ଼ୀୟ ବୈଷ୍ଣବଙ୍କ ଭିତରେ ଏଇଠି ତଫାତ୍ ରହିଛି ।''

ଚୈତନ୍ୟଙ୍କ ସ୍ମୃତି ଓଡ଼ିଶା ଇତିହାସର ଏକ ଉଦାତ୍ତକାହାଣୀ । ଗୋପବନ୍ଧୁଙ୍କୁ ଏ ସ୍ମୃତି ବହୁଭାବରେ ଉଦ୍‌ବୁଦ୍ଧ ଓ ଆଲୋଡ଼ିତ କରିଥିଲା । ସେ 'ବନ୍ଦୀର ଆତ୍ମକଥା' ଲେଖିଲାବେଳେ ଭଦ୍ରକ ହମ୍ପର୍କରେ ଚୈତନ୍ୟଙ୍କ ସ୍ମୃତି ପୁଣି ଥରେ ତାଙ୍କୁ ଆସକ୍ତ କରିପକାଇଥିଲା । ତାଙ୍କର ମନେପଡ଼ିଲା ଭଦ୍ରଖରେ କିଛିଦିନ ପାଇଁ ଚୈତନ୍ୟ ଅବସ୍ଥାନ କରିଥିଲେ—

''ନୀଳାଚଳ-ଯାତ୍ରୀ ପ୍ରେମିକ ନିମାଇଁ
ଥିଲେ ପରା ଏଥି କେତେଦିନ ପାଇଁ ।''

ତାଙ୍କ ମତରେ ଭକ୍ତ ଭାବରେ ବହିଲ ନହୋଇ ନିମାଇଁ ପ୍ରେମଭାବରେ ବିଭୋର ହୋଇଥିଲେ । ସେଥିପାଇଁ ତାଙ୍କୁ ପ୍ରେମିକ କହିବା ଯଥାର୍ଥ କି ନାହିଁ, ସେ ଭଗୀରଥିବାବୁଙ୍କ ମତ ଲୋଡ଼ିଥିଲେ ।

ଭାଗବତ ପରେ ଗୋପବନ୍ଧୁ ରାମାୟଣ ପାଠକଲେ; କିନ୍ତୁ ରାମାୟଣ ଶେଷ କରିବାକୁ

ତାଙ୍କର ଭେଳାଣି କାହିଁକି ଭେଶହେଲା । ଏହି ସମୟରେ ସି. ଆର. ଦାସ ଜେଲରୁ ମୁକ୍ତ ହୋଇ 'ସ୍ୱରାଜ୍ୟ ପାର୍ଟି' ଗଠନ କଲେ । ସରକାରଙ୍କ ସହିତ ସମ୍ପୂର୍ଣ୍ଣ ଅସହଯୋଗ ନକରି ବିଭିନ୍ନ ରାଜ୍ୟ ଓ କେନ୍ଦ୍ର ଆସେମ୍ବ୍ଲିକୁ ଯାଇ ସରକାରଙ୍କୁ ପଦେ ପଦେ ଉପହସିତ ଓ ଓ ଅପମାନିତ କରିବା ଏହି ଦଳର ଆଭିମୁଖ୍ୟ ଥିଲା । ମୋଟ ଉପରେ ଆସେମ୍ବ୍ଲି-ମାନଙ୍କରେ ସରକାରଙ୍କୁ ପରାଜିତ କରି କ୍ରମେ ଶାସନକ୍ଷମତା ହାତକୁ ଆଣିବାକୁ 'ସ୍ୱରାଜ୍ୟ ପାର୍ଟି' ଚିନ୍ତା କରୁଥିଲା; କିନ୍ତୁ ମହାତ୍ମାଗାନ୍ଧି ନିରୁପଦ୍ରବ ଅସହଯୋଗ ଉପରେ ଅଧିକ ଗୁରୁତ୍ୱ ଦେଉଥିଲେ । ବେଙ୍ଗଲ ପରି ମହାରାଷ୍ଟ୍ରରେ ଏହି 'ସ୍ୱରାଜ୍ୟ ପାର୍ଟି' ପ୍ରତି ଅଧିକ ଆଗ୍ରହ ଦେଖା ଦେଇଥିଲା । ଜେଲରେ ଥାଇ ଗୋପବନ୍ଧୁ 'ସ୍ୱରାଜ୍ୟ ପାର୍ଟି' ସମ୍ପର୍କରେ ଅନୁଧ୍ୟାନ କରୁଥା'ନ୍ତି । ଦିନେ ସେ ଭଗୁବାବୁଙ୍କୁ କହିଲେ—"ଆମେ ରାଜନୈତିକ ବନ୍ଦୀ । ତଥାପି ଆମକୁ ହାତକଡ଼ି ଦେଇ ପୋଲିସ ଆଣିଲେ । କଟକ ଜେଲ-ଫାଟକ ରାତ୍ର ରାତିରେ ନ ଖୋଲିବାରୁ ଫାଟକ ବାହାରେ ଶୁଆଇଲେ, କିନ୍ତୁ କାହିଁ କେହି ତ ଏଥିପାଇଁ କିଛି କଲେ ନାହିଁ ? ସାଧାରଣ ଲୋକେ ତ ପାଟି ଫିଟାଇଲେ ନାହିଁ, ପ୍ରତିବାଦ କରିବା ତ ଦୂରର କଥା । ପୀତବାସ ପଟ୍ଟନାୟକ ବିହାର-ଓଡ଼ିଶା ଆସେମ୍ବ୍ଲିରେ ଏ ବିଷୟ ଉଠାଇବାରୁ ଏହା ସାଧାରଣରେ ଆଲୋଚିତ ହେଲା । ଏ ପରିସ୍ଥିତିରେ ସି. ଆର୍. ଦାସ ଯଦି ଆସେମ୍ବ୍ଲିକୁ ଯାଇ ଗୋଳମାଳ ସୃଷ୍ଟି କରିବାକୁ ଚାହୁଁଥାନ୍ତି, ସେଥିରେ କ୍ଷତି କ'ଣ ? ତେବେ ତୁମେ ମୁଁ କେତେଜଣ ଆସେମ୍ବ୍ଲିକୁ ଯିବା ନାହିଁ, କିନ୍ତୁ କେତେ ଜଣ ହେଲେ ଯାଆନ୍ତୁ—ତା' ହେଲେ ଦେଶକଥା ପ୍ରଚାରିତ ହୋଇପାରିବ ।"

ଗୋପବନ୍ଧୁ ଜେଲରେ ତିଲକଙ୍କ ଗୀତା ପାଠ କରୁଥିଲେ । ସ୍ୱରାଜ୍ୟ ଆନ୍ଦୋଳନର ଏକଦା ଶ୍ରେଷ୍ଠନେତା ବାଲଗଙ୍ଗାଧର ତିଲକ ତାଙ୍କ ଗୀତାରେ 'ଯେସାକୁ ତେସା' ଶୀର୍ଷକ ଏକ ଅଧ୍ୟାୟ ଲେଖିଥିଲେ । ଗୋପବନ୍ଧୁ ବାବୁ ଭଗୁବାବୁଙ୍କୁ କହିଲେ, "ଏ ଗୀତାରୁ ବୈଷ୍ଣବଧର୍ମ ଦର୍ଶନ ବାଦ୍ ଦେଇ ରାଜନୈତିକ ଦର୍ଶନ ଦୃଷ୍ଟିରୁ ଏହାକୁ ବିଚାର କରିବା । ଗୀତାରେ ପ୍ରଥମେ ଅର୍ଜୁନଙ୍କ ଯୁଦ୍ଧ ପ୍ରସଙ୍ଗରେ ହିଂସାବାଦ (ଯେସାକୁ ତେସା) କଥା ପ୍ରଚାର କରାଯାଇଛି । ଭକ୍ତ ଯୁଦ୍ଧ କରିବାକୁ ନାରାଜ; କିନ୍ତୁ ଭଗବାନ ତାଙ୍କୁ ଏଥିପାଇଁ ପ୍ରବର୍ତ୍ତାଉଛନ୍ତି । ଯୁଦ୍ଧ ନ କରିବା କ୍ଳୀବତା ଓ ଅନାର୍ଯ୍ୟୋଚିତ କର୍ମ ବୋଲି କହି ଅର୍ଜୁନଙ୍କୁ ଧିକ୍କାର କରୁଛନ୍ତି । ତେବେ କୌଣସି ଅନ୍ୟାୟକୁ ଦୈହିକ ଶକ୍ତି ସାହାଯ୍ୟରେ ପ୍ରତିରୋଧ କରିବା କଥାଟାକୁ ପୁରାପୁରି ଉଠାଇ ଦିଆଯାଇ ନ ପାରେ । ଗାନ୍ଧି କିନ୍ତୁ କାୟମନୋ-ବାକ୍ୟରେ ଅହିଂସା ଅବଲମ୍ବନ କରିବାକୁ କହୁଛନ୍ତି । ଗାନ୍ଧି ପୁଣି ଗୋଖଲେ, ରାଣାଡ଼େ, ତିଲକ ଆଦିଙ୍କୁ ଗୁରୁପରି ମାନୁଥିଲେ । ତିଲକ ତ ଲେଖିଲେ 'ଯେସାକୁ ତେସା'—ତେବେ କାଉନ୍‌ସିଲମାନଙ୍କୁ ଯିବାରେ ଭୁଲ କେଉଁଠି ରହିଲା ? ମୋଟଉପରେ ଗୋପବନ୍ଧୁଙ୍କ ଚିନ୍ତାରେ ଏଥିପାଇଁ ସ୍ପଷ୍ଟ ଭାବରେ ଦ୍ୱନ୍ଦ୍ୱ ଦେଖାଦେଇଥିଲା । ଅହିଂସା ଅସହଯୋଗର ବିଫଳତା ତଥା

ସ୍ୱାଧୀନତା ପ୍ରାପ୍ତିରେ ବିଳମ୍ବ ବସ୍ତୁତଃ ବହୁ ଜାତୀୟବାଦୀ ନେତାଙ୍କ ମନରେ ଏହି ଅମୀମାଂସିତ ଚିନ୍ତା ସଂଘର୍ଷ ସୃଷ୍ଟି କରିଥିଲା ।

ଜେଲରେ ଗୋପବନ୍ଧୁବାବୁ ପ୍ରାର୍ଥନା କଲାବେଳେ ସମ୍ପୂର୍ଣ୍ଣ ତଦ୍‌ଗତ ହୋଇପଡ଼ୁଥିଲେ । ତାଙ୍କ ଆଖିରୁ ଧାର ଧାର ଲୁହ ବୋହିଯାଉଥିଲା । ପୁଣି ଖାଇସାରିବା ପରେ, ଶୋଇବା ପୂର୍ବରୁ ଜେଲରେ ଉଚ୍ଚ କଣ୍ଠରେ ସମସ୍ତେ ଏକ ଶିଖ ଭଜନ ବୋଲୁଥିଲେ—

"ତେରି ଖାସ୍ କୋଇ ନା ଧାମ୍ ହାଏ
ତେରି ହରଜାଗାହା ପର ମୁକାମ ହାଏ ;
ତୁନେ ଦିନ ଦିଆ ହାମ୍ କାମକୋ,
ଔର ରାତ ଦିଆ ଆରାମକୋ,
ତେରି ପ୍ରାତ ହାଏ, ତେରି ସାମ ହାଏ
ତେରି ହରଜାଗାହା ପର ମୁକାମ ହାଏ ।"

ଏହି ଗୀତ ବୋଲିସାରି ସମବେତ କଣ୍ଠରେ ଗୋଟାଏ ଆଜାନ୍ (ସ୍ଲୋଗାନ୍) ଦିଆଯାଉଥିଲା । ଏ ଧ୍ୱନି ଜେଲ୍‌ଫାଟକ ପାଖ୍ରୁ ସ୍ପଷ୍ଟ ଶୁଭୁଥିଲା ।

ଥରେ ଜେଲର୍ ମିଃ ମିକ୍ ପରସ୍ପର ଏପରି ଧ୍ୱନି ଦେବାକୁ ବାରଣ କଲେ । ଏପରି ଧ୍ୱନି ଦେଲେ ରାଜନୈତିକ ବନ୍ଦୀଭାବରେ ପାଉଥିବା ସମସ୍ତ ସୁବିଧା ସୁଯୋଗ କାଟିଦେବେ ବୋଲି ଜେଲ ସୁପରିଣ୍ଟେଣ୍ଡେଣ୍ଟ ଧମକ ଦେଲେ । ପରେ I.G. of Prisons ମିଃ ବନାଡ଼ଓ୍ୱାଲ ଲୁଚିରହି ଏ ପ୍ରାର୍ଥନା ଶୁଣିଥିଲେ । ସେ ମଧ୍ୟ ଜେଲ ଭିତରକୁ ଆସି ଖଟିଆ, ଚୌକି ଆଦି କାଢ଼ିନେବାକୁ ଓ ୧୮ ଦିନପାଇଁ ନିର୍ଜନ କୋଠରିଆ (solitary confinement) ଭାବରେ ରଖିବାକୁ ଆଦେଶ ଦେଲେ । ଦିନରେ ମାତ୍ର ଦୁଇ ଘଣ୍ଟା ମଧ୍ୟରେ ନିତ୍ୟକର୍ମ ସାରିବାକୁ ଦିଆହେଲା । ସେହି ସମୟ ଭିତରେ ଯେ ଅଗତ୍ୟା ନିତ୍ୟକର୍ମ ସାରି ପାରୁନଥିଲା ସେ ବଡ଼ ଅସୁବିଧାରେ ପଡ଼ୁଥିଲା । ଏଥିରେ କେତେ ବନ୍ଦୀମାନେ ଅଧିକ ଉତ୍ତେଜିତ ହୋଇ ବଡ଼ ପାଟିରେ ଘରଭିତରୁ ପ୍ରାର୍ଥନା କଲେ । ଶେଷକୁ ଜେଲ କର୍ତ୍ତୃପକ୍ଷ ସାଲିସ୍ କଲେ, ସତ୍ୟାଗ୍ରହୀମାନେ ଧୀର ସ୍ଥିର ଭାବରେ ସ୍ଲୋଗାନ ଦେଲେ ।

ଜେଲରେ ଆମୋଦ-ପ୍ରମୋଦର ବିଶେଷ ସୁବିଧା ନଥିଲା । କେବଳ କୌଣସି ପୁରୁଣା ଲୋକ ଗଲାବେଳେ ଓ ନୂଆଲୋକ ଆସିଲାବେଳେ ଗୋଟିଏ ଗ୍ରେଟ ବୈଠକ ହେଉଥିଲା । ଏଥିପାଇଁ ନିରାମିଷ ଭୋଜନର ଆୟୋଜନ ହେଉଥିଲା । ଜେଲରେ ଜଣ ପିଛା ପ୍ରତିଦିନର ରେସନ୍ ଥିଲା ୭ ଛଟାଙ୍କ ଚାଉଳ ବା ଅଟା; ଡାଲି ଦେଢ଼ ଛଟାଙ୍କ । ପରିବା ମଧ୍ୟରେ ବାଇଗଣ, ଆଳୁ, ସାରୁ, କଖାରୁ । ପ୍ରତି ଶୁକ୍ରବାର ଦିନ ସନ୍ଧ୍ୟାରେ ମାଂସ ହେବାର ବ୍ୟବସ୍ଥା ଥିଲା । ଗୋପବନ୍ଧୁ ମାଂସ ଖାଉନଥିଲେ । ଛ'ଟି ଓ୍ୱାର୍ଡ଼ । ପ୍ରତି ଓ୍ୱାର୍ଡ଼ରେ ଛତିଶଜଣ ରାଜନୈତିକ ବନ୍ଦୀ । ଜଣେ ପୁଷ୍ଟାରି ଓ ଜଣେ ଟହଲିଆ । ବନ୍ଦୀମାନଙ୍କ ହାତରେ

ବାସନ ଧୋଇବାକୁ ହେଉଥିଲା । କାର୍ତ୍ତିକ ହବିଷ୍ୟ ବେଳେ ଗୋପବନ୍ଧୁଙ୍କୁ ଭାଗୁବାବୁ ରୋଷେଇ କରି ଦେଉଥିଲେ । ପ୍ରତିଦିନ ନିଜ ପଇସାରୁ କିଛି ଘିଅ କିଣି ରଖି ଗୋପବନ୍ଧୁ ଭାତରେ ଖାଉଥିଲେ । ଘୃତସିକ୍ତ ନ ହେଲେ ଭାତ ଖାଇବା ପବିତ୍ରତାର କଥା ନୁହେଁ ବୋଲି ତାଙ୍କର ବିଶ୍ୱାସ ଥିଲା ।

ଥରେ ଗ୍ରାଉଣ୍ଡ଼ଖାଇବେଳେ ଗୋପବନ୍ଧୁଙ୍କ ଉପସ୍ଥିତିରେ ଭାଗୁବାବୁ ସୁପରିଣ୍ଟେଣ୍ଡେଣ୍ଟଙ୍କୁ କହିଲେ, "ଆଜ୍ଞା, ଆମ୍ଭେମାନେ ରାଜନୈତିକ ବନ୍ଦୀ । ଆମକୁ ସବୁବେଳେ ଏମିତି ପରିବା ସିଝା ଦେଉଥିବେ ?" ସୁପରିଣ୍ଟେଣ୍ଡେଣ୍ଟଙ୍କ ପୋଖରୀରେ ଖୁବ୍ ବଡ଼ ବଡ଼ ମାଛ ରହୁଥିଲେ । ସୁପରିଣ୍ଟେଣ୍ଡେଣ୍ଟ ଜେଲରଙ୍କୁ କହି ପୋଖରୀରେ ଜାଲ ପକାଇଲେ । ଖୁବ୍ ବଡ଼ ବଡ଼ ମାଛ ପଡ଼ିଲେ । ନିଜେ ଗୋପବନ୍ଧୁ ବାବୁ ଓ ଭାଗୁବାବୁ ହାତରେ ରାନ୍ଧିଲେ ଓ ସମସ୍ତଙ୍କୁ ଖୁଆଇଲେ । ସେତେବେଳେ ହଜାରିବାଗରେ ଭାରି ଭଲ ଚୂଡ଼ା ମିଳୁଥିଲା । ବନ୍ଦୀମାନଙ୍କୁ ଯେଉଁ ଦୁଧ ମିଳେ ତାକୁ ଗୋପବନ୍ଧୁ ଦହି ବସାଇ ଦେଉଥିଲେ । ବଜାରରୁ ଭଲ ଶର୍କରା କିଣି ଚୂଡ଼ା ଦହି ସହିତ ମିଶାଇ ଖାଇବାକୁ ସେ ଭାରି ପସନ୍ଦ କରୁଥିଲେ ।

ଏହି ସମୟରେ ଖାଁସାହେବ ଓ ତାଙ୍କ ଭାଇ ସୀମାନ୍ତ ଗାନ୍ଧି ଖାଁ ଅବଦୁଲ୍ ଗଫୁର୍ ଖାଁଙ୍କୁ ଅନ୍ୟାନ୍ୟ ବନ୍ଦୀମାନଙ୍କଠାରୁ ଅଲଗା କରି ଗୋଟିଏ ନିର୍ଜନ ସ୍ଥାନରେ ରଖାଯାଇଥିଲା । ତାଙ୍କ ସହିତ ସାକ୍ଷାତର କୌଣସି ସମ୍ଭାବନା ନଥିଲା—ତଥାପି ତାଙ୍କୁ ଦେଖିବାକୁ ଦିନେ ଗୋପବନ୍ଧୁ ଓ ଭାଗୁବାବୁ ବହୁ କଷ୍ଟରେ ଜେଲର୍‌ଙ୍କୁ ହାତ କଲେ । ଜେଲ୍ ହତା ଭିତରେ ବୁଲିବାକୁ ଅନୁମତି ନେଇ ସେମାନେ ଦୂରରୁ ଖାଁ ଦୁଇ ଭାଇଙ୍କ ସେଲ୍ ଦେଖିଥିଲେ; କିନ୍ତୁ ସାକ୍ଷାତରେ କଥାବାର୍ତ୍ତା କରିବା ସମ୍ଭବ ନଥିଲା । ସେଦିନ ଗୋପବନ୍ଧୁଙ୍କ ମନରେ ବିଷୁ ଭାବାନ୍ତର ଜାତହୋଇଥିଲା । ଖାଁ ଦୁଇ ଭାଇଙ୍କର ଏହି ନିର୍ବାସିତ ଜୀବନ ତାଙ୍କ ମନରେ ଆଲୋଡ଼ନ ସୃଷ୍ଟି କରିଥିଲା ।

ଜେଲ୍‌ର ନିର୍ମମ କରୁଣ ଜୀବନ । ଦୀପ ଲଗାଇବା ପାଇଁ ହିସାବ କରି ଦିନକୁ ଗୋଟିଏ ଲେଖା ଦିଆସିଲି ସାତଦିନ ପାଇଁ ଦିଆଯାଏ । ଯେଉଁଦିନ ସାମାନ୍ୟ ଅସାବଧାନତାରୁ କାଠି ଜଳି ନିଭିଯାଏ ଓ ଦୀପ ଲଗିନପାରେ ସେଦିନ ଅନ୍ଧାରରେ ରହିବାକୁ ପଡ଼େ । ଏହିପରି ଦିନେ ଗୋପବନ୍ଧୁ ଦିଆସିଲିର ଶେଷ କାଠିଟିକୁ ମାରୁ ମାରୁ ନିଭିଗଲା । ସେଦିନ ତାଙ୍କଯୋଗୁ ସମସ୍ତଙ୍କୁ ଅନ୍ଧାରରେ ରହିବାକୁ ପଡ଼ିଲା । ସେ ଅତି ଦୁଃଖରେ ସେଦିନ ଅନେକ କାନ୍ଦିଲେ । ଅନୁତାପରେ ଖାଇଲେନି । ପରେ ଏ କଥା ସେ ଦି'ଶିଅଙ୍କ ପାଖକୁ ଲେଖିଥିଲେ—"ସାମାନ୍ୟ ଦୁଃଖରେ ତୁମେମାନେ ତ ଏତେ ଅସ୍ଥିର ହୋଇପଡ଼ୁଛ ; ଏଠି ଜେଲରେ ଆମମାନଙ୍କର ଦୁଃଖର ଅନ୍ତ ନାହିଁ । ଦିଆସିଲି ମାରୁ ମାରୁ କାଠି ଲିଭିଗଲେ ଆମ୍ଭମାନଙ୍କୁ ଅନ୍ଧାରରେ ରହିବାକୁ ପଡ଼ୁଛି ।"

ଜେଲରେ ମାନସିକ ଉନ୍ନତି ଓ ଶାରୀରିକ ବିଶ୍ରାମ ପାଇଁ ଗୋପବନ୍ଧୁଙ୍କୁ ପ୍ରଚୁର ଅବକାଶ ମିଳିଲା । ସେ ନିଜର ସମସ୍ତ ସମୟ ପଢ଼ାଶୁଣା ଓ ଲେଖାଲେଖିରେ ନିୟୋଜିତ କରିଥିଲେ ।

ରାଜନୈତିକ ବନ୍ଦୀ ଥିବାରୁ ଖାଦ୍ୟପେୟରେ ଏତେଟା ଅସୁବିଧା ନଥିଲା । କ୍ଲାନ୍ତସ୍ଥାନ ଭାବରେ ବନ୍ୟା ମଡ଼କ ବେଳେ ବୁଲି ବୁଲି ଓ ଖାଇବା ପିଇବାରେ ଅନିୟମିତ ରହି ସେ ଅର୍ଶ ବେମାର ଭୋଗୁଥିଲେ । ସେଥିରେ ତାଙ୍କୁ ବଡ଼ ଯନ୍ତ୍ରଣା ହେଉଥିଲା । ଏଠାରେ କିନ୍ତୁ ସେ ବେମାର ଅନେକ ପରିମାଣରେ ଉପଶମିତ ହୋଇଥିଲା । ସ୍ୱାସ୍ଥ୍ୟରେ ମଧ୍ୟ ସାମାନ୍ୟ ଉନ୍ନତି ଘଟିଲା । ଏପରିକି ଜେଲମୁକ୍ତ ବେଳକୁ ତାଙ୍କ ଓଜନ ୭ ପାଉଣ୍ଡ ବଢ଼ି ଯାଇଥିଲା ।

## ଦୁଇଟି ପ୍ରଶ୍ନ

ହଜାରିବାଗ ଜେଲର ରୁଦ୍ଧ ନିର୍ଦ୍ଦିଷ୍ଟ ପ୍ରାଚୀର ମଧ୍ୟରେ ପରସ୍ପରକୁ ବୁଝିବାକୁ ଓ ଜାଣିବାକୁ ଓଡ଼ିଶାର ଏଇ ତରୁଣ ଓ ପ୍ରବୀଣ ନେତାମାନଙ୍କୁ ଅନେକ ସୁଯୋଗ ମିଳିଥିଲା । ଗ୍ରୀଷ୍ମକାଳର ଏକ ବିଷଣ୍ଣ ଅପରାହ୍ଣରେ ତରୁଣତମ ରାଜନୈତିକ ବନ୍ଦୀ ଭଗୀରଥି ବାବୁ ପଣ୍ଡିତ ଗୋପବନ୍ଧୁଙ୍କୁ ଦୁଇଟି ପ୍ରଶ୍ନ ପଚାରି ନିଜ ମନ ଓ ହୃଦୟକୁ ସ୍ୱଚ୍ଛ କରିଥିଲେ । ପଣ୍ଡିତ ଗୋପବନ୍ଧୁ—ସେତେବେଳେ ଓଡ଼ିଶା ରାଜନୈତିକ ଆକାଶର ଧ୍ରୁବତାରା । ସମଗ୍ର ଓଡ଼ିଶା ତାଙ୍କ କାରାମୁକ୍ତିକୁ ଅପେକ୍ଷା କରି ରହିଥିଲା । ସେ କିନ୍ତୁ ନିର୍ବିକାର ଓ ନିର୍ଲିପ୍ତ ଭାବରେ କାରାଗାରର ସମସ୍ତ କଷ୍ଟକୁ ସହି ନେଉଥିଲେ । ମାନସିକ ଓ ଆଧ୍ୟାତ୍ମିକ ଉନ୍ନତି ପାଇଁ ଲେଖାଲେଖିରେ ସମ୍ପୂର୍ଣ୍ଣ ଆତ୍ମନିବେଶ କରିଥିଲେ ।

ଭଗୁବାବୁ ସୂଚନା ଦେଇ ବି ପ୍ରଶ୍ନ ଦୁଇଟି ପଚାରି ପାରୁନଥା'ନ୍ତି । ସେ ସ୍ୱାଭାବିକ ସଙ୍କୁଚିତ ହୋଇପଡ଼ୁଥିଲେ; କିନ୍ତୁ ଗୋପବନ୍ଧୁ ବାବୁ ତାଙ୍କୁ ଉତ୍ସାହିତ କରି କହିଲେ— "ଦେଖ, ଆମେ କ'ଣ ଆମର ଏକାନ୍ତ ବ୍ୟକ୍ତିଗତ ଆଲୋଚନା କରିପାରିବା ନାହିଁ ? ଆମେ ତା'ହେଲେ ରାଜନୈତିକ କାର୍ଯ୍ୟରେ ପରସ୍ପରର ମନ ଓ ବିଶ୍ୱାସଠାରୁ ଦୂରେଇ ଯାଇଛେ ।"

ଭଗୁବାବୁ ଏଥର ନିର୍ବିଘ୍ନରେ ପ୍ରଥମ ପ୍ରଶ୍ନଟି ପଚାରିଲେ—"ଆପଣଙ୍କୁ କମ୍ୟୁନାଲ୍ ବୋଲି ଅନେକେ କହନ୍ତି—ଏହା କେତେ ଦୂର ସତ୍ୟ ?"

ଗୋପବନ୍ଧୁ ଟିକିଏ ହସିଲେ ଓ କହିଲେ—"ଦେଖ ଭଗୀରଥି, ମୋ ସମ୍ପର୍କରେ ତୁମେ, ହରେକୃଷ୍ଣ, ଯଦୁମଣି ଆଦି ଆସି ନଥିଲ । ଆସିଥିଲେ କର୍ଣ୍ଣ, ଗୋଦାବରୀଶ, ହରିହର ଇତ୍ୟାଦି; କିନ୍ତୁ ମୁଁ ତୁମମାନଙ୍କ ପାଇଁ ସବୁବେଳେ ଗର୍ବ କରେ । ତଟକା ବାହା ହୋଇଥିଲ । ଓକିଲାତି କରୁଥିଲ ; କିନ୍ତୁ ମୋ କଥାରେ ପଡ଼ି ଜେଲ ଆସିଲ । ତୁମମାନଙ୍କୁ ଆଗରୁ ମୁଁ ପାଇଥିଲେ ଆହୁରି ଆଗେଇ ଯାଇପାରିଥା'ନ୍ତି । ଏପରି କି ବ୍ରଜସୁନ୍ଦରଙ୍କ ସହିତ ମୋର ଗାଢ଼ ବନ୍ଧୁତା କଥା ଜାଣିଥିବ । ଘଟଣାଚକ୍ରରେ ମୁଁ ଯାହାକୁ ଯେଉଁଠି ବନ୍ଧୁଭାବରେ

ପାଇଛୁ ତାକୁ ନେଇ ଓଡ଼ିଶାର ଭବିଷ୍ୟତ ପରିକଳ୍ପନା କରିଛୁ । ଓଡ଼ିଶା ପାଇଁ ତା'ଠାରୁ ସାହାଯ୍ୟ ଲୋଡ଼ିଛୁ । ମୋ ଚିନ୍ତା ଓ ମନ କେବେ ମୋତେ ନିର୍ଦ୍ଦିଷ୍ଟ କୌଣସି ଗୋଷ୍ଠୀ ଭିତରେ ସଙ୍କୁଚିତ କରିନାହିଁ ।

ଭାଗୀରଥି ବାବୁ ଏଥର ଦ୍ୱିତୀୟ ପ୍ରଶ୍ନଟି ପଚାରିଲେ । ଏ ପ୍ରଶ୍ନ ପଚାରିବା ପାଇଁ ସେ ଯଥେଷ୍ଟ ସାହସ ସଞ୍ଚୟ କରିପାରିଥିଲେ । "ଆପଣଙ୍କ ସହିତ ଯେଉଁ ରମା ବାଳକ ଅଛି— ଲୋକେ ଏ ସମ୍ପର୍କରେ ଅନେକ କୁତ୍ସା କରନ୍ତି । ନାନା କୁକଥା କହନ୍ତି ।"

ଗୋପବନ୍ଧୁ ଏଥର ଗମ୍ଭୀର ହୋଇପଡ଼ିଲେ । ବଡ଼ କଷ୍ଟରେ ଉତ୍ତର ଦେଇ କହିଲେ— "ମୋ ଅନୁଭବର କଥା ମୁଁ କିପରି ବୁଝାଇପାରିବି ଭାଗୀରଥି ; ରମା ମୋର ଅତି ଯତ୍ନ ନିଏ, ମୋ ଦେହରେ ତେଲ ମାଲିସ କରିଦିଏ, ମୋ ଖାଇବା ଦ୍ରବ୍ୟ ତିଆରି କରାଇ ଦିଏ, ବଢ଼ି ମରୁଡ଼ିରେ ମୋ ବାରବୁଲା ଯାତ୍ରାରେ ସେ ଅବୋଲକରା ପରି ମୋ ପଛେ ପଛେ ଛାଇପରି ଲାଗିରହିଥାଏ । ଏପରିକି ମୁଁ ଯେଉଁ ଘରେ ଶୁଏ, ସେ ମଧ୍ୟ ସେଇ ଘରେ ଶୁଏ । ଏ ସବୁରୁ ଅନେକେ ଭିନ୍ନ କଥା ହୁଏତ ଭାବୁଥିବେ; କିନ୍ତୁ ଏ ବୟସରେ କ'ଣ ସେସବୁ ଦୁର୍ବଳତା ରହେ ? ଘରଣୀ ଓ ପୁଅ ମଲାପରେ ଦେଶକାମରେ ଲାଗି ମୁଁ ସେମାନଙ୍କୁ ମୁହୂର୍ତ୍ତେ ମନେପକେଇବାକୁ ବେଳ ପାଇନି । ସ୍ତ୍ରୀର ସ୍ମୃତିକୁ ଅପମାନ ହେବ ବୋଲି ବୟସ ଥାଇ ଥାଇ ଦ୍ୱିତୀୟ ବିବାହ ବି କରିନାହିଁ । ତେଣୁ ଦେହର ପ୍ରଶ୍ନ ଉଠୁଛି କେଉଁଠି ? ଦେଶର ଏ ଘୋର ଦୁର୍ଦ୍ଦିନରେ ଆମେ ରାଜନୀତିରେ ପଶିଥାଏଁ । ଦେହର ଭୋକକୁ ବଳିତା ପରି ଜାଳି ନିଃଶେଷ ନକଲେ ପବିତ୍ର ସ୍ୱାଧୀନତା ମିଳିପାରିବନି । ଆମର ସକଳ ଭଲମନ୍ଦ କାର୍ଯ୍ୟକୁ ଜଗନ୍ନାଥ ସାକ୍ଷୀ ଅଛନ୍ତି ।"

ଗୋପବନ୍ଧୁଙ୍କ ଚକ୍ଷୁ ଦ୍ୱୟ ଅମାନୁଷିକ ସ୍ପର୍ଦ୍ଧାରେ ଅଗ୍ନି ପରି ଦେଦୀପ୍ୟମାନ ହୋଇଉଠୁଥିଲା । ମୁହଁରେ ଏକ ଜିତେନ୍ଦ୍ରିୟ ସନ୍ନ୍ୟାସୀର ସଂସାରବିରାଗୀ ବିଶ୍ୱାସ ପୂରି ରହିଥିଲା । ତଥାପି କୋମଳ କଣ୍ଠରେ ପଚାରିଲେ— "ଆଚ୍ଛା, ଏ ବିଷୟରେ କିଏ ତୁମକୁ କହୁଥିଲା ?"

ଭୃଗୁବାବୁ ଉତ୍ତର ଦେଲେ— "ଏ କଥା ପ୍ରଚାରକ ଅନନ୍ତ ମିଶ୍ର କହୁଥିଲେ ।"

ତହୁଁ ଗୋପବନ୍ଧୁ କହିଲେ— "ହଁ ସେ କହିଥିବ । ନିଜ ଚରିତ୍ରର ଦୁଃସ୍ୱପ୍ନ ସେ ଅନେକଙ୍କ-ଠାରେ ହୁଏତ ଦେଖୁଥିବ ।"

ସେଦିନର ଆଲୋଚନା ସେତିକିରେ ରହିଲା । ଗୋପବନ୍ଧୁ ସନ୍ଧ୍ୟା ପ୍ରାର୍ଥନା ପାଇଁ ଶୌଚ ହେଲେ । ସେଦିନ ପ୍ରାର୍ଥନା ବେଳେ ତାଙ୍କ ଆଖିରୁ ଧାର ଧାର ଲୁହ ଗଡ଼ୁଥିବା ଭୃଗୁବାବୁ ଲକ୍ଷ୍ୟ କରିଥିଲେ ।

ତା' ପରଦିନ ପ୍ରତ୍ୟୁଷରେ ଗୋପବନ୍ଧୁ ଭୃଗୁବାବୁଙ୍କୁ ଅତି ଆନ୍ତରିକତାରେ କୁଣ୍ଢାଇ ପକାଇ କହିଲେ— "ପ୍ରକୃତରେ ତୁମ ସ୍ପଷ୍ଟବାଦିତାରେ ମୁଁ ବିସ୍ମିତ ହୋଇଛି । ତୁମ ପ୍ରତି ମୋର ଶ୍ରଦ୍ଧା ଅଧିକ ବଢ଼ିଯାଇଛି । ଏପରିକି ନିଜ ପୁଅକୁ ମଧ୍ୟ ମୁଁ ଏତେ ଆଦର କରିପାରି ନଥାନ୍ତି । ଏହିପରି ସ୍ପଷ୍ଟବାଦୀ ହୁଅ ।"

ଏ ଜୀବନୀର ଲେଖକ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ସମ୍ପର୍କରେ ବହୁ ପ୍ରଗଲ୍ଭ ବ୍ୟକ୍ତିଙ୍କଠାରୁ ବହୁ କୁତ୍ସିତ କଥା ଶୁଣିଅଛି । ସେଦିନ ଭାଗୁବାବୁଙ୍କ ସହିତ ତାଙ୍କ କଟକ ଘରେ ରହଣୀ । ତାଙ୍କଠାରୁ ମୁଁ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଜେଲ-ଜୀବନ ସମ୍ପର୍କୀୟ ବିବରଣୀ ସଂଗ୍ରହ କରୁଥିଲି । ଅଦ୍ୟାପି ପ୍ରକାଶିତ ଗୋପବନ୍ଧୁଙ୍କ ସମ୍ପର୍କୀୟ ସମସ୍ତ ପୁସ୍ତକରେ ଏ ବିବରଣୀ ଏକ ଅଜ୍ଞାତ ଅଧ୍ୟାୟ । କାରଣ ତାଙ୍କ ଜେଲ୍ ସାଥୀ ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଓ ଡାକ୍ତର ଏକ୍‌ରାମ ରସୁଲ ଇହଜଗତରୁ ବହୁଦିନୁ ବିଦାୟ ନେଇଛନ୍ତି । ତେଣୁ ଭାଗୁବାବୁଙ୍କ ସ୍ମୃତିକୁ ଏ ସମ୍ପର୍କରେ ମୁଁ ସବୁଠାରୁ ଅଧିକ ପ୍ରାମାଣିକଭାବରେ ଗ୍ରହଣ କରିବାକୁ ବାଧ୍ୟ ହୋଇଛି ।

ମୁଁ ଭାଗୁବାବୁଙ୍କୁ ପଚାରିଲି—"ଉତ୍କଳମଣି ଗୋପବନ୍ଧୁଙ୍କ ଉତ୍ତରରେ ଆପଣଙ୍କର ସମ୍ପୂର୍ଣ୍ଣ ହୃଦ୍‌ବୋଧ ହୋଇଅଛି ତ ?"

ସେ ତହୁଁ ଅତି ଗଦ୍‌ଗଦ ହୋଇ କହିଲେ—"ସେ ମହାତ୍ମା ଆଜି ନାହାନ୍ତି । ସେଇଥିି କେବଳ ମୋର ଉପଲବ୍ଧି ଅନୁଭବ କରିଥିବେ । ମୁଁ ତାଙ୍କୁ ଏ ପ୍ରଶ୍ନ ପଚାରି ଯେତିକି ଆଘାତ ଦେଇଛି ସେତିକି ଆଘାତ ନିଜ ହୃଦୟରେ ଅନୁଭବ କରିଛି । ଯାହାହେଉ ମୋ ଅନ୍ତର ସେହିଦିନଠାରୁ ଅତି ସ୍ୱଚ୍ଛ ହୋଇଯାଇଛି ।" ଏ ପୁସ୍ତକର ଦ୍ୱିତୀୟ ସଂସ୍କରଣ ବେଳକୁ ଭାଗୁବାବୁ ମଧ୍ୟ ଇହସଂସାରରୁ ବିଦାୟ ନେଇଗଲେଣି ।

## ଗୋପବନ୍ଧୁଙ୍କ ମୁକ୍ତି ଦାବୀ

୫ । ୩ । ୨୪ ତାରିଖରେ ବିହାର-ଓଡ଼ିଶା କାଉନ୍‌ସିଲ୍‌ରେ ରାଜନୈତିକ ବନ୍ଦୀମାନଙ୍କ କାରାମୁକ୍ତି ପାଇଁ ଆଲୋଚନା ହୋଇଥିଲା । ଓଡ଼ିଶାର ସଭ୍ୟମାନଙ୍କ ମଧ୍ୟରୁ ମଧୁବାବୁ, ଗୋଦାବରୀଶ ଓ ଜଗବନ୍ଧୁ ସିଂହ ରାଜନୈତିକ ବନ୍ଦୀମାନଙ୍କୁ ତୁରନ୍ତ ଖଲାସ କରାଯିବା ନିମନ୍ତେ ଖୁବ୍ ଉତ୍ତେଜନାପୂର୍ଣ୍ଣ ଭାଷଣ ଦେଇଥିଲେ । ବିଶେଷତଃ ଏମାନେ ସମସ୍ତେ ନିଜ ବକ୍ତୃତାରେ ଗୋପବନ୍ଧୁଙ୍କ ନାମ ବାରମ୍ବାର ଉଚ୍ଚାରଣ କରିଥିଲେ । ଏହାର ଉତ୍ତରରେ ସରକାରଙ୍କ ତରଫରୁ ହାମଣ୍ଡ୍ ସାହେବ ଅନ୍ୟାନ୍ୟ ବନ୍ଦୀମାନଙ୍କ ମଧ୍ୟରୁ ଗୋପବନ୍ଧୁଙ୍କ ଉପରେ ଆପଣାର ବିଷ ବହୁତ ଢାଳି ହୋଇଥିଲେ । ସେ ଆସେମ୍ବ୍ଲିରେ ଥଟ୍ଟା କରି କହିଲେ, "ସେ କନେଷ୍ଟବଳ ବିଚରା ଅହିଂସାର ପୁରୋହିତ (ଗୋପବନ୍ଧୁ ବାବୁ)ଙ୍କ ପାଖରେ ପହଞ୍ଚିଲା ପରେ କ'ଣ ହେଲା ? ବଳପୂର୍ବକ ତା' ଦେହରୁ ପୋଲିସ୍ ପୋଷାକ ଛଡ଼ାଇନେଇ ତାକୁ ଖଦଡ଼ ପିନ୍ଧିବାକୁ ବାଧ୍ୟ କରାଗଲା ।" ଏହି ଘଟଣାଟି ଉଲ୍ଲେଖ କରି ମି. ହାମଣ୍ଡ ଗୋପବନ୍ଧୁ ବାବୁଙ୍କୁ ବଡ଼ ଖରାପ ଲୋକ ବୋଲି ଭର୍ତ୍ସନା କରିଥିଲେ; କିନ୍ତୁ ଓଡ଼ିଶା ସଭ୍ୟମାନେ ଏ କଥାର ପ୍ରତିବାଦ ନକରିବା ବଡ଼ ଆଶ୍ଚର୍ଯ୍ୟର ବିଷୟ ଥିଲା ।

୧୯୨୧ ମସିହା ଅସହଯୋଗ ଆନ୍ଦୋଳନ କାଳରେ ଜଣେ କନେଷ୍ଟବଳଙ୍କୁ ମାରି

ମାଣ ମୁମୂର୍ଷୁ ଅବସ୍ଥାରେ ଦଳେ ଉତ୍ୟକ୍ତ ଲୋକ ସ୍ୱରାଜ୍ୟ ଆଶ୍ରମକୁ ଘେନି ଆସିଥିଲେ । ତା' ଦେହ ଓ ପୋଷାକ ଝାଳରେ ବୁଡ଼ିଯାଇଥିଲା । ମାଡ଼ରେ ଦେହ ଫାଟି ଯାଇ ସ୍ଥାନେ ସ୍ଥାନେ ରକ୍ତ ବୋହୁଥିଲା । ଗୋପବନ୍ଧୁ ବାବୁ ସେଦିନ ସ୍ୱରାଜ୍ୟ ଆଶ୍ରମରେ ଥିଲେ । ଏ ଘଟଣା ଦେଖି ସେ ବଡ଼ ବିବ୍ରତ ହୋଇପଡ଼ିଲେ । ଉପସ୍ଥିତ କର୍ତ୍ତବ୍ୟରେ ସେ ଲୋକଟିର ସେବା ଶୁଶ୍ରୂଷା ଆରମ୍ଭ କରିଦେଲେ । ତା'ର ଓଦା ପୋଷାକ ଦେହରୁ କାଢ଼ି ଦିଆଗଲା । ମାତ୍ର ତା'ପାଖରେ ଲୁଗା ନଥିଲା । ଗୋପବନ୍ଧୁ ବାବୁ ତୁରନ୍ତ ଆଶ୍ରମରୁ ଖଣ୍ଡେ ଖଦଡ଼ ଲୁଗା ଆଣି ତାକୁ ପିନ୍ଧିବାକୁ ଦେଲେ ଏବଂ ଆଶ୍ରମ ଭିତରେ ତାକୁ ରଖାଇ ତା'ର ସେବା କରାଇଥିଲେ; କିନ୍ତୁ ଗୋପବନ୍ଧୁଙ୍କ ସାଧୁ ଉଦ୍ଦେଶ୍ୟ ହାମଣ୍ଡ ସାହେବଙ୍କ ବିଚାରରେ ଏକ ଅସ୍ୱାଭାବିକ ଭିନ୍ନ ରୂପ ଧରିଥିଲା ।

ଏଥିରେ 'ସମାଜ'ର ତତ୍‌କାଳୀନ ସମ୍ପାଦକ ଆଚାର୍ଯ୍ୟ ହରିହର ବଡ଼ ଦୁଃଖିତ ହୋଇ ଆସେମ୍ବ୍ଲି ସଭ୍ୟଙ୍କ ଏ ଉଦାସୀନ ଆଚରଣ ସମ୍ବନ୍ଧେ ଏକ ଅଗ୍ରଲେଖା ପ୍ରକାଶ କରିଥିଲେ । ତାଙ୍କ ଲେଖାର ସାରମର୍ମ ଥିଲା—"ସତ୍ୟାଗ୍ରହୀ ଗୋପବନ୍ଧୁ ଦାସ ଜେଲ ପାଇଁ ଭୀତ ନୁହନ୍ତି । ସେ କାଉନ୍‌ସିଲ ବା ଇଂରେଜ ହାକିମମାନଙ୍କ ଅନୁଗ୍ରହ ଓ ଅନୁକମ୍ପାରେ ଜେଲ ମୁକ୍ତ ଚାହାନ୍ତି ନାହିଁ । ତେଣୁ ଆସେମ୍ବ୍ଲିରେ ଏପରି ପ୍ରଶ୍ନ ତାଙ୍କ ବ୍ୟକ୍ତିତ୍ୱ ପ୍ରତି ଘୋର ଅସମ୍ମାନ ଓ ଆତ୍ମା ପ୍ରତି ଚରମ ଅବମାନନା । ଏ ସଂକୀର୍ଣ୍ଣମନା ସରକାରର ଦୟା ମଧ୍ୟ ନିଗ୍ରହ ପରି ବିଷାକ୍ତ ଓ ଭୟଙ୍କର । ଏ କଥା ସଭ୍ୟମାନେ ବୁଝିବା ଉଚିତ ଥିଲା ।

ପୁନଶ୍ଚ କଣିକା ମକଦ୍ଦମାରେ ହାଇକୋର୍ଟ ବିଚାରକୁ ଅବଜ୍ଞା କରି ଯେଉଁ ସାହେବ ଗୋପବନ୍ଧୁ ବାବୁଙ୍କୁ ନିନ୍ଦା କଲେ, ବେଗୁନିଆ ପୋଲିସ କେସ୍‌ରେ ସେହି ହାଇକୋର୍ଟ ନଜିର ଥୋଇ ସେ ଗୋପବନ୍ଧୁ ବାବୁଙ୍କୁ ତିରସ୍କାର କରିଦେଲେ ବିହାରର ଅନ୍ୟତମ ସଭ୍ୟ ବାବୁ ରାମେଶ୍ୱର ପ୍ରସାଦ ସିଂହ ଆପତ୍ତି କରିଉଠିଥିଲେ, କିନ୍ତୁ ତାଙ୍କ ଆପତ୍ତି ସହିତ ଜଗବନ୍ଧୁ ବାବୁ ଓ ଗୋଦାବରୀଶ ବାବୁ ସ୍ୱର ନ ମିଳାଇ ନୀରବ ରହିବା ଅସଙ୍ଗତ ହେଲା ।"

## କାରାମୁକ୍ତ ଓ 'ଉତ୍କଳମଣି' ଉପାଧି

ପଣ୍ଡିତ ଗୋପବନ୍ଧୁ ଓ ଭଗୀରଥି ବାବୁ ୨୬ । ୬ । ୨୪ ତାରିଖ ସକାଳ ୮ ଘଣ୍ଟାରେ ହଜାରିବାଗ ଜେଲରୁ ଖଲାସ ହେଲେ । ତାଙ୍କୁ ପାଛୋଟି ଆଣିବାକୁ ଆଚାର୍ଯ୍ୟ ହରିହର ଓ ପ୍ରଚାରକ ଅନନ୍ତ ମିଶ୍ର ହଜାରିବାଗ ଜେଲ ଫାଟକରେ ପ୍ରତ୍ୟୁଷରୁ ଅପେକ୍ଷା କରିଥିଲେ । ମଧୁବାବୁ ଜେଲପାଖକୁ ଯାଇନପାରି ଦୁଃଖ ପ୍ରକାଶ ପୂର୍ବକ ଏମାନଙ୍କୁ ଅଭିନନ୍ଦନ ଜଣାଇ ପତ୍ର ଲେଖିଥିଲେ । ହଜାରିବାଗ ଜିଲ୍ଲାର କଂଗ୍ରେସ ସଭା ତରଫରୁ

ସ୍ୱେଚ୍ଛାସେବକମାନେ ଦୁଇଟି ମଟରକାର ସୁସଜ୍ଜିତ କରି ଜେଲ ଫାଟକ ପାଖରେ ଦୁଇ କଂଗ୍ରେସ ନେତାଙ୍କୁ ଅଭିନନ୍ଦନ ଜଣାଇଥିଲେ ଓ ପଟୁଆରରେ ରେଲ ଷ୍ଟେସନକୁ ନେଇ ଯାଇଥିଲେ । ୨୬ ତାରିଖ ସନ୍ଧ୍ୟାରେ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସହିତ ପୂର୍ବ ନିର୍ଦ୍ଧାରିତମତେ ଗୋପବନ୍ଧୁ ଖଡ଼ଗପୁର ଷ୍ଟେସନରେ ମିଳିତ ହୋଇଥିଲେ । ଉତ୍କଳ ପ୍ରଦେଶ କଂଗ୍ରେସ ସମ୍ମିଳନୀରେ ପୌରୋହିତ୍ୟ କରିବା ପାଇଁ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ସେଦିନ ଓଡ଼ିଶା ଅଭିମୁଖେ ଯାତ୍ରା କରୁଥିଲେ ।

ପ୍ରତି ଷ୍ଟେସନରେ ଗୋପବନ୍ଧୁଙ୍କୁ ଦେଖିବା ପାଇଁ ଜନତାର ପଟୁଆର ଅପେକ୍ଷା କରିଥାଏ । ଗାଡ଼ି ଷ୍ଟେସନରେ ଲାଗେ । ସେ ବସିଲା ସ୍ଥାନରୁ ଉଠି ଦୁଆର ମୁହଁକୁ ଆସନ୍ତି । ହସି ହସି ସମସ୍ତଙ୍କୁ ନମସ୍କାର କରନ୍ତି । ଉତ୍ସୁକ ଜନତା ତାଙ୍କ ଗଳାରେ ଫୁଲମାଳ ଲମ୍ବାଇ ଦେଇ ତାଙ୍କ ପଦ ସ୍ପର୍ଶ କରନ୍ତି । ଜନତାର କୋଳାହଳ ଓ ଜୟ ଜୟକାରରେ ଷ୍ଟେସନ ଉଚ୍ଛୁଳି ଉଠୁଥାଏ । ବାଲେଶ୍ୱର, ଭଦ୍ରଖ—ସେଠି ପୁଣି ଅଧିକ ଭିଡ଼ । ସତେ ଯେପରି ଭଦ୍ରଖ ହିଁ ତାଙ୍କ ଜେଲ ଯାତ୍ରାର କାରଣ । ଗାଡ଼ି ବେଶି ବେଳ ଅଟକିଲେ ଗୋପବନ୍ଧୁ ଓହ୍ଲାଇ ଆସନ୍ତି । ହସି ହସି ଚହ୍ଲା ଲୋକଙ୍କ ହାତ ଧରିପକାନ୍ତି ।

୨୭ ତାରିଖ ସକାଳ । କଟକ ଷ୍ଟେସନରେ ଗାଡ଼ି ଲାଗିଲା । ହଜାର ହଜାର ଲୋକଙ୍କ କୋଳାହଳରେ ପ୍ରଭାତର ଶାନ୍ତ ଆକାଶ ମୁଖରିତ ହୋଇଉଠିଥିଲା । ରାତି ପାହିବା ପୂର୍ବରୁ କାପ୍ଟେନ ଯଦୁମଣି ମଙ୍ଗରାଜ ୧୫୦ ଜଣ ସ୍ୱେଚ୍ଛାସେବକଙ୍କୁ ପ୍ୟାରେଡ୍ କରାଇ ସ୍ୱରାଜ୍ୟ ପତାକା ଧରି ଷ୍ଟେସନରେ ଅପେକ୍ଷା କରିଥିଲେ । ଅଭ୍ୟର୍ଥନା ସଭା ପକ୍ଷରୁ ସଭାପତି ଶ୍ରୀ ଗୋପବନ୍ଧୁ ଚୌଧୁରୀ, ସମ୍ପାଦକ ଶ୍ରୀ ମଧୁସୂଦନ ବରାଳ, ଗଣେଶ ଲାଲ ପଣ୍ଡିତ, ଭିକାରୀ ଚରଣ ପଟ୍ଟନାୟକ, ଗୋପାଳ ଚନ୍ଦ୍ର ପ୍ରହରାଜ, ସତ୍ୟନାରାୟଣ ସେନ, ଡାକ୍ତର ଏକରାମ ରସୁଲ, ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ମିଶ୍ର, ପଣ୍ଡିତ ନୀଳକଣ୍ଠ, କୃପାସିନ୍ଧୁ ଲଙ୍ଗରାଜ, ନବକିଶୋର ଦାସ, ନିରଞ୍ଜନ ପଟ୍ଟନାୟକ, ବାଞ୍ଛାନିଧି ମହାନ୍ତି, କଟକ ମ୍ୟୁନିସିପାଲିଟି ଭାଇସ୍-ଚେୟାରମ୍ୟାନ ଯାମିନୀକାନ୍ତ ବିଶ୍ୱାସ, 'ଅମୃତ ବଜାର ପତ୍ରିକା' ପ୍ରତିନିଧି ପୀୟୂଷକାନ୍ତି ଘୋଷ ଓ ମ୍ୟୁନିସିପାଲିଟିର ଅନେକ ସଦସ୍ୟ, ଅନେକ ବିଶିଷ୍ଟ କଂଗ୍ରେସ କର୍ମୀ, ସ୍କୁଲ କଲେଜର ବହୁ ଛାତ୍ର ଓ ସହରର ଜନସାଧାରଣ ସମସ୍ତେ ଏହି ପ୍ରିୟ ମଣିଷଟିର ପ୍ରତୀକ୍ଷାରେ ରହିଥିଲେ । ଗାଡ଼ି ପହଞ୍ଚିବା ମାତ୍ରେ ଜନତାର ଏଇ ପ୍ରଭାତ ପଟୁଆର ଉଲ୍ଲାସରେ ଧ୍ୱନି ଦେଲା—"ମହାତ୍ମା ଗାନ୍ଧି କି ଜୟ—ପଣ୍ଡିତ ଗୋପବନ୍ଧୁ ଦାସ କି ଜୟ" । ଗୋପବନ୍ଧୁ ଗାଡ଼ି ଦୁଆର ମୁହଁରେ ଥାଇ ସମସ୍ତଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ିଲେ । ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ୁଥାଏ—ସତେ ଯେପରି କେଉଁ ବିସ୍ମୃତ ଯୁଗରୁ ଏ ପ୍ରିୟ ମାଟିକୁ ସେ ହରାଇଥିଲେ—ଆଜି ତାକୁ ପୁଣି ଫେରିପାଇ ଆନନ୍ଦରେ ସେ ଆତ୍ମହରା । ଆଖି ଲୁହରେ ସ୍ମୃତିର ମାର୍ଜନା କରି ସେ ନିଜକୁ ଦରାଣ୍ଡୁଛନ୍ତି । ଘଣ୍ଟଆଡ଼ ଶଙ୍ଖ, ହୁଳହୁଳି ଓ ଜୟଗୋଳ । ଏ ଜାତିର ମହାପୁରୁଷଙ୍କୁ ପାଛୋଟି ଆଣିବାକୁ ସମଗ୍ର

ସହରର ଯେପରି ଉଦ୍‌ବୁଦ୍ଧ ହୋଇଉଠିଛି ।

ଅଭ୍ୟର୍ଥନା ସଭା ତରଫରୁ ତିନି ଜନନେତାଙ୍କୁ ଫୁଲମାଳ ଦିଆଗଲା । ଷ୍ଟେସନ୍‌ରେ ଦୁଇଟି ମଟରକାର ସଜ ହୋଇ ଥିଲା । ଗୋଟିକରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ଓ ଅନ୍ୟଟିରେ ଦୁଇ କାରାମୁକ୍ତ ନେତାଙ୍କୁ ବସାଇ ପଣ୍ଟୁଆର ଅଗେଇ ଚାଲିଲା । ସମସ୍ତଙ୍କ ଆଗରେ ସ୍ୱେଚ୍ଛାସେବକମାନେ ଦୁଇ ଧାଡ଼ି ହୋଇ ସ୍ୱରାଜ୍ୟ ପତାକା ଧରି ଜୟଧ୍ୱନିର ସହିତ ଆଗେଇ ଚାଲୁଥିଲେ । ସେମାନଙ୍କ ପଛକୁ ବ୍ୟାଣ୍ଡ୍ ବାଜା, ତା' ପଛକୁ ମଟରକାର, ଦୋଡ଼ାଗାଡ଼ି ଓ ଜନତା ଚାଲିଥିଲେ । ସହରର ପ୍ରଧାନ ରାସ୍ତାରେ ପଣ୍ଟୁଆର ଆଗେଇଗଲା । ବହୁ ସ୍ଥାନରେ ରାସ୍ତା ପାର୍ଶ୍ୱରେ ଦୋକାନଗୁଡ଼ିକ ଆମ୍ବ ଡାଳ ଓ ପତ୍ରର ତୋରଣରେ ସୁସଜ୍ଜିତ ହୋଇଥିଲା ଏବଂ ପୂର୍ଣ୍ଣକୁମ୍ଭ ବସାଯାଇଥିଲା ।

ତା' ପରଦିନ ଅପରାହ୍ନ ଚାରି ଘଟିକା । ମ୍ୟୁନିସିପାଲିଟି ହତାର ଏକ ସୁସଜ୍ଜିତ ମଣ୍ଡପରେ ଉତ୍କଳ ପ୍ରଦେଶ କଂଗ୍ରେସ ସମ୍ମିଳନୀର ଅଧିବେଶନ ଆରମ୍ଭ ହେଲା । ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ଓ ଗୋପବନ୍ଧୁ ଦିନ ୪ ଘଣ୍ଟା ୧୫ ମିନିଟରେ ସଭା ଗୃହରେ ପ୍ରବେଶ କଲେ । ସଭାରେ ପ୍ରାୟ ୧୨୦୦ ପ୍ରତିନିଧି ଓ ୨୦୦୦ ଦର୍ଶକ ଉପସ୍ଥିତ ଥିଲେ । ଭୂତପୂର୍ବ ମନ୍ତ୍ରୀ ମଧୁବାବୁ ପ୍ରଥମେ ଦର୍ଶକ ଭାବରେ ଏ ସମ୍ମିଳନୀରେ ଯୋଗ ଦେଇଥିଲେ ; କିନ୍ତୁ ପରେ ଜାତୀୟ କଂଗ୍ରେସର ଉଦ୍ଦେଶ୍ୟ ଗ୍ରହଣ କରି ସ୍ୱାକ୍ଷର ଦେଲାରୁ ସେ ପ୍ରତିନିଧିଭୁକ୍ତ ହୋଇଥିଲେ ।

ରାୟବାହାଦୁର ଜାନକୀନାଥ ବୋଷ, ଗଣେଶଲାଲ ପଣ୍ଡିତ, ବଙ୍ଗୀୟ ନାଟ୍ୟକାର ଦ୍ୱିଜେନ୍ଦ୍ରଲାଲ ରାୟଙ୍କ ପୁତ୍ର ସଙ୍ଗୀତଜ୍ଞ ଶ୍ରୀ ଦିଲୀପ କୁମାର ରାୟ, ଜମିଦାର ଜେ. ଏନ୍. ବୋଷ, ସୁଦାମଚରଣ ନାୟକ, ନିମାଇଁ ଚରଣ ମିତ୍ର, ବିଶ୍ୱନାଥ ଦାସ, ଶଶିଭୂଷଣ ରଥ, ଓକିଲ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ, ଗୋଦାବରୀଶ ମିଶ୍ର, ବ୍ରହ୍ମାନନ୍ଦ ମହାନ୍ତି ଓ ସରକାରଙ୍କ ମନୋନୀତ ସଭ୍ୟ ଶ୍ରୀ ବିଶ୍ୱନାଥ କର ମଧ୍ୟ ଏ ସମ୍ମିଳନୀରେ ଦର୍ଶକ ଭାବରେ ଯୋଗ ଦେଇଥିଲେ । ଶ୍ରୀ ଦିଲୀପ କୁମାର ରାୟ ବଙ୍ଗଳାରେ ଗୋଟିଏ ସଙ୍ଗୀତ ବୋଲି ସମସ୍ତଙ୍କୁ ମୁଗ୍ଧ କରି ଦେଇଥିଲେ । ଭଦ୍ରଖରୁ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସଙ୍ଗୀତ ଦଳର ଗୋଟିଏ ପିଲା ଅତି ସରସ ସଙ୍ଗୀତଟିଏ ପରିବେଷଣ କରିଥିଲା ।

ଏହି ସଭାରେ ସଭାପତି ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ତାଙ୍କ ଭାଷଣ ପ୍ରସଙ୍ଗରେ କହିଥିଲେ— "ଆପଣଙ୍କ ଉତ୍କଳ ଦେଶ ଉତ୍କଳମଣି ଗୋପବନ୍ଧୁଙ୍କୁ ପାଇ ଧନ୍ୟ । ସେହି ଉତ୍କଳମଣି ଗୋପବନ୍ଧୁ ଆପଣଙ୍କ ଦେଶରେ ସ୍ୱାଧୀନତାର ଯେଉଁ ଅଗ୍ନି ଶିଖା ଜାଳି ଦେଇଛନ୍ତି, ତାହା କଦାପି ନିର୍ବାପିତ ହେବ ନାହିଁ । ଓଡ଼ିଶାରେ ଆଜି ଯେ ଏ ଜାଗରଣ ଓ ଉତ୍ସାହ ଆସିଛି ତାହା ଗୋପବନ୍ଧୁଙ୍କ ଯୋଗୁ ସମ୍ଭବ ହୋଇଛି । ଏହିପରି ଯଦି ଶହେ ଜଣ ଗୋପବନ୍ଧୁ ଏ ଦେଶରେ ଜନ୍ମ ନିଅନ୍ତି ତେବେ ଇଂରେଜ ସରକାରଙ୍କ ଅବସ୍ଥା ଭିନ୍ନ ରୂପ ଧାରଣ କରନ୍ତା । ଗୋପବନ୍ଧୁ ବାସ୍ତବିକ ଉତ୍କଳର ମଣି, ଉତ୍କଳର ଉଜ୍ଜ୍ୱଳ ରତ୍ନ । ସେହି ଉଜ୍ଜ୍ୱଳ ମଣି ଓ

ତାଙ୍କ ସାଥୀ ଭାଗୀରଥି ଆଜ ଜେଲଖାନାରୁ ଫେର ଆସିଛନ୍ତି । ଏମାନେ ଆପଣମାନଙ୍କୁ ଏଣିକି ଠିକଣା ବାଟରେ ଆଗେଇନେବେ । ମୋର ଆଶା, ଦେଶର କାର୍ଯ୍ୟ ପୁଣି ଦ୍ରୁତ ଗତରେ ଚଳାଇବା ପାଇଁ ସେମାନେ ଯେଉଁ ସୁଯୋଗ ପାଇଛନ୍ତି, ସେହି ସୁଯୋଗର ଉପଯୁକ୍ତ ବ୍ୟବହାର କର ଦେଶରେ ସେମାନେ ଏକ ନବୀନ ଉତ୍ସାହର ସ୍ରୋତ ଆଣାଇବେ ଏବଂ ଗଲ କେତେ ମାସ ଧର ଦେଶରେ ଯେଉଁ ନୈରାଶ୍ୟ ଓ ନିସ୍ତେଜ ଭାବ ଦେଖା ଦେଇଛି ତାହା ବଦଳାଇ ଦେଇ ଦେଶର ମୁଖ ଉଜ୍ଜ୍ୱଳ କରିବେ ।"

ଏହି ସଭାରେ ମଧୁବାବୁ ଏକ ପ୍ରସ୍ତାବ ଆଗତ କର କହିଲେ—"ଜେଲରୁ ପ୍ରତ୍ୟାଗତ ପଣ୍ଡିତ ଗୋପବନ୍ଧୁ ଓ ଭାଗୀରଥିଙ୍କୁ ସାଦରେ ଅଭ୍ୟର୍ଥନା କର ଦେଶର କାର୍ଯ୍ୟକ୍ଷେତ୍ରକୁ ଏହି ସମ୍ମିଳନୀ ଆହ୍ୱାନ କରୁଅଛି ଏବଂ ଆଶା କରୁଅଛି ଯେ ସେମାନେ ଏଣିକି ପ୍ରଦେଶ କଂଗ୍ରେସ ଅନୁଷ୍ଠାନରେ ନୂତନ ଜୀବନ ସଞ୍ଚାର କରିବେ ।" ମଧୁବାବୁ ତାଙ୍କ ବକ୍ତବ୍ୟରେ ଶେଷକୁ କହିଲେ, "ତୁମ୍ଭମାନଙ୍କୁ ଯେ ଯାହା କହୁ, ଏ ବୁଢ଼ା ଯେତେବେଳେ ଉଭେଇଯିବ, ନିଶ୍ଚୟ ଜାଣିଥାଅ ଯେ ଇତିହାସ ଲେଖକ ତୁମ ଦୁହିଁଙ୍କ ନାମ ଇତିହାସ ବକ୍ଷରେ ଚିରଦିନ ପାଇଁ ଲେଖିରଖିବେ ।"

ଶ୍ରୀଯୁକ୍ତ ସତ୍ୟନାରାୟଣ ସେନ ମଧୁବାବୁଙ୍କ ନିର୍ଦ୍ଧାରଣକୁ ସମର୍ଥନ କର କହିଲେ—"ସଭାପତି ଆଚାର୍ଯ୍ୟଦେବ ପଣ୍ଡିତ ଗୋପବନ୍ଧୁ ଦାସଙ୍କୁ 'ଉତ୍କଳମଣି' ବୋଲି କହିଛନ୍ତି । ସେ ପ୍ରକୃତରେ ଉତ୍କଳମଣି । ତାଙ୍କର ଲୋକପ୍ରୀତି ଅସୀମ । ୨୭ ତାରିଖ ସକାଳେ ରେଲଗାଡ଼ିରୁ ଓହ୍ଲାଇବା ମାତ୍ରେ ଡାକ୍ତର ଏକରାମ ରସୁଲଙ୍କୁ କୁଣ୍ଢାଇ ପକାଇ କାନ୍ଦି ପକାଇଲେ । "ଗରିବ ଉତ୍କଳବାସୀ କିପରି ଅଛନ୍ତି ?"—ଏହି ଆବେଗ ଜଡ଼ିତ ପ୍ରଶ୍ନରେ ତାଙ୍କ ଆଖିରୁ ଲୁହ ଗଡ଼ିପଡ଼ିଲା । ଆଜି ସେହି ଗୋପବନ୍ଧୁ ଓ ତାଙ୍କ ସହକର୍ମୀ ଭାଗୀରଥିଙ୍କୁ ଅଭିନନ୍ଦନ ଜଣାଇବା ପ୍ରସ୍ତାବକୁ ମୁଁ ଆନ୍ତରିକ ଅନୁମୋଦନ ଜଣାଉଛି ।"

ସର୍ବସମ୍ମତିକ୍ରମେ ଏ ନିର୍ଦ୍ଧାରଣ ଗୃହୀତ ହେଲା । ଏହା ପରଠାରୁ ପଣ୍ଡିତ ଗୋପବନ୍ଧୁ ଦାସ 'ଉତ୍କଳମଣି' ନାମରେ ଆଖ୍ୟାତ ହେଲେ ।

କିନ୍ତୁ ଏହି 'ଉପାଧି' ନେଇ ସତ୍ୟବାଦୀ ମହଲରେ ଟିକେ ନିରୁତ୍ସାହ ଦେଖାଦେଇଥିଲା । ନୀଳକଣ୍ଠ ଏ ବିଷୟରେ ସ୍ପଷ୍ଟ ଲେଖିଛନ୍ତି—"ପି. ସି. ରାୟ ସେଇ ସଭାରେ ଗୋପବନ୍ଧୁଙ୍କୁ 'ଉତ୍କଳମଣି' ବୋଲି ସମ୍ବୋଧନ କଲେ । ମତେ ସେତେବେଳେ ଏ 'ଉତ୍କଳମଣି' କଥାଟା ଭଲ ଲଗି ନଥିଲା । ମୁଁ ଗୋପବନ୍ଧୁ ବାବୁଙ୍କୁ କହିଲି—ଆପଣ ଏ ଉପାଧି ଗ୍ରହଣ କରନ୍ତୁ ନାହିଁ । ଅପେକ୍ଷା କରନ୍ତୁ । ସତ୍ୟବାଦୀକୁ ବହୁତ ବଡ଼ ବଡ଼ ଲୋକ ଆଗରୁ ଆସିଛନ୍ତି ଓ ଭବିଷ୍ୟତରେ ଆସିବେ ।" × × "ମୋତେ 'ଉତ୍କଳମଣି' ପଦଟା ଆଦୌ ଭଲ ଲାଗିନଥିଲା । ଯଥାର୍ଥରେ ମଧ୍ୟ ବଙ୍ଗଳାରେ 'ଦେଶବନ୍ଧୁ' 'ଦେଶପ୍ରିୟ', ମହାରାଷ୍ଟ୍ରରେ 'ଲୋକପ୍ରିୟ' ପ୍ରଭୃତି ଉପାଧିମାନଙ୍କ ପାଖେ ଆମ ଗୋପବନ୍ଧୁ ବାବୁଙ୍କର 'ଉତ୍କଳମଣି' ଉପାଧିଟି ମୋତେ ବଡ଼ ହାସ୍ୟବୋଧହେଲା ।"

ହୁଏତ ଏହାଦ୍ୱାରା ଗୋପବନ୍ଧୁଙ୍କ ପ୍ରଖ୍ୟାତିକୁ ଓଡ଼ିଶା ମଧ୍ୟରେ ସୀମିତ କରି ଦିଆଗଲା; କିନ୍ତୁ ନିରୁପାଧି ଯାହାର କାମ୍ୟ, ଉପାଧି ଯାହା ପାଇଁ ମାତ୍ର ଏକ ବ୍ୟାଜ୍, ତା ପାଖରେ ଏହି ଉପାଧିର ଅଧିକ କିଛି କାଗଜିକ ମୂଲ୍ୟ ନଥିଲା । ଉପାଧିଠାରୁ ସେ ଅନ୍ତର ଉଚ୍ଚରେ । ସଂସାରର ସମସ୍ତ ବନ୍ଧନ ଭିତରେ ସେ ଥିଲେ ବୈରାଗୀ । ସ୍ଥିତିର ସୀମା ଭିତରେ ସେ ଥିଲେ ପରିବ୍ୟାପ୍ତ । ତାଙ୍କ ପ୍ରାଣରେ ଏ ଉପାଧି ଉଲ୍ଲାସ ଆଣି ନଥିଲା, କାରଣ ତାଙ୍କୁ ହାତ ଠାରି ଏ ଜାତିର ଅଗଣିତ ଅନାମିକ ମଣିଷ ଡାକୁଥିଲେ । ନାମହୀନ, ଗୋତ୍ରହୀନ କାଙ୍ଗାଳମାନେ ତାଙ୍କୁ ଲୋଡ଼ୁଥିଲେ । ସେ କାକୁସ୍ଥ ପାଖରେ ଏଇ ନୂତନ ପଦବୀର ପତାକା ତାଙ୍କ ଆଖିକୁ କେତେ ମଳିନ ଦିଶୁଥିଲା ସତେ !

## ଦେଶ ମିଶ୍ରଣ ପ୍ରସ୍ତାବ

ଉତ୍କଳ ପ୍ରଦେଶ କଂଗ୍ରେସ ସମ୍ମିଳନୀ ୨୮ ଓ ୨୯ ତାରିଖ ଦୁଇ ଦିନ ଧରି ଅନୁଷ୍ଠିତ ହୋଇଥିଲା । ଦ୍ୱିତୀୟ ଦିନର ପ୍ରସ୍ତାବରେ ଭାଷାସୂତ୍ରରେ ପ୍ରଦେଶ ଗଠନ ଓ ବିଚ୍ଛିନ୍ନ ଉତ୍କଳ ପ୍ରଦେଶର ଏକୀକରଣ ନିମନ୍ତେ ଏକ ସ୍ଥାୟୀ କମିଟି ଉତ୍କଳମଣି ଗୋପବନ୍ଧୁ, ପ୍ରଚାରକ ଅନନ୍ତ ମିଶ୍ର, ନିରଞ୍ଜନ ପଟ୍ଟନାୟକ ଓ ନନ୍ଦକିଶୋର ଦାସଙ୍କୁ ନେଇ ଗଠିତ ହେଲା ଓ ଗୋପବନ୍ଧୁ ଏଥିରେ ସଭାପତି ରହିଲେ । ମଠବାଡ଼ି ଓ ଦେବୋତ୍ତର ସାଧାରଣ ଅନୁଷ୍ଠାନ-ମାନଙ୍କର ଅବସ୍ଥା ସମ୍ବନ୍ଧେ ଅନୁସନ୍ଧାନ କରି ସେମାନଙ୍କ ସୁପରିଚାଳନା ବିଷୟରେ ପ୍ରାଦେଶିକ କଂଗ୍ରେସ କମିଟିକୁ ଏକ ରିପୋର୍ଟ ଦେବାପାଇଁ ଏକ କମିଟି ଗଠିତ ହୋଇଥିଲା । ଏଥିରେ ମଧ୍ୟ ଉତ୍କଳମଣି ଗୋପବନ୍ଧୁ ଦାସ ସଭାପତି ମନୋନୀତ ହୋଇଥିଲେ । ପଣ୍ଡିତ ନୀଳକଣ୍ଠ ସମ୍ପାଦକ ଦାୟିତ୍ୱ ନେଇଥିଲେ । ସଭ୍ୟ ରହିଥିଲେ ଶ୍ରୀ ହରେକୃଷ୍ଣ ମହତାବ ଓ ଶ୍ରୀ ଗୋପବନ୍ଧୁ ଚୌଧୁରୀ ।

ଦେଶମିଶ୍ରଣ ପ୍ରସ୍ତାବ ଗୋପବନ୍ଧୁ ଆଗତ କରି ନାନା କଥା ମଧ୍ୟରେ କହିଲେ—"୨୫ ବର୍ଷ ଧରି ଯେଉଁ ଦୁଃଖର କାହାଣୀ ଆମେମାନେ ଶୁଣି ଆସୁଥାଇଁ ଆଜ ଜେଲଖାନାରୁ ଆସିଲା ପରେ ସେହି ଦୁଃଖ କଥା ଶୁଣି ହେବା ପାଇଁ ମୋ ଭାଗ୍ୟରେ ଲେଖାଅଛି । ଓଡ଼ିଶାର ଦୁର୍ଦ୍ଦଶା ଅନ୍ୟ କୌଣସି ଦେଶରେ ନାହିଁ । ଓଡ଼ିଶା ମିଣ୍ଡରେ ଜୀବନ ନାହିଁ । ଓଡ଼ିଶା ଦେଶ ଖଣ୍ଡ ଖଣ୍ଡ ହୋଇ ହଣା ହୋଇଛି । ଓଡ଼ିଶା କଥା ବିଚାରିଲେ ହୃଦ ଫାଟିଯାଏ । ଗଞ୍ଜାମ ଭାଇମାନେ ଓଡ଼ିଶା ସଙ୍ଗେ ମିଶିବାକୁ କେତେ ବ୍ୟାକୁଳ ତା' ଆପଣମାନେ ଜାଣନ୍ତି । ମଧ୍ୟପ୍ରଦେଶର ଫୁଲଝର ଅଞ୍ଚଳ କଥା କ'ଣ କହିବି ? ମୋର ମନେଅଛି—ମୁଁ ଯେତେବେଳେ ସେଠାକୁ ପ୍ରଥମ ହୋଇ ଯାଏ ସେଠାରେ ଓଡ଼ିଆ ଲୋକେ ମନେକଲେ ମୁଁ ଯେପରି ସେମାନଙ୍କର ମାଆ ବାପ ହୋଇ ଯାଉଛି—ସେମାନଙ୍କୁ ରକ୍ଷା କରିବି । ଶ୍ରେଷ୍ଠ ଶ୍ରେଷ୍ଠ ଓଡ଼ିଆ

ପିଲଗୁଡ଼ିକ ଆସି ମୋତେ ପଚାରିଲେ—"ବାବୁ, ଆମର କ'ଣ ଗୋଟିଏ ଓଡ଼ିଆ ସ୍କୁଲ ହେବ ।" ମୁଁ କହିଲି—"ହଁ ହେବ ।" ଆହା ସେହି ପିଲଗୁଡ଼ିକଙ୍କ କଥା ଏବେ ମନେ ପଡ଼ୁଛି । ସେମାନଙ୍କ ମୁହଁ ଏବେ ଦିଶି ଯାଉଛି । ସିଂହଭୂମ, ମେଦିନୀପୁର କଥା କ'ଣ କହିବି । ଓଡ଼ିଆମାନଙ୍କର ପରସ୍ପରର ଏ ବିରହ ଦୁଃଖଠାରୁ ବଳି ଦୁଃଖ ଆଉ ନାହିଁ । ମୁଁ ଦୁଇବର୍ଷ ଜେଲଖାନାରେ ରହିଲି । ସେଠାରେ ମୋର କିଛି ଅସୁବିଧା ହୋଇନାହିଁ । ପ୍ରିୟଜନମାନଙ୍କଠାରୁ ବିଚ୍ଛେଦ ଦୁଃଖ ହିଁ କେବଳ ସେଠାରେ ଦୁଃଖ । କବି କହିଛନ୍ତି—

"ସଖି ରୁ କି ଅନୁଭବା ନୋହୁ,
ସ୍ନେହଜାତ ସୁଖ ତା' ବିଚ୍ଛେଦ ଦୁଃଖ
ଯେ ଜାଣେ ସେ ଆସି କହୁ ।"

ମୁଁ ଏ ବିରହ ଦୁଃଖ ଜେଲଖାନାରେ ଅନୁଭବ କରିଛି; ତେଣୁ ମୁଁ ଏହାର ପୀଡ଼ା ବୁଝିଛି । ମୁଁ ଖଲାସ ହେବା ପୂର୍ବରୁ କେତେକ ସାହେବଙ୍କ ସାଙ୍ଗରେ ଯାଇ ଖାଇଥିଲି । ଖଲାସ ପୂର୍ବଦିନ ଜଣେ ସାହେବ କହିଲେ—"ତୁମେ ଖଲାସ ହେବ, ବଡ଼ ଆନନ୍ଦ ଲଗୁଥିବ ?' ମୁଁ କହିଲି—"ମୁଁ ତ ସାନ ଜେଲଖାନାରୁ ବଡ଼ ଜେଲଖାନାକୁ ଯାଉଛି । ମୋର ଆନନ୍ଦ ଆଉ କ'ଣ ? ଓଡ଼ିଶା ଲୋକଙ୍କ ଦୁଃଖ ତ ଟିକେ ମାତ୍ର କମିନାହିଁ, ବରଂ ବଢ଼ିଛି । ମୁଁ ଯାଇ କି ଆନନ୍ଦ ପାଇବି ? ମୁଁ ବେଳେ ବେଳେ ଭାବୁଥିଲି—ଏ ଜେଲଖାନାରେ ହେଲେ ମୋର ସମାଧି ହୁଅନ୍ତା । ମୁଁ ଆଉ ଫେରନ୍ତି ନାହିଁ । ଓଡ଼ିଶା ପ୍ରତି ସରକାରର ଯେ ଅବମାନନା ଓ ଅତ୍ୟାଚାର, ସେଥିରେ ଯେ କୌଣସି ବୀର ଜାତିର ପ୍ରାଣ ଯାଆନ୍ତା ପଛକେ ସେ ତା'ସହନ୍ତା ନାହିଁ । ମୁଁ କଟକର ଉତ୍କଳ ସମ୍ମିଳନୀରେ କହୁଥିଲି—ସରକାର ଓଡ଼ିଶାବାସୀଙ୍କ ଏ ଆପତ୍ତିର ସୁବିଚାର ନକଲେ ଅସହଯୋଗ କରିବାକୁ ହେବ । କଂଗ୍ରେସ ଅସହଯୋଗ ନକରିଥିଲେ ମୁଁ ଅବଶ୍ୟ ତାହା କରିଥା'ନ୍ତି । କଂଗ୍ରେସ ଅସହଯୋଗ ଆମ୍ଭମାନଙ୍କ ପକ୍ଷେ ଭଲ ହୋଇଛି । କଂଗ୍ରେସରେ ଯୋଗଦେଇ ଆମ୍ଭମାନଙ୍କର ମଙ୍ଗଳ ହୋଇଛି । କଂଗ୍ରେସ ଓଡ଼ିଆମାନଙ୍କ ପାଇଁ ନୂତନ ପ୍ରଦେଶ ଘୋଷଣା କରିଛନ୍ତି । ଓଡ଼ିଆମାନଙ୍କର ଦେଶ ମିଶ୍ରଣ ସେ ସ୍ୱୀକାର କରିଛନ୍ତି । କେବଳ ସୀମା ନିର୍ଦ୍ଦେଶ ବାକି ଅଛି; ତେଣୁ ଆମ୍ଭେମାନେ ଏ ନିର୍ଦ୍ଧାରଣଦ୍ୱାରା ମହାତ୍ମା ଗାନ୍ଧିଙ୍କୁ ଏ ସୀମା ନିର୍ଦ୍ଦେଶ କରିଦେବା ପାଇଁ ଅନୁରୋଧ କରୁଅଛୁଁ ।"

## ସଭା ଓ ସମ୍ବର୍ଦ୍ଧନା

ଗୋପବନ୍ଧୁଙ୍କ ଜେଲ ମୁକ୍ତ ଓ ସତ୍ୟବାଦୀକୁ ଆଗମନ ଉପଲକ୍ଷେ ୨ । ୭ । ୨୪ ତାରିଖରେ ସତ୍ୟବାଦୀର ଦଶ ମାଇଲ ଦୂର ଓ ଆଖପାଖର ସହସ୍ରାଧିକ ଲୋକେ ତାଙ୍କୁ

ଅଭ୍ୟର୍ଥନା ଜଣାଇବାପାଇଁ ରେଲ ଷ୍ଟେସନରେ ଏକତ୍ରିତ ହେଲେ । ବିଭିନ୍ନ ଗ୍ରାମର ସଙ୍କୀର୍ତ୍ତନ ଦଳ ସହିତ ଗ୍ରାମବାସୀମାନେ ଦିନ ୩ଟା ସୁଦ୍ଧା ସାକ୍ଷୀଗୋପାଳ ଷ୍ଟେସନରେ ରୁଣ୍ଡ ହେଲେ । ଦୋକାନ, ବଜାର, ହାଟ, ବାଟ ସବୁ ତାଳପତ୍ରରେ ସୁସଜ୍ଜିତ ହୋଇଥିଲା । ସେଦିନ ଗୁଣ୍ଡିଗ୍ଭ ଯାହା ଯୋଗୁ ରେଲ ବହୁ ବିଳମ୍ବରେ ରାତି ୯ଟାରେ ଆସି ପହଞ୍ଚିଲା । ଦୂର ଗ୍ରାମର ବହୁଲୋକ ନିରାଶ ହୋଇ ସେତେବେଳକୁ ଫେରି ଯାଇଥିଲେ । ତଥାପି ପ୍ରାୟ ୮ ଦଳ ସଙ୍କୀର୍ତ୍ତନ ସହ ପ୍ରାୟ ୧୨୦୦ ଲୋକ ତାଙ୍କ ଆଗମନକୁ ଉତ୍ସୁକ ହୋଇ ଚାହିଁ ରହିଥିଲେ । ସେ ପହଞ୍ଚିବା ମାତ୍ରେ ଜୟଧ୍ୱନିରେ ଆକାଶ ମୁଖରିତ ହେଲା । ଗ୍ୟାସ୍ ଆଲୁଅ, ଦିହୁଡ଼ି ଓ ମଶାଲ ଜାଲି ଏକ ପଟୁଆରରେ ଗୋପବନ୍ଧୁଙ୍କୁ ସାକ୍ଷୀଗୋପାଳ ମନ୍ଦିର ଯାଏ ଅଣାଗଲା । ଉତ୍କଳମଣି ଗୋପବନ୍ଧୁ ପ୍ରଥମେ ଦିଅଁ ଦର୍ଶନ କରି ଉପସ୍ଥିତ ଜନତାକୁ ଉଦ୍‌ବୋଧନ ଦେଇ କହିଲେ—"ମୋର ଧନ ନାହିଁ, ବିଭବ ନାହିଁ, କ୍ଷମତା ନାହିଁ । ଆପଣମାନଙ୍କ ସ୍ନେହ ମମତା ହିଁ ମୋର ସମ୍ବଳ । ଆପଣମାନଙ୍କ ବଳରେ ମୁଁ ବଳୀୟାନ ହୋଇ ସ୍ୱରାଜ୍ୟ ପାଇଁ ଯୁଦ୍ଧକ୍ଷେତ୍ରକୁ ବାହାରିଛି । ମୋ ଦେହରେ ପ୍ରାଣ ଥିବା ପର୍ଯ୍ୟନ୍ତ ଓ ସ୍ୱରାଜ୍ୟ ଲାଭ ନହେଲା ପର୍ଯ୍ୟନ୍ତ ଓ ମୁଁ ଏ ମନ୍ତ୍ର ଦ୍ୱାରେ ଦ୍ୱାରେ ବୁଲି ପ୍ରଚାର କରିବି ।" ଗୋପବନ୍ଧୁ ଏ ସଭାରେ ଲୋକମାନଙ୍କୁ ସ୍ୱାଧୀନତା ପାଇଁ ସଂଗ୍ରାମଶୀଳ ହେବାକୁ ଆହ୍ୱାନ କରିଥିଲେ । ଜେଲରେ ଥିଲାବେଳେ ଆଗରୁ କବିତାରେ ଲେଖିଥିଲେ—

"ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।"

ବାସ୍ତବ କ୍ଷେତ୍ରରେ ଏହାର ପରୀକ୍ଷା ପାଇଁ ବେଳ ଆସିଥିଲା । କାରାଗାର ଭୟ ଓ ନିର୍ଯ୍ୟାତନା ଏ ଲକ୍ଷ୍ୟ ଓ ଆଦର୍ଶରୁ ତାଙ୍କୁ ବିଚଳିତ କରିପାରିଲା ନାହିଁ ।

ଏହା ପରେ ପରେ ପୁରୀ, ସାରଙ୍ଗଯୋଡ଼ି ଏବଂ ଜାମସେଦପୁର ଆଦି ବହୁ ସ୍ଥାନରେ ଗୋପବନ୍ଧୁଙ୍କ ଅଭ୍ୟର୍ଥନା ନିମନ୍ତେ ସଭା ଓ ଶୋଭାଯାତ୍ରା ଆୟୋଜିତ ହୋଇଥିଲା । ସାରଙ୍ଗଯୋଡ଼ି ସଭାରେ କେଜାଣି କାହିଁକି ସେ ଅତି ବ୍ୟାକୁଳ ଭାବରେ କାନ୍ଦୁଥିଲେ । ଏଠାରେ ସେ କହିଲେ—"ମୋତେ ଅଭିନନ୍ଦନପତ୍ର ନଦେଇ, ଫୁଲ ଚନ୍ଦନ ନଦେଇ ମୁଁ ଆସିଲା ବେଳକୁ ଏଠାରେ ପ୍ରତ୍ୟେକେ ବସି ଯଦି ଗୋଟିଏ ଗୋଟିଏ ଅରଟ ଧରି ସୂତା କାଟୁଥା'ନ୍ତ, ତିନି ହଜାର ଅରଟ ଏକତାନରେ ଚାଲୁଥିବାର ମୁଁ ଦେଖିଥା'ନ୍ତି, ଅରଟ ସୂତାରେ ମୋତେ ଯୋଡ଼ି ପକାଇଥାନ୍ତ ତେବେ ମୁଁ ନିଜକୁ ଧନ୍ୟ ମଣିଥାନ୍ତି । ମୁଁ ଗୋଟିଏ ସଙ୍କଳ୍ପ କରିଛି—ଏଣିକି ଯେ ଖଦଡ଼ ନ ପିନ୍ଧିବ ମୁଁ ତା ଘରେ ଖାଇବି ନାହିଁ । ଯେତେ ଆତ୍ମୀୟସ୍ୱଜନ ହେଲେ ମଧ୍ୟ ତା' ଘରେ ପାଣି ଛୁଇଁବି ନାହିଁ ।"

ପୁରୀ ଜିଲ୍ଲାର ଏଇ ଅନାଖ୍ୟାତ ପଲ୍ଲୀ ଅଞ୍ଚଳରେ ତାଙ୍କ ବାର୍ତ୍ତାର ପ୍ରତିଧ୍ୱନି ସୃଷ୍ଟି ହେଲା । ପରେ ପରେ ବହୁ ଘରେ ଅରଟ ଚାଲିବାର ଦେଖାଗଲା । ଅରଟ ମାଧ୍ୟମରେ କଂଗ୍ରେସ କାମ ଆଗେଇ ଚାଲିଲା ।

# ଜ୍ୱରେର ଯମ ଜାର୍ମଲିନ

କଲିକତାରେ ଶ୍ରମିକମାନଙ୍କର ଯେଉଁ ସଂଗଠନ ଗଢ଼ାଯାଇଥିଲା ତା'ର ପରିଚାଳନା ଦାୟିତ୍ୱରେ ଶ୍ରୀ ପୂର୍ଣ୍ଣଚନ୍ଦ୍ର ବୋଷ ନାମକ ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତି ରହିଥିଲେ । ଶ୍ରୀ ବୋଷ ସେଠାରେ ଶ୍ରମିକମାନଙ୍କ ଟଙ୍କାରେ ଖୁବ୍ ବଡ଼ଲୋକ ଭାବରେ ଚଳିଲେ ଓ ସେମାନଙ୍କ ପାଣ୍ଠି ଆତ୍ମସାତ କରିବାକୁ ଲାଗିଲେ । କେତେକ କୁଲି ସର୍ଦ୍ଦାର ଏ ବିଷୟ ଗୋପବନ୍ଧୁଙ୍କ ପାଖ୍ ଟେଲିଗ୍ରାମ କରିବାରେ ଗୋପବନ୍ଧୁ ବଡ଼ ବ୍ୟଥିତ ହୋଇପଡ଼ିଲେ । ସେ କଲିକତା ଆସି ଏହାର ସତ୍ୟାସତ୍ୟ ନିଜେ ଅନୁଧ୍ୟାନ କରିବାକୁ ସ୍ଥିରକଲେ । ଶ୍ରୀ ବୋଷ ଗୋପବନ୍ଧୁ ଆସିବା ଖବର ପାଇ ଏଣେ କେତେକ ଟାଣୁଆ ଟାଣୁଆ ଶ୍ରମିକଙ୍କୁ ହାତ କରି ଓ ଲାଞ୍ଚ ଦେଇ ନିଜ ଆସନକୁ ମଜଭୁତ କରିବା ଉଦ୍ୟମରେ ରହିଲେ । ତାଙ୍କର ଧାରଣା ହେଲା ଯେ, ଗୋପବନ୍ଧୁ ଆଉ ସଂଗଠନ ଭିତରେ ପଶି ପାରିବେ ନାହିଁ । ଶେଷକୁ ୨୯ । ୯ । ୨୪ ତାରିଖ ଦିନ ଜଗନ୍ନାଥ ଘାଟଠାରେ ଏକ ବଡ଼ ଧରଣର ଶ୍ରମିକ ସଭାର ଆୟୋଜନ ହେଲା । ସେଇ ସଭାରେ ଶ୍ରୀ ବୋଷ ଥା'ନ୍ତି । ଗୋପବନ୍ଧୁ ଅତି ଭାବପ୍ରବଣ ହୋଇ ବକ୍ତୃତା ଦେଲେ । ନିଜ ଉଦ୍ଦେଶ୍ୟ ଓ ତା'ର ପରିଣତି ବିଷୟରେ ଲୋକମାନଙ୍କୁ ସଚେତନ କରି ବ୍ୟଥିତ ହେଲେ । ଗୋପବନ୍ଧୁ ବାରମ୍ବାର ଶ୍ରୀ ବୋଷ୍‌ଙ୍କ ଆଡ଼କୁ ସଭାମଞ୍ଚରୁ ଅଙ୍ଗୁଳି ନିର୍ଦ୍ଦେଶ କରି ତାଙ୍କୁ ସାଧାରଣ ଧନ ଆତ୍ମସାତ୍ କରିଥିବା ଅଭିଯୋଗରେ ଅଭିଯୁକ୍ତ କରୁଥାନ୍ତି । ଶ୍ରୀ ବୋଷ୍‌ଙ୍କର ପ୍ରତିବାଦ କରିବାର ନୈତିକ ସାହସ ନଥାଏ । ସେ ମୁଣ୍ଡ ପୋତି ନୀରବରେ ବସିଥାନ୍ତି । ତାଙ୍କୁ ଦାୟିତ୍ୱରୁ ବାହାର୍ କରିଦେବା ପାଇଁ ସଭାରେ ସ୍ପଷ୍ଟ ମତ ପ୍ରକାଶ ପାଇଲା । ଶ୍ରୀ ବୋଷଙ୍କୁ ପରେ ଶ୍ରମିକ ପରିଚାଳନାରୁ ଓହରିଯିବାକୁ ହେଲା ।

ଏହି ଅଙ୍ଗୁଳି ନିର୍ଦ୍ଦେଶ ଛବିର ଫଟୋ ଗାଭିନ୍ କାରଖାନାର ମାଲିକ ଯାଜପୁରର ଜଣେ ଓଡ଼ିଆ ବନ୍ଧୁ ଶ୍ରୀ ପଦ୍ମଲୋଚନ ମହାନ୍ତି ସଭାମଞ୍ଚରେ ଉଠାଇଥିଲେ । ଗାଭିନ୍ କାରଖାନାର 'ଜ୍ୱରେର ଯମ ଜାର୍ମଲିନ'ର ପ୍ରଚାରପତ୍ରରେ ଗୋପବନ୍ଧୁଙ୍କ ଏହି ଅଙ୍ଗୁଳି ନିର୍ଦ୍ଦେଶ ଫଟୋକୁ ଛପାଇ ସେ ପରେ ବହୁତ ଅର୍ଥ ଆୟ କରି ପାରିଥିଲେ । ମେଲେରିଆ ଜ୍ୱରର ଏଇ ଅବ୍ୟର୍ଥ ଔଷଧ ପୁଣି ପ୍ରଚାରପତ୍ରରେ ଓଡ଼ିଶାର ପ୍ରିୟ ନେତା ଗୋପବନ୍ଧୁଙ୍କ ଅଙ୍ଗୁଳି ନିର୍ଦ୍ଦେଶ—ଏ ଔଷଧର କାର୍ଯ୍ୟକାରିତାର ଏକ ଚରମ ପ୍ରମାଣପତ୍ର ହୋଇଥିଲା । ଆଜି ମେଲେରିଆ ପାଇଁ ବହୁତ ଉନ୍ନତ ଓ ଉଚ୍ଚକୋଟୀର ଔଷଧ ପ୍ରସ୍ତୁତ ହେବା ପରେ ଜାର୍ମଲିନ ବିଗତର ଏକ କରୁଣ ବିସ୍ମୃତି ଭାବରେ ଦୂର ଅତୀତର ସେହି ପବିତ୍ର ସ୍ମୃତିକୁ ଉଜ୍ଜୀବିତ କରୁଅଛି ।

## ଓଡ଼ିଶାରେ ମରୁଡ଼ି

୧୯୨୪ ମସିହାର ଆରମ୍ଭରୁ ଓଡ଼ିଶାର ପୁରୀ ଜିଲ୍ଲାରେ ଓ କଟକ ଜିଲ୍ଲାର ବହୁ ଅଞ୍ଚଳରେ ବର୍ଷାଭାବ ଘଟିଥିଲା । ଏପରିକି ମୌସୁମୀ ପ୍ରବାହ ଓ ବର୍ଷାର କୌଣସି ଚିହ୍ନବର୍ଣ୍ଣ ଦେଖାଗଲା ନାହିଁ । ଲୋକେ ପ୍ରମାଦ ଗଣିଲେ । ଆକୁଳ ଭାବରେ ଆକାଶକୁ ଚାହିଁ ରହିଲେ । ଅଗଷ୍ଟ ମାସ ହୋଇଗଲା—ତଥାପି ବର୍ଷା ନାହିଁ । ଚାରିଆଡ଼େ ଦୁର୍ଭିକ୍ଷ ଦେଖାଗଲା ।

ଗୋପବନ୍ଧୁ ଜୁନ୍ ମାସରେ ହଜାରିବାଗ ଜେଲ୍‌ରୁ ଖଲାସ ହୋଇ ଆସିଥା'ନ୍ତି । ଓଡ଼ିଶାର ଏ ପରିସ୍ଥିତି ଜଣାଇ ମହାତ୍ମାଜୀଙ୍କ ପାଖକୁ ପତ୍ର ଲେଖିଲେ । ତାଙ୍କ ନିମନ୍ତ୍ରଣ କ୍ରମେ ୨୨।୮। ୧୯୨୪ ତାରିଖରେ ମହାତ୍ମା ଗାନ୍ଧି କଟକରେ ପହଞ୍ଚିଲେ । ସେତେବେଳେ ଗୋପବନ୍ଧୁ ରିଲିଫ୍ କାର୍ଯ୍ୟ ଆରମ୍ଭ କରିଦେଇଥିଲେ । ଲୋକଙ୍କ ଦୁରବସ୍ଥା ବୁଝିବା ପାଇଁ କେତୋଟି ଗ୍ରାମକୁ ମହାତ୍ମା ଗାନ୍ଧି ଗୋପବନ୍ଧୁଙ୍କ ସହିତ ବୁଲି ଯାଇଥିଲେ । ଏହି ଦୁରବସ୍ଥାର ଚିତ୍ର ପରେ ୧୦ । ୯ । ୧୯୨୪ ତାରିଖରେ 'ୟଙ୍ଗ୍ ଇଣ୍ଡିଆ' ପତ୍ରିକାରେ ମହାତ୍ମାଗାନ୍ଧି ନିମ୍ନମତେ ପ୍ରକାଶ କରିଥିଲେ—"ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକମାନଙ୍କୁ ଦେଖିଲି । ସେମାନେ କଙ୍କାଳସାର ହୋଇ ସତେ ଯେପରି ମୃତ୍ୟୁକୁ ହିଁ ଅପେକ୍ଷା କରି ରହିଥିଲେ । ତାଙ୍କର ଏ ଦୁର୍ଗତିର ଅନ୍ୟ ଏକ କାରଣ ହେଉଛି ଶ୍ରମବିମୁଖତା । ସେମାନେ ଏତେ ନିର୍ଜୀବ ଓ ଅଳସୁଆ ହୋଇପଡ଼ିଥିଲେ ଯହିଁରେ ତାଙ୍କୁ କେହି ଗୁଳି କରିଦେବାକୁ ଧମକାଇଲେ ମଧ୍ୟ ସେମାନେ ବରଂ ମୃତ୍ୟୁକୁ ଶ୍ରେୟସ୍କର ମଣୁଥିଲେ, କିନ୍ତୁ ଉଠି କାମ କରିବା ତାଙ୍କ ପକ୍ଷେ ସମ୍ଭବ ନଥିଲା । ଏ ଲୋକମାନଙ୍କ ପକ୍ଷେ ସୂତାକଟା ବ୍ୟତୀତ କିଛି ଶାରୀରିକ ଶ୍ରମ କରିବା ସହଜ ସାଧ୍ୟ ନୁହେଁ ।"

ଓଡ଼ିଶାର ଏହି ଦୁର୍ଭାଗ୍ୟ ବିଷୟରେ ଗୋପବନ୍ଧୁ ପ୍ରଥମେ ପତ୍ର ଦେଇ ମିଃ ଆଣ୍ଡ୍ରିଉଜଙ୍କୁ ଜଣାଇଲେ । ପରେ ନିଜେ ସାକ୍ଷାତ କରିବାକୁ ପହଞ୍ଚିଲେ । ତାଙ୍କର ଏହି ସାକ୍ଷାତ ଅତି କରୁଣ ଓ ମର୍ମସ୍ପର୍ଶୀ ହୋଇଥିଲା । ପରେ ୨୬ । ୧୨ । ୧୯୨୪ ତାରିଖ 'Young India'ରେ ମିଃ ଆଣ୍ଡ୍ରିଉଜ୍ 'A cry from Orissa' ନାମକ ଏକ ଶିରୋନାମାରେ ଲେଖିଥିଲେ—ମୁଁ ଚୀନ, ମାଳୟ ଓ ବର୍ମାରୁ ଫେରିବାପରେ ମୋତେ ସାକ୍ଷାତ କରିବା ପାଇଁ ନିକଟ ଓ ଦୂରରୁ ବହୁ ବ୍ୟକ୍ତି ଉପସ୍ଥିତ ଥିଲେ । ପଣ୍ଡିତ ଗୋପବନ୍ଧୁ ସେମାନଙ୍କ ମଧ୍ୟରେ ଅନ୍ୟତମ । ସେ ଏବେମାତ୍ର ରୋଗରୁ ଉଠିଥିଲେ, ତେଣୁ ଅତି ବଧିର ଓ କ୍ଳାନ୍ତ ଜଣାଯାଉଥିଲେ । ସେ ଯେତେବେଳେ ଓଡ଼ିଶାର ମରୁଡ଼ି ପରିସ୍ଥିତି ବିଷୟରେ ବର୍ଣ୍ଣନା କରୁଥିଲେ ତାଙ୍କ ଆଖି ଲୁହରେ ଛଳଛଳ ହୋଇ ଆସୁଥିଲା । ସେ କହିଲେ ଯେ, ଲୋକେ ନିରୁପାୟ ହୋଇ ଗୋରୁଗାଈଙ୍କୁ ଧାନ କ୍ଷେତକୁ ଫିଟେଇ ଦେଉଛନ୍ତି । ଆଉ ଧାନଗଛ ଜିଅଁାଇବାର ଅବକାଶ ନାହିଁ । ଅସରାଏ ବର୍ଷା ହେଲେ ଅବା କିଞ୍ଚିତ୍ ପରିମାଣରେ ଧାନ

ଗନ୍ଧ ବହିଯାଆନ୍ତା; କିନ୍ତୁ ବୃଷ୍ଟିର ସୂଚନା ସୁଦ୍ଧା ନାହିଁ ।''

ଗୋପବନ୍ଧୁ ଅତି ଦୁର୍ବଳ ହୋଇ ପଡ଼ିଥିଲେ । କିଛି ଦିନ ବିଶ୍ରାମ କରିବାକୁ ମିଃ ଆଣ୍ଡ୍ରିଉଜ୍ ତାଙ୍କୁ ଅନୁରୋଧ କଲେ; କିନ୍ତୁ ଗୋପବନ୍ଧୁ କହିଲେ ଯେ, ''ଓଡ଼ିଶାର ଏଇ ମରୁଡ଼ିଗ୍ରସ୍ତ ଲୋକେ ବର୍ତ୍ତମାନ ତଡ଼ିଲ ବିକଳ ହେଉଛନ୍ତି । ମୁଁ କି ବିଶ୍ରାମ ବା ନେବି ?'' ଗୋପବନ୍ଧୁ ଓଡ଼ିଶାକୁ ଫେରି ଆସିଲେ ।

ସେତେବେଳେ ସରକାର ଏହି ମରୁଡ଼ି ଖବରକୁ ଚପେଇ ଦେଉଥା'ନ୍ତି । ସେଥିପାଇଁ ମିଃ ଆଣ୍ଡ୍ରିଉଜ ଏବଂ ମହାତ୍ମା ଗାନ୍ଧି ଉଭୟେ ଅତି କ୍ଷୋଭ ପ୍ରକାଶ କରିଥିଲେ । ଓଡ଼ିଶାର ଏହି ଦୁର୍ଗତି ସମ୍ପର୍କରେ ଉଭୟ ମହାତ୍ମା ବହୁତ ଆଲୋଚନା କରିଥିଲେ ।

ଏହି ସମୟରେ ଓଡ଼ିଶାରେ ଅସରାଏ ଦି'ଅସରା ବର୍ଷା ହୋଇଗଲା । କେତେକାଂଶରେ ଶସ୍ୟ ରକ୍ଷା ପାଇଗଲା । ପରେ ମି. ଆଣ୍ଡ୍ରିଉଜ୍ ଗୋପବନ୍ଧୁଙ୍କ ଭେଟିବାବେଳେ ତାଙ୍କୁ ସହାସ୍ୟ ଦେଖି ଭାରି ଆହ୍ଲାଦିତ ହୋଇଥିଲେ । କିନ୍ତୁ ଏହି କଷ୍ଟିତ ଆନନ୍ଦ ଓ ଅତି ଉଦ୍‌ବେଗ ଭିତରେ ଚକ୍ରାକାନ୍ତ ହୋଇ ତାଙ୍କର ଏହି ପ୍ରିୟବନ୍ଧୁ ତଳେ ତଳେ କପରି ଦଗ୍‌ଧୀଭୂତ ହେଉଥିଲେ ସେ ଦୃଶ୍ୟ ତାଙ୍କ ମୁଖମଣ୍ଡଳରୁ ବେଶ୍ ବାରି ହୋଇପଡ଼ୁଥିଲା ।

## ଗଞ୍ଜାମ ଜିଲ୍ଲା ସମ୍ମିଳନୀ

ଗଞ୍ଜାମ ଜିଲ୍ଲା କଂଗ୍ରେସ ସମ୍ମିଳନୀ ୧୫ । ୧୧ । ୨୪ ତାରିଖରେ ଆୟୋଜିତ ହୋଇଥିଲା । ସେଦିନ ସକାଳ ଡାକଗାଡ଼ି ଯୋଗେ ଗୋପବନ୍ଧୁ ଇଚ୍ଛାପୁର ଷ୍ଟେସନରେ ପହଞ୍ଚିଲା ବେଳକୁ ତାଙ୍କୁ ପାଛୋଟି ନେବାପାଇଁ ଚାରି ପାଞ୍ଚ ହଜାର ଲୋକ ଅପେକ୍ଷା କରିଥିଲେ । ବାଦ୍ୟ ଓ ସଙ୍କୀର୍ତ୍ତନରେ ଆକାଶ ଫାଟି ପଡ଼ୁଥିଲା । ଉତ୍କଳମଣିଙ୍କୁ ଗ୍ରାମର ପ୍ରତ୍ୟେକ ସାହି ଓ ଗଳିରେ ବୁଲାଇ ସଭା ସ୍ଥଳକୁ ନିଆ ହେଲା । ଆଗରୁ 'ଷ୍ଟାର ଅଫ୍ ଉତ୍କଳ'ର ସମ୍ପାଦକ ଶ୍ରୀ ରାଜକୃଷ୍ଣ ବୋଷ ଜାତୀୟ କଂଗ୍ରେସ ପତାକା ଉତ୍ତୋଳନ କରିଥିଲେ । ଅଭ୍ୟର୍ଥନା ସଭାର ସଭାପତି ଥିଲେ ଶ୍ରୀଯୁକ୍ତ ଲାଲମୋହନ ପଟ୍ଟନାୟକ ।

ସଭାମଣ୍ଡପ ସ୍ଥାନରେ ଅଛୁଆଁ ଲୋକଙ୍କ ପାଇଁ ଗୋଟିଏ ସ୍ଥାନ ନିରୂପିତ ହୋଇଥିଲା । ସେଥିରେ ପାଣି ଓ ଦଣ୍ଡାସି ଜାତିର କେତେକ ସଭ୍ୟ ବଡ଼ ସଙ୍କୁଚିତ ହୋଇ ବସିଥିଲେ । ତଥାପି ଉଚ୍ଚ ବର୍ଣ୍ଣର ଲୋକେ ସେମାନଙ୍କ ଉପସ୍ଥିତି ପାଇଁ ପ୍ରକାଶ୍ୟରେ ଆପତ୍ତି ଉଠାଇଥିଲେ । ସମ୍ମିଳନୀ ଆରମ୍ଭ ଉଦ୍ଦେଶ୍ୟରେ ଶୁଭ ସଙ୍ଗୀତ ଗାନ କରାଗଲା, ତଥାପି ସବର୍ଣ୍ଣମାନେ ସେମାନଙ୍କ ଚେଷ୍ଟାରୁ ବିରତ ହେଲେ ନାହିଁ । ନିମ୍ନ ଜାତି ଅଛୁଆଁ ଲୋକଙ୍କୁ ସଭାରୁ ଉଠାଇ ଦେବାକୁ ଜିଦ୍ କଲେ । ଗୋପବନ୍ଧୁ ଏମାନଙ୍କୁ ବହୁତ ଅନୁନୟ ବିନୟ କରି ତାଙ୍କ ବକ୍ତୃତା ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ବସିବାକୁ କହିଲେ ମଧ୍ୟ ସେମାନେ କର୍ଣ୍ଣପାତ କଲେ

ନାହିଁ । ପାନପୁରର କେତେ ଜଣ ଲୋକ ସଭା ସ୍ଥଳ ଛାଡ଼ି ଚାଲିଗଲେ ।

ଏହାପରେ ସଭାପତି ଉତ୍କଳମଣି ଗୋପବନ୍ଧୁ ପ୍ରଥମେ ଆଣ୍ଠୁମାଡ଼ି ବସି ବେଦପାଠ ଓ ଈଶ୍ୱର ଉପାସନା ଆରମ୍ଭ କଲେ । ଉପାସନା ମଧ୍ୟରେ ସେ ଦେଶର ସାଂପ୍ରତିକ ଅବସ୍ଥା ବର୍ଣ୍ଣନା କରୁ କରୁ ତାଙ୍କ ଆଖିରୁ ଅନବରତ ଅଶ୍ରୁଧାର ଛୁଟୁଥିଲା । ସଭାର ଲୋକମାନେ ଏଥିରେ ବିହ୍ୱଳ ହୋଇ କାନ୍ଦିବାକୁ ଲାଗିଲେ । ଉଚ୍ଚ ଜାତି ଲୋକମାନଙ୍କ ଅହଂକାର ଓ ଦରିଦ୍ର ନୀଚଜାତି ଲୋକଙ୍କ ପ୍ରତି ଦୁର୍ବ୍ୟବହାର ବିଷୟରେ ଘୋର ନିନ୍ଦାକରି ସେ ବିଶୁଦ୍ଧ ମଧୁର ପ୍ରେମ-ଧର୍ମର ବ୍ୟାଖ୍ୟା କରିଥିଲେ । ପୁରୀ ଜଗନ୍ନାଥ ମନ୍ଦିରରେ ବିଶ୍ୱପ୍ରୀତିର ଯେଉଁ ଚିନ୍ତାଧାରା ଅବନନ୍ଦିତ ତାହା ପ୍ରକଟ କରି ସବୁ ଜାତିର ଲୋକେ ସମାନ ଆସନରେ ନ ବସିବା ଯାଏ ଏ ଦେଶକୁ ସ୍ୱରାଜ୍ୟ ଆସିବ ନାହିଁ ବୋଲି ସ୍ପଷ୍ଟ କହିଥିଲେ । ସେ କହିଲେ—"ମାଆ କୋଳରେ ଭେଦାଭେଦ ନାହିଁ, ଉଚ୍ଚ-ନୀଚ ବିଚାର ନାହିଁ । ଆମେ ଭାରତବାସୀ ନିଜ ଦେଶର ଲୋକଙ୍କୁ ମନୁଷ୍ୟ ବୋଲି ଜ୍ଞାନ ନକରିବା ଯାଏ ବିଧର୍ମୀ ଓ ବିଜାତିୟଙ୍କଠାରୁ ଦୁଃଖ-ଦୁର୍ଦ୍ଦଶା ଭୋଗୁଥିବା ।"

ସଭାପତିଙ୍କ ବକ୍ତୃତା ଓ ଉପାସନାର ପ୍ରଭାବରେ ଅନେକଙ୍କର ମନ ବଦଳିଗଲା । ପାନପୁରର ଯେଉଁମାନେ ସଭା ଛାଡ଼ି ଚାଲିଆସିଥିଲେ ରାତିରେ ସେମାନଙ୍କ ପାଇଁ ଏକ ପଞ୍ଚାୟତ ବିଚାର ବସିଲା । ସେମାନେ ଆପଣାର ଭ୍ରମ ବୁଝିପାରି ଉତ୍କଳମଣିଙ୍କ ନିକଟରେ ଦୁଃଖ ପ୍ରକାଶ କରିଥିଲେ ଓ ପରଦିନ ସଭାରେ ମିଳିମିଶି କାମ କରିବାକୁ ସ୍ୱୀକୃତି ଦେଇଥିଲେ ।

ଏହି ସମ୍ମିଳନୀ ପରେ ପରେ ୩୦ । ୧୧ । ୨୪ ତାରିଖରେ ସ୍ୱରାଜ୍ୟାଶ୍ରମରେ ନୂତନ ବର୍ଷ ପାଇଁ ପ୍ରାଦେଶିକ କମିଟି ଗଠିତ ହୋଇଥିଲା ଓ କର୍ମକର୍ତ୍ତା ନିର୍ବାଚିତ ହୋଇଥିଲେ । ଆଗାମୀ ବର୍ଷପାଇଁ ପଣ୍ଡିତ ଗୋପବନ୍ଧୁ ଦାସ ସଭାପତି ଓ ଶ୍ରୀ ଭଗୀରଥି ମହାପାତ୍ର ସହକାରୀ ସଭାପତି ମନୋନୀତ ହୋଇଥିଲେ । ଶ୍ରୀ ନନ୍ଦକିଶୋର ଦାସ ଓ ଶ୍ରୀ ରାଧାକୃଷ୍ଣ ବୋଷ ସମ୍ପାଦକ ଭାବରେ ନିଯୁକ୍ତ ହୋଇଥିଲେ । ଗୋପବନ୍ଧୁ ଓଡ଼ିଶା ସାରା ବୁଲି ପୁଣି କଂଗ୍ରେସ ଆନ୍ଦୋଳନର ବାର୍ତ୍ତାକୁ ଜୀବନ୍ତ କରିବାକୁ ଉଦ୍ୟମ କରୁଥିଲେ । ଏଥିର କଂଗ୍ରେସର ନିର୍ଦ୍ଧାରିତ ପନ୍ଥା ଅନୁଯାୟୀ ସୂତାକଟା, ଖଦଡ଼ ପରିଧାନ ଓ କେତେକ ଗଠନମୂଳକ କାମ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା ।

## ବେଲଗାଓଁ କଂଗ୍ରେସ ସପ୍ତାହ

୧୯୨୪ ମସିହା ଡିସେମ୍ବର ୨୩ ତାରିଖଠାରୁ ୨୮ ତାରିଖ ପର୍ଯ୍ୟନ୍ତ ବେଲଗାଓଁରେ କଂଗ୍ରେସ ସପ୍ତାହ ପାଳିତ ହେଲା । ଏଥିରେ ସଭାପତି ଥିଲେ ମହାତ୍ମା ଗାନ୍ଧି । ଏଠାରେ

ଅସହଯୋଗୀ କଂଗ୍ରେସ ଦଳ ଓ ମୋତିଲାଲ ଦେଶବନ୍ଧୁଙ୍କ 'ସ୍ୱରାଜ୍ୟ' ଦଳ ଭିତରେ ଗୋଟିଏ ଭୁଲବୁଝାମଣା ସୃଷ୍ଟି ହୋଇଗଲା । 'ସ୍ୱରାଜୀ'ମାନେ କାଉନ୍‌ସିଲରେ ପଶିବାର ପକ୍ଷପାତୀ ଥିଲେ । କଂଗ୍ରେସର ଅନ୍ୟମତବାଦର ପ୍ରାବକମାନେ ସମ୍ପୂର୍ଣ୍ଣ ଅସହଯୋଗ ଉପରେ ଜୋର୍ ଦେଉଥିଲେ । ପ୍ରାୟ ଦୁଇ ବର୍ଷର ବିବାଦ ଫଳରେ ଦୁଇ ଦଳର ବହୁଶକ୍ତି ଅଯଥା ଅପଚୟ ହେଉଥିଲା ଓ ସାଂଗଠନିକ କାର୍ଯ୍ୟ ଅନେକ ପରିମାଣରେ ବାଧାପ୍ରାପ୍ତ ହୋଇଗଲା । ମହାତ୍ମା ଗାନ୍ଧି ନିଜେ ମଧ୍ୟସ୍ଥ ଥାଇ ଏଠାରେ ଦୁଇ ଦଳକୁ ମିଳାଇ ଦେଇଥିଲେ । ବାର୍ଷିକ ୨୪ ହଜାର ଗଜ ସୂତା କାଟିବା ପ୍ରତ୍ୟେକ କଂଗ୍ରେସ କର୍ମୀ ପାଇଁ ପ୍ରଧାନ ସର୍ତ୍ତ ରହିଲା । ଏଥିରେ ସ୍ୱରାଜୀମାନେ ରାଜି ହେଲେ । ଲାଲା ଲଜପତ ରାୟ, ପଣ୍ଡିତ ମଦନମୋହନ ମାଳବ୍ୟ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ପ୍ରମୁଖ କେତେ ଜଣ ନେତା ଏଥିରେ ଅମତ ହେଲେ ସୁଦ୍ଧା ସେମାନଙ୍କ କଥା ଏଠାରେ ଗ୍ରାହ୍ୟ ହୋଇନଥିଲା ।

ଉତ୍କଳ ପ୍ରଦେଶରୁ ପଣ୍ଡିତ ଗୋପବନ୍ଧୁ ଦାସ, ଭାଗୀରଥି ମହାପାତ୍ର, ଗୋବିନ୍ଦଚରଣ ମିଶ୍ର, ନରସିଂହ ଚରଣ ଚମ୍ପତିପଟ୍ଟନାୟକ, ବାବାଜୀ ରାମଦାସ, ପ୍ରାଣକୃଷ୍ଣ ପଢ଼ିଆରୀ, ଅବଦୁଲ ରହିମନ, ଲିଙ୍ଗରାଜ ମିଶ୍ର, ରାଜକୃଷ୍ଣ ବୋଷ, ଭାଗୀରଥି ପଟ୍ଟନାୟକ ଏହି କଂଗ୍ରେସ ସମ୍ମିଳନୀରେ ଯୋଗଦେଇଥିଲେ ।

କଂଗ୍ରେସର ସିଦ୍ଧାନ୍ତ ଅନୁସାରେ ପୂର୍ବ ନୀତିରେ କେତେକ ପରିବର୍ତ୍ତନ ହୋଇଥିଲା । କେବଳ ବିଦେଶୀ ଲୁଗା ବ୍ୟତୀତ ସ୍କୁଲ, କଲେଜ, କଚେରୀ ଓ କାଉନ୍‌ସିଲ ଆଦି ସମସ୍ତ ବର୍ଜ୍ଜନ ରହିତ କରାଗଲା । 'ସ୍ୱରାଜୀ'ମାନେ କଂଗ୍ରେସ ତରଫରୁ କେନ୍ଦ୍ର ଓ ପ୍ରାଦେଶିକ କାଉନସିଲରେ କାର୍ଯ୍ୟ କରିବା ସ୍ଥିର ହେଲା । ଚରଖାରେ ସୂତା କଟାଦ୍ୱାରା କଂଗ୍ରେସ ସହିତ ଜନସାଧାରଣଙ୍କ ସମ୍ପର୍କ ପ୍ରତିଷ୍ଠିତ ହେବ ବୋଲି ଗାନ୍ଧିଜୀ ଦୃଢ଼ ଭାବରେ କହିଲେ । ଏହା ଫଳରେ ପ୍ରତ୍ୟେକ କଂଗ୍ରେସ କର୍ମୀଙ୍କୁ ଖଦଡ଼ ପିନ୍ଧିବାକୁ ନୈତିକତା ଦୃଷ୍ଟିରୁ ବାଧ୍ୟ କରାଗଲା । ଖଦଡ଼ ପ୍ରଚାର, ହିନ୍ଦୁ ମୁସଲମାନ ଏକତା ଓ ଅସ୍ପୃଶ୍ୟତା ନିବାରଣ—ଏହି ତିନୋଟି କଂଗ୍ରେସର ଗଠନମୂଳକ ସାମାଜିକ କାର୍ଯ୍ୟକ୍ରମ ରୂପେ ଗୃହୀତ ହୋଇଥିଲା ।

## ଓଡ଼ିଶା କଂଗ୍ରେସର ଉଦ୍ଦୀପନା

ଜେଲ ମୁକ୍ତ ପରେ ପରେ ଉତ୍କଳମଣି ଗୋପବନ୍ଧୁ ଓଡ଼ିଶା କଂଗ୍ରେସକୁ ଗଠନମୂଳକ ଦିଗରେ ଆଗେଇ ନେବା ପାଇଁ ଆପ୍ରାଣ ଲାଗି ପଡ଼ିଲେ । ତାଙ୍କ ସାହଚର୍ଯ୍ୟ ପାଇ ଓଡ଼ିଶା ପ୍ରଦେଶ କଂଗ୍ରେସ ପୁନଶ୍ଚ ଉଦ୍ଦୀପିତ ହୋଇ ଉଠିଲା । ଓଡ଼ିଶାବାସୀଙ୍କ ମନରେ ସାଂସ୍କୃତିକ ଓ ଐତିହ୍ୟଗତ ଏକତା ଆଣିବା ପାଇଁ ଗୋପବନ୍ଧୁ ଏହି ଦିନଗୁଡ଼ିକରେ ବନ୍ଧୁ ଭାବରେ

ଉଦ୍‌ବୋଧନ ଦେଇଥିଲେ । ସବୁ ସ୍ଥାନରେ ତାଙ୍କ ପ୍ରତି ବିପୁଳ ଜନସମର୍ଥନ ଓ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ମିଳିଥିଲା । ୧୯୨୫ ମସିହା ଏପ୍ରିଲ ପ୍ରଥମ ସପ୍ତାହରେ ସୋରୋଠାରେ ବାଲେଶ୍ୱର ଜିଲ୍ଲା କଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହେଲା । ସଭାପତି ଭାବରେ ଗୋପବନ୍ଧୁ ଏହି ସମ୍ମିଳନୀରେ ଗ୍ରାମେ ଗ୍ରାମେ ଭାଗବତ ଟୁଙ୍ଗୀ ପ୍ରତିଷ୍ଠା ଓ ଭାଗବତ ସଂସ୍କୃତିର ଉନ୍ମେଷ ନିମନ୍ତେ ଆହ୍ୱାନ କରିଥିଲେ । ଏକଦା ଭାଗବତ ଗାଦୀ ଏ ଜାତିର ଜାତୀୟ ଐକ୍ୟର ମୂଳପିଣ୍ଡ ଥିଲା । ତା'ର ପୁନଃପ୍ରତିଷ୍ଠା କରି ପୁଣି ଓଡ଼ିଶାରେ ଏକ ଭାବଗତ ଐକ୍ୟ ଆଣିବା ପାଇଁ ଗୋପବନ୍ଧୁ ବହୁ ଦିନର ପରିକଳ୍ପନା କରୁଥିଲେ । ଅରଟରେ ସୂତା କାଟିବା ପାଇଁ ଗୋପବନ୍ଧୁ ଉଦ୍‌ବୋଧନ ଦିଅନ୍ତେ ସମ୍ମିଳନୀରେ ସହସ୍ରାଧିକ ଲୋକ ହାତ ଉଠାଇ ଏଥିପାଇଁ ପ୍ରତିଜ୍ଞା କରିଥିଲେ । ବାଲେଶ୍ୱର ଜିଲ୍ଲା ଲୋକଙ୍କ ଏ ମନୋଭାବରେ ଗୋପବନ୍ଧୁ ବିଶେଷ ଆନନ୍ଦିତ ଓ ଆଶାନ୍ୱିତ ହୋଇଥିଲେ । ତାଙ୍କ ବକ୍ତବ୍ୟରେ ସେ ଶେଷକୁ କହିଥିଲେ, "ଅସହଯୋଗର ସଫଳତା ଜନସାଧାରଣଙ୍କ ହାତର କଥା । ଅସହଯୋଗ ଖଦଡ଼ ପରିଧାନ, ନିଶା ନିବାରଣ, ଗ୍ରାମପଞ୍ଚାୟତ ପ୍ରତିଷ୍ଠା ଆଦି କାମଦ୍ୱାରା ଲୋକଙ୍କର ଦରିଦ୍ରତା ଘୁଞ୍ଚିଯିବ ଓ ଆର୍ଥିକ ଅବସ୍ଥାରେ ଉନ୍ନତି ହେବ । ରାଜନୈତିକ ସ୍ୱାଧୀନତା ହାସଲ ପୂର୍ବରୁ ଆର୍ଥିକ ସ୍ୱାଧୀନତା ଅଧିକ କାମ୍ୟ ।" ଏହି ବିଶ୍ୱାସରେ ସେ ଅସହଯୋଗ କାର୍ଯ୍ୟକୁ ଓଡ଼ିଶାରେ ପ୍ରବର୍ତ୍ତନ କରିବା କଥା ସ୍ପଷ୍ଟ କହିଥିଲେ । ଏହି ସମ୍ମିଳନୀ ଓଡ଼ିଶା କଂଗ୍ରେସରେ ନୂତନ ଉନ୍ମାଦନା ଓ ଉତ୍ତାପ ଆଣିଥିଲା ।

୮ । ୫ । ୨୫ ତାରିଖଠାରୁ ୨୩ । ୫ । ୨୫ ତାରିଖ ପର୍ଯ୍ୟନ୍ତ ଗୋପବନ୍ଧୁ ପୁରୀ ଜିଲ୍ଲାର କେତେକ ସ୍ଥାନ ବୁଲି ସଭା କରିଥିଲେ । ଖୋର୍ଦ୍ଧା ସଭାରେ ତାଙ୍କର ପ୍ରଥମ ହାଜତକାଳୀନ ସ୍ମୃତିକୁ ଉଜ୍ଜୀବିତ କରି ଏକ ମାନପତ୍ର ଦିଆଯାଇଥିଲା । ବୋଲଗଡ଼ଠାରେ ଲୋକଙ୍କ ଉତ୍ସାହ ଦେଖି ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ସେଠାରେ କରାଯିବା ପାଇଁ ଗୋପବନ୍ଧୁ ସ୍ଥିର କରିଦେଲେ । କୁହୁଡ଼ି ସଭା ପରେ ଗୋପବନ୍ଧୁ ବାଣପୁରରେ ପହଞ୍ଚିଲେ । ଏଠାରେ ସଭା କରାଇ ନଦେବାପାଇଁ ପୋଲିସ ତରଫରୁ ଉଦ୍ୟମ ହୋଇଥିଲା । ଏପରିକି ଲୋକଙ୍କୁ ଭୟଭୀତ କରାଇବା ପାଇଁ ପୋଲିସ୍ ସଶସ୍ତ୍ରମନ୍ତ୍ରେ ଆୟୋଜନ କରିଥିଲେ । ଭଗବାନଙ୍କ ଛଡ଼ା ଅନ୍ୟ କାହାକୁ ନଡରିବା ପାଇଁ ଏ ସଭାରେ ଗୋପବନ୍ଧୁ ଉପସ୍ଥିତ ଜନତାକୁ ଉଦ୍‌ବୋଧନ ଦେଇଥିଲେ । ନିଜ ପାପ ଫଳରୁ ଆମ୍ଭେମାନେ ଦୁଃଖ ଭୋଗ କରୁଛୁ । ଅଫିମ, ଗଞ୍ଜା ଆଦି ମାଦକ ଦ୍ରବ୍ୟ ସେବନ, ଗ୍ରାମେ ଗ୍ରାମେ କଳହ ବିବାଦ, ଧର୍ମରେ ଅନାସ୍ଥା, ତାମସିକ ଭାବର ବୃଦ୍ଧି, ବିଦେଶୀ ବିଳାସଦ୍ରବ୍ୟରେ ଆସକ୍ତି ଆମ୍ଭମାନଙ୍କର ସର୍ବନାଶର କାରଣ ହୋଇଛି ବୋଲି ସେ ଭଲରୂପେ ବୁଝାଇ ଦେଇଥିଲେ । ଦାଣ୍ଡମୁକୁନ୍ଦପୁର ସଭାରେ ହିନ୍ଦୁ-ମୁସଲମାନ ମୈତ୍ରୀ ଉପରେ ସେ ବିଶେଷ ଭାବରେ ବକ୍ତୃତା ଦେଇଥିଲେ ।

ଗୋପବନ୍ଧୁ ଏ ଗଡ୍ଡରୁ ଫେରି ଅସହଯୋଗ ଓ ଜାତୀୟ ଆନ୍ଦୋଳନ ସମ୍ପର୍କରେ ତାଙ୍କ ମତାମତ 'ସମାଜ'ରେ ପ୍ରକାଶ କରିଥିଲେ—"ନାନା ସ୍ଥାନରେ ଲୋକଙ୍କ ହାବଭାବ, ମତଗତ ଓ କାର୍ଯ୍ୟକଳାପ ଦେଖି ମୋର ମନେହେଲା ଅସହଯୋଗ ଆନ୍ଦୋଳନ ନଈବଢ଼ି ପରି ଘରଆଡ଼େ ମାଡ଼ିଯାଇଥିଲା । ସେଥିରେ ଖାଲ ଢିପ ସବୁ ବୁଡ଼ିଯାଇ ସମତୁଲ ହୋଇଯାଇଥିଲା । ମାତ୍ର ଏବେ ନଈବଢ଼ି ଘୁଞ୍ଚିଯିବାପରେ ଢିପ ଜାଗା ସବୁ ବାହାରି ପଡ଼ୁଛି । ଖାଲରେ କୌଣସି କୌଣସିଠାରେ ମୁନ୍ଦାଏ ପାଣି ଅଛି । ଯେଉଁମାନଙ୍କ ହୃଦୟ ଗମ୍ଭୀର ଓ ନବଭାବ ଗ୍ରହଣ କରିବାକୁ ପ୍ରସ୍ତୁତ ଥିଲା ଏବେ ମଧ୍ୟ ସେହିମାନେ ସେ ନବଭାବକୁ ଧରି ରଖିଛନ୍ତି । ଦେଶପାଇଁ କିଛି ନା କିଛି କରିବାକୁ ସେମାନେ ବ୍ୟାକୁଳ ଅଛନ୍ତି । ଏହିସବୁ ଖାଲରେ ଯେ ପାଣି ରହିଛି ବହୁଦିନ ଆବଦ୍ଧ ରହି ତାହା ଯେପରି ଦୂଷିତ ହୋଇନଯାଏ ଏହା ଜଗିବାକୁ ହେବ । ଏମାନଙ୍କୁ ନିଜ ନିଜ ଅଞ୍ଚଳରେ କୌଣସି କାର୍ଯ୍ୟରେ ଲଗାଇ ରଖିଲେ ଏମାନଙ୍କ ହୃଦୟରେ ବିକୃତି ବା ବ୍ୟତିକ୍ରମ ଘଟିବ ନାହିଁ ।

ଓଡ଼ିଶାର ଲୋକେ ସ୍ୱରାଜ୍ୟ ନିମନ୍ତେ ଦୃଢ଼ ବିଶ୍ୱାସ ପୋଷଣ କରିଥିଲେ ମଧ୍ୟ ନିଜ ଯତ୍ନରେ ଏହା ମିଳିବ ବୋଲି ସେମାନଙ୍କର ଭରସା ନଥିଲା । ଅଦୃଷ୍ଟବାଦୀ ଆଳସ୍ୟପରାୟଣ ଲୋକ ପରି ଓଡ଼ିଶାର ଲୋକେ ବିନା ଉଦ୍ୟମରେ ସ୍ୱରାଜ୍ୟକୁ ଚାହିଁ ରହିଥିଲେ । ଗୋପବନ୍ଧୁ ସେମାନଙ୍କ ମନରେ କର୍ମ ପ୍ରବାହର ଆବେଗ ଓ ଚଞ୍ଚଳତା ଆଣିଦେଲେ । ସମଗ୍ର ଓଡ଼ିଶାରେ କଂଗ୍ରେସ ଅନୁଷ୍ଠାନ ପୁଣି ମୁଣ୍ଡଟେକି ଉଠିଲା । ସ୍ୱାର୍ଥହୀନ ସାରଥିର ନିର୍ଦ୍ଦେଶରେ ଜାତି ନନ୍ଦିଘୋଷ ପୁଣି ଆଗେଇ ଚାଲିଲା ।

## ଏମାରମଠ ଗାର୍ଡେନ ପାର୍ଟି

ଜାତୀୟ କଂଗ୍ରେସର ଏହି ଉଦ୍‌ଯୋଗ ପର୍ବରେ ପୁରୀର ଏକ ନିନ୍ଦିତ ଘଟଣା ଜାତିପ୍ରାଣ ଗୋପବନ୍ଧୁଙ୍କୁ ବହୁଭାବରେ ବ୍ୟଥିତ କରିଥିଲା । ୨୨ । ୪ । ୨୫ ତାରିଖରେ ବିହାର-ଓଡ଼ିଶା ଲାଟସାହେବଙ୍କ ପୁରୀ ଆଗମନ ଉପଲକ୍ଷେ ଏମାରମଠ ମହନ୍ତ ମହାରାଜା ବଦେଶୀ ଢଙ୍ଗରେ ଏକ ଗାର୍ଡେନ ପାର୍ଟି ଆୟୋଜନ କରିଥିଲେ । ଏଥିରେ ସେ ସମୟକୁ ଚାହିଁ ପ୍ରାୟ ଦଶ ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । ଅମୃତ ମଣୋହି ସମ୍ପତ୍ତିର ଏପରି ଅପବ୍ୟବହାରରେ ପୁରୀ ସହରବାସୀ ଅତ୍ୟନ୍ତ ଉଦ୍ବିଗ୍ନ ଓ ମର୍ମାହତ ହୋଇଥିଲେ ।

ତା' ପରଦିନ ସକାଳେ ଏହାର ପ୍ରତିବାଦ କରି ପୁରୀ ସହର ଦୋକାନ ବଜାର ସବୁ ବନ୍ଦ ରହିଥିଲା । ଲୋକେ ସ୍ୱତଃପ୍ରବୃତ୍ତ ହୋଇ ହରତାଳ କରିଥିଲେ । ବିନା ପ୍ରଚାର ଓ ନାଗରାରେ ସନ୍ଧ୍ୟାବେଳେ ସହରରୁ ବହୁ ସଂଖ୍ୟାରେ ଲୋକେ ସିଂହଦ୍ୱାରରେ ଏକତ୍ରିତ ହେଲେ । ଘଟଣା ସ୍ଥଳରେ ପୋଲିସ ପହଞ୍ଚି ଲୋକଙ୍କୁ ଧମକ ଚମକ ଦେଖାଇଥିଲେ ଓ

ସଭା କରାଇ ନ ଦେବାକୁ ପ୍ରବଳ ଉଦ୍ୟମ କରିଥିଲେ । କେତେଜଣଙ୍କ ଉପରେ ୧୪୪ ଧାରା ନୋଟିସ୍ ଜାରିକରାହେଲା । ଜନତା ଭିତରକୁ ଗାଡ଼ି ଚଳାଇ ଦେବାପାଇଁ ନିକଟରେ ଥିବା ମ୍ୟୁନିସିପାଲିଟି ଗାଡ଼ିବାଲାମାନଙ୍କୁ ହୁକୁମ ଦିଆହେଲା । କେତେ କେତେ ଗାଡ଼ିବାଲା ହୁକୁମ ମାନି ଜଣହଣ ଲୋକଙ୍କ ଭିତରକୁ ଗାଡ଼ି ଚଳାଇବାର ଉପକ୍ରମ ମଧ୍ୟ କରିଥିଲେ । ତଥାପି ଲୋକେ ଡରିଲେ ନାହିଁ । କେତେ ବସିରହି କେତେ ବା ଠିଆହୋଇ ସଭାକାର୍ଯ୍ୟ ଚଳାଇଥିଲେ । ଗୋପବନ୍ଧୁ, ଶ୍ରୀ ମୁରାରି ତ୍ରିପାଠୀ, ଭଗବାନ ପ୍ରକାଶ ବ୍ରହ୍ମଚାରୀ, ଭୋଲାନାଥ ସାହୁ ପ୍ରମୁଖ ପାଞ୍ଚଜଣଙ୍କ ଉପରେ ଏସ୍.ଡି. ଓ. ମି: କେ. ସି. ଚନ୍ଦ୍ର ୧୪୦ ଧାରା ହୁକୁମ ଜାରି କରିଥିଲେ । ଏମାନଙ୍କ ମଧ୍ୟରୁ କେହି ଗାର୍ଡନ ପାର୍ଟି ସମ୍ପର୍କରେ ସଭା, ଶୋଭାଯାତ୍ରା ଓ ବକ୍ତୃତା କରିପାରିବେ ନାହିଁ ବୋଲି ଏଥିରେ ସ୍ପଷ୍ଟ ଉଲ୍ଲେଖ ଥିଲା; ତେଣୁ ଏ ସଭାରେ ପଣ୍ଡିତ ଆନନ୍ଦ ମିଶ୍ରଙ୍କୁ ସଭାପତି କରାଗଲା । ସଭାପତି ଅତି ଉତ୍ତେଜନାପୂର୍ଣ୍ଣ ଭାଷଣଦେଇ ରାମାନୁଜ ସମ୍ପ୍ରଦାୟ ଏମାର ମଠ ମହାନ୍ତ ହିନ୍ଦୁ ଧର୍ମ ବିରୋଧୀ ଏକ କାର୍ଯ୍ୟ କରିଛନ୍ତି ଓ ଗାର୍ଡନ ପାର୍ଟିରେ ଅମେଧ୍ୟ ଜିନିଷ ବ୍ୟବହୃତ ହୋଇଅଛି ବୋଲି ସ୍ପଷ୍ଟ ଅଭିଯୋଗ କରିଥିଲେ । ଗୋପବନ୍ଧୁ ଉଗ୍ର ରାଜନୈତିକ ମତବାଦୀ ନଥିଲେ । ତେଣୁ ଏ ଘଟଣାକୁ ରାଜନୈତିକ ବ୍ୟାପାର ଭାବରେ ସେ ଗ୍ରହଣ କରିବାକୁ ପଛେଇ ଥିଲେ । ଜନତାର ନୈତିକତା ଉପରେ ତାଙ୍କର ଅଖଣ୍ଡ ବିଶ୍ୱାସ ଥିଲା । ଦେଶର ଏପରି ଦୁଃସ୍ଥିତିରେ ମଠାଧୀଶଙ୍କ ରାଜକୀୟ ଆମଦରମା ଓ ଆଭିଜାତ୍ୟ ତାଙ୍କୁ ମ୍ରିୟମାଣ କରି ପକାଇଥିଲା । ସାମାନ୍ୟ ରାଜ-ଅନୁଗ୍ରହ ନିମନ୍ତେ ବଡ଼ଲୋକମାନଙ୍କର ଏ ମନ୍ଦ ଆଚରଣ ସମାଜରେ ନିନ୍ଦିତ ହେବା ଉଚିତ ବୋଲି ସେ ଅନୁଭବ କରି ତଦନୁସାରେ ଲୋକମତକୁ ସଚେତନ କରିଥିଲେ ।

## ପୁଣି ପୁରୀରେ ବଢ଼ି

୧୯୨୭ ମସିହା ଜୁଲାଇ ମାସରେ ପୁରୀ ଜିଲ୍ଲାରେ ଭୀଷଣ ନଈବଢ଼ି ହେଲା । ବହୁ ଅଞ୍ଚଳରେ ନଈବନ୍ଧ ଭାଙ୍ଗି ଯାଇ ସୃଷ୍ଟି ହେଲା । ଜମିର ସବୁଜ ଫସଲ ମାସ ମାସ ଧରି ନଈ ପାଣିରେ ବୁଡ଼ିରହି ପଚିଗଲା । ଗୋପବନ୍ଧୁ ଆଗ୍ରହର୍ଯ୍ୟ ହରିହରଙ୍କୁ ଧରି ବନ୍ୟା ସାହାଯ୍ୟ କମିଟି ଗଢ଼ିଲେ ଓ ଲୋକମାନଙ୍କୁ ଅଭିଯାନ କରିବାରେ ଲାଗିପଡ଼ିଲେ । ଗାଁ ଗାଁ ବୁଲି ଲୋକମାନଙ୍କ ପାଇଁ ସାହାଯ୍ୟ ଚାନ୍ଦା ସଂଗ୍ରହ କଲେ । ଏହି ସନ୍ଦର୍ଭରେ ଖୁବ୍ ଚାନ୍ଦା ଉଠି ପାରିଥିଲା । ପୁରୀ ସହରରେ ଗୋଟିଏ ବଡ଼ ଧରଣର ସାଧାରଣ ସଭା ଡକାଗଲା । ଗୋପବନ୍ଧୁ ବନ୍ୟା ଦୁର୍ଗତ ଅଞ୍ଚଳର ଦୁର୍ଗତି ବର୍ଣ୍ଣନା କରୁ କରୁ ଛୋଟ ପିଲାପରି କହିକହି ହୋଇ କାନ୍ଦି ଉଠିଲେ । ପୁରୀ ସହର ଲୋକଙ୍କ ହୃଦୟ ତରଳିଲା । ଧନୀ ଦରିଦ୍ର ନିର୍ବିଶେଷରେ ସମସ୍ତେ ସାହାଯ୍ୟ ଦେଲେ । ସମସ୍ତ ମଠମାନଙ୍କୁ ଗୋପବନ୍ଧୁ ଅତି କରୁଣ ଭାବରେ ନିବେଦନ

ଜଣାଇଲେ । ଏମାରମଠ ମହନ୍ତ ବନ୍ୟା ସାହାଯ୍ୟ ପାଇଁ ଦୁଇ ହଜାର ଟଙ୍କା ଦାନ କରିଥିଲେ ।

ଏହି ସାହାଯ୍ୟ ବିତରଣ ପାଇଁ ବିଭିନ୍ନ ସ୍ଥାନରେ କେନ୍ଦ୍ର ଖୋଲା ହେଲା । ଲୋକଙ୍କ ନୈତିକତାକୁ ବଞ୍ଚେଇ ରଖିବାକୁ ଗୋପବନ୍ଧୁ ଗୋଟିଏ କୌଶଳ ଅବଲମ୍ବନ କଲେ । ପୁରୀଜିଲ୍ଲା ପାଇଁ ଗଠିତ ବନ୍ୟା ସାହାଯ୍ୟ କମିଟି ମାଧ୍ୟମରେ ସୂତା କାଟିବା ଓ ଲୁଗା ବୁଣିବା ଗୋଟିଏ ଗୋଟିଏ କାର୍ଯ୍ୟକ୍ରମ ଭାବରେ ଗୃହୀତ ହେଲା । ଗୋପବନ୍ଧୁଙ୍କ ସ୍ମୃତିରେ ମହାତ୍ମାଙ୍କର ମନ୍ତବ୍ୟ ବେଶ୍ ଜାଗ୍ରତ ଥିଲା । ତେଣୁ ସାହାଯ୍ୟ ସ୍ଥଳରେ ସେ ଚରଖା ସାହାଯ୍ୟ କେନ୍ଦ୍ରମାନ ପ୍ରତିଷ୍ଠା କରି ଏହି କାର୍ଯ୍ୟରେ ଲୋକମାନଙ୍କୁ ଉତ୍ସାହିତ କଲେ । ଏ ଦିଗରେ ବେଙ୍ଗଲର 'ଖଦି ପ୍ରତିଷ୍ଠାନ' ବହୁତ ଭାବରେ ସାହାଯ୍ୟ କରିଥିଲେ । 'ଖଦି ପ୍ରତିଷ୍ଠାନ'ରୁ ଆଗରୁଥ୍ର ଚୂଳା ଆଣି ଏହି ସାହାଯ୍ୟ କେନ୍ଦ୍ର ମାଧ୍ୟମରେ ସୂତା କଟା ଓ ଲୁଗାବୁଣା ପୁରୁଖୁବୁରେ ଚାଲିପାରିଲା । ବିଜାଲବ୍ଧ ଅର୍ଥରେ ଅଧିକ ସାହାଯ୍ୟ କେନ୍ଦ୍ର ଖୋଲାଗଲା ।

ଏହି ସମୟରେ କାମଦାମ ନକରି ସାହାଯ୍ୟ କେନ୍ଦ୍ରକୁ ଚାଉଳ ଆଣିବାକୁ ଅନେକ କର୍ମକୁଣ୍ଠ ଲୋକ ଧାଇଁ ଆସୁଥିଲେ । ଗୋପବନ୍ଧୁ ତରୁଣ ଓ ବୟସ୍କମାନଙ୍କୁ ବରାବର ଉପଦେଶ ଦେଉଥିଲେ, ହାତ ଓଠ ଧରି ଅନୁରୋଧ କରୁଥିଲେ—"ଜୀବନ ଯଦି ଥିବରେ ଭାଇ ପାତିବା ନାହିଁ ହାତ ।" ତାଙ୍କ ଅନୁପ୍ରେରଣା ଦୁଃସ୍ଥ ପ୍ରାଣରେ ଆଶାର ଉତ୍ସାହ ଖେଳେଇ ଦେଉଥିଲା । ଲୋକମାନଙ୍କୁ ଯେତେଦୂର ସମ୍ଭବ କାମ ଯୋଗାଇବାକୁ ସେ ଉଦ୍ୟମ କରୁଥିଲେ ।

## ଗୋପବନ୍ଧୁଙ୍କ ଡାଏରୀରୁ

ପୁରୀ ଜିଲ୍ଲା ଲୋକଙ୍କ ଦୁର୍ଗତି ଓ ଦୁରବସ୍ଥା ସମ୍ପର୍କରେ ପ୍ରତ୍ୟକ୍ଷ ଅନୁଭୂତି ନିମନ୍ତେ ଗୋପବନ୍ଧୁ ଦୀର୍ଘ ସାତଦିନ ଧରି ବନ୍ୟାଗ୍ରସ୍ତ ଅଞ୍ଚଳରେ ପରିକ୍ରମା କରିଥିଲେ । ସେସବୁର କରୁଣ ବୃତ୍ତାନ୍ତ ସେତେବେଳେ 'ସମାଜ'ରେ ଧାରାବାହିକ ଭାବରେ ପ୍ରକାଶ ପାଉଥିଲା ।

"ଖଜୁରିଆ ମୁକାମରୁ ଆମ୍ଭେମାନେ ପ୍ରକୃତ ବିପନ୍ନ ଅଞ୍ଚଳରେ ପଶିଲୁ । ଖଜୁରିଆରୁ ରତ୍ନଚୀର୍ ବାଟେ ପ୍ରଥମେ ଆସିଲୁ ଶିରୁଳି । ଶିରୁଳି ରତ୍ନଚୀର୍ ନଦୀ କୂଳରେ । ଗ୍ରାମର ଅବସ୍ଥା ଅତି ଶୋଚନୀୟ । ଗଲବର୍ଷ ଏ ଅଞ୍ଚଳରେ ବିଲକୁ ଆଦୌ ଦାଆ ଯାଇନଥିଲା । ବାହାର ଲୋକ କାହାର ଦୃଷ୍ଟି ପଡ଼ି ନଥିବାରୁ ଏମାନଙ୍କ ଦୁର୍ଗତି କଥା ସର୍ବସାଧାରଣରେ ଜଣା ପଡ଼ିନାହିଁ । ବର୍ଷେ କାଳ ଏମାନେ ଦୁର୍ଭିକ୍ଷ ଭୋଗିଲେଣି । ଭୋକ ବିକଳରେ ପିଲାମାନେ ଗ୍ରୋଟ ଗ୍ରୋଟ ଗୋଟମା ଗ୍ରେବାଉଥିବା ଆଖିରେ ଦେଖିଲୁ, ଅଧିକାଂଶଙ୍କର କଙ୍କାଳ କେବଳ ଟଳଟଳ ହେଉଅଛୁ । ବିଶେଷତଃ ବାଉରି ବାଉରାଣୀଙ୍କ ଅବସ୍ଥା ବଡ଼ ମନ୍ଦ । ଦେହରେ କେବଳ ହାଡ଼ ରହିଛୁ । ପିନ୍ଧିବାର କନା ନାହିଁ । ମୁଠି ମଦରଙ୍ଗା ଶାଗରେ ବା ବଞ୍ଚନ୍ତେ;

ପାଣିରେ ସେସବୁ ବୁଡ଼ିଛି । ରକ୍ସଟୀସ୍ ନଦୀରୁ ଶିବୁଳ ପଟକୁ ଯାଇ ଭାଙ୍ଗି ପ୍ରାୟ ୫୦ ଖଣ୍ଡ ମୌଜାର ସର୍ବନାଶ ଘଟାଇଛି । ଆମ୍ଭମାନଙ୍କ ନାଆ ସ୍ୱଚ୍ଛନ୍ଦରେ ଯାଇ ଶିବୁଳ ଗାଁ ମୁଣ୍ଡରେ ଲାଗିଲା । ବିଲ ଭିତରେ ସ୍ଥାନେ ସ୍ଥାନେ ଧାନ-ଗଛ ପଚିଯାଇ ପାଣି ଠିଆ ହୋଇ ରହିଛି । ଶିବୁଳରେ ଆମ୍ଭେମାନେ ପ୍ରାୟ ଅଢ଼େଇ ଶହ ଲୋକଙ୍କୁ ଚୂଡ଼ା ଗୁଡ଼ଲ ବାଣ୍ଟିଲୁ । ଲୋକେ ଏପରି ଆତୁର ପ୍ରପୀଡ଼ିତ ହୋଇଥିଲେ ଯେ, ବ୍ରାହ୍ମଣ କରଣ ପର୍ଯ୍ୟନ୍ତ ଅନିଚ୍ଛା ସତ୍ତ୍ୱେ ଲଜ୍ଜାର ସହିତ ମୁଠେ ନେବାକୁ ହାତ ପତାଇଥିଲେ । ୨୨ । ୭ । ୨୫ ତାରିଖ ରାତି ଶିବୁଳରେ କଟିଲା ।”

“୨୩ । ୭ । ୨୫ ତାରିଖ ସକାଳୁ ଶିବୁଳଠାରୁ ବାହାରି ନିକଟବର୍ତ୍ତୀ ଅନ୍ୟାନ୍ୟ ଧୋଇଆ ଗାଁକୁ ଗଲୁ । ପରଖଣ୍ଡ, ଖମାର ଓ ଗୋଲାପଡ଼ାଠାରେ ଗୁଡ଼ଲ ଦିଆଯାଇଥିଲା । ଏଠା ଅବସ୍ଥା ଠିକ୍ ଶିବୁଳ ଅବସ୍ଥା ପରି । ଗାଁ ଭିତରେ ପାଣି ପଶିଛି । କେତେ ଘର ଭାଙ୍ଗି ପଡ଼ିଛି । ଗଡ଼ କୋକଲ ଗୋଟିଏ ବଡ଼ ଗାଁ । ଅଧିକାଂଶ ଓଡ଼ିଆ ପାଇକ ବସ୍ତି । ଗାଁର ଅନେକ ଲୋକ ଘରଗୁଣ୍ଡ କଲିକତା ଚାଲିଯାଇଛନ୍ତି । ଓଡ଼ିଆ ଖଣ୍ଡାୟତମାନେ ଅତ୍ୟନ୍ତ ଦୁର୍ଭିକ୍ଷ ପୀଡ଼ିତ ହେଲେ ମଧ୍ୟ ଆମ୍ଭମାନଙ୍କଠାରୁ ଗୁଡ଼ଲ ନେଇ ନଥିଲେ । ଅତଏବ ଜାତିର ପ୍ରାୟ ୫୦ ଜଣଙ୍କୁ ଏଠାରେ ସାହାଯ୍ୟ ଦିଆଯାଇଥିଲା ।”

“୨୪ । ୭ । ୨୫ ତାରିଖ ସକାଳୁ କୋକଲରୁ ବ୍ରହ୍ମଗିରି ଓରଫ ଚବିଶକୁଦ ଭିତରକୁ ପଶିଲୁ । ଆଜି ଅପରାହ୍ନେ ତଳମାଳ, ନୂଆପଡ଼ା, ଶୀକରପୁର, ବାଲିଫୁଟ, ମଢ଼ପଡ଼ା, ରଣପଡ଼ା ଜଗନ୍ନାଥପୁର, କଙ୍କଡ଼ାଡିପ, ଜଗଦଳପୁର ଗ୍ରାମମାନ ବୁଲି ପ୍ରାୟ ୪୦୫ ଜଣ ଲୋକଙ୍କୁ ଗୁଡ଼ଲ ଦେଇଥିଲୁ । ଏସବୁ ଗ୍ରାମ ଚିଲିକା କୂଳରେ । ଚିଲିକା ଯୋଗେ ଏମାନଙ୍କର ବିପତ୍ତି । ଏସବୁ ଗାଁରେ ଏପର୍ଯ୍ୟନ୍ତ ଚିଲିକା ଜୁଆର ଲହଡ଼ି ମାରୁଛି । ଲୋକେ ଏ ଗାଁରୁ ସେ ଗାଁକୁ ଯାଇପାରୁନାହାନ୍ତି । ଗୋରୁ ମଇଁଷିଙ୍କର ଠିଆ ହେବାକୁ ଜାଗା ନାହିଁ । ବାଟରେ ଗୋରୁମଢ଼ା ସ୍ଥାନେ ସ୍ଥାନେ ଭାସି ଯାଉଥିବାର ଦେଖାଗଲା । ଗୋରୁ ଓ ମଇଁଷିଆଳ ମଧ୍ୟରୁ ପ୍ରତିଦିନ ଦୁଇଚାରି ମରୁଥିବାର ବେପାରୀମାନେ କହିଲେ ।”

“୨୫ । ୭ । ୨୫ ତାରିଖ । ଜଗଦଳପୁରଠାରୁ ବାହାରି ଗଡ଼ କୋକଲ ବାଟେ କାଣ୍ଡଗୋଦାରେ ପହଞ୍ଚିଲୁ । ବାଟରେ ବନ୍ଧମୁଣ୍ଡା, ନୀଳକଣ୍ଠପୁର, ପାରିକୁଦ ମୌଜାର ୫୧ ଜଣଙ୍କୁ ଗୁଡ଼ଲ ଦିଆଯାଇଥିଲା । ଆମ୍ଭେମାନେ କାଣ୍ଡଗୋଦାରେ ତିନିଦିନ ମୁକାମ କଲୁ । କଂସା ଗିନା ବିକି ଜମିଦାର ମହାଜନମାନଙ୍କଠାରୁ ଋଣ ଆଣି, ସରକାରୀ ତଗାବୀ ଆଣି ବିଲରେ ଯେ ବିହନ ପକାଇଥିଲେ ତାହା ଏବେ ଗଲା ।”

“୨୬ । ୭ । ୨୫ ତାରିଖ । ଆଜି କରମଳା, ଭେଇପଡ଼ା, ଯୋଡ଼ାପଦର, ବ୍ରହ୍ମପଡ଼ା, ଆଳି, ହରିପୁର, ଧର୍ମଲଗୋଦା, ଶାସନ, କାଣ୍ଡଗେଦା, ନୂଆଗାଁ ଗ୍ରାମସବୁ ଦେଖିଲୁ । ଦୟାନଦୀର ଅପର ପାର୍ଶ୍ୱରେ କେତେକ ଗାଁର ଅବସ୍ଥା ଏହିପରି ଶୋଚନୀୟ ।”

“୨୭ । ୭ । ୨୫ ତାରିଖ । ଏଦିନ ସକାଳେ କାଣ୍ଡଗୋଦାରୁ ବାହାରି ଗୋପପୁର,

ଗୋବିନ୍ଦପୁର, ଗୋଦରବନ୍ଧା, କରିପଡ଼ା, ବୋଇଙ୍ଗ, ଢମିର ଶେଣା, ବାଲିପୋଖରୀ, ସାନ୍ତପଡ଼ା, ରାଇକେରା, ଅଇନପୁର ଓ ଚଣ୍ଡପଡ଼ା ଗ୍ରାମମାନ ବୁଲି ୪୨୨ ଜଣଙ୍କୁ ଚାଉଳ ସାହାଯ୍ୟ ଦେଇଥିଲୁ । ଅଇନପୁର ଦଶା ନିତାନ୍ତ ମନ୍ଦ । ଖରିଦନେ ଏ ଗାଁ ବିଲକୁଲ ପୋଡ଼ିଯାଇଥିଲା । ଗଲବର୍ଷ ଲୋକଙ୍କର ଆଦୌ କ୍ଷେତ ନଥିଲା । କୁଣ୍ଡିଆ କରିଥିଲେ ମାତ୍ର । ଏଥର ବର୍ଷା ବଢ଼ି ସେ କୁଣ୍ଡିଆକୁ ଏକାବେଳକେ ଉଧାଇ ନେଲା । ଏମାନେ ଆକାଶ ତଳେ ବସିରହିଛନ୍ତି । ଏମାନଙ୍କ ରହିବା ଶୋଇବା ସ୍ଥାନ ପଙ୍କରେ ପୂର୍ଣ୍ଣ । ସେଥିରେ ଜୋକ, ସାପ, ବେଙ୍ଗ ବୁଲୁଛନ୍ତି । ମନୁଷ୍ୟ ଯେ କେତେ କଷ୍ଟ ଅସୁବିଧାରେ ବସା କରିପାରେ ଏମାନଙ୍କୁ ଦେଖିଲେ ତାହା ଜଣାଯିବ ।”

“୨୮ । ୭ । ୨୫ ତାରିଖ । ଏଦିନ ଆମ୍ଭେମାନେ କାଣ୍ଡଗୋଡାରୁ ଫେରିଲୁ । ବାଟରେ ଢଗିରିଆ ଓ ଅଣ୍ଡାସିଂହ ଗ୍ରାମରେ ୧୭୦ ଜଣଙ୍କୁ ସାହାଯ୍ୟ ଦିଆଯାଇଥିଲା । ସନ୍ଧ୍ୟା ବେଳକୁ ଲୁଣା ନଈବାଟେ ତେଲଙ୍ଗରେ ଆସି ପହଞ୍ଚିଲୁ ।”

ମୋଟରେ ଏକ ସପ୍ତାହ କାଳ ଏ ଅଞ୍ଚଳରେ କଟାଇ ଗୋପବନ୍ଧୁ ଫେରିଲେ । ଏ ବିପତ୍ତି ବେଳେ ସମସ୍ତଙ୍କ ପାଖରେ ପହଞ୍ଚି ସେ ଆପଣାର ଅତି ପ୍ରିୟଜନ ଭାବରେ ସଙ୍ଖୋଳି ଥିଲେ । ବାଟ ଚାଲିବାକୁ, ଖରାବର୍ଷାରେ ଉପାସ ରହିବାକୁ ତାଙ୍କର ଖାତିର ନଥିଲା । ତାଙ୍କ ଉପସ୍ଥିତିରେ ଲୋକମାନେ ଦମ୍ଭ ପାଉଥିଲେ । ସେମାନଙ୍କ ଭଙ୍ଗା ହୃଦୟରେ ସତେ ଯେପରି ଆଶାର ଇନ୍ଦ୍ରଧନୁ ଉଇଁ ଉଠୁଥିଲା ।

## ମାଙ୍ଗଘାଇ

ଓଡ଼ିଶାର ଭାଗ୍ୟରେ ବନ୍ୟା ଏକ କରାଳ ବିଦ୍ରୂପ । ସତେ ଯେପରି ଏ ଦୁର୍ଭାଗ୍ୟର ଅନ୍ତ ନାହିଁ । ୧୯୨୫ ମସିହାରେ ପୁଣି ଓଡ଼ିଶାର ନଦୀମାନଙ୍କରେ ପ୍ରବଳ ବେଗରେ ବନ୍ୟା ମାଡ଼ି ଆସିଲା । ଦେବୀ ନଦୀର ପଶ୍ଚିମ ପାଖ ସହଜେ ଧୋଇଆ ଅଞ୍ଚଳ । ବଢ଼ି ଏ ଅଞ୍ଚଳ ଲୋକମାନଙ୍କର ଏକ ପ୍ରକାର ଦେହସୁହା କଥା; କିନ୍ତୁ ସେ ବର୍ଷ ବନ୍ୟାର ପ୍ରକୋପ ଲୋକମାନଙ୍କୁ ବିପର୍ଯ୍ୟସ୍ତ କରିପକାଇଲା । ମାଙ୍ଗଘାଇ ଭାଙ୍ଗିଲା । ବହୁ ଅଞ୍ଚଳ ଜଳମଗ୍ନ ହୋଇ ଟେମର ଧୋଇଆ ଅଞ୍ଚଳ ଜଳାର୍ଣ୍ଣବ ପରି ଦେଖାଗଲା । ସେହି ଘାଇର ବିପନ୍ନ ଲୋକମାନଙ୍କୁ ସାହାଯ୍ୟ ବିତରଣ କରିବାକୁ କବି ବୀର କିଶୋର ଦାସ, ଭାଗୀରଥି ମହାପାତ୍ର, ଲାଲ ନଗେନ୍ଦ୍ର କୁମାର, ଶ୍ରୀ ଲକ୍ଷ୍ମୀଧର ମହାନ୍ତି ଓ ପଞ୍ଜାବର ମୋହନଲାଲଙ୍କୁ ନେଇ ଦାସେ ଆପଣେ ଯାଇଥିଲେ । ପ୍ରତ୍ୟୁଷରୁ ଗୋଟିଏ କାଠୁଆ ଡଙ୍ଗାରେ ବସି ଅଣଖିଆ ବଙ୍ଗଳାରୁ ବାହାରି ଯାଇଲେ, ଚଉପଡ଼ା ବୁଲି ଆସିଲେ । ମୋହନଲାଲ ଓ ଦାସେ ଆପଣେ ପଇସା ଥାଳି ଧରିଥା'ନ୍ତି । ଦିନସାରା ଝିପିଝିପି ବର୍ଷା ହେଉଥାଏ । ସେ

ପରସ୍ଥ ଉରେ ଖାଦ୍ୟ ମିଳିବା ଦୁଷ୍କର । ଚଉପଡ଼ାର ଜଣେ କୁଲି ସର୍ଦ୍ଦାର ପ୍ରାୟ ଅଧସେର ଦୁଧ ଦେଲା ଓ ତାକୁ ଗରମ କରିବାପାଇଁ ତାଳପତ୍ର ବିଡ଼ାଟିଏ ଦେଲା । ବନ୍ୟା ଯୋଗୁ ଜାଳ ମିଳିବା ସମ୍ଭବ ନଥିଲା । ସେଦିନ ଗୁରୁବାବୁ ଏକାଦଶୀ କରିଥା'ନ୍ତି । ସବୁଯାକ ଦୁଧ ଦାସେ ଆପଣେ ତାଙ୍କୁ ହିଁ ପିଇବାକୁ ଦେଲେ । କେତେକ ଛିପ ଓ କୂଦରେ ସଭା କରି ଯନ୍ତ୍ରକଷ୍ଟର ସାହାଯ୍ୟ ବାର୍ଣ୍ଣି ରାତ୍ରି ପ୍ରାୟ ୯ଟା ବେଳକୁ ସମସ୍ତେ ଗୋବିନ୍ଦପୁର ଫେରିଲେ । ନଦୀ କଡ଼ରେ ମାଳ ମାଳ କୁମ୍ଭୀର ଶୋଇଥା'ନ୍ତି । କାଠୁଆରୁ ଅଠା ଠାଏ ଠାଏ ଛାଡ଼ି ଯାଇଥିବାରୁ ପାଣି ଝରୁଥାଏ । ଏଣେ ଉପରୁ ବର୍ଷା ମଧ୍ୟ ପଡ଼ୁଥାଏ । ଗୋଟିଏ ସର୍ବେଇରେ ଅନବରତ ପାଣି କଢ଼ା ଯାଉଥାଏ ।

ଝାପ୍‌ସା ଅନ୍ଧାରରେ ନଦୀବନ୍ଧ ଉପରେ ଗୋଟିଏ ଘର ଦେଖାଗଲା । ଡାକିବା ପରେ ସେ ଘରୁ ଶ୍ରୀପତି ନନ୍ଦ ବାହାରିଲେ । ଗୋବିନ୍ଦପୁର ଥାନାକୁ ସେ ନୂଆ ହୋଇ ସେତେବେଳେ ଯାଇଥାନ୍ତି । ଶ୍ରୀପତି ବାବୁ ସହଯାତ୍ରୀମାନଙ୍କୁ ତାଙ୍କ ଘରକୁ ଡାକିଲେ । ସମସ୍ତେ ଆସିଲେ; କିନ୍ତୁ ଦାସେ ଆପଣେ ସେଇ କାଠୁଆରେ ବସି ରହିଲେ । ଯାନ ଖଦଡ଼ ଧୋତିଟିଏ ପିନ୍ଧିଥାନ୍ତି ଓ ମୁଣ୍ଡରେ ମୋଟା ଖଦଡ଼ ଚଦରଟିଏ ପକାଇଥାନ୍ତି । ସାରାଦିନ ଉପବାସ । ତଳପାଣି ଓ ଉପର ପାଣିରେ ଦେହ ଥରିଯାଉଥାଏ । ଶ୍ରୀପତି ବାବୁ ନିଜେ ଦାସେ ଆପଣଙ୍କୁ ସେତେ ଅନୁରୋଧ କରି ଡାକିଲେ ମଧ୍ୟ ସେ ଉଙ୍କିଲେ ନାହିଁ । ଏତେ ରାତିରେ ଶ୍ରୀପତି ବାବୁଙ୍କ ଘରେ ହଠାତ୍ ଏତେ ଲୋକଙ୍କ ପାଇଁ ଖାଇବାକୁ କ'ଣ ବା ମିଳିପାରେ । ଦୁଇଟି ନଡ଼ିଆ କୋରି ତାକୁଇ ଅଳ୍ପ ଅଳ୍ପ ସମସ୍ତଙ୍କୁ ଖାଇବାକୁ ଦିଆହେଲା । ଲାଲ ନଗେନ୍ଦ୍ର କୁମାର ସେଇ ନଡ଼ିଆ କୋରିରୁ କିଛି ନେଇ ଦାସେ ଆପଣଙ୍କୁ ଖାଇବାକୁ ଯାଚିଲେ ଓ ଥାନା ବାରଣ୍ଡାକୁ ଆସିବାକୁ ବହୁତ ଅନୁରୋଧ କଲେ । ସେତେବେଳକୁ ସେ ପ୍ରାୟ ଥରୁଥାନ୍ତି । ଗୋପବନ୍ଧୁ କହିଲେ—"ନଗେନ୍ଦ୍ର, ତୁମେ ମୋତେ କଷ୍ଟାଳ କରନାହିଁ । ମୁଁ ଥାନା ବୋଲି ଫେରିନାହିଁ । ମୁଁ ଥରେ ଆସିକାରେ ସେଠା ସବ୍‌ରେଜଷ୍ଟ୍ରାର ଶ୍ରୀବତ୍ସ ପଣ୍ଡାଙ୍କ ଘରେ ରାତିଟିଏ କଟାଇଥିଲି । ଏଥିପାଇଁ ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟଙ୍କଠାରୁ ଗୁପ୍ତପାଇ ଶ୍ରୀବତ୍ସ ବାବୁଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା । ଏହି ଥାନାବାବୁ ଜଣକ ସେତେହେଲେ ଓଡ଼ିଆ । ପୁଣି ପୁଲିସ୍ ସାହେବ ହେଉଛନ୍ତି ପରମ ଇଂରେଜ ଭକ୍ତ ଶ୍ରୀକୃଷ୍ଣ ମହାପାତ୍ର । ସେ ଶୁଣିଲାକ୍ଷଣି ବିଚାରି ଶ୍ରୀପତିର ସର୍ବନାଶ କରିଦେବେ । ଆମ ଓଡ଼ିଆ ଚାକିରି ଖଣ୍ଡେ ପାଇବା କାଠିକର ପାଠ । ଏଣୁ ମୋ ପାଇଁ ଜଣେ ଓଡ଼ିଆର ଚାକିରି ଯିବ । ସେ ତୁମର ଗ୍ରାମବନ୍ଧୁ । ଏଣୁ ତୁମେମାନେ ବାରଣ୍ଡାରେ ରୁହ । ମାତ୍ର ମୁଁ କାଷ୍ଠା ଯିବି ନାହିଁ ।" ସେ ସକାଳ ପର୍ଯ୍ୟନ୍ତ ସେମିତି କାଠୁଆରେ ବସି ରହିଲେ । ମୁଣ୍ଡଟିକୁ ଦୁଇ ଅଣ୍ଟୁ ସନ୍ଧିରେ ଗୁଞ୍ଜି ବସିରହିଥାନ୍ତି । ଆଖିକି ନିଦ ଆସୁଥାଏ କି ନାହିଁ ଭଗବାନ ଜାଣନ୍ତି ।

## ଦ' ପଦ ସତକଥା

ମାଙ୍ଗଧାଇ ସ୍ୱର୍ଗ ଗୋବିନ୍ଦପୁରର ସାଇକ୍ଲୋ ଅଞ୍ଚଳର ଦୁର୍ଦ୍ଦଶା ଶୋଚନୀୟ ହୋଇ ପଡ଼ିଲା । ଗୋପବନ୍ଧୁଙ୍କ ଉଦ୍ୟମରେ ସାଇକ୍ଲୋଠାରେ ଗୋଟିଏ ଶସ୍ତା ଧାନଗୋଲା ଖୋଲାହେଲା । ଶ୍ରୀ ନୀରକିଶୋର ଦାସ ଦାୟିତ୍ୱରେ ରହିଲେ; କିନ୍ତୁ ଧାନ ବିକି ପଇସା ଓ ହିସାବ ରଖିବାକୁ ଆଉ ଜଣେ ନିଯୁକ୍ତ ହେଲେ । ପରେ ଏହି କେନ୍ଦ୍ରରେ କେତେକ ଦୁର୍ନୀତି ସମ୍ବନ୍ଧୀୟ ଅଭିଯୋଗ ଗୋପବନ୍ଧୁଙ୍କ ପାଖରେ ପହଞ୍ଚିଲା । ପୁନଶ୍ଚ ହିସାବରେ ବ୍ୟତିକ୍ରମ ବି ଦେଖାଗଲା । ପ୍ରତି ସପ୍ତାହରେ କିନ୍ତୁ ହିସାବ ଚିଠା ଗୋପବନ୍ଧୁ ପାଖରେ ପହଞ୍ଚୁଥାଏ । ସେ ଦିନେ ନିଜେ ଆସି ପହଞ୍ଚି ନୀରକିଶୋର ବାବୁଙ୍କୁ ଡାକି କହିଲେ—
"ଭାଇସ୍ ଚେୟାର୍ ମ୍ୟାନ୍ ସାହେବ, ଏ ଆଡ଼କୁ ଆସ ।"

ତାଙ୍କର ଏପରି ଡାକ ଶୁଣି ନୀରକିଶୋର ବାବୁ ସଙ୍କୁଚିତ ହୋଇ ପଡ଼ିଲେ । ତା'ପରେ ଗୋପବନ୍ଧୁ ପଚାରିଲେ—"ଭାଇସ୍ ଶବ୍ଦର ଅର୍ଥ କ'ଣ ?"

ଉତ୍ତର ମିଳିଲା –'ପାପ' ।

ତା'ପରେ ଗୋପବନ୍ଧୁ ଧାନ ଗୋଲାର ହିସାବ କାଗଜ ନୀରକିଶୋର ବାବୁଙ୍କ ପାଖକୁ ପକାଇ ଦେଇ କହିଲେ—"ତମ ଦାୟିତ୍ୱରେ ଏ ଗୋଲା କାମ ଦିଆଯାଇଛି । ଏଥିରେ ଯାହା ତୋଷରପାତ୍ର ହେବ, ସେଥିପାଇଁ ତମେ ଦାୟୀ । ତମେ ଜାଣ କେତେ ଗରିବଙ୍କଠାରୁ ଏ ପଇସା ଆସିଛି । ମୁଁ ଗରିବଙ୍କଠୁ ଆଣି ଗରିବଙ୍କୁ ଦେଉଛି । ଭିକମାଗି ଭିକ ଦେବା କଥା । ତମେ ହିସାବ ମୋଟେ ଦେଖୁ ନାହଁ । ଯେବେ ଦେଖୁଥାଅ, ତେବେ ବି ଏହାକୁ ସାଞ୍ଚ କରିବାକୁ ତମର ବୁଦ୍ଧି ନାହିଁ ।"

କିଛି ସମୟ ରହି ପୁଣି ଗୋପବନ୍ଧୁ କହିଲେ—"ସେ ଭଦ୍ରବ୍ୟକ୍ତି ଯେତେବେଳେ ମାଗଣାରେ କାମ କରିବେ ବୋଲି କହିଲେ, ମୁଁ ଟିକିଏ ସନ୍ଦେହ କରୁଥିଲି । ଗଣା କାମ ଓ ମାଗଣା କାମରେ ନିଷ୍ଠାସ୍ଥ ତଫାତ୍ । ଅବୈତନିକ ପଦର ମର୍ଯ୍ୟାଦା କ୍ୱଚିତ୍ ଲୋକେ ରକ୍ଷା କରନ୍ତି । ଦରକାରୀ ଦରମା ନେଇ ସାଧୁ ଭାବରେ କାମ କରିବା ଲୋକ ଦେଶର ପ୍ରକୃତ ସେବକ ।"

"ଆମେ କଥାରେ କହୁ ଲୋକର ବୁଦ୍ଧି ଶୁଦ୍ଧି ନାହିଁ । ଏ ବାବୁଙ୍କର ତୀକ୍ଷ୍ଣ ବୁଦ୍ଧି ଅଛି, ମାତ୍ର ଶୁଦ୍ଧି ନାହିଁ ।"

ସେତେବେଳକୁ ନୀରକିଶୋର ବାବୁଙ୍କ ମୁହଁ ଝାଉଁଳିପଡ଼ିଲାଣି । ତା'ପରେ ଗୋପବନ୍ଧୁ ହସି ହସି ଦୁଇଟି ଗପ କହିଲେ—

"ଆମେ ସବୁ ପଢ଼ିଲା ବେଳେ ଗୋଟିଏ ମେସ୍‌ରେ ଥାଉଁ, ଜଣେ ପୂଜାରୀ ଥାଏ । ସେ ଛୁଟି ନେଇ ଘରକୁ ଯିବାକୁ ବସିଲା । ଆମେ ସବୁ ଯେତେବେଳେ ଖାଇବସୁ ସେ ତା'ର ଛୁଟି କଥାଟି ଉଠାଏ । ଆମେ ସବୁ ଏକ ସ୍ୱରରେ ନାହିଁକରିଦେଉ । ଏମିତି ଯେତେଥର ସେ

କହିଲି, ସବୁ ଥର ସେ ଫେଲ୍ ମାରିଲା । ଦିନେ ସକାଳୁ ଉଠି ଦେଖିଲି ବେଳକୁ ବଡ଼-ଖୋଲୁ ସେ ଖସିଯାଇଛି । ଆମ ଭିତରେ ଗୋଳଘଣ୍ଟା ଖେଳିଲା, ଆମେ ପ୍ରତ୍ୟେକଙ୍କ ଉପରେ ଦୋଷ ଲଦିଲୁ—ତମେ ସବୁ ଛୁଟି ଦେଲ, ଏଇଲାଏ କିଏ ହିସେବ ଦେବ । ପ୍ରତ୍ୟେକେ କହିଲେ—"ମୁଁ କ'ଣ କହିଥିଲି କି, ତୁମେ ସବୁ ହଁ କରିବାରୁ ମୁଁ ଏକ ହେଲି ।"

ପରେ ଜଣାପଡ଼ିଲା—ପୂର୍ବାଶ୍ର ପ୍ରତ୍ୟେକ ପିଲାଙ୍କୁ ଭେଟି ଏକୁଟିଆ ଦେଲେ କହିଛି—"ବାବୁ ସମସ୍ତେ ଛୁଟି ଦେଲେଣି, ଆପଣ ଖାଲି ହଁ କହିଲେ ହେଲା ।" ପ୍ରତ୍ୟେକ ତା' କଥାରେ ବିଶ୍ୱାସ କରି ହଁ ଭରିଦେଇଛନ୍ତି । ଆମ୍ଭମାନଙ୍କଠାରୁ ସେ ବୁଦ୍ଧିରେ ବଳିଗଲା ।"

ଗପ କହିବା ଢଙ୍ଗ ଗୋପବନ୍ଧୁଙ୍କର ଅନନ୍ୟ ଥିଲା । ପୁଣି ଆଉ ଗପଟି ଯୋଡ଼ିଲେ—"କଲିକତାରେ ଆମେ ହଷ୍ଟେଲରେ ଥାଉ । ଆମ ଉପରେ ମାସମାସକର ହଷ୍ଟେଲର ହିସାବପତ୍ର ରଖିବା ଭାର ଥାଏ । ରୋଷେଇଆ ଦିନକର ଚିଠା ଧରି ସଉଦା କିଣି ଆଣନ୍ତି । ଆମେ ସବୁ ସଉଦା ଉପରେ ଆଖି ପକାଇ ଦେଉଁ । ଟଙ୍କା ଅଣା ପାଇଁ ମିଶାଇ ଦେଇ ହିସାବ ମିଳାଇ ଦେଉ । ଚିଠା କିଏ କୁଆଡ଼େ ପକାଇ ଦିଅନ୍ତି । ମୁଁ ମୋ ପାଳିର ଚିଠା-ଗୁଡ଼ିକ ସାଇତି ରଖେ । ଦିନକର ଗୋଟିଏ ଚିଠା ମୋ ଆଖିରେ ପଡ଼ିଲା । କୌତୁକରେ ବର୍ଣ୍ଣାଶୁଦ୍ଧି ଦୋଷ ଦେଖି ଦେଖି କାନ୍ଦା ହୋଇଗଲି । ସେ ରୋଷେଇଆ ଏଡ଼େ ଧୂର୍ତ୍ତ, ପ୍ରତିଦିନ କାଳିକଲମରେ ଚାରିଅଣା ଛ'ଅଣା ଚୋରିକରୁଛି । ତାକୁ ଆମେ କେହି ଧରି ପାରୁନାହିଁ । ସେ ଚିଠାରେ ପ୍ରତିଦିନ କାଠ ସେବେ ଲେଖିଲା ଚାରିଅଣା, ଦୁଇ ଦିନଟା ଜିନିଷ ତଳକୁ ଲେଖିଲା ଜାଳ ତିନିଅଣା, ହାଣ୍ଡି ଫୁଟା ଅଣାଏ, ଆଉ ଗୋଟିଏ ଜାଗାରେ ଫୁଟଣ ଦୁଇ ପଇସା, ତେଲ ଦୁଇଅଣା, ମାଲପା ଛ'ପଇସା ।"

ଏ ଦୁଇଜଣଙ୍କର ବୁଦ୍ଧି ଥିଲା—କିନ୍ତୁ ଶୁଦ୍ଧି ନଥିଲା । ହିସାବ ଟିକିନିଖି କରି ଦେଖିବାକୁ ମତେ ସେ ରୋଷେଇଆ ଶିକ୍ଷା ଦେଇଛି । ସେ ମୋର ଗୁରୁ ।"

"ତମେ ସେ ଭଦ୍ରବ୍ୟକ୍ତିଙ୍କୁ ଡକାଅ । ମୁଁ ତାଙ୍କର ଭୁଲ ଦେଖାଇ ଦେବ । ସେ ଟଙ୍କା ତ ଆଉ ମିଳିବ ନାହିଁ—ସତକଥା ମାନିଗଲେ ସେ ଟଙ୍କାତକ ତା' ଦରମାରେ ପକାଇ ଦେବା । 'ବୁଭୁକ୍ଷିତଂ କିଂ ନ କରୋତି ପାପଂ ।' ତମ ଉପରେ ଆଦାୟ କରିବା ଭାର ରହିଲା ।"

ବୀରବାବୁ କହିଲେ—"ହଁ ।"

ଦାସେ ଆପଣେ ପୁଣି କହିଲେ—"କ'ଣ ଆଦାୟ କରିବା ଭାର ରହିଲା ?" ବୀରବାବୁ ନିରୁତ୍ତର ରହିଲାରୁ ଗୋପବନ୍ଧୁ କହିଲେ—"ଟଙ୍କା ନୁହେଁ—ଦୁଇପଦ ହିତ କଥା ।"

ତାହାହିଁ ହେଲା । ସେ ଭଦ୍ରବ୍ୟକ୍ତି ଆସି ଦୋଷ ମାନିଲେ ! ତାଙ୍କର ଛ' ମାସର ଦରମା ରୂପେ ନବେ ଟଙ୍କା ଖାତାରେ ଚଢ଼ି ହିସାବ ଫଇସଲା ହେଲା ।

## ଏଇ ଭୂତ କାନ୍ଦୁଥିଲା

ଥରେ ଧୋଇଆ ଅଞ୍ଚଳ ବୁଲି ଗୋପବନ୍ଧୁ ଗୋଟିଏ ପୁରୁଣା କୋଠିରେ ରାତିରେ ରହିଲେ । ଏ କୋଠି ଜଣେ ଜମିଦାରଙ୍କର ଥିଲା ଓ ଅନେକ ଦିନ ଧରି କେହି ରହୁ ନଥିଲେ । ଅସନା ହୋଇ ପଡ଼ିଥାଏ । ସେଦିନ ସାଙ୍ଗରେ ବୀର କିଶୋର ଦାସ ଥା'ନ୍ତି । ସେଦିନ ରାତିରେ ଗୋପବନ୍ଧୁ ଗୋଟିଏ ଘରେ ଓ ବୀର ବାବୁ ଆଉ ଗୋଟିଏ ଘରେ ରହିଲେ । ବୀର ବାବୁ ରାତିସାରା ଶୋଇ ପାରିଲେନି । ଭୂତର ଅଜଣା ଭୟ ତାଙ୍କ ତରୁଣ ମନକୁ ବିଚଳିତ କରୁଥାଏ । ସେ ଆଖିବୁଜି ଚାହିଁ ପଡ଼ିଥା'ନ୍ତି । ତାଙ୍କୁ ଗୁଇ ନିଦ ଲାଗି ଆସିଛି—କେହି କାନ୍ଦିବାର ସୁଁ ସୁଁ ଶବ୍ଦ ସେ ଶୁଣିପାରିଲେ । ତାଙ୍କୁ ବେଶି ଡର ଲାଗିଲା । ପୁଣି ତାଙ୍କର ଧାରଣା ବଦ୍ଧମୂଳ ହେଲା ଯେ ଏହିପରି ପରିତ୍ୟକ୍ତ ଘରମାନଙ୍କରେ ଭୂତ ବାସ କରନ୍ତି ।

ରାତି ପାହିଲା । ଡାସେ ଆପଣଙ୍କୁ ସେ ତାଙ୍କ ଦୁରବସ୍ଥା ଜଣାଇଲେ । ଗୋପବନ୍ଧୁ ଦାନ୍ତ ଘଷୁଥା'ନ୍ତି । ପଚାରିଲେ—"ତୁମେ କ'ଣ ଭୂତକୁ ଦେଖିଛ ?"

ବୀରବାବୁ କହିଲେ—"ନା ।"

ଗୋପବନ୍ଧୁ ପୁଣି କହିଲେ—"ତେବେ ଡରିଲ କାହିଁକି ? ପରେ ନିଜ ଆଡ଼କୁ ଦେଖାଇ କହିଲେ—"ଏଇ ଭୂତ କାନ୍ଦୁଥିଲା । ମୋର ପରି ଏ ଦେଶରେ ଲକ୍ଷ ଲକ୍ଷ ଭୂତ ଅଛନ୍ତି ।" ଏତକ କହୁ କହୁ ଆଖି ତାଙ୍କର ଛଳଛଳ ହୋଇ ଆସିଲା । ସେ କହିପକାଇଲେ—"କାଲି ଯେଉଁ ଦୃଶ୍ୟ ଦେଖି ଆସିଲେ ସେଥିରେ କିଏ ଧୈର୍ଯ୍ୟ ଧରିବ ? ସେ ବୁଢ଼ୀଟି ଯଦି ତୁମ ମାଆ ହୋଇଥା'ନ୍ତା ? ସେ ପିଲାଟି ଯଦି ତୁମର ଭଉଣୀ ହୋଇଥା'ନ୍ତା ?"

ବୀର ବାବୁଙ୍କ ଆଖିରୁ ଦୁଇଟୋପା ଲୁହ ଗଡ଼ି ପଡ଼ିଲା, ସେ ତାଙ୍କ ପାଖରୁ ଧୀରେ ଅପସାରିତ ହୋଇଗଲେ ।

## ବଣଭୋଜି

ଏହା ୧୯୨୫ ମସିହା ବନ୍ୟା ସମୟର କଥା । ସେତେବେଳେ ରାଧାନାଥ ଟ୍ରେନିଂ ସ୍କୁଲର ଛାତ୍ରମାନେ ନରାଜକୁ ବଣଭୋଜି ପାଇଁ ଯାଉଥା'ନ୍ତି । ସ୍ୱର୍ଗତ ମୃତ୍ୟୁଞ୍ଜୟ ରଥ ସେତେବେଳେ ଟ୍ରେନିଂ ସ୍କୁଲର ଶିକ୍ଷକ । ସେ ମଧ୍ୟ ପିଲାଙ୍କ ସହିତ ଯୋଗ ଦେଇଥା'ନ୍ତି । ପ୍ରକୃତିର ଉତ୍ସଙ୍ଗରେ ଛାତ୍ରମାନେ ମୁଖର ଓ ଚପଳ । ଖେଳକୌତୁକ ଓ ସଙ୍ଗୀତର ଆସର ଛୁଟୁଥାଏ । ପୁଣି ଅନତିଦୂରରେ ମୂଲ୍ୟବାନ୍ ଖାଦ୍ୟର ଆୟୋଜନ କେହି କେହି କରୁଥା'ନ୍ତି । ନଦୀର ଅପରପାର୍ଶ୍ୱରେ କେହି ଜଣେ ଝୁଲି ଝୁଲି ଆସୁଥିବାର ଦେଖାଗଲା ।

ଗ୍ରେଟ ଖଦଡ଼ର ପରିଧାନ । ଦେହରେ ଚଦର, ପୁଣି ମୁଣ୍ଡରେ ଗାମୁଛା । ନିର୍ବିକାର ଭାବରେ ଏଇ ମୂର୍ତ୍ତିଟି ଚାଲିଚାଲି ଆସି ନଈପାର ହେଲା । ନିକଟରୁ ନିକଟତର ହେବାରୁ ଶ୍ରୀ ରଥେ ଚହ୍ନିଲେ—ଦାସେ ଆପଣେ । ପିଲାମାନେ ଭୂମିଷ୍ଠ ଦଣ୍ଡବତ ହେଲେ । ବଣ-ଭୋଜକୁ ନିମନ୍ତ୍ରଣ ଜଣାଇଲେ ।

ଗୋପବନ୍ଧୁ ବଡ଼ି ଅଞ୍ଚଳରୁ ଫେରୁଥା'ନ୍ତି । ସେଠାରେ ନଥିଲାର ଦୀର୍ଘଶ୍ୱାସ, ବୁଭୁକ୍ଷାର ଆକୁଳ କ୍ରନ୍ଦନ । ଏଠାରେ ଖାଦ୍ୟପେୟର ବିପୁଳ ଆୟୋଜନ । ପ୍ରାଣ ତାଙ୍କର ଏ ବିଷମ ପରିସ୍ଥିତିରେ ବିଦଗ୍ଧ ହେଉଥିଲା । କିଛି କହିଲେ କାଳେ ପିଲାଙ୍କ ସଉକ ଭାଙ୍ଗିଯିବ, ମନ ମରିଯିବ, ସେଥିପାଇଁ କିଛି ନକହି ଧୀରେ ଧୀରେ ଆଗେଇଲେ । କହିଗଲେ ନିକଟବର୍ତ୍ତୀ ଗ୍ରାମରେ କାମ ଅଛି । ଠିକ୍ ସମୟରେ ଆସି ଭୋଜରେ ଯୋଗଦେବେ ।

ଚାହିଁ ଚାହିଁ ବହୁତ ବେଳ ହେଲା । ଗୋପବନ୍ଧୁ ନଆସିଲେ ପିଲାମାନେ ଓ ମୃତ୍ୟୁଞ୍ଜୟ ବାବୁ ବା କପରି ଖାଉଛନ୍ତି ? ଶେଷକୁ ପିଲାମାନଙ୍କୁ ଖାଇବାକୁ କହି ମୃତ୍ୟୁଞ୍ଜୟ ବାବୁ ଗ୍ରାମକୁ ଆସିଲେ । ମାଇଲଏ ଦୂରରେ ଗ୍ରେଟ ଗାଁଟିଏ । ଦେଖିଲେ ଗୋପବନ୍ଧୁ ହାଲିଆ ହୋଇ ଜଣକ ପିଣ୍ଡାରେ ଚକ୍ଷଟିଏ ବିଛେଇ ଶୋଇଛନ୍ତି । ହାତ ହୋଇଚି ମୁଣ୍ଡ ତଳର ତକିଆ । ଗାମୁଛାଟି ଚକ୍ଷ ଉପରେ ପଡ଼ି ହୋଇଛି । ମୃତ୍ୟୁଞ୍ଜୟବାବୁ ପଚାରି ବୁଝିଲେ—ଘରବାଲାଠାରୁ ଅଧଲକର ମୁଢ଼ି କିଣି ଖାଇ ବିଦେଶୀ ପଥିକ ହାଲିଆହୋଇ ଶୋଇଛନ୍ତି । ତାଙ୍କ ଆଖିରେ ପଥକ୍ଲାନ୍ତିର ଅସୀମ ନିଦ୍ରା ।

ମୃତ୍ୟୁଞ୍ଜୟ ବାବୁ ଡାକଲେ । ଦାସେ ଆପଣେ ଅଖି ମଳି ଉଠିଲେ । ସେତେବେଳକୁ ଦିନ ହେଲଣି ଆସି ୪ଟାରୁ ଊର୍ଦ୍ଧ୍ୱ । ସେ ହଠାତ୍ ବଡ଼ ବିଚଳିତ ହୋଇ ପଡ଼ି କହିଲେ —"ପିଲମାନେ ସବୁ ଖାଇସାରଲେଣି ତ ? ଓହୋ, ମୁଁ ତ ପୂରା ଭୁଲିଯାଇଛି । ହଉ ଚାଲ ।"

ଆସିଲେ ଯିନା—ଖାଇଲେ ନାହିଁ । ଏଡ଼େ କାଙ୍ଗୁର ସେ ମଣିଷ—ଆଖିରୁ ଖାଲି ଲୁହ ନିଗାଡ଼ିଲେ । ମହାମାନବର ପେଟ ଏ ଭୋଜି ଚାହେଁନ । ଏ ଖାଦ୍ୟରେ ସେ ଅପରିଚିତ । ଓଡ଼ିଶାର ଅଗଣିତ ଜନତାର ଯାହା ଦୈନନ୍ଦିନ ଆହାର—ଆହା ସେଇ ତା'ର ପ୍ରିୟ ଖାଦ୍ୟ ଏ ନୁହେଁ । ବଳେଇ ବଳେଇ ଅଲପ କିଛି ଖାଇ ସେ ଉଠିଲେ । ପୁଣି ନିଜ ଗନ୍ତବ୍ୟ ପଥରେ ଆଗକୁ ଚାଲିଲେ ।

## କଟକରେ ମହାତ୍ମା ଗାନ୍ଧି

୧୮ । ୮ । ୨୫ ତାରଖ ସକାଳେ ପୁରୀ ଏକ୍ସପ୍ରେସ୍ ଯୋଗେ କଲିକତାରୁ ଆସି କଟକ ଷ୍ଟେସନରେ ମହାତ୍ମା ଗାନ୍ଧି ପହଞ୍ଚିଲେ । ତାଙ୍କର ଏ ଆକସ୍ମିକ ଯାତ୍ରାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଉତ୍କଳ ଟାନେରୀ ପରିଦର୍ଶନ । ବର୍ଷା ସତ୍ତ୍ୱେ ସହସ୍ରାଧିକ ଲୋକ କଟକ ଷ୍ଟେସନରେ

ମହାତ୍ମା ଗାନ୍ଧିଙ୍କୁ ଅପେକ୍ଷା କରିଥିଲେ । ମଧୁବାବୁ, ଉତ୍କଳ ଟାନେରୀର ନିର୍ଦ୍ଦେଶକବୃନ୍ଦ, ଗୋପବନ୍ଧୁ, ମାରବାଡ଼ି ବ୍ୟବସାୟୀ, ଓକିଲ, ଡାକ୍ତର, ଛାତ୍ର, ମୁସଲମାନ ଆଦି ସହରର ସବୁ ଶ୍ରେଣୀର ଲୋକେ ମହାତ୍ମା ଗାନ୍ଧିଙ୍କୁ ଅଭ୍ୟର୍ଥନା ଜଣାଇଥିଲେ । ସଭାରେ ଅଛୁଆ ଶ୍ରେଣୀର ଲୋକମାନେ ମହାତ୍ମା ଗାନ୍ଧିଙ୍କୁ ଏକ ଅଭିନନ୍ଦନପତ୍ର ଦେଇ ଏ ଜଗନ୍ନାଥଙ୍କ ଦେଶରେ ସେମାନଙ୍କ ପ୍ରତି ଥିବା ଘୃଣା ଓ ବିଦ୍ୱେଷ ତୁରନ୍ତ ଦୂର କରିବା ନିମନ୍ତେ ଅନୁଯୋଗ କରିଥିଲେ, "ଆମ୍ଭେମାନେ ବିରାଟ ମଣିଷ ଜାତିର ହେଲେ ମଧ୍ୟ ଅସ୍ପୃଶ୍ୟ ଓ ଘୃଣ୍ୟ । ଜଗନ୍ନାଥ ପତିତପାବନ ନାମରେ ବିଶେଷରୂପେ ଜଗତରେ ପରିଚିତ । ଦୀନଦୁଃଖୀମାନଙ୍କୁ ଉଦ୍ଧାର କରିବା ତାଙ୍କର ପ୍ରିୟକାର୍ଯ୍ୟ । ବୁଦ୍ଧ, କୃଷ୍ଣ, ଚୈତନ୍ୟ ପ୍ରଭୃତି ମହାପୁରୁଷମାନେ ଧର୍ମସଂସ୍ଥାପନ କାଳରେ ଏହି ଉତ୍କଳ ଖଣ୍ଡକୁ ସେମାନଙ୍କର ଲୀଳାଭୂମି ନିରୂପିତ କରିଥିଲେ । ଆମ୍ଭେମାନେ ଆପଣଙ୍କୁ ସେହି ପଥର ପଥିକ ଦେଖି ହୃଦୟରେ ବହୁ ଆଶା ପୋଷଣ କରିଅଛୁ ।

୧୯ । ୮ । ୨୫ ତାରିଖ ୫ଟା ସମୟରେ କଟକ ମ୍ୟୁନିସିପାଲିଟି ପଡ଼ିଆରେ ଏକ ସାଧାରଣ ସଭା ଆୟୋଜିତ ହୋଇଥିଲା ; କିନ୍ତୁ ସଭା ବେଳକୁ ପ୍ରବଳ ବର୍ଷା ହେବାରୁ ଜନତାର ଭିଡ଼କୁ ଅତିକ୍ରମ କରି ମହାତ୍ମା ଗାନ୍ଧିଙ୍କୁ ସଭା ସ୍ଥଳକୁ ଆଣିବା ସମ୍ଭବ ହେଲାନାହିଁ । ପଡ଼ିଆ ମଧ୍ୟରେ ଥିବା ଗୋଟିଏ ଗୃହଳିଆ ତଳେ ସାମାନ୍ୟ ଉଚ୍ଚ ଜାଗାରେ ମହାତ୍ମା ଗାନ୍ଧି ବସିରହିଲେ । ବର୍ଷାଯୋଗୁ କାଦୁଅରେ ନବସି ଲୋକମାନେ ଠିଆ ହୋଇ ରହିବାରୁ ଅନେକ ସମୟ ଧରି ଗୋଳମାଳ ହୋଇଗଲା । ମଧୁବାବୁ ଓ ଗୋପବନ୍ଧୁ ଲୋକଙ୍କୁ ଅନୁରୋଧ କରିବାରେ ଗୋଳମାଳ ଶାନ୍ତ ହୋଇଗଲା ।

ଏହା ପରଦିନ ମହାତ୍ମା ଗାନ୍ଧି କଟକ ସହରର ସବୁ ବୈଠକ ଓ ସଭାରେ ଯୋଗ ଦେଇଥିଲେ ଓ ସ୍ୱରାଜ୍ୟାଶ୍ରମରେ କଂଗ୍ରେସ ସଂଗଠନ ବିଷୟରେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ ଦୀର୍ଘ ଆଲୋଚନା କରିଥିଲେ । ଓଡ଼ିଆ ଖ୍ରୀଷ୍ଟିୟାନ ଓ ମୁସଲମାନମାନଙ୍କ ପ୍ରତିନିଧିଙ୍କ ସହିତ ବହୁ ସାମ୍ପ୍ରଦାୟିକ ସମସ୍ୟା ସଂପର୍କରେ ଆଲୋଚନା କରିଥିଲେ । ସ୍ୱରାଜ୍ୟାଶ୍ରମରେ ଗୋପବନ୍ଧୁ ସିଂହଭୂମ ପ୍ରସଙ୍ଗ ଉଠାଇବାରେ ମହାତ୍ମା ଗାନ୍ଧି ସ୍ପଷ୍ଟ କହିଲେ ଯେ, ସେଠାରେ କଂଗ୍ରେସ କାର୍ଯ୍ୟ କିଛି ହେଉନଥିବାରୁ ସିଂହଭୂମ ବିହାର ବା ଓଡ଼ିଶା କେଉଁଠି ରହିବ ତା'ର ଫଇସଲା ଜରୁରୀ ନୁହେଁ ।

ମହାତ୍ମା ଗାନ୍ଧି ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରେ କଟକ କୁଷ୍ଠାଶ୍ରମ ପରିଦର୍ଶନ କରିଥିଲେ । ସାଙ୍ଗରେ ଥିଲେ ଉତ୍କଳମଣି ଗୋପବନ୍ଧୁ । ଏଠାରେ ସେ ପାଇଥିବା ମାନପତ୍ରର ଉତ୍ତରରେ କହିଲେ—"ମଣିଷ ଦେହରେ ଯେପରି କୁଷ୍ଠ ହୁଏ, ମନରେ ବି ସେହିପରି ଅନେକଙ୍କର କୁଷ୍ଠ ହୁଏ । ଦେହ କୁଷ୍ଠ ଅପେକ୍ଷା ମନକୁଷ୍ଠ ଅଧିକ ସାଂଘାତିକ । ଦେହରେ କୁଷ୍ଠ ହେଲେ ତେବେ ହାନି ନାହିଁ । ମନ ଯଦି ଶୁଦ୍ଧ ଥାଏ, ହୃଦୟ ନିର୍ମଳ ଥାଏ, ରୋଗାକ୍ରାନ୍ତ ହୋଇ କଦାକାର ଶରୀରରେ ମନୁଷ୍ୟ ସ୍ୱଚ୍ଛନ୍ଦରେ ଈଶ୍ୱର ପାଖ ଯାଇପାରିବ । ତାଙ୍କ ଦର୍ଶନ ଓ

ଉପଦେଶ ପାଇ କୁଷ୍ଠୀମାନେ ଧନ୍ୟ ମଣିଥିଲେ । ସେମାନେ ମହାତ୍ମା ଗାନ୍ଧି ଓ ଉତ୍କଳମଣିଙ୍କ ପାଦରେ ମଥା, ଦେହରେ ହାତ ଲଗାଇବାକୁ ଚାହିଁବାରୁ କେହି କେହି ସେମାନଙ୍କୁ ବାରଣ କଲେ ମଧ୍ୟ ମହାତ୍ମା ଗାନ୍ଧି ଓ ଉତ୍କଳମଣି ଅକୁଣ୍ଠିତ ଚିତ୍ତରେ ସେମାନଙ୍କ ଆଡ଼କୁ ଆପଣାର ହାତ ବଢ଼ାଇ ଦେଇଥିଲେ । କ୍ଷତ ବିକ୍ଷତ ଓ ବ୍ୟାଣ୍ଡେଜ୍‌ଯୁକ୍ତ ହାତରେ କୁଷ୍ଠୀମାନେ ଏ ଦୁଇ ମହାପୁରୁଷଙ୍କ ଦେହ ସ୍ପର୍ଶ କରି କୃତାର୍ଥ ହୋଇଥିଲେ ।

ଏହାପରେ ମହାତ୍ମା ଗାନ୍ଧି ଅନାଥାଶ୍ରମ ପରିଦର୍ଶନ କରିଥିଲେ । କଟକର ଓକିଲ ରାୟବାହାଦୁର ଜାନକୀନାଥ ବୋଷଙ୍କ ଘରେ ବଙ୍ଗଭାଷାଭାଷୀଙ୍କ ଏକ ବୈଠକରେ ଯୋଗ ଦେଇଥିଲେ । ସ୍ୱରାଜ୍ୟାଶ୍ରମରେ ଏକ ସୂତାକଟା ପ୍ରଦର୍ଶନୀର ଆୟୋଜନ ହୋଇଥିଲା । ଏଥିରେ ଓଡ଼ିଶାର ସବୁ ସମ୍ପ୍ରଦାୟର ଲୋକେ, ବାଳକ, ବୃଦ୍ଧ ଓ ସ୍ତ୍ରୀଲୋକ ସମସ୍ତେ ସୂତା କାଟିଥିଲେ ଓ ମହାତ୍ମା ଗାନ୍ଧିଙ୍କୁ ସୂତା ଉପହାର ଦେଇଥିଲେ । କଟକ ଟାଉନହଲ୍‌ରେ ଏକ ମହିଳା ସମ୍ମିଳନୀରେ ଦେଶବନ୍ଧୁ ଚିତ୍ତରଞ୍ଜନ ସ୍ମୃତିପାଣ୍ଠି ପାଇଁ ଅର୍ଥ ଆଦାୟ ହୋଇଥିଲା ।

## ରେଭରେଣ୍ଡ ଆଣ୍ଡ୍ରୁଜ୍

ଗୋପବନ୍ଧୁଙ୍କ ନିମନ୍ତ୍ରଣ କ୍ରମେ ୪ । ୧୦ । ୨୫ ତାରିଖରେ ରେଭରେଣ୍ଡ ଆଣ୍ଡ୍ରୁଜ୍ ଓଡ଼ିଶା ଆସିଲେ । ସେତେବେଳେ ବ୍ରହ୍ମଗିରିଠାରେ ଭାର୍ଗବୀ ନଦୀରେ ଭୀଷଣ ବଢ଼ି ହୋଇ ଘରଦ୍ୱାର ଓ ଫସଲ ନଷ୍ଟ ହୋଇଥାଏ । ୬ । ୧୦ । ୨୫ ତାରିଖ ରବିବାର ଭୋର ପହରରେ ଆଣ୍ଡ୍ରୁଜ ସାହେବଙ୍କୁ ସାଙ୍ଗରେ ଧରି ଗୋପବନ୍ଧୁ ଡଙ୍ଗାରେ ପୁରୀରୁ ବାହାରିଲେ । ବାଟରେ ଓଡ଼ିଆ ଭାଗବତ ପ୍ରଣେତା ଜଗନ୍ନାଥ ଦାସଙ୍କ ଗ୍ରାମ କପିଳେଶ୍ୱରପୁର ପଡ଼େ । ସେଇ ଗ୍ରାମ ପର୍ଯ୍ୟନ୍ତ ନାଆ ଚାଲିଲା ଓ ସେଠାରେ ଡଙ୍ଗା ଲଗାଇ ଦୁଇସାଧକ ଓହ୍ଲାଇଲେ । ବେଳ ପ୍ରାୟ ରତରତ ହୋଇଆସୁଥାଏ । ସେ ଅଞ୍ଚଳର ଦୁରବସ୍ଥା ଦେଖି ପୁଣି ସତ୍ୟବାଦୀ ଅଭିମୁଖେ ଡଙ୍ଗା ଫେରାଇଲେ । ଅଧିକ ରାତି ହୋଇଯିବାରୁ ଡଙ୍ଗାରେ ଆସିବା ନିରାପଦ ନଥିଲା । ପୁଣି ମେଘ ଅନ୍ଧାର ରାତି । ନଈର ଉତ୍ତରପଟ ବନ୍ଧରେ ଅଗତ୍ୟା ଚାଲି ଚାଲି ଆସିବାକୁ ପଡ଼ିଲା । ବାଟରେ ଅସରାଏ ବର୍ଷା ହୋଇଯିବାରୁ ବାଟ ବି କାଦୁଅ ହୋଇଗଲା । ବାଟ ସ୍ପଷ୍ଟ ଦେଖା ଯାଉ ନଥାଏ । ପୁଣି ମିଃ ଆଣ୍ଡ୍ରୁଜ୍ ଏ ରାସ୍ତାରେ ନୂଆ ପଥିକ । କେଉଁଠି ହେଲେ ରହିଯାଇ ରାତିଟା କଟାଇବା ପାଇଁ ଗୋପବନ୍ଧୁ ଚିନ୍ତା କରୁଥା'ନ୍ତି ।

ଭାର୍ଗବୀ ନଦୀବନ୍ଧ କଡ଼କୁ ଛଡ଼ାଛଡ଼ାରେ ହେଲେ ବି କେତେଗୁଡ଼ିଏ ଗ୍ରାମ ପଡ଼େ । ବିଶ୍ରାମ ଆଶାରେ ଗୋଟିଏ ଗ୍ରାମକୁ ଉଭୟେ ଗଲେ । ଏ ଗ୍ରାମଟି ଗୋଟିଏ ଚାଷୀ ବସତି ହୋଇଥିବାରୁ ଗାଈଗୋରୁଗୁଡ଼ିକ ଦାଣ୍ଡ ଘରେ ବନ୍ଧା ହୋଇଥା'ନ୍ତି । ପାଖରେ ଥିବା ନିଜ

ନିଜ ପିଣ୍ଡାରେ ଲୋକମାନେ ନିଘୋଡ଼ ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଥା'ନ୍ତି । ବନ୍ଧରୁ ଗଡ଼ି ପ୍ରଥମ ଘର ପିଣ୍ଡାରେ ଠିଆ ହୋଇ ଡାକିବା ମାତ୍ରେ ଧାଏ ଆପଣଙ୍କ ଘରର ଗୃହସ୍ଥ ଚହଲିଲି ; କିନ୍ତୁ ଏତେ ରାତିରେ ଜଣେ ସାହେବଙ୍କୁ ଦେଖି ସେ ବଡ଼ ବିବ୍ରତ ହୋଇପଡ଼ିଲା । କ୍ରମେ ଗ୍ରାମର ଲୋକମାନେ ନିଦ ଭାଙ୍ଗି ଉଠିଲେ ଓ ଏକାଠି ହେଲେ ।

ସାମାନ୍ୟ ଅତିଥି ଚର୍ଚ୍ଚା ପରେ ଦୁଇ ଦେଶସେବୀଙ୍କ ପାଇଁ ପିଣ୍ଡାରେ ଶୋଇବାର ଆୟୋଜନ କରାହେଲା । ଗାଁଗହଳରେ ତକିଆ ଓ ବିଛଣା ଚଦର ବା କାହୁଁ ମିଳିବ ? ଖାଲି ମନ୍ଦୁରରେ ସେଦିନ ରାତିରେ ଉଭୟଙ୍କୁ ଶୋଇବାକୁ ହେଲା । ବର୍ଷାଦିନିଆ ମଶା ପଲ ପଲ ହେଉଥା'ନ୍ତି । ସହଜେ ତ ନଈକୂଳ ଗ୍ରାମରେ ଠାଏ ଠାଏ ପାଣି ଜମି ପଡିଥାଏ । ସେଇ ମଶା କାମୁଡ଼ରେ ଓ ଦୁର୍ଗନ୍ଧରେ ଆଣ୍ଡ୍ରୁଜ୍ ଏବଂ ଗୋପବନ୍ଧୁ ସେଦିନ ରାତି କଟାଇଲେ ।

ସକାଳୁ ଉଠି ଦୁହେଁ ପୁଣି ନଈ ବନ୍ଧେ ବନ୍ଧେ ଆଗକୁ ଚାଲିଲେ । ରାତିରେ ବର୍ଷା ହୋଇ ମାଟି ଫଉଲ୍ ଯାଇଥିଲା । ତେଣୁ ଜୋତା ପିନ୍ଧି ଚାଲିବାକୁ ଆଣ୍ଡ୍ରୁଜଙ୍କୁ ବଡ଼ ଅସୁବିଧା ହେଉଥାଏ । ଗୋପବନ୍ଧୁଙ୍କ ପାଦରେ ଜୋତା ନଥାଏ । ଶେଷରେ ଜୋତା ହାତରେ ଧରି ବହୁ କଷ୍ଟରେ ଆଣ୍ଡ୍ରୁଜ ପଥ ଅତିକ୍ରମ କରିଥିଲେ ।

ଭାର୍ଗବୀ ନଦୀ କୂଳେ କୂଳେ ଆସି ଦାମୋଦରପୁର ବଜାରରେ ପହଞ୍ଚିଲା ବେଳକୁ ଭୋକରେ ଦୁହେଁ ଖୁବ୍ ଅଶକ୍ତ ଓ ନିସ୍ତେଜ ହୋଇ ପଡ଼ିଗଲେ । ବର୍ଷାଦିନର ଦ'ପହର ଖରା କାଟୁଥାଏ । କୌଣସି ପରିଚିତ ଲୋକ ଚୂଡ଼ା କଦଳୀ ଗୁଡ଼ ପଣସ ଆଦି ଚରକଟି ଉଭୟଙ୍କୁ ଖାଇବାକୁ ଦେଲା ବେଳକୁ ଗୋପବନ୍ଧୁ ବଡ଼ ଅସ୍ଥିର ହୋଇ କାନ୍ଦିବାକୁ ଲାଗିଲେ । କହିଲେ —"ମୁଁ ଆଖିରେ ଲୋକଙ୍କ ଦୁର୍ଦ୍ଦଶା ଦେଖି ଆସିଲି । ସେମାନେ ଖାଇବାକୁ ପାଉ ନାହାନ୍ତି । ମୁଁ ଏଠାରେ କିପରି ଏ ଚରକଟା ଖାଇବି ?"

ବହୁ ବାଧ୍ୟରେ ସେଥିରୁ ସେ କିଛି ଖାଇଲେ । ଆଣ୍ଡ୍ରୁଜ ସାହେବଙ୍କୁ ଖୁବ୍ ଭୋକ ହେଉଥାଏ । ସେ ଆଗରୁ କେବେ ପଣସ ଖାଇ ନଥିଲେ । ତେଣୁ ଲୋଭନୀୟ ପଣସ ପାଖୁଡ଼ାକୁ ଟାଉ ଟାଉ ଖାଇବାକୁ ଲାଗିଲେ । ପଣସ ଫୁଟିର ଅଠା ହାତରେ ଓ ଦାଢ଼ିରେ ଲାଗିଯାଉଥାଏ ; କିନ୍ତୁ ସେ ବେଶ୍ ଉପଭୋଗ କରୁଥା'ନ୍ତି ।

ସେଦିନ ଅକ୍ଟୋବର ୮ ତାରିଖ ୧୯୨୭ ମସିହା । ସତ୍ୟବାଦୀ ସ୍କୁଲରେ ରହଣି ହେଲା । ସତ୍ୟବାଦୀର ପ୍ରାକୃତିକ ପରିବେଶ ଓ ଗୋପବନ୍ଧୁଙ୍କ ପରିକଳ୍ପନା ଦେଖି ଆଣ୍ଡ୍ରୁଜ ଖୁବ୍ ଆନନ୍ଦିତ ହୋଇଥିଲେ । ରାତିରେ ଶୋଇବା ପୂର୍ବରୁ ସେ ଗୋପବନ୍ଧୁଙ୍କୁ ହଠାତ୍ ବିହ୍ୱଳ ଭାବରେ ଆଲିଙ୍ଗନ କରି କହିଲେ—May God help the distressed people, may god bless you." ଏହା କହି ସେ ଈଶ୍ୱରଙ୍କୁ ରାତ୍ରିକାଳୀନ ପ୍ରାର୍ଥନା ଜଣାଇଲେ । ଦୁର୍ଭିକ୍ଷ ପ୍ରପୀଡ଼ିତ ନିରନ୍ନଙ୍କ ଲୋକଙ୍କ ନିମନ୍ତେ ସେଦିନ ଦୁଇ ମହାତ୍ମାଙ୍କ ଲୋତକ ଧାର ମିଶି ଏକାକାର ହୋଇଯାଇଥିଲା । ସତ୍ୟବାଦୀ ଛାଡ଼ିବା ପୂର୍ବରୁ

ଗୋପବନ୍ଧୁଙ୍କ ସମ୍ପର୍କରେ ମିଃ ଆଣ୍ଡ୍ରୁଜ କହିଥିଲେ, "His pity for the villagers was a beautiful thing of witness."

ତା'ପରେ ୧୯୨୮ ମସିହାରେ ଗୋପବନ୍ଧୁଙ୍କ ମୃତ୍ୟୁ ଖବର ପାଇ ଆଣ୍ଡ୍ରୁଜ ସାହେବ ଖୁବ୍ ବ୍ୟଥିତ ହୋଇ ପଡ଼ିଥିଲେ । ତାଙ୍କ ସ୍ମୃତିରେ ଅକ୍ଟୋବର ୭ ତାରିଖ ରାତିରେ ଘଟଣା ବେଶ୍ ଉଜ୍ଜୀବିତ ଥିଲା । ସେ ଲେଖିଥିଲେ—"ସେଦିନର ଭୟଙ୍କର ରାତି ଆମମାନଙ୍କ ପାଇଁ ସ୍ମରଣୀୟ ଥିଲା । ଆମେ ଆମ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଲା ବେଳକୁ ବେଳ ଉତରତ । ତା' ପରେ ମେଘ ଅନ୍ଧାର ଘୋଟି ଆସିଲା । ନାଉରୀମାନେ ଡଙ୍ଗା ଚଳାଇବାକୁ ବାରଣ କଲେ । ନଈରୁ ବନ୍ଧ୍ୟାଏ ଆସିବା ଆମପକ୍ଷେ ବଡ଼ କଷ୍ଟକର ହେଲା । ଶେଷରେ ଅନେକ ବାଟ ନଈ ବନ୍ଧରେ ଚାଲି ଚାଲି ଗୋଟିଏ ଛୋଟ ଗ୍ରାମରେ ରାତି ବିତାଇଲୁ । ରାତିରେ ଖୁବ ଅସ୍ଥିରତା ଅନୁଭୂତ ହେଲା । ରାତିସାରା ଉଜାଗର, ପୁଣି ସକାଳୁ ବାଟ ଚାଲିବାକୁ ପଡ଼ିଲା । ଗୋପବନ୍ଧୁ ସହନଶୀଳତାର ପ୍ରତୀକ ଥିଲେ ଓ ପଥଶ୍ରମରେ ଆଦୌ କ୍ଳାନ୍ତ ଅନୁଭବ କରୁନଥିଲେ । ଗ୍ରାମର ଦୁଃସ୍ଥ ଲୋକ, କ୍ରୀଡ଼ାରତ ଶିଶୁ, ଗରିବ ବୁଢ଼ା, ବୁଢ଼ୀ, ଏପରିକି ଦାଣ୍ଡଘର ଗୋରୁଗାଈ ମଧ୍ୟ ତାଙ୍କ ସ୍ନେହପୂର୍ଣ୍ଣ ଦୃଷ୍ଟି ଆକର୍ଷଣ କରୁଥିଲେ ଏବଂ ଗଭୀର ସହାନୁଭୂତିର ସହିତ ସେ ସମସ୍ତଙ୍କ କୁଶଳ ଜିଜ୍ଞାସା କରୁଥିଲେ । ଏଇ ଗରିବ ଦୁଃଖୀମାନଙ୍କ ପଛରେ ଛାଡ଼ି ଆଗେଇବାକୁ ସତେ ଯେପରି ତାଙ୍କ ପକ୍ଷେ କଷ୍ଟସାଧ୍ୟ ଥିଲା ।"

ପୁଣି ଆଣ୍ଡ୍ରୁଜ ଲେଖିଥିଲେ—"ଗୋପବନ୍ଧୁଙ୍କ ପରି ସରଳ ଓ ନିଷ୍କପଟ ଜନପ୍ରିୟ ବ୍ୟକ୍ତିତ୍ୱ ମୁଁ ଅନ୍ୟତ୍ର ଦେଖିନାହିଁ । ଓଡ଼ିଶାର ଗରିବ ଲୋକଙ୍କ ସେବାରେ ନିଜକୁ ଉତ୍ସର୍ଗ କରି ସେ ନିଜର ସମସ୍ତ ସୁଖ ଓ ବିଳାସକୁ ଭୁଲିଥିଲେ । ଗଭୀର ଈଶ୍ୱରାନୁରାଗ ହେତୁ ସେ ଦୁଃସ୍ଥର ସେବା ପାଇଁ ପ୍ରବଳ ମାନସିକ ବଳ ପାଉଥିଲେ । ପ୍ରତି ସନ୍ଧ୍ୟା ଓ ସକାଳେ ସେ ତନ୍ମୟହୋଇ ଭଗବାନଙ୍କୁ ପ୍ରାର୍ଥନା କରୁଥିଲେ । ସେତେବେଳେ କୌଣସି ବାହ୍ୟ ଶକ୍ତି ତାଙ୍କ ଏକାନ୍ତ ଉପାସନାରେ ବାଧା ସୃଷ୍ଟି କରିପାରୁ ନଥିଲା । ମୋ ପ୍ରତି ତାଙ୍କର ଗଭୀର ସ୍ନେହ ଓ ମମତା ମୋ ହୃଦୟକୁ ସିକ୍ତ ଓ ଉଲ୍ଲସିତ କରିଥିଲା । ମୁଁ ଜୀବନସାରା ତାଙ୍କୁ ଭୁଲି ପାରିବିନାହିଁ ।"

ଆଜି ଆଣ୍ଡ୍ରୁଜ ମଧ୍ୟ ଇହଜଗତରେ ନାହାନ୍ତି । ଗୋପବନ୍ଧୁଙ୍କ ପ୍ରସଙ୍ଗରେ ତାଙ୍କ ସ୍ମୃତି ଏ ଜାତିର ମାନସରେ ଆଜି ଅତି ସଞ୍ଚିତ ପ୍ରିୟ ସମ୍ପଦ । ବହୁ ପ୍ରାକୃତିକ ବିପର୍ଯ୍ୟୟକୁ ସାମ୍ନାକରି ଓଡ଼ିଶାର ସଂଗ୍ରାମୀ ଜନତା ଜୀବନ ଯୁଦ୍ଧରେ ହାରିନାହିଁ । ସେଇ ବିପୁଳ ସ୍ମୃତିର ଇଙ୍ଗିତ ତା'ପାଇଁ ଗଭୀର ଆଶା ଓ ଆଶ୍ୱାସନାର ବାଟ ଫିଟାଇଛି, ବହୁ ଦୁର୍ଦ୍ଦିନରେ ବଞ୍ଚିବାକୁ ସାହସ ଦେଇଛି ।

# ସୁଆଙ୍ଗ ଦେଖା

ସେ ହେଉଛନ୍ତି ରାମ ସ୍ୱାଇଁ । ଗାଁର ବୃଦ୍ଧାଲୋକଙ୍କ ମଧ୍ୟରେ ଜଣେ । ବ୍ରହ୍ମଗିରି ବ୍ଲକ ଅନ୍ତର୍ଗତ ଘଣପଣ ଗ୍ରାମପଞ୍ଚାୟତରେ ତାଙ୍କ ଘର । ଗାଁ ନାଁ ଘଟକୁଡ଼ା । ଭାର୍ଗବୀ ଓ ରତ୍ନଚୀରା ଗାଁର ପଶ୍ଚିମ ଓ ଦକ୍ଷିଣ ଦିଗରେ ଏକାଠି ମିଶିଛନ୍ତି । ତାଙ୍କ ପିଲାଦିନର ସେ ଏକ ଅଶ୍ରୁ ସଜଳ ସ୍ମୃତିର କାହାଣୀ । ଆଜି ଯେଉଁଠାରେ ଗାଁ ସ୍କୁଲ ଠିଆ ହୋଇଛି ସେତେବେଳେ ସେଠାରେ ଗାଁର କୋଠାଘର ଥିଲା । ଭାର୍ଗବୀ, ରତ୍ନଚୀରା ଓ ଚଳଭାର କୂଳ ଅଡ଼ା ହୋଇ ନଥିଲା । ସବୁ ବର୍ଷ ବଢ଼ିରେ ଗାଗଣ୍ଡାର ଜମି ପାଣିରେ ବୁଡ଼ି ରହୁଥିଲା । ସତ୍ୟବାଦୀରେ ପୂଜ୍ୟ ଗୋପବନ୍ଧୁଙ୍କ କାନରେ ଏ ଅଞ୍ଚଳର ଆର୍ତ୍ତନାଦ ଯାଇ ବାଜୁଥିଲା । ସେ ଆସି ଏଇଠି ଡେରା ପକାଇ ଏହି ଅଞ୍ଚଳରେ କାମ କରୁଥିଲେ । ଘରକୁ ଘର ବୁଲି ଯାଇ ଅରଟରେ ସୂତାକଟା ଶିଖାଉଥିଲେ । ସନ୍ଧ୍ୟାବେଳ ହେଲେ ସୂତା ରଖି ଚାଉଳ ବାଣ୍ଟୁଥିଲେ । ବିନା କାମରେ କାହାକୁ ମାଗଣା ସାହାଯ୍ୟ ଦିଆଯାଉ ନଥିଲା । ଲୋକେ କିପରି ନିଜ ଗୋଡ଼ରେ ଠିଆ ହେବେ, ଆତ୍ମମର୍ଯ୍ୟାଦା ରଖି ପାରିବେ, ଏହାହିଁ ଥିଲା ତାଙ୍କର ସବୁଠାରୁ ବଳି ବଡ଼ ଚିନ୍ତା । ଆଜି ସେଇ ଅରଟ କେତେ ଜଣଙ୍କ ଘର ଶ୍ରଦ୍ଧାରେ ସାଇତି ରଖାଯାଇଛି । ହୁଏତ ଏଇ ଅରଟରେ ଏକଦା ପୁଣ୍ୟାତ୍ମା ଗୋପବନ୍ଧୁଙ୍କ କରସ୍ପର୍ଶ ଲାଗିଥିଲା । ସେ ଦୁର୍ଦ୍ଦିନରେ ଝିଅବୋହୂ ସୂତାକାଟି ଘର ମଣିଷଙ୍କୁ ଦି' ଢୋକ ତୋରାଣୀ ଦେଇ ପାରୁଥିଲେ । ବଢ଼ି ପରେ ତୁରନ୍ତ ମାଣ୍ଡିଆ ରୋପ ହେଉଥିଲା । ତା' ପରେ ମୁଗ, ଚଣା ଓ ବିରିରେ ମାଟି ମା' ପୁଣି ହସି ଉଠୁଥିଲା ।

ବଢ଼ିର ପ୍ରକୋପ ଆଶ୍ୱିନ ମାସ ଅନ୍ତକୁ କମି ଯାଇଥାଏ । ଭାର୍ଗବୀ ନଦୀଧାର କ୍ରମେ ସ୍ୱଚ୍ଛ ଆଉ ସୁନ୍ଦର ହୋଇ ଆସୁଥାଏ । ଏ ଗ୍ରାମକୁ ଏକ ଯାତ୍ରାଦଳ ଆସି ପହଞ୍ଚିଲେ । କେତେ ପିଲା ଆସି ଦାସେ ଆପଣଙ୍କ ପାଖରେ ଅଳିକଲେ—"ଆମେ ଆଜି ଯାତ୍ରା ଦେଖିବୁ ।"

ଗୋପବନ୍ଧୁ ପଚାରିଲେ—"ରାତିକୁ କେତେ ଟଙ୍କା ନେବେ ?"

ଯାତ୍ରାଦଳ କହିଲେ—"ଅଜ୍ଞା ରାତିକ ଦଶ ଟଙ୍କା । ନବା ଦବା ହେଲେ ସାତ ଟଙ୍କାରେ ବଢତମାମ ପ୍ରହ୍ଲାଦ ସୁଆଙ୍ଗ କରିବୁ ।"

ଗୋପବନ୍ଧୁ ରାଜି ହେଲେ । ଗ୍ରାମରେ ଉଲ୍ଲାସର ବାତାବରଣ ଖେଳିଗଲା । ରାତିରେ ସୁଆଙ୍ଗ ହେବ । ପୋଲଙ୍ଗ ତେଲର ମଶାଲ ରାତିରେ ଜଳି ଉଠିଲା । ଗାଁର ଝିଅ ବୋହୂ ପିଲା ଛୁଆ ସମସ୍ତେ ଆସି କୋଠଘର ଦାଣ୍ଡରେ ଜମାହେଲେ । ଗୋପବନ୍ଧୁ ବାରଣ୍ଡାରେ ସଉପ ପକାଇ ବସିଲେ ।

ସେତେବେଳର ସୁଆଙ୍ଗ ପ୍ରଥା ଅନୁସାରେ ପ୍ରଥମେ 'ହାଡ଼ି' ବାହାରିଲା । ସେ ଆଗ ସଭାମଞ୍ଚ ଓଲାଇଲେ ସୁଆଙ୍ଗ ଆରମ୍ଭ ହେବ । ତା'ପରେ ମୁଣ୍ଡରେ ଝୋଟର ଜଟା,

ଗୋଟିଏ ଗାଲରେ କଳା ଓ ଅନ୍ୟ ଗାଲରେ ଚୂନ ବୋଳି ହାତରେ ବଙ୍କାବାଡ଼ି ଧରି ନାରଦ ବାହାରିଲେ ।

ବାପେ ଆପଣେ ପ୍ରଶ୍ନ କଲେ—"ଏ କିଏ ?"

ରାମ ସ୍ୱାଇଁ ଉତ୍ତର ଦେଲେ—"ଆଜ୍ଞା, ନାରଦ ।" ଏହା ଶୁଣୁ ଶୁଣୁ ଗୋପବନ୍ଧୁଙ୍କ କଣ୍ଠ ଥରି ଉଠିଲା । ଅଶ୍ରୁର ଲୁହ ଗାଲଦେଇ ବହିଯିବାକୁ ଲାଗିଲା । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ—"ଯେଉଁ ମହର୍ଷିଙ୍କ ବୀଣା ଓ ବେଦଧ୍ୱନିରେ ସ୍ୱର୍ଗ ଓ ମର୍ତ୍ତ୍ୟ ପ୍ରାଣ କମ୍ପି ଉଠୁଥିଲା, ଦେବତାମାନେ ପୂଜା ଯାହାଙ୍କୁ ଭକ୍ତିଭରେ କରୁଥିଲେ, ସେ ମହର୍ଷିଙ୍କର ଏ କି ବେଶ ଓ ଦଶା ? ବନ୍ଦ କର ନାଚ ବନ୍ଦକର ।" ଏହା କହି ସେ କୋଠାଘର ଭିତରକୁ ଚାଲିଗଲେ । ଉତ୍ସାହୀ ତରୁଣମାନେ ସେଠାରୁ ସୁଆଙ୍ଗ ନେଇ ଗ୍ରାମରେ ଅଭିନୟ କରାଇଲେ ।

ତାଙ୍କ ହୃଦୟ ପଦ୍ମଫୁଲ ପରି ନରମ ଓ ପବିତ୍ର ଥିଲା । ଭକ୍ତିଥିଲା ପବିତ୍ର ଓ ଶାଶ୍ୱତ । ଦରିଦ୍ର ଓ ଆର୍ତ୍ତଙ୍କ ସେବା ପାଇଁ ସେ ଯେପରି ବ୍ୟାକୁଳ ଥିଲେ, ସମାଜର ପରିପାଟୀ ଓ ରୁଚିବୋଧ ପାଇଁ ସେହିପରି ସଯତ୍ନ ଥିଲେ ।

ରାମ ସ୍ୱାଇଁ ତାଙ୍କ ଜୀବନରେ ଧରି ରଖିଥିବା ଏହି ପୂଜ୍ୟ ମନୀଷୀର ସ୍ମୃତି କଥା କହିଲା ବେଳେ ଆଖି ତାଙ୍କର ଛଳ ଛଳ ହୋଇ ଉଠୁଥିଲା ।

(ଶ୍ରୀ ଲୋକନାଥ ପ୍ରଧାନଙ୍କ ମାଧ୍ୟମରେ ସଂଗୃହୀତ)

## ଅସ୍ଥିର ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି

ବୋଲଗଡ଼ଠାରେ ନଭେମ୍ବର ୧୪ ତାରିଖ ଓ ୧୫ ତାରିଖ, ୧୯୨୫ ମସିହା ଦୁଇଦିନ ଧରି ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଶ୍ରୀଯୁକ୍ତ ଭଗୀରଥି ମହାପାତ୍ର ଏ ସମ୍ମିଳନୀରେ ସଭାପତି ହୋଇଥିଲେ । ପ୍ରାର୍ଥନା ଓ ଜାତୀୟ ସଙ୍ଗୀତ ପଢ଼ାଗଲାପରେ ଅଭ୍ୟର୍ଥନା ସମିତିର ସଭାପତି ଉତ୍କଳମଣି ଗୋପବନ୍ଧୁ ନିଜର ଲିଖିତ ଭାଷଣ ପଢ଼ିଥିଲେ । ବୋଲଗଡ଼ରେ ସମ୍ମିଳନୀ ବସିବାର କାରଣ ଦର୍ଶାଇ ପୁରୀ ଜିଲ୍ଲାର ବାପ୍ରପୀଡ଼ିତ ଦୁର୍ଭିକ୍ଷ ଅବସ୍ଥା ବିଷୟରେ ସେ ବିଶଦ୍ ଭାବରେ ବର୍ଣ୍ଣନା କରିଥିଲେ । ସେ ଅବସ୍ଥାରେ ପୁରୀ ଜିଲ୍ଲାରେ ଏପରି ଏକ ବ୍ୟାପକ ସମ୍ମିଳନୀ ଆୟୋଜନର ଅସୁବିଧା ଓ ଅନ୍ତରାୟ ସମ୍ପର୍କରେ ଉଲ୍ଲେଖ କରି ସେ କହିଲେ—

"ଆଜି ଆମ୍ଭର ଭାଗ୍ୟବଶୁଁ, ସର୍ବେ ମିଳିଲେ ସବୁ ଦେଶୁଁ,
ମୋ ଗୃହେ ତୁମ୍ଭେ ଉପଗତ, ଲୋକେ କହିବେ ନାହିଁ ସତ ।"

ଜଗନ୍ନାଥ ଦାସଙ୍କ ଏ ପଦ ଉଦ୍ଧାର କରି ସେ ଦେଶାନୁରାଗୀ କର୍ମୀ ଓ ନେତାମାନଙ୍କ ସମାଗମ ପାଇଁ ସେମାନଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ପୁରୀ ଜିଲ୍ଲା ଲୋକଙ୍କ ଦୁରବସ୍ଥାର ଏକ ହୃଦୟସ୍ପର୍ଶୀ ଚିତ୍ର ଥୋଇ ସେ ଦୁଃସ୍ଥ ଦରିଦ୍ର ଲୋକମାନଙ୍କ ପ୍ରତି ସମଗ୍ର ସମ୍ମିଳନୀର ଦୃଷ୍ଟି ଆକର୍ଷଣ କରିଥିଲେ ।

ଏହି ସମ୍ମିଳନୀ ଓଡ଼ିଶା ପାଇଁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ବିଶେଷତଃ ଓଡ଼ିଶାରେ ମୁଣ୍ଡ ଟେକୁଥିବା ତରୁଣ କଂଗ୍ରେସ ଗୋଷ୍ଠୀ ଓ ପ୍ରତିଷ୍ଠିତ କଂଗ୍ରେସ ଗୋଷ୍ଠୀ ମଧ୍ୟରେ ଥିବା ପ୍ରଚ୍ଛନ୍ନ ବିବାଦ ଏ ସମ୍ମିଳନୀରେ ଗୃହୀତ ଏକ ନିର୍ଦ୍ଧାରଣରେ ଅନୁସୂଚିତ ହୋଇଥିଲା । ପାଟଣା ନିଖିଳ ଭାରତ କଂଗ୍ରେସ କମିଟିରେ ଧାର୍ଯ୍ୟ ହୋଇଥିବା କଂଗ୍ରେସ ସଭ୍ୟ ଯୋଗ୍ୟତା ପରିବର୍ତ୍ତନ ଓ କଂଗ୍ରେସକୁ କେବଳ ଏକ ରାଜନୈତିକ ଦଳ କରିବା ପ୍ରସ୍ତାବ ମଧ୍ୟ ଏ ସମ୍ମିଳନୀରେ ଗୃହୀତ ହୋଇଥିଲା । ବ୍ୟବସ୍ଥାପକ ସଭା ଭିତରେ ଓ ବାହାରେ ସମସ୍ତ ପ୍ରକାର ରାଜନୈତିକ କାର୍ଯ୍ୟ ଚଳାଇବା ନିମିତ୍ତ ଏକ କମିଟି ପ୍ରସ୍ତୁତ ହୋଇଥିଲା ଓ ଶ୍ରୀଯୁକ୍ତ ନନ୍ଦ-କିଶୋର ଦାସଙ୍କ ପ୍ରସ୍ତାବ ଓ ଯଦୁମଣି ମଙ୍ଗରାଜଙ୍କ ସମର୍ଥନ କ୍ରମେ ଏ ପ୍ରସ୍ତାବ ଗୃହୀତ ହୋଇଥିଲା । ଏ କମିଟିରେ ଶ୍ରୀ ଗୋଦାବରୀଶ ମିଶ୍ର, ଯଦୁମଣି ମଙ୍ଗରାଜ, ହରେକୃଷ୍ଣ ମହତାବ, ନନ୍ଦକିଶୋର ଦାସ, ବାଞ୍ଛାନିଧି ମହାନ୍ତି, ନରସିଂହ ଚରଣ ଚମ୍ପତିପଟ୍ଟନାୟକ, ରଘୁନାଥ ମହାପାତ୍ର, ବୀରକିଶୋର ଦାସ, ନାରାୟଣ ବୀରବର ସାମନ୍ତ, ରଘୁନାଥ ମହାନ୍ତି, ଦୁଃଖୀଶ୍ୟାମ ଦାସ, ଗଙ୍ଗାଧର ମହାନ୍ତି, ଲାଲ ନଗେନ୍ଦ୍ର କୁମାର ରାୟ, ଲିଙ୍ଗରାଜ ପାଣିଗ୍ରାହୀ ଓ ଶ୍ରୀ ଅଟଳ ବିହାରୀ ଆଚାର୍ଯ୍ୟ ସଭ୍ୟ ରହିଥିଲେ । ଏଥିରେ ଗୋପବନ୍ଧୁଙ୍କୁ ବାଦ୍ ଦିଆଯିବାର ଉଦ୍ଦେଶ୍ୟ ସୃଷ୍ଟି ନ ହେଉଥିଲେ ମଧ୍ୟ ବୋଧହୁଏ ଗୋପବନ୍ଧୁ ଗାନ୍ଧି ମତାବଲମ୍ବୀ ସମ୍ପୂର୍ଣ୍ଣ ଅସହଯୋଗୀ ଥିବାରୁ ସ୍ୱରାଜିଷ୍ଟମାନେ ତାଙ୍କ ନେତୃତ୍ୱକୁ ଆଉ ପସନ୍ଦ କରୁ ନଥିଲେ । ତେଣୁ ତରୁଣମାନଙ୍କ ମଧ୍ୟରେ ଏଥିପାଇଁ ଏକ ଦଳବଦ୍ଧ ପ୍ରଚ୍ଛନ୍ନ ଉଦ୍ୟମ ଦେଖା ଦେଇଥିଲା । ତା'ର ପରିଣତିରେ ଗୋପବନ୍ଧୁଙ୍କୁ ଦଳୀୟ ରାଜନୈତିକ ଦାୟିତ୍ୱରୁ ଦୂରେଇ ଯିବାକୁ ହୋଇଥିଲା ।

ଏହି ସମ୍ମିଳନୀରେ ପଣ୍ଡିତ ଗୋଦାବରୀଶ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ମନୋନୀତ ହୋଇଥିଲେ । ଗୋପବନ୍ଧୁ ସମାଜ ସେବାମୂଳକ ସାଙ୍ଗଠନିକ କାମରେ ଅଧିକ ମନୋନିବେଶ କରି ଥିବାରୁ ସମ୍ଭବତଃ ତାଙ୍କୁ ସଭାପତି ଦାୟିତ୍ୱରୁ ନିଷ୍କୃତି ଦିଆଯାଇଥିଲା । ଶ୍ରୀଯୁକ୍ତ ରଘୁନାଥ ମହାପାତ୍ର କମିଟିର ସମ୍ପାଦକ ମନୋନୀତ ହୋଇଥିଲେ ।

ଏହି ସମ୍ମିଳନୀର ମାତ୍ର ଦୁଇ ସପ୍ତାହ ପରେ ୪ । ୧୨ । ୨୫ ତାରିଖରେ ପୁନଶ୍ଚ ସତ୍ୟବାଦୀ ଆଶ୍ରମଠାରେ ଏକ ଅସାଧାରଣ ବୈଠକ ଶ୍ରୀ ଭାଗୀରଥି ମହାପାତ୍ରଙ୍କ ସଭାପତିତ୍ୱରେ ବସିଥିଲା । ଏଠାରେ ସଭାପତି ପରିବର୍ତ୍ତନ ବିଷୟସୂଚୀ ଭାବରେ ଆଗରୁ ନିର୍ଦ୍ଧାରିତ ନ ହୋଇଥିଲେ ମଧ୍ୟ ଶ୍ରୀ ପ୍ରାଣକୃଷ୍ଣ ପଢ଼ିଆରୀଙ୍କ ପ୍ରସ୍ତାବ ଓ ବାବାଜୀ ରାମଦାସଙ୍କ ଅନୁମୋଦନ

କମେ ଗୋଦାବରୀଶଙ୍କୁ ସଭାପତି ପଦରୁ ବହିଷ୍କୃତ କରି ଶ୍ରୀ ଅଟଳ ବିହାରୀ ଆଚାର୍ଯ୍ୟଙ୍କୁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ରୂପେ ମନୋନୀତ କରାଯାଇଥିଲା । ଏ ବୈଠକରେ କମିଟିର ସମ୍ପାଦକ ଶ୍ରୀ ରଘୁନାଥ ମହାପାତ୍ର ଇସ୍ତଫା ଦାଖଲ କରିଥିଲେ ।

୧୯ । ୧୨ । ୨୫ ତାରିଖରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଏହି ଅସ୍ଥିରତାକୁ ଲକ୍ଷ୍ୟ କରି ଗୋପବନ୍ଧୁ କଟକ ମିଟିଙ୍ଗରେ ସଭାପତି ପରିବର୍ତ୍ତନ ବ୍ୟାପାର ସମ୍ପୂର୍ଣ୍ଣ ବେଆଇନ, ଅସୁନ୍ଦର ଓ ଅସଙ୍ଗତ ବୋଲି ସ୍ପଷ୍ଟ ମତ ଦେଇଥିଲେ ଓ ଏହାଦ୍ୱାରା ଓଡ଼ିଶାବାସୀ ଜନସାଧାରଣଙ୍କର କଂଗ୍ରେସ ପ୍ରତି ଆସ୍ଥା ତୁଟିଯିବ ବୋଲି ଆଶଙ୍କା ପ୍ରକାଶ କରିଥିଲେ । ସମ୍ପାଦକ ଶ୍ରୀ ରଘୁନାଥ ମହାପାତ୍ର ନିଜର ମାନମହତ୍ତ୍ୱ ଜଗି ଇସ୍ତଫା ଦେଇଥିବା କଥା ଗୋପବନ୍ଧୁ ଉଲ୍ଲେଖ କରିଥିଲେ ।

ଗୋପବନ୍ଧୁଙ୍କ ଏହି ଲେଖାର ପ୍ରତିବାଦ ୨୨ । ୧୨ । ୨୫ ତାରିଖ 'ସମାଜ'ରେ ଶ୍ରୀ ପଣ୍ଡିଆରୀ ନିମ୍ନମତେ କରିଥିଲେ—" × × ଆଉମଧ ଶ୍ରୀଯୁକ୍ତ ରଘୁନାଥ ମହାପାତ୍ର ମହାଶୟ କମିଟିର ଏପରି ଷଣ୍ଢେଇଙ୍କର ମତଗତି ଦେଖି ଆପଣାର ମାନମହତ୍ତ୍ୱ ଜଗି ସମ୍ପାଦକ ପଦରୁ ଇସ୍ତଫା ଦେଇଥିବା ଆପଣେ ଲେଖିଅଛନ୍ତି ; କିନ୍ତୁ ଶ୍ରୀଯୁକ୍ତ ଗୋଦାବରୀଶ ବାବୁଙ୍କ ପରିବର୍ତ୍ତରେ ଶ୍ରୀଯୁକ୍ତ ଅଟଳ ବିହାରୀ ଆଚାର୍ଯ୍ୟ ସଭାପତି ହେବାରୁ ତାଙ୍କ ନିକଟରେ କାର୍ଯ୍ୟ କରିବା ଅସୁବିଧା ହେବ ଜାଣି ସେ ଇସ୍ତଫା ଦେଇଅଛନ୍ତି । କମିଟିର ଉପସ୍ଥିତ ଥିବା ସଭ୍ୟମାନେ ଏହାହିଁ ଜାଣିଛନ୍ତି । ଆପଣେ ଶ୍ରୀଯୁକ୍ତ ଗୋଦାବରୀଶ ବାବୁଙ୍କ ସଭାପତି ପଦ ପରିବର୍ତ୍ତନ କଥାଶୁଣି ହତଭମ୍ବ ହୋଇ ଯାହା ଶୁଣିଅଛନ୍ତି ତାହା ପ୍ରକାଶ କରି ଗରଳ ଉଦ୍‌ଗୀରଣ କରିଅଛନ୍ତି । ଆପଣ ତ ବୋଲଗଡ଼ ବୈଠକରେ ସଭାପତି ଥିଲେ, କହନ୍ତୁ ଦେଖି କେଉଁ ଆଇନ୍ ବଳରେ ଆପଣ ରୁଲିଙ୍ଗ୍ ଦେଇ ୧୦୦ ଜଣ ସଭ୍ୟପଦ ପୂରଣ ନ ହେଉଣୁ ଏବଂ ନିର୍ବାଚିତ ସଭ୍ୟମାନେ ପ୍ରାଦେଶିକ କମିଟିର ଧାର୍ଯ୍ୟ ଟଙ୍କା ଜମା ନ ହେଉଣୁ ଭୋଟ ନେଇ ସଭାପତି ଓ ସମ୍ପାଦକ ନିର୍ବାଚନ କରିଥିଲେ ଆଉ ୧୫ତାରିଖ ନଭେମ୍ବରରେ ପ୍ରାଦେଶିକ କଂଗ୍ରେସ କମିଟି ବସିବାର ନୋଟିସ୍ ଦେଇ ୧୪ ତାରିଖରେ କମିଟିର ବୈଠକ ବସାଇଲେ ? ଏହା କ'ଣ ବେଆଇନ ନୁହେଁ ? ଆଉ କଟକ ବୈଠକରେ ଆପଣଙ୍କ ନିର୍ବାଚିତ ସଭାପତି ବଦଳିଯିବାରୁ ତାହା ବେଆଇନ ହେଲା ? ଆପଣ ଜଣେ ନ୍ୟାୟବାନ ଲୋକ । ଆପଣ ହୃଦୟରେ ହାତଦେଇ କହନ୍ତୁ, ବର୍ତ୍ତମାନ ଅବସ୍ଥାରେ ଗୋଦାବରୀଶଙ୍କୁ ସଭାପତି କରିବାଦ୍ୱାରା ବୋଲଗଡ଼ ବୈଠକ ଠିକ୍ କରିଅଛନ୍ତି କି ?

ଆପଣ ତ ଅପରିବର୍ତ୍ତନବାଦୀ ଅସହଯୋଗୀ (No-changer non-co-opearator) । ନୀଳକଣ୍ଠ ବାବୁ ସ୍ୱରାଜିଷ୍ଟ । ଆଉ ଗୋଦାବରୀଶ ବାବୁ ଅସହଯୋଗୀ । ଆପଣ ଦୁଇଜଣ ପ୍ରାଦେଶିକ କମିଟିର ସଭାପତି ହୋଇଯାଇଥିଲେ । ବାକି ଥିଲା ଗୋଦାବରୀଶ ବାବୁଙ୍କର । ସେଇଟା ଉଦ୍ଧସ୍ତ ହେବାରୁ ଆପଣ ଯାହା ଇଚ୍ଛା ତାହା ଲେଖି ପକାଇ ଅଛନ୍ତି । କମିଟି ଯେତେଦିନ ଆପଣଙ୍କ ଇଙ୍ଗିତରେ ପରିଚାଳିତ ହେଉଥିଲା, ସେ

ପର୍ଯ୍ୟନ୍ତ ତାହାର ଶୃଙ୍ଖଳା ଥିଲା, ସେ ନିୟମସଙ୍ଗତ ପଥରେ ଚଳୁଥିଲା । କିନ୍ତୁ ସ୍ୱାତନ୍ତ୍ର୍ୟ ଦେଖାଇବାକୁ ବେଆଇନ୍ ହୋଇଗଲା । ଆପଣ ସେ ଦଳଗତ ଓ ଜିଲ୍ଲାଗତ ପ୍ରୀତି ଗୁଡ଼ି କିନ୍ତୁ ସମସ୍ତ ଓଡ଼ିଆ ଜାତି ପ୍ରତି ଓ ଓଡ଼ିଶା ପ୍ରତି ଆନ୍ତରିକ ସୁଦୃଷ୍ଟି ପକାନ୍ତୁ ।"

ଓଡ଼ିଆ କଂଗ୍ରେସର ଗୃହ ବିବାଦ ଏତେ ତୀବ୍ର ଆକାର ଧାରଣ କରିଥିବା ଗୋପବନ୍ଧୁ ଆଗରୁ ଆଶଙ୍କା କରି ନଥିଲେ । ସରଳ ବିଶ୍ୱାସରେ ସେ ଜନସେବା ମୂଳକ କାମରେ ଅନୁରକ୍ତ ଥିଲେ । ତାଙ୍କ ପାଇଁ ଦଳୀୟ ରାଜନୀତି ବଡ଼ କଥା ନଥିଲା । ତହିଁରେ ଶ୍ରୀ ପଟ୍ଟନାୟକଙ୍କ ଆକ୍ଷେପ ତାଙ୍କୁ ମିଥ୍ୟା ପ୍ରମାଣ କରି ପକାଇଥିଲା । ଏଣିକି ସେ କଂଗ୍ରେସ କାର୍ଯ୍ୟରେ ଆଉ ଅଧିକ ଅଗ୍ରସର ନ ହୋଇ ଗଠନମୂଳକ କାର୍ଯ୍ୟରେ ସମସ୍ତ ସମୟ ନିୟୋଜିତ କରିବା ସ୍ଥିର କରିନେଲେ । ତାଙ୍କପରି ସରଳ ବିଶ୍ୱାସୀ ନିଷ୍ଠାପର ଯୋଗୀ ରାଜନୀତିର ଏ ଜଟିଳ ଦୁର୍ଗମ ପଥରେ ଅତି କ୍ଳାନ୍ତ ହୋଇ ପଡ଼ିବା ସ୍ୱାଭାବିକ । ରାଜନୀତିରେ ବଡ଼ ଆସନ ଲାଭକରିବା ତାଙ୍କର ଲକ୍ଷ୍ୟ ନଥିଲା । ତେଣୁ ବନ୍ଧୁମାନଙ୍କର ଏ ବିଦ୍ରୋହ ତାଙ୍କୁ ପ୍ରତିରକ୍ଷାର କୌଶଳ ଶିଖାଇଲା ନାହିଁ । ବରଂ ଏକ ଅପେକ୍ଷାକୃତ ତରୁଣ ଗୋଷ୍ଠୀ ହାତରେ ସେ ଓଡ଼ିଶା କଂଗ୍ରେସର ନୂତନ ଅଭ୍ୟୁଦୟ ଦେଖିବାକୁ ଆକାଙ୍କ୍ଷିତ ହୋଇପଡ଼ିଥିଲେ । କାୟମନୋବାକ୍ୟରେ ଦେଶର ସ୍ୱରାଜ୍ୟ ସାଧନା ପାଇଁ ସେ ସମଗ୍ର ଜନତାକୁ ଉଦ୍‌ବୁଦ୍ଧ କରିବାର ବ୍ରତ ଗ୍ରହଣ କରିଥିଲେ । ତେଣୁ ତାଙ୍କ ପାଖରେ ଗୋଟିଏ ପାର୍ଟିର ଅର୍ଗଳ ଅତି ସୀମିତ ଓ ସଙ୍କୁଚିତ ଥିଲା । ତାରୁଣ୍ୟ ବିପଥଗାମୀ ନହେଉ—ଏହାହିଁ ଥିଲା ତାଙ୍କର ଭଗବାନଙ୍କଠାରେ ଏକାନ୍ତ ନିବେଦନ ।

## ରକ୍ଷଣଶୀଳ ଓଡ଼ିଆ ସମାଜର ଅତ୍ୟାଚାର

ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ଅସ୍ଥିରତା ସହିତ ଓଡ଼ିଆ ସମାଜର ରକ୍ଷଣଶୀଳତା ଗୋପବନ୍ଧୁଙ୍କୁ ଉଦ୍‌ବିଗ୍ନ କରି ପକାଇଥିଲା । ସମ୍ବଲପୁରର କଂଗ୍ରେସ କର୍ମୀ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ମିଶ୍ର ଜେଲ୍ ଯାଇଥିବା ଯୋଗୁଁ ତାଙ୍କୁ ରକ୍ଷଣଶୀଳ ବ୍ରାହ୍ମଣସମାଜ ସମାଜଚ୍ୟୁତ କରିଥିଲେ । ମଧୁବାବୁ ବିଲାତ ଯାଇଥିବାରୁ ତାଙ୍କୁ ଅତୀତରେ ଏହିପରି ସମାଜ ଓ ଗ୍ରାମ ବାରଣ କରାଯାଇଥିବା କଥା ସମସ୍ତେ ଜାଣନ୍ତି । ଚୋରି, ଡକାୟିତି ବା ନରହତ୍ୟା କରି ନୁହେଁ, ଲକ୍ଷ୍ମୀନାରାୟଣ ଦେଶପାଇଁ ସ୍ୱଇଚ୍ଛାରେ କାରାଗାର ବରଣ କରିଥିଲେ । ନାଗପୁରଠାରେ ଦେଶୀୟ ଲୋକମାନେ ସରକାରଙ୍କ ସଙ୍ଗେ ଜାତୀୟ ପତାକା ବିବାଦ ଚଳାଇବା ବେଳେ ସମ୍ମୁଖ ଯୁଦ୍ଧରେ ଠିଆହେବା ଲାଗି ଲକ୍ଷ୍ମୀନାରାୟଣ ନାଗପୁର ଯାଇଥିଲେ । ତାରକେଶ୍ୱରଠାରେ ତାଙ୍କୁ ଗିରଫ କରାଯାଇଥିଲା । ଆଗରୁ ମହାବୀର ସିଂହ ଦେଶକାର୍ଯ୍ୟରେ ଜେଲ୍ ଯାଇଥିଲେ ବୋଲି ଜେଲଖାନାରୁ ମୁକ୍ତ ପାଇବାଦିନ ସେହି

ସମ୍ବଲପୁରବାସୀ ବିପୁଳ ଉତ୍ସାହ ଓ ସମାରୋହରେ ତାଙ୍କୁ ଆଦର ଅଭ୍ୟର୍ଥନା କରିଥିଲେ । ପୁଣି ସେହି ସମ୍ବଲପୁର ବ୍ରାହ୍ମଣ ସମାଜର ଏ ନିଷ୍ଠୁରତା ଗୋପବନ୍ଧୁଙ୍କୁ ଅବାକ୍ କରିଦେଇଥିଲା । ବିଶେଷତଃ ସମାଜ ଭୟରେ ଲକ୍ଷ୍ମୀନାରାୟଣଙ୍କ ପିତା ମାତା ଓ ବନ୍ଧୁ ପରିଜନ ତାଙ୍କ ହାତରୁ ପାଣି ଖାଉନଥିଲେ । ଏ ସମ୍ବାଦ ଗୋପବନ୍ଧୁଙ୍କ ଅନ୍ତରରେ ଗଭୀର ଆଘାତ ଦେଇଥିଲା । ଲକ୍ଷ୍ମୀନାରାୟଣ ଜେଲ୍ ଯିବାଦ୍ୱାରା ଦେଶ ଓ ଜାତିର ଗୌରବ ବଢ଼ାଇଅଛନ୍ତି ବୋଲି ସେ 'ସମାଜ' ସ୍ତମ୍ଭରେ ତାଙ୍କୁ ପ୍ରଶଂସା କରି ଲେଖିଥିଲେ ଓ ସମାଜର ଏହି ଅନ୍ଧଗତାନୁଗତିକତାକୁ ବଦେଳେଇବା ପାଇଁ ନିବେଦନ କରିଥିଲେ । ତାଙ୍କର ଯେପରି ଦୃଢ଼ ହୃତ୍‌ବୋଧ ହେଉଥିଲା—ଏ ଜାତି ଏବେ ମଧ୍ୟ ସ୍ୱାଧୀନତା ପାଇଁ ପ୍ରସ୍ତୁତ ହୋଇନାହିଁ ।

## କୃପାସିନ୍ଧୁଙ୍କ ଦେହାନ୍ତ

ନୀଳକଣ୍ଠ, ଆର୍ତ୍ତତ୍ରାଣ ହରିହର ଓ ଗୋଦାବରୀଶଙ୍କ ବହୁ ପଛରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ସତ୍ୟବାଦୀ ବନବିଦ୍ୟାଳୟରେ ଯୋଗ ଦେଇଥିଲେ । ପୁରୀ ଜିଲ୍ଲାର ବୀରସିଂହପୁର ଶାସନରେ ତାଙ୍କ ଘର । କଲିକତା ବିଶ୍ୱବିଦ୍ୟାଳୟରୁ ଦର୍ଶନ ଶାସ୍ତ୍ରରେ ଏମ୍. ଏ. ପାଶ୍ କଲାପରେ ସେ ସରକାରୀ ଚାକିରି ପ୍ରତି ପ୍ରଲୋଭିତ ନହୋଇ ସତ୍ୟବାଦୀରେ ଯୋଗଦେଲେ । ସତ୍ୟବାଦୀ ବିଦ୍ୟାଳୟର ତତ୍କାଳୀନ ସମାଜ-ରାଜନୈତିକ କର୍ମ ପ୍ରବାହଠାରୁ କିଛିଏ ବିଚ୍ଛିନ୍ନ ରହି ସେ ଏ ଜାତିର ଅତୀତ ଇତିହାସର ପୃଷ୍ଠା ଓଲଟାଉ ଥିଲେ । ତାଙ୍କ ଆଖିରେ ଓଡ଼ିଶାର ଗର୍ବ ଓ ଗୌରବ କାହାଣୀ ରୂପରେ ବାରବାଟୀ ଦୁର୍ଗ ଓ କୋଣାର୍କ ମନ୍ଦିର ଦୁଇଟି ନୂତନ ପୃଷ୍ଠା ଉନ୍ମୋଚନ କରିଥିଲା । ଗୋପବନ୍ଧୁଙ୍କ ଅନୁପ୍ରେରଣାରେ ସେ ଏହି ଦୁଇ ପ୍ରଖ୍ୟାତ କୀର୍ତ୍ତି ସମ୍ବନ୍ଧରେ ଅଧିକରୁ ଅଧିକ ଗବେଷଣା ଆରମ୍ଭ କରି ଦେଇଥିଲେ । ତା'ର ଅମୃତ ଫଳ ସ୍ୱରୂପ ସେ ଗଢ଼ି ଥୋଇଗଲେ 'ବାରବାଟୀ' ଓ 'କୋଣାର୍କ' ନାମରେ ଦୁଇଟି ଐତିହାସିକ ଗ୍ରନ୍ଥ । ଓଡ଼ିଶା ଇତିହାସ ଲେଖିବା ପାଇଁ ସେ ପରିକଳ୍ପନା କରୁଥିବା ବେଳେ ତାଙ୍କୁ କାଳ ସହିଲା ନାହିଁ । ଛ'ଦିନ ଜର ଓ ଝାଡ଼ାପରେ ୧୯୨୫ ମସିହା ଫେବୃୟାରୀ ୨୨ ତାରିଖରେ ତାଙ୍କର ଦେହାନ୍ତ ହୋଇଗଲା । ସେତେବେଳେ ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ସେ ପ୍ରଧାନ ଶିକ୍ଷକ ଥିଲେ । ତାଙ୍କ ମୃତ୍ୟୁ ଗୋପବନ୍ଧୁଙ୍କୁ ଖୁବ୍ ବିଚଳିତ କରି ପକାଇଥିଲା । ସାଧାରଣ ପରିବାରରୁ ଆସି ସେ ତ୍ୟାଗର ଯେଉଁ ନିଷ୍ଠା ଓ ଶିକ୍ଷକଭାବରେ ସାଧନା ପ୍ରକାଶ କରିଥିଲେ ତାହାହିଁ ତାଙ୍କୁ ଗୋପବନ୍ଧୁଙ୍କ ହୃଦୟରେ ସମାସୀନ କରିଥିଲା । ତାଙ୍କ ମୃତ୍ୟୁରେ ଶୋକ କାତର ହୋଇ ଗୋପବନ୍ଧୁ ଫେବୃଅରୀ ୨୩ ତାରିଖ 'ସମାଜ'ରେ ଲେଖିଥିଲେ— "ଏବେ ଆମ୍ଭମାନଙ୍କର ସର୍ବନାଶ, ଆମ୍ଭେମାନେ ହତବୁଦ୍ଧି । ଆମ୍ଭମାନଙ୍କ ବାହୁ ଛିଡ଼ି

ପଡ଼ୁଛି । 'ସମାଜ'ର ଶକ୍ତି ଅତି କ୍ଷୀଣ ହୋଇ ପଡ଼ୁଛି । ଆମ୍ଭମାନଙ୍କର ସହକର୍ମୀ କୃପାସିନ୍ଧୁ ଆଉ ନାହାନ୍ତି । ସତ୍ୟବାଦୀ ବିଦ୍ୟାଳୟର ଧୈର୍ଯ୍ୟଶୀଳ, ପ୍ରବୀଣ, ଲୋକପ୍ରିୟ ସୁଦକ୍ଷ ପ୍ରଧାନ ଶିକ୍ଷକ ପଣ୍ଡିତ କୃପାସିନ୍ଧୁ ମିଶ୍ର ସମସ୍ତଙ୍କୁ ଶୋକସାଗରରେ ଭସାଇ ଏ ମାସ ୧୨ ତାରିଖ ଶୁକ୍ରବାର ସକାଳ ୧୦ ଟା ବେଳେ ଚାଲିଗଲେ । ଉତ୍କଳର ଶିକ୍ଷକ ସମାଜରୁ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ଖସିପଡ଼ିଲା । ଉତ୍କଳ ଇତିହାସର ପ୍ରତ୍ନତତ୍ତ୍ୱ ଅନୁସନ୍ଧାନ କ୍ଷେତ୍ରରୁ ପ୍ରଧାନ ସାଧକ ଅନ୍ତର୍ହିତ ହୋଇଗଲେ । 'ବାରବାଟୀ' ଓ 'କୋଣାର୍କ' ଗ୍ରନ୍ଥ ସଂଶୋଧନ, ପରିବର୍ତ୍ତନ ଓ ପରିବର୍ଦ୍ଧନ ଆଉ କିଏ କରିବ ? କୃପାସିନ୍ଧୁଙ୍କ ଲେଖା 'ଉତ୍କଳ ଇତିହାସ'ର ଛପା ସମ୍ପୂର୍ଣ୍ଣ ହୋଇନାହିଁ । ଓଡ଼ିଶାର ସୁବୃହତ୍ ଇତିହାସ ଇଂରାଜୀରେ ଲେଖିବା ଆଶା ଆମ୍ଭମାନଙ୍କର ଅପୂର୍ଣ୍ଣ ରହିଲା । ହୃଦୟରେ ଆଉ ଯେ କେତେ କଳ୍ପନା ଅଙ୍କୁରି ଥିଲା ତାହା ସେହି ହୃଦୟରେ ମଉଳିଲା । ଉଦୟମାନ ଯୁବକ ସ୍ୱାଧୀନଚେତା ଡାକ୍ତର ବାଳକୃଷ୍ଣ ସେଦିନ ଅକାଳରେ ଚାଲିଯାଇଛନ୍ତି । ସେ ଲୁହ ଆଖିରୁ ଶୁଖି ନାହିଁ । ତା' ଉପରେ ପୁଣି କୃପାସିନ୍ଧୁଙ୍କ ଅକାଳ ବିୟୋଗ; ଉପର୍ଯ୍ୟୁପରି ଏସବୁ ଜାତୀୟ ବିପତ୍ତି କି ଧୈର୍ଯ୍ୟ ଧରି କିଏ ସମ୍ଭାଳିବ ? ବିଧାତାଙ୍କର ଏ ହତଭାଗ୍ୟ ଦେଶ ଓ ସମାଜକୁ କି ଅଭିଶାପ ଅଛି କେଜାଣି ? ଏ ଦାରୁଣ ଦୁଃଖରେ ଆମ୍ଭେମାନେ ଆଦୌ କିଛି କହି ପାରୁନାହୁଁ । ଗଭୀର ଶୋକରେ ଆଖିରୁ ଲୁହ ବୋହୁନାହିଁ, ତୁଣ୍ଡରେ କଥା ଆସୁନାହିଁ, କଲମ ଚାଲୁ ନାହିଁ । ପ୍ରଭୋ ! ତୁମର କି ବିଚାର ତୁମ୍ଭେ ଜାଣ ।

× × × ଯେଉଁମାନଙ୍କୁ ଦେଖି ମୁଁ ଆପଣାକୁ କୁଟୁମ୍ବୀ ବୋଲି ମନେ କରୁଥିଲି ତାଙ୍କ ମଧ୍ୟରୁ କୃପାସିନ୍ଧୁଙ୍କ ପରି ସହକର୍ମୀ ଯୁବକଙ୍କ ବିୟୋଗବାର୍ତ୍ତା ମୋତେ ସାଧାରଣଙ୍କୁ ଜଣାଇବାକୁ ପଡ଼ିଲା । ତାଙ୍କ ଶୋକସଭାର ବିବରଣୀ ମୋତେ ଲେଖିବାକୁ ହେଲା, ତାଙ୍କ ମୃତ୍ୟୁରେ ସହାନୁଭୂତି ପତ୍ର ମୋତେ ପାଇବାକୁ ହେଲା । ଏହା ମୋର ପୂର୍ବ ଦୁଷ୍କୃତି ଫଳ ମୁଁ ଜାଣୁଛି । ସତ୍ୟବାଦୀର ନିଭୃତ କୋଣରେ କାର୍ଯ୍ୟ କରି କୃପାସିନ୍ଧୁ ଯେ ଏତେ ଦୂର ଆଦୃତ ହୋଇଛନ୍ତି—ଏହା ମୋ ପକ୍ଷରେ ପରମ ଆଶ୍ୱାସନା । କୃପାସିନ୍ଧୁ ବୃଥା ବଞ୍ଚି ନଥିଲେ । ତାଙ୍କ ତ୍ୟାଗ ଅକାରଣ ଯାଇନାହିଁ । ଉତ୍କଳର କେତେ ଶିକ୍ଷିତ ଯୁବକଙ୍କ ପ୍ରାଣରେ ତାଙ୍କ ତ୍ୟାଗ ଓ କର୍ମର ପ୍ରଭାବ ସାମାନ୍ୟ ହେଲେ ପଡ଼ୁଛି, ଏ ଘୋର ତମସାଚ୍ଛନ୍ନ ଦୁର୍ଦ୍ଦିନରେ ଏହି ଆଶା ଓ ବିଶ୍ୱାସ ମୋତେ ଉଜ୍ଜୀବିତ କରି ରଖିଛି ।''

ଗୋପବନ୍ଧୁ କୃପାସିନ୍ଧୁଙ୍କ ବିୟୋଗରେ ଅତି ବ୍ୟାକୁଳ ହୋଇପଡ଼ିଥିଲେ । ସତେ ଯେପରି ଆପଣାର ଅତି ପ୍ରିୟ ଜଣେ ମଣିଷ ସେ ହରାଇ ବସିଥିଲେ । ସେ ଆଉ ଫେରିବାର ନୁହେଁ । ସତ୍ୟବାଦୀ ବିଦ୍ୟାଳୟର ଆର୍ଥିକ ଦୁରବସ୍ଥା ଓ କରୁଣ ପରିଣତି ସାଙ୍ଗକୁ ପ୍ରିୟ ସୁହୃଦ୍ କୃପାସିନ୍ଧୁଙ୍କ ବିୟୋଗ ତାଙ୍କ ମନରେ ଗଭୀର ଭାବାନ୍ତର ସୃଷ୍ଟି କଲା । ସେ ଯେପରି ବିଧାତାଙ୍କ ଇଚ୍ଛାର ଏହି ନିଷ୍ଠୁର ଇଙ୍ଗିତ ପାଖରେ ଅତି ଅସହାୟ ହୋଇପଡ଼ିଥିଲେ । ତାଙ୍କର କେତେ ଅସମାପ୍ତ ଆଶାର ମୁକୁଳ ଅକାଳରେ ଝଡ଼ି ପଡ଼ିଥିଲା ।

## ଭାଇ ଭାଇ ଏକାଠାଇଁ

୧୯୧୬ ମସିହା ଅପ୍ରେଲ ୧ମ ସପ୍ତାହରେ କଲିକତାରେ ବ୍ୟାପକ ହିନ୍ଦୁ ମୁସଲମାନ ଦଙ୍ଗା ହଠାତ୍ ଲାଗିଗଲା । ଦିନ ଦ୍ୱିପହରରେ ମଣିଷ ମଣିଷକୁ ହାଣିଲା । ରାଜରାସ୍ତାରେ ଅସ୍ତ୍ରଧାରୀ ଭାବରେ ଛୁରୀ ତରୁଆଲ୍ ଧରି ଦଶ-ପନ୍ଦର ମୁସଲମାନ ଯୁବକ ଜମିଗଲା ବେଳକୁ ତାଙ୍କୁ ହାଣିବାକୁ ପଞ୍ଚାଏ ହିନ୍ଦୁ ଯୁବକ କେଉଁଠୁ ଲୁଚିଛପି ବାହାରି ଆସିଲେ । ପୁଣି ହିନ୍ଦୁ ପଦଯାତ୍ରୀଙ୍କୁ, ନିରୀହ ବୃଦ୍ଧବୃଦ୍ଧାଙ୍କୁ ମୁସଲମାନ ନିର୍ମମ ଭାବେ ହାଣିଲେ । ଏହି ଦଙ୍ଗାରେ ୨୯ଜଣ ହିନ୍ଦୁ ଓ ୨୮ଜଣ ମୁସଲମାନ ମରିଥିବା ସରକାରୀ ରିପୋର୍ଟରୁ ପ୍ରକାଶ ପାଇଥିଲା । ବହୁ ଲୋକଙ୍କ ଦୋକାନ, ଆସବାବ ଲୁଣ୍ଠିତ ହେଲା । କେତେକ ଦୁଷ୍ଟ ଗୁଣ୍ଡା ଶ୍ରେଣୀର ଲୋକ ଏପରି ଘଟାଇଥିଲେ ।

ଏହି କଲିକତା ଦଙ୍ଗା ବ୍ୟାପାରରେ ମହାତ୍ମା ଗାନ୍ଧି ଅତି ବିଚଳିତ ହୋଇପଡ଼ିଥିଲେ ଓ ଦୁଃଖରେ ଲେଖିଥିଲେ—"ମୁଁ ସନାତନୀ ହିନ୍ଦୁ, ମୌଲାନା ସଉକତ୍ ଅଲି ନେମାଜୀ ମୁସଲମାନ । ଆମ୍ଭ ଦୁହିଁଙ୍କ ମଧ୍ୟରେ ଯଦି ଭାଇ ଭାଇ ଭାବ ଏପରି ଦୃଢ଼ ହୁଏ ତେବେ ହିନ୍ଦୁ ମୁସଲମାନର ମିଳନ ଅସମ୍ଭବ ହେବ କାହିଁକି ?"

ଏହି କଲିକତା ଦଙ୍ଗାର ପ୍ରଭାବ ଓଡ଼ିଶାର ବାଲେଶ୍ୱର ଜିଲ୍ଲାକୁ ସଂକ୍ରମିତ ହୋଇଥିଲା । ମୋତିଗଞ୍ଜ ବଜାର ନିକଟବର୍ତ୍ତୀ ମସଜିଦ୍ ରାସ୍ତାରେ ସବୁଦିନେ ହିନ୍ଦୁମାନେ ସଂକୀର୍ତ୍ତନ କରି ଯାଉଥିଲେ, ନାମଧ୍ୱନି କରୁଥିଲେ; କିନ୍ତୁ କେତେକ ଚପଳମତି ଦୁଷ୍ଟ ପଠାଣ ଯୁବକ ଏମାନଙ୍କ ଉପରକୁ ଧୂଳି, କାଦୁଅ ଓ ଟେକା ଫିଙ୍ଗାଇଲେ । ବୁଢ଼ା ବୁଢ଼ା ଲୋକମାନେ ମସଜିଦ୍ ବାଟେ ସଂକୀର୍ତ୍ତନ ପଟୁଆର ନେବାକୁ ବାରଣ କଲେ । ମୁସଲମାନମାନଙ୍କର ଏ ଅଯଥା ଦାବୀ ଆଇନ ବିରୁଦ୍ଧ ଥିଲା; ବିଶେଷତଃ ବିଲାତର ପ୍ରିଭି କାଉନସିଲ ଏକ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ଭାରତର ଯେ କୌଣସି ଧର୍ମ ସଂପ୍ରଦାୟର ଲୋକ ଧର୍ମ ସମ୍ବନ୍ଧୀୟ ବାଜା, ସଙ୍ଗୀତ ଓ ପଟୁଆର ସ୍ୱଚ୍ଛନ୍ଦରେ ନେଇପାରିବେ ; କିନ୍ତୁ ଧର୍ମ ସଂପ୍ରଦାୟର ମତାନ୍ଧତା ଏ ସିଦ୍ଧାନ୍ତକୁ ଅପେକ୍ଷା କରୁନଥିଲେ ।

ବାଲେଶ୍ୱରର ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠା ପାଇଁ ଗୋପବନ୍ଧୁ ବାଲେଶ୍ୱରରେ ଆୟୋଜିତ ଏକ ସଭାରେ ଏକ ଭାବଗର୍ଭକ ବକ୍ତୃତା ଦେଇଥିଲେ—"ଆଜି ଆମ୍ଭମାନଙ୍କୁ ସାଧାରଣ ସଭାରେ ଠିଆ ହୋଇ କହିବାକୁ ଲାଜ ମାଡ଼ୁଛି । ଆମେ ଯେ ତିରିଶ କୋଟି ଭାରତବାସୀ । ଏ କଥା ବୁକୁ ଫୁଲାଇ କହିବାକୁ ଆମର ଆଉ ମୁହଁ ନାହିଁ । କଲିକତା ହିନ୍ଦୁ ମୁସଲମାନ କଳହ ଯୋଗୁଁ ଆମ୍ଭମାନଙ୍କୁ ମୁଣ୍ଡପୋତି ରହିବାକୁ ହେଉଛି । କିନ୍ତୁ ମୁଁ ଏକାବେଳକେ ହତାଶ ନୁହେଁ । କଲିକତାର ହିନ୍ଦୁ ମୁସଲମାନ କଳହ ଯୋଗୁଁ ମୁଁ ହିନ୍ଦୁ ମୁସଲମାନ ମିଳନ ଏବଂ ଭାରତର ଜାତୀୟତା ଓ ସ୍ୱରାଜ୍ୟ ବିଷୟରେ ହତାଶ

ନୁହେ । ଏଭଳି ସାମ୍ପ୍ରଦାୟିକ ଦ୍ୱନ୍ଦ୍ୱ ବିବାଦ ଭାରତରେ ଆଜି ନୂଆ ନୁହେଁ । ପୃଥିବୀର ଅନ୍ୟାନ୍ୟ ଅନେକ ଜାତିର ଇତିହାସରେ ଏପରି ଘଟଣା ବହୁତ ହୋଇଛି । ଏଥିଁ ବଳି ସାଙ୍ଘାତିକ ପରିଣାମ ସେ ସବୁର ହୋଇଛି । ୟୁରୋପର କେତେକ ଦେଶରେ ଅନେକ ଦିନ ଧରି ସାମ୍ପ୍ରଦାୟିକ ଦ୍ୱନ୍ଦ୍ୱ କଳହ ଲାଗିଥିଲା । ତାହା ଫଳରେ ଦେଶରେ ରକ୍ତନଦୀ ବହିଗଲା । କେତେ ଶକ୍ତିଶାଳୀ ପୁରୁଷ ଅକାଳରେ ଝଡ଼ିପଡ଼ିଲେ । ମାତ୍ର ସେ ଦ୍ୱନ୍ଦ୍ୱ ସ୍ଥାୟୀ ହୋଇନାହିଁ । ୟୁରୋପର ଦେଶମାନଙ୍କରେ ଆଜି ସକଳ ଶ୍ରେଣୀ, ସକଳ ସମ୍ପ୍ରଦାୟର ଲୋକେ ସାର୍ବଜନୀନ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇଛନ୍ତି । ଇତିହାସର ଘଟଣାବଳୀ ଗଥିତକ ପରି ବୁଲି ଚାଲିଛି । ଯାହା ଅନ୍ୟଦେଶରେ ହୋଇଛି ତାହା ମଧ୍ୟ ଭାରତରେ ହେବ । ଭାରତରେ ହିନ୍ଦୁ ମୁସଲମାନମାନେ ଦେଶ ଭକ୍ତିରେ ଅନୁପ୍ରାଣିତ ହେଲେ ଏ ଧର୍ମ ଓ ସମ୍ପ୍ରଦାୟର ବିବାଦ ରହିବ ନାହିଁ । ଏକ ଡେମ୍ପରେ ଦୁଇଟି ଫୁଲପରି ଏମାନେ ଶତ ଶତ ବର୍ଷ ଧରି ବିକାଶୁଛନ୍ତି । ଏକା ଦେଶରେ ରୋଗବ୍ୟାଧି ଭୋଗୁଛନ୍ତି । ଦୁର୍ଭିକ୍ଷରେ ମରୁଛନ୍ତି ଏକା ଶାସନ ଶିକୁଳିରେ ଦୁହିଁଙ୍କ ହାତଗୋଡ଼ ବନ୍ଧା ହୋଇଛି । ଉଭୟଙ୍କର ସୁଖ ଦୁଃଖ ଏକ, ମଲାବେଳେ ପୁଣି ଉଭୟେ ସେଇ ଦେଶ ମାତାଙ୍କ କୋଳରେ ଚିର ନିଦ୍ରାରେ ଶୋଇଯିବେ । ମୁସଲମାନ ଏ ଦେଶ ଛାଡ଼ି ଆରବ ବା ପାରସ୍ୟକୁ ପଳାଇ ଯିବେ ନାହିଁ, ବା ହିନ୍ଦୁ ମଧ୍ୟ-ଏସିଆକୁ ଯିବେ ନାହିଁ । ଏ ଅବସ୍ଥାରେ ଉଭୟଙ୍କର ସ୍ୱାର୍ଥ କେତେ କାଳ ଅଲଗା ଅଲଗା ହୋଇ ରହିବ ? ଆଜି ହଣାକଟା ଲଗାଇଛନ୍ତି, କାଲି ପୁଣି ଉଭୟେ କୋଳାକୋଳି ହେବେ । ବିବାଦ ଲାଗେ କାହା ସଙ୍ଗେ ? ଯାହା ସଙ୍ଗେ ପ୍ରୀତି ହୁଏ । ମନାନ୍ତର କାହା ସଙ୍ଗେ ? ଯାହା ସଙ୍ଗେ ମନର ମେଳ ହୁଏ । ଭାଇ ଭାଇ ଭିତରେ ତ କଳି ଲାଗେ । ପ୍ରତିଦିନ ଲାଗୁଛି; କିନ୍ତୁ ପୁଣି ସେଇ ଭାଇ ଭାଇ ଭିତରେ ପ୍ରୀତି ହୁଏ, ମେଳ ହୁଏ । ମୋର କଳହ, ବିବାଦ, ଅପ୍ରୀତି, ଅସନ୍ତୋଷ କାହା ସଙ୍ଗେ ? ଯାହା ସଙ୍ଗେ ମୁଁ ଏକତ୍ର ଅଛି, ଏକାଠାଇଁ କାମ କରୁଛି, ଏକ ସ୍ୱାର୍ଥରେ ଜଡ଼ିତ ରହିଛି । ଗ୍ରୀନ୍‌ଲ୍ୟାଣ୍ଡ ଲୋକ ସଙ୍ଗେ ମୋର କି ପ୍ରତ୍ୟକ୍ଷ ସମ୍ପର୍କ ? ତାଙ୍କ ସଙ୍ଗେ ମୋର କେବେହେଲେ ବିବାଦ ହେବାର ଆଶଙ୍କା ନାହିଁ । ମାତ୍ର ଆଜି ଯାହା ସଙ୍ଗେ କଳହ ଦ୍ୱନ୍ଦ୍ୱ ଚାଲିଛି କାଲି ଆମ ଉଭୟଙ୍କ ମନରୁ ମୋହ ତୁଟିଗଲେ, ଅଜ୍ଞାନତା ଘୁଞ୍ଚିଗଲେ ପୁଣି ଉଦାର ଭାଇଭାବ ବିକଶିବ । କେତେବେଳେ ଭାଇ ଭାଇ ଠାଇଁ ଠାଇଁ, ପୁଣି କେତେବେଳେ ଭାଇ ଭାଇ ଏକାଠାଇଁ, ଭେଦ ନାହିଁ, ଭେଦ ନାହିଁ ।"

ଏହିପରି ଏକ ଦୀର୍ଘ ଓଜସ୍ୱିନୀ ବକ୍ତୃତା ଦେଇ ଗୋପବନ୍ଧୁ ଏକତା ପାଇଁ ଆହ୍ୱାନ କରିଥିଲେ । ତାଙ୍କ ବକ୍ତବ୍ୟ ସେଦିନ ସଭାରେ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲା । ବିବାଦ ଭୁଲି ହିନ୍ଦୁ ମୁସଲମାନ ନିର୍ବିଶେଷରେ ଆତ୍ମରକ୍ଷା ଓ ଦେଶ ରକ୍ଷା ପାଇଁ ଛୁରୀ ତଲୁଆର ଚଳେଇ ଶିଖିବାକୁ ସେ ପରାମର୍ଶ ଦେଇଥିଲେ । ଏହି ରଣ କୌଶଳକୁ ଦେଶ ପାଇଁ ନିୟୋଜିତ କରିବା ତାଙ୍କର ଲକ୍ଷ୍ୟ ଥିଲା ।

କିନ୍ତୁ ଏ ହିନ୍ଦୁ ମୁସଲମାନ ବିବାଦ ସହଜରେ ପ୍ରଶମିତ ହେଲା ନାହିଁ । ବାଲେଶ୍ୱର ନିକଟବର୍ତ୍ତୀ ସୋରୋଠାରେ ମୁସଲମାନମାନେ ହିନ୍ଦୁମାନଙ୍କୁ ମାରିଲେ । ଏଥିରେ ପୋଲିସ୍ ତରଫରୁ ସେମାନଙ୍କ ନାମରେ ମକଦ୍ଦମା ରୁଜୁ ହୋଇଥିଲା । ହିନ୍ଦୁମାନେ ମିଳିମିଶି ମୁସଲମାନମାନଙ୍କୁ ଧୋବା ଭଣ୍ଡାରି ମୂଲିଆ ମଜୁରିଆ ବନ୍ଦ କରିଦେଲେ । ସେମାନଙ୍କ ସ୍ୱାଭାବିକ ଜୀବନଯାତ୍ରା ଅଚଳ ହୋଇଉଠିଲା । ଏ ସମସ୍ୟା ସମାଧାନ କରିବାକୁ ତା ୧୩ । ୬ । ୨୬ ଋଖରେ ଗୋପବନ୍ଧୁ ବାବୁ ଅନ୍ୟତମ କଂଗ୍ରେସ ନେତା ଏକରାମ ରସୁଲ୍‌ଙ୍କୁ ସାଙ୍ଗରେ ନେଇ ସୋରୋରେ ପହଞ୍ଚିଲେ ଓ ଏକ ଆପୋଷ ନିଷ୍ପତ୍ତି କରିଦେଲେ । ବାଲେଶ୍ୱରରେ ଖୁବ୍ ଶୀଘ୍ର ଶାନ୍ତି ଫେରି ଆସିଲା । ପରେ ପୋଲିସ୍ ରିପୋର୍ଟ ଓ ତଦନ୍ତରୁ ଜଣାଗଲା ଯେ, କଲିକତାରୁ ମଇମନ ( ମୌଲବୀ )ମାନେ ଆସି ଏପରି ଉତ୍ତେଜନା ସୃଷ୍ଟି କରିଥିଲେ ।

## ବନ୍ୟାବିପ୍ଳାତର କରୁଣ କାହାଣୀ

ଗୋପବନ୍ଧୁ ଅଗଷ୍ଟ ମାସ ୩ୟ ସପ୍ତାହରେ ଗଞ୍ଜାମ ଜିଲ୍ଲାରେ ଖଦୀ ଗସ୍ତରେ ଥିଲାବେଳେ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ପ୍ରାୟ ସମସ୍ତ ନଦୀରେ ଭୟଙ୍କର ବଢ଼ି ଆସିଲା । ଆଳି ରିଂ ବନ୍ଧ, ଗୋବିନ୍ଦପୁର ଥାନାର ମାଙ୍ଗଘାଇ, ବ୍ରାହ୍ମଣୀ ଓ ଖରସ୍ରୋତାରେ ବହୁ ସ୍ଥାନରେ ବନ୍ଧ ଭାଙ୍ଗି ବହୁ ଫସଲ ନଷ୍ଟ କରିଦେଲା । ୧୧ । ୮ । ୨୬ ତାରିଖ ରାତିରୁ ତିନିଦିନ ବ୍ୟାପୀ ଭୟଙ୍କର ବର୍ଷା ଲାଗି ରହିବା ଫଳରେ ଭଦ୍ରଖର ସାଳନ୍ଦୀ ନଦୀରେ ମଧ୍ୟ ପ୍ରବଳ ବନ୍ୟା ଆସିଥିଲା । ଦୟା ଭାର୍ଗବୀ ନଦୀ ବନ୍ଧ ଭାଙ୍ଗି ପୁରୀ ଜିଲ୍ଲାର ବାଲକାଟି ଓ ପ୍ରତାପପୁରଠାରେ ଘାଇ ସୃଷ୍ଟି ହେଲା । ସବୁଠାରୁ ଅଧିକ ଭୟଙ୍କର ହୋଇଥିଲା ସଦର ଥାନାର କୋରକେଇ ଘାଇ । ଯାଜପୁରର ଖରସ୍ରୋତା ବ୍ରାହ୍ମଣୀର ଗଣ୍ଡା ବନ୍ଧ, ଯୋକଡ଼ିଆ ବନ୍ଧ ଓ କରଞ୍ଜିଆ ବନ୍ଧ ଭାଙ୍ଗି ବିସ୍ତୃତ ଅଞ୍ଚଳ ଜଳମଗ୍ନ ହୋଇଥିଲା । ବିଞ୍ଝାରପୁର ବନ୍ଧ, ନୂଆନଈ ବନ୍ଧ ଭାଙ୍ଗି ବହୁ ଘରଦ୍ୱାର ନିଶ୍ଚିହ୍ନ ହୋଇଯାଇଥିଲା ।

ଗୋପବନ୍ଧୁ ଖଦୀଗସ୍ତରୁ ତୁରନ୍ତ ଫେରିଆସି ଶିରବ୍ୟଥା ରୋଗରେ ପୀଡ଼ିତ ଥିଲେ । ଟିକେ ଦେହ ଭଲ ହେବା ମାତ୍ରେ ଏସବୁ ଅଞ୍ଚଳକୁ ଯିବା ପାଇଁ ଯୋଜନା କରୁଥିଲେ । ପ୍ରତିଦିନ ତାଙ୍କ ପାଖରେ ବିଭିନ୍ନ ଅଞ୍ଚଳରୁ ବହୁ କରୁଣ ଚିଠି ଆସି ପହଞ୍ଚୁଥିଲା । ସମସ୍ତେ ତାଙ୍କ ଆଗମନକୁ ସଚେଷ୍ଟ ହୋଇ ଚାହିଁ ବସିଥିଲେ । ୧୯ । ୮ । ୨୬ ତାରିଖରେ ଜଣେ ବ୍ୟକ୍ତି ଆଳି ନୂଆଗାଁରୁ ତାଙ୍କ ପାଖକୁ ଚିଠି ଲେଖିଥିଲେ—"ଆପଣ ନିଜେ ଆସି ଅଞ୍ଚଳର ଅବସ୍ଥା ଦେଖି ଯାଇଥିଲେ । ପୁଣି ୧୭ ତାରିଖ ପ୍ରବଳ ବଢ଼ି ହୋଇ ଆଳି ରିଂ ବନ୍ଧ ଭାଙ୍ଗି ଯାଇଛି । ଆଳି ଲୋକେ ପାଣିରେ ହବୁଡ଼ୁବୁ ହେଉଛନ୍ତି । କିଏ କେଉଁଠି କି ଅବସ୍ଥାରେ

ପଡ଼ୁଛି ତା'ର ଖବର ଦେବାକୁ କେହି ନାହିଁ । ଫସଲ ବାଢ଼ ଥିଲା, ଲୋକେ କୌଣସିମତେ ଚଳୁଥିଲେ । ବର୍ତ୍ତମାନ ଏମାନେ କେଉଁ ଆଶା ନେଇ ବଞ୍ଚିବେ ? କିଏ ବା କେଉଁ ଆଶା ଦେଖି ଏମାନଙ୍କୁ ଉଧାର କରଜ ଦେବ ? ଭିକ୍ଷା ଛଡ଼ା ଏମାନଙ୍କର ଅନ୍ୟ କିଛି ଉପାୟ ନଥିଲା । ସେ ଏବେ ଗଲା । କିଛି ବର୍ଷେ ଅଧେ ନୁହେଁ । ଗଲା ଦଶବର୍ଷରୁ ବର୍ଷେ ମାତ୍ର ଭଲ ଫସଲ ହୋଇଥିଲା । ନହେଲେ ସବୁବେଳେ ଫସଲ ହାନି । ଦୁର୍ଭିକ୍ଷ ମୁଠି ଚାଉଳରେ ଅନେକ ଲୋକ ଆଜିଯାଏ ବଞ୍ଚି ଥିଲେ । ଏବେ କରିବୁ କଣ ? ଯିବୁ କୁଆଡ଼େ ? ଆପଣଙ୍କୁ ବହୁତ ପ୍ରାର୍ଥନା କରୁଛୁ—କିପରି ବଞ୍ଚିବୁ ତା'ର ବ୍ୟବସ୍ଥା କରନ୍ତୁ ।

ଅନ୍ୟ ଜଣେ ସମ୍ବାଦଦାତା ଲେଖିଥିଲେ—"ହାୟ, ହାୟ, କି ଦୁଃଖର କଥା । ଗତରାତ୍ର ସାତ ଘଣ୍ଟା ଆଳ ଭେଡ଼ା ଓ ବନ୍ଦର ଆସ୍ତିପୁର ନାମକ ପ୍ରଧାନ ଘାଇ ବନ୍ୟା ଜଳରେ ଭାଙ୍ଗିଗଲା । ଘରେ ପାଣି ପଶି ଘରଦ୍ୱାର ନଷ୍ଟ କରି ଆଳର ପଞ୍ଚାବନ ହଜାର ଲୋକଙ୍କୁ କଷ୍ଟରେ ପକାଇଗଲା । ଆଳର ବର୍ତ୍ତମାନ ସମସ୍ତେ ସାହାଯ୍ୟକୁ ଚାହିଁଛୁ । ବନ୍ଦର ତଦ୍ଭ କେହି ନ ନେଲେ; ତା' ଯୋଗୁ ସବୁ ସରିଲା । ଜୀବନ ଗଲା ବେଳେ ଔଷଧ କି କାର୍ଯ୍ୟ ଦେଖାଏ ? ହାୟ, ଆମେ ଆଳର ପ୍ରଜାମାନେ କିପରି ଚଳିବୁ ? ଗତ ସାଲ ଧୋଇ, ଏ ସାଲ ଧୋଇ, ଘର ଗଲା; ଫସଲ ଗଲା । କିପରି ଦେହ ଧରି ରହିବୁ ? ଆମ ପାଇଁ କ'ଣ ହେଲେ କରନ୍ତୁ । ନିଶ୍ଚୟ ଆସନ୍ତୁ; ନହେଲେ ସରିଗଲୁ । କୋଟି କୋଟି ଦଣ୍ଡବତ ଜାଣିବେ ।"

ଏହିପରି ବହୁ କରୁଣ ଓ ମର୍ମନ୍ତୁଦ ଚିଠି ଗୋପବନ୍ଧୁ ପ୍ରତିଦିନ ପାଉଥିଲେ । ସ୍ୱାସ୍ଥ୍ୟହୀନତା ସତ୍ତ୍ୱେ ବଡ଼ ବିଚଳିତ ହୋଇ ସେ ବନ୍ୟା ଅଞ୍ଚଳ ବୁଲି ଏହାର ପ୍ରତିକାର ଚିନ୍ତା କରୁଥିଲେ । ସେ ବଡ଼ ବ୍ୟଥିତ ହୋଇ ଲେଖିଥିଲେ—"ଦୁର୍ଭିକ୍ଷ ଓଡ଼ିଶାର ଚିର ରୋଗ । ମୁଠାଏ ମୁଠାଏ ଚାଉଳ ବାଣ୍ଟିବା—ସରକାର ବାଣ୍ଟନ୍ତୁ ବା ଆଉ କେହି ବାଣ୍ଟନ୍ତୁ ଏହାର ପ୍ରତିକାର ନୁହେଁ । ଏହା କେବଳ ଧର୍ମକୁ ଆଖିମିଟିକା ମାରିବା କଥା ଏବଂ ଲୋକଙ୍କୁ ଭଣ୍ଡାଇବା ବ୍ୟାପାର । ଏଣିକି କେବଳ ସାମୟିକ ସାହାଯ୍ୟ କର୍ତ୍ତବ୍ୟ ଶେଷ କଲେ ଚଳିବ ନାହିଁ । ଏହାଦ୍ୱାରା ଏ ଜାତିର ସର୍ବନାଶ ହେଉଅଛି । ଚରିତ୍ର ନଷ୍ଟ ହେଉଛି । ଗୁଡ଼ାଏ କାଙ୍ଗାଳ, ମାଗିଖିଆ ସୃଷ୍ଟି ହେଉଛନ୍ତି । କେବଳ ଦୁଃଖ ଯନ୍ତ୍ରଣା ଭୋଗିବାକୁ ପଞ୍ଝାଏ ଲୋକଙ୍କୁ ଭୋକ ଦେଇ ଅକର୍ମଣ୍ୟ କରି ରଖାଯାଉଛି । ସେଇମାନଙ୍କୁ ରଖିବାକୁ ହେବ ତ ଏଣିକି ସେଇମାନଙ୍କର ଚିର ଦୁର୍ଭିକ୍ଷ ମୁକ୍ତିର ବ୍ୟବସ୍ଥା କରିବାକୁ ହେବ । ନହେଲେ ଛାଡ଼ି ଦେବାକୁ ହେବ । ସମସ୍ତେ ମରିଯାଆନ୍ତୁ, ଓଡ଼ିଆ ଜାତି ଲୋପ ପାଉ, ପୃଥିବୀ ମୁହଁରୁ ଚିର ଦରିଦ୍ରତାର ଦାଗ ଲିଭିଯାଉ, ଚିର ଦୁର୍ଭିକ୍ଷ ଦ୍ୱନ୍ଦ୍ୱ ମେଣ୍ଟିଯାଉ । ଏହାହିଁ ଆଜି ପ୍ରତ୍ୟେକ ଓଡ଼ିଆର ସଙ୍କଳ୍ପ ହେବା ଉଚିତ ।

# ବ୍ରାହ୍ମଣୀ ବଢ଼ି

୧୯୨୭ ମସିହା ଅଗଷ୍ଟ ମାସ ୧୮ ତାରିଖରେ ବ୍ରାହ୍ମଣୀ ଓ ତା' ଶାଖାନଦୀମାନଙ୍କରେ ବର୍ଷାକାଳକୁ ଭୀଷଣ ବନ୍ୟା ଆସିଲା । ବହୁ ଅଞ୍ଚଳରେ ଘାଇ ହେଲା । ବ୍ରାହ୍ମଣୀ ଖରସ୍ରୋତାର ତ୍ରିକୋଣଭୂମି ଧୋଇଆ ଅଞ୍ଚଳ, ବଡ଼ରାମଚନ୍ଦ୍ରପୁର, ଆଳି, ପଟ୍ଟାମୁଣ୍ଡାଇ ଓ ବାଞ୍ଛାରପୁର ତଥା କେନ୍ଦ୍ରାପଡ଼ା ଅଞ୍ଚଳ ଜଳମଗ୍ନ ହେଲା । ଗୋପବନ୍ଧୁ ଏ ଅଞ୍ଚଳ ପରିସ୍ଥିତି ଦେଖି ସାହାଯ୍ୟ ବ୍ୟବସ୍ଥା କରିବାକୁ ନିଜେ ବାହାରି ପଡ଼ିଲେ । ବହୁତ ଗାଁ ଧୋଇଯାଇଥାଏ । ବରଷା ମଝିରେ ମଝିରେ ଗୁଡ଼ି ଯାଉଥିଲେ ମଧ୍ୟ କୋହଲା ପାଗ ହେମାଳ ପବନ ଲାଗି ରହିଥାଏ । ପାଣିର ସମୁଦ୍ର ମଝିରେ ଡଙ୍ଗା ଚାଲିଥାଏ । ଅନେକ ଦୂର ଗଲା ଉତ୍ତାରୁ ଦୂରରେ ଗଛ ଗହଳି ଦିଶିଲା । ତା ତଳେ ଅଳ୍ପ ଉଚ୍ଚ ହୁଡ଼ାରେ ଦନଦନ ଧରି ଲୋକ ଜମା ହୋଇ ରହିଥିଲେ । ବନ୍ୟାରେ ସେମାନଙ୍କ ଘରଦ୍ୱାର ଭାସି ଯାଇଥାଏ । ତାଙ୍କୁ ଦେଖି ଦାସେ ଆପଣେ ଝରଝର କାନ୍ଦିଲେ । ତିନି ଖଣ୍ଡ ନାଆ ଏକାଠି ଚାଲିଥାଏ । ଗୋଟିକରେ ଖାଦ୍ୟ ଜିନିଷ, ଅନ୍ୟ ଦୁଇଟିରେ ସାହାଯ୍ୟକାରୀ ଦଳ । ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ସାହାଯ୍ୟ ବଣ୍ଟା ହେଲା ।

ଲୋକଙ୍କୁ ଖାଲି ସାହାଯ୍ୟ ନୁହେଁ, ସାହସ ଦେଇ ଗୋପବନ୍ଧୁ କହୁଥାନ୍ତି, "ଥୟ ଧର । ଧୋଇ ଧାଇଙ୍କ କାହାର ବଳ ଅଛି ? ଯାହା କିଛି ଅଛି ବାଣ୍ଟିକୁଣ୍ଟି ଖାଇବା । ପରସ୍ପରକୁ ସାହାଯ୍ୟ କରିବା । ସରକାରଙ୍କୁ କହି ଅଧିକ ସାହାଯ୍ୟ ବ୍ୟବସ୍ଥା କରିବା । ଧୈର୍ଯ୍ୟଧର । ପାଣି ଗୁଡ଼ିଯିବ, ଭଙ୍ଗା ଘର ପୁଣି ତୋଳା ହେବ ।" ଲୋକଙ୍କ ମନରେ ସାହସ ଆସେ । ସେମାନେ ଭାବନ୍ତି କେହି ଜଣେ ସବୁଠାରୁ ବଳି ଆତ୍ମୀୟ ତାଙ୍କର ଅଛି । ଏ ବିପଦରେ ସେ ଏକମାତ୍ର ସାହା ଭରସା । ଡଙ୍ଗାରେ ଚାଳି ଉପରେ ମୁଣ୍ଡରେ ଗାମୁଛା, ଦେହରେ ଚଦରଟିଏ ପକେଇ ବର୍ଷାରେ ଓଦା ଜୁବୁବୁଡ଼ୁ ହୋଇ ସେ ବସିଥା'ନ୍ତି । ଆଖିରେ ଲୁହର ଲହଡ଼ି । ଦୃଷ୍ଟି ଉଣ୍ଡୁଥାଏ ଚାରିଆଡ଼େ – ଯେଉଁଠି ବିପନ୍ନ ଦରିଦ୍ରମାନେ ଅସହାୟ ଅବସ୍ଥାରେ ପଡ଼ିଛନ୍ତି ।

ଥରେ, ବରଗଛଟିଏ ଭାସିଯାଇ କୂଳରେ ଲାଗିଥାଏ । ସେଥିରେ ଗୋଟିଏ ଘରର ଚାଳ ଲାଗି ରହିଯାଇଥାଏ । ସେ ଚାଳରେ ଚାରି, ପାଞ୍ଚଜଣ ଲୋକ ବସି ବିକଳ ସ୍ୱରରେ ହୁରି କରୁଥା'ନ୍ତି । ଯାଜପୁର ଅଞ୍ଚଳ । ଦାସେ ଆପଣେ ପାଟି କଲେ—"ଡଙ୍ଗା ଏଇଠି ଲଗାଅ ।"

ଦାସେ ଆପଣଙ୍କୁ ଦେଖି ସେମାନେ କାନ୍ଦି ଉଠିଲେ । ଡଙ୍ଗାରେ ଉଦ୍ଧାର ହୋଇ କୂଳକୁ ଅଣା ହେଲେ । ଦୁଇଦିନ ଉପବାସ । ନାଆରୁ ଚୂଡ଼ା ଗଣ୍ଡେ ଗଣ୍ଡେ ଖାଇ ପେଟ ଶାନ୍ତ କଲେ । କେତେ କ୍ରନ୍ଦନ କଲେ, କେତେ ତାରିଫ୍ କଲେ, ଭଗବାନଙ୍କୁ ମନାସିଲେ ତା'ର ଇୟତ୍ତା ନାହିଁ ।

ତଙ୍ଗା ଅଗକୁ ଅଗକୁ ସ୍ରୋତ ଧାରରେ ଚାଲିଲା—ତଳେ ଯାଜପୁରର ବହୁ ତଳ ଅଞ୍ଚଳ ଜଳମଗ୍ନ । ବନ୍ୟା ସେଠି ତାଣ୍ଡବ ରଚିଛି । ଖରସୁଆଁ ନଈ କୂଳରେ ହାତୀମୁଣ୍ଡା ଗୋବିନ୍ଦପୁର ଗ୍ରାମ ଅବସ୍ଥିତ । ସେ ଗ୍ରାମମୁଣ୍ଡରେ ଗୋଟିଏ ବଡ଼ ବରଗଛ ଥାଏ । ଦାସେ ଆପଣେ ଆଚାର୍ଯ୍ୟ ହରିହର ଓ ଅନ୍ୟମାନେ ନଈ ପାରି ହୋଇ ବନ୍ଧ ଉପରକୁ ଉଠିଲା ବେଳେ କେତେଗୁଡ଼ିଏ ଛୋଟପିଲା ବରଫଳ ଗୋଟାଇ ଖାଉଥିବାର ଦେଖିଲେ । ଗୋପବନ୍ଧୁ ଏ ଦୃଶ୍ୟ ଦେଖି ଅତି ଅଧୀର ଭାବରେ କାନ୍ଦି ଉଠିଲେ । ପାଖକୁ ପିଲାମାନଙ୍କୁ ଡାକି ଜଣେ ଦି'ଜଣଙ୍କୁ ଅତି ଆଦରରେ କୋଳ କଲେ ଏବଂ ଅନେକଙ୍କୁ ଆଦରରେ ଚୁମ୍ବାଦେଲେ । ଆଖିରୁ ଲୁହଧାର ସେମିତି ବହୁଥାଏ, ପିଲାମାନଙ୍କୁ ଆଉଁସି ଆଉଁସି ଚୂଡ଼ା ଗୁଡ଼ିଲ ବାଣ୍ଟିଲେ ।

## ହାଲଆ ଜାତ କଣ ହାଲୁଆ ଖାଏ ?

ବ୍ରାହ୍ମଣୀ ବଢ଼ିର ଏକ ଧୂସର ଅପରାହ୍ଣ । ଆକାଶରେ ମେଘ ଥାଏ, ମଝିରେ ମଝିରେ ବର୍ଷା ହେଉଥାଏ । କ୍ଷୁବ୍ଧ ଖରସ୍ରୋତାର ବନ୍ୟା କରାଳ ମୂର୍ତ୍ତି ଧରିଥାଏ । ଗୋପବନ୍ଧୁ ଧର୍ମଶାଳାରୁ ଚାଲି ଚାଲି ବ୍ରାହ୍ମଣୀ ଓ ଖଣ୍ଡିତରଠାରେ ଖରସୁଆଁ ପାରି ହୋଇ ଆସିଥାନ୍ତି । ଅତି ବିଷଣ୍ଣ ଦେଖାଯାଉଥା'ନ୍ତି । ଚାଲି ଚାଲି ହାଲିଆ ହୋଇ ପଡ଼ିଥାନ୍ତି । ଦିନ ପ୍ରାୟ ୨ଟା ବେଳେ ହାଟସାହି ବ୍ରାଞ୍ଚ୍ ପୋଷ୍ଟ ଅଫିସରେ ପହଞ୍ଚିଲେ ।

ସନ ୧୯୨୭ ମସିହା ବର୍ଷାକାଳ । ପୋଷ୍ଟ ଅଫିସରେ ଡାକ ମାଷ୍ଟର ଥାନ୍ତି ଶ୍ରୀ ସୁଦର୍ଶନ ମହାପାତ୍ର । ତାଙ୍କର ମୁହଁର ଭାଷାରେ ଏଣିକି ଘଟଣାଟି ଲେଖୁଛି—ଏ ସ୍ମୃତି ବଞ୍ଚାଇ ରଖିବାକୁ ତାଙ୍କର ଏକାନ୍ତ ଅନୁରୋଧ ।

"ଦିନବାର ମନେ ପଡ଼ୁନି । ସେତେବେଳକୁ ମୋର ବୟସ ପ୍ରାୟ ଅଠରଣ ବର୍ଷ ଓ ଚାକରି ହୋଇଥାଏ ୧୯ ବର୍ଷ । ଖଦଡ଼ ପ୍ରତି ନୀରବ ସମ୍ମାନ ଦେଖାଏ । ନେତାମାନଙ୍କ ଭାଷଣ ପଢ଼େ ଓ ଶୁଣେ । ପାଟି ଫିଟାଇ ପାରେନା । କାରଣ ପ୍ରବଳ ପରାକ୍ରମଶାଳୀ ଶ୍ୱେତାଙ୍ଗ ଶାସନରେ ମୁଁ ଜଣେ ଅତି ନଗଣ୍ୟ କର୍ମଚାରୀ ମାତ୍ର । ଡାକଘର କାମରେ ବ୍ୟସ୍ତ । ଦିନ ପ୍ରାୟ ୨ଟା ହେବ । ପୋଷ୍ଟ ଅଫିସ ଗୃହର ଏକମାତ୍ର ପ୍ରବେଶ ଦ୍ୱାରରେ କାହାର ପାଦପାତ ହେବା ସହିତ ଶୁଣିଲି—"ଭିତରକୁ ଯିବି ?" ମୁଣ୍ଡ ଉଠାଇ ଦେଖିଲି—ଜଣେ ବାଙ୍ଗରା ହୋଇ ଭଦ୍ର ଲୋକ । ପରିଧାନ ଖଦଡ଼ ଖଦି ଓ ଚଦର । ମୁହଁରେ ଦାଢ଼ି । ହାତରେ ଛତା । ପ୍ରାୟ ଅଧାଅଧି ଓଦା । ସଙ୍ଗରେ ଆଉ ୫-୭ ଜଣ ସହଚର । କହିଲି, "ଆସନ୍ତୁ ।"

ସେ ଏବଂ ତାଙ୍କ ସହଚରମାନେ ଭିତରକୁ ଆସିଲେ । ଡାକଘରର ଏଇ ଯେଉଁ ଖଟ ଖଣ୍ଡିକ ଆଜି ବି ଅଛି, ସେହି ଖଟ ଉପରେ ସେ ବସିଲେ । ଗୁଡ଼ଏ ଖଦଡ଼ ପଣି ଆସିବାରୁ ଟିକଏ ଚକିତ ହୋଇ ମୁଁ ପଚାରିଲି—"ଚାନ୍ଦିପାରୁନ ଆଜ୍ଞା ?"

ସେ ବୋଧହୁଏ ବ୍ୟସ୍ତ ହେଉଥିଲେ । କହିଲେ—"ବର୍ଷା ଛାଡ଼ିଗଲେ ମୁଁ ଯାଜପୁର ଯିବି । ପାଣିକୋଇଲି ଛକ ଭିତରକୁ ଆହୁରି ତିନି ମାଇଲ । ଆସିଲି ଧର୍ମଶାଳାଠାରୁ ବ୍ରାହ୍ମଣୀ ଓ ଖଣ୍ଡଗିରଠାରେ ଖରସୁଆଁ ପାରି ହୋଇ ।" ସେ ନୀରବ ରହିଲେ ।

କିନ୍ତୁ ମୁଁ ଯେ ମୋ ପ୍ରଶ୍ନର ଉତ୍ତର ପାଇନାହିଁ । ପୁଣି ଶାନ୍ତ କଣ୍ଠରେ ପଚାରିଲି—"ଆପଣ କଂଗ୍ରେସ ନେତା ?"

"ନେତା ନୁହେଁ କର୍ମୀ—ମୋ ନାଁ ଗୋପବନ୍ଧୁ ଦାସ"—ସେ ଉତ୍ତର ଦେଲେ । "ନିତ୍ୟାନନ୍ଦବାବୁ, ଆଉ କିଛି ହେଉନି । ହାତରୁ ମୋର କଲମ ଖସିଗଲା । ଆଖିରୁ ଝରିପଡ଼ିଲା ଦୁ' ଧାର ଲୁହ । ମନେ ମନେ ଚିନ୍ତା କଲି—"ଗୋପବନ୍ଧୁ ଦାସ, ଖବର କାଗଜରେ ନିତି ମୁଁ ଏହାଙ୍କ କଥା ପଢ଼େ । ଏହି ତେବେ ସେଇ ଦେଢ଼କୋଟି ଓଡ଼ିଆର ମୁକୁଟହୀନ ସମ୍ରାଟ । ଏହି ସେହି ପୁଣ୍ୟଶ୍ଳୋକ ଗୋପବନ୍ଧୁ ଦାସ । ଦୁର୍ଦ୍ଦାନ୍ତ ଗୋରା ସରକାରଙ୍କ ଶିର ବ୍ୟଥାର କାରଣ ଏହି ସେହି ସର୍ବସ୍ୱତ୍ୟାଗୀ ଗୋପବନ୍ଧୁ । ପାଟଣା ସହରରେ ତତ୍କାଳୀନ ଗୋରା ସାହେବଙ୍କୁ ଓ ମଦରଙ୍ଗା ଦେଖାଇ ଯେ ଓଡ଼ିଆ ପୁଅ ପାଇଁ ଭୋ ଭୋ କାନ୍ଦିଥିଲେ—ଏ ସେହି ଦାସେ ଆପଣେ ।" ଖଟରୁ ଉଠାଇ ଆଣି ଚେୟାରରେ ବସାଇ ତାଙ୍କର ଚରଣ ତଳେ ନଇଁ ପଡ଼ୁଥିଲି । ହଠାତ୍ ଧରି ପକାଇ କହିଲେ—"ପାଗଳ ।"

ସେ ଭୋକ ଅନୁଭବ କରୁଥିଲେ । ପଚାରିଲେ—ଏଠି କ'ଣ ଜଳଖିଆ ମିଳିବ ? କିଛି ମିଳେନି ବୋଲି ସତ କଥାଟା କହିବାକୁ ସାହସ ହେଲାନି । ମନରେ ତ ଟିକଏ ଭୟଥାଏ କାରଣ ମୁଁ ଚାକିରିଆ । ପଦାକୁ ଆସିଲି । ହାଟସାହିରେ ଦରକାର ବେଳେ କିଛି ମିଳୁ ନ ଥିବା ଦୋକାନ ଦୁଇ ତିନୋଟି ଥିଲା । ମୋ ପୋଷ୍ଟ ପିଅନକୁ ବାହାରକୁ ଡାକି କିଛି ଚିନି ଓ ମୁଢ଼ି ସଂଗ୍ରହ କରିବାକୁ କହିଲି । ମୋ ନିଜ ଘର ସୋରୋ ଗ୍ରାମଟି ପ୍ରାୟ ଦେଢ଼ ମାଇଲ ଦୂରରେ ।

ମୋ କଥା ସେ ଶୁଣି ପାରିଲେ । ଡାକଘର ଭିତରୁ ପାଟିକରି କହିଲେ—"ପୋଷ୍ଟ ମାଷ୍ଟରବାବୁ, ହାଲିଆ ଜାତି କ'ଣ ହାଲୁଆ ଖାଏ ?—ଚୂଡ଼ା, ଗୁଡ଼ ମିଳିବନି ।" ଯାହାହେଉ ଘଣ୍ଟାକ ଭିତରେ ଚୂଡ଼ା, ଗୁଡ଼ ଓ ଟିକେ ଦହି ମିଳିଗଲା । ସେହି କାଠ ଖଟ ଉପରେ ସେ ଖାଇ ବସିଲେ । ଗଲାବେଳେ ବହୁ ଅନୁରୋଧରେ ସେ ଯାଚିଥିବା ପଇସା ଫେରେଇନେଲେ ଓ ଆଦରରେ ମୋ ବଟୁଆରୁ ଖଣ୍ଡିଏ ସାଧା ପାନ ବି ଖାଇଲେ । ତାଙ୍କ ଦାନ୍ତ ଖୁବ୍ ସଫା ଥିବାରୁ ମୁଁ ଯାଚି ପାରିନଥିଲି ।

ସେ ଚାଲିଗଲେ ଯେ ଆଉ ଫେରିନାହାନ୍ତି । କ୍ୟାଲେଣ୍ଡରର ପୃଷ୍ଠା ଓଲଟି ଚାଲିଲା ବନା

ଅପେକ୍ଷାରେ । ଆସିଲା ୧୯୫୦ ମସିହାର ଗୋଟିଏ ଶୀତ ରାତି । ସେହି ଡାକଘରେ ସେଇ ପତ୍ରଵାହ ଦେହଧାରୀ ଖଟଟି ପଡ଼ିଥାଏ । ଜଣେ ପଠାଣ ଡାକ-ଇନ୍‌ସପେକ୍‌ଟର ରାତିଟା କାମରେ ଆସି ରହିଥାନ୍ତି । ରାତି ଭୋଜନକୁ ସେ ସେହି ଖଟ ଉପରେ ମୋ ଅନୁପସ୍ଥିତିରେ ଖାଇ ବସିବାକୁ ଉପକ୍ରମ କରୁଥିଲେ । ପୋଷ୍ଟ ପିଅନ ନୂଆ ଲୋକ । ସେ ଜାଣି ନ ଥିଲା । ଇନସ୍‌ପେକ୍‌ଟର ବାବୁଙ୍କୁ ଟେବୁଲ ଉପରେ ରୋଟି ଓ କୁକୁଡ଼ା ତରକାରି ଖାଇବାକୁ ଦେବାବେଳେ କହିଲା—"ଆଜ୍ଞା ସେ ଖଟ ଉପରେ କ'ଣ କୁକୁଡ଼ା ମାଂସ ଚଳିବ ?" ସେ କାରଣ ପଚାରିଲେ । କହିଲା –"ସେହି ଖଟକୁ ମୁଁ ଗଭୀର ସମ୍ମାନ ଦେଇଛି, ଯାହା ଉପରେ ପଣ୍ଡିତ ଗୋପବନ୍ଧୁ ଦାସ ଚୂଡ଼ା ଖାଇଥିଲେ ।" ସେ ବିସ୍ମିତ ହେଲେ ।

ଏ କାହାଣୀ ମନଗଢ଼ା ଗପ ନୁହେଁ । ଆଜି ମୋ ଜୀବନ ଆସନ୍ନ ଅସ୍ତମିତ । ଜୀବନ ସନ୍ଧ୍ୟାରେ ଏ ବୁଢ଼ାର ସେହି କଥା ପଦକ ଏବେ ବି ମନେ ପଡ଼ୁଛି—"ହାଲିଆ ଜାତି କ'ଣ ହାଲୁଆ ଖାଏ ?" କାଲି ହୁଏତ ମୁଁ ମରିଯିବି । ଆଉ କିଛି ଦିନ ପରେ ଇତିହାସ ବି ବଦଳିଯିବ । ମୋର ଏ ସ୍ମୃତି ବଞ୍ଚି ରହିବ କେମିତି ? ଏ କଥାଟା ମୋ ପରେ କାଳେ ନ ଭିଯିବ ସେଥିପାଇଁ ଲେଖି ପଠାଇଲି ।"

## 'କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ'

ଓଡ଼ିଶା ତଥା ଭାରତୀୟ ରାଜନୀତିରେ 'କୌପୀନବନ୍ତଃ ଖଲୁ ଭାଗ୍ୟବନ୍ତଃ' ଆଦର୍ଶକୁ ଆଶ୍ରୟ କରିଥିବା ନେତା ଓ ସମାଜସେବୀଙ୍କ ସଂଖ୍ୟା ମୁଷ୍ଟିମେୟ । ଗାନ୍ଧିଙ୍କ ଆଦର୍ଶ ବେଙ୍ଗଲରେ ଦେଶବନ୍ଧୁ ଚିତ୍ତରଞ୍ଜନଙ୍କ ପରି ଓଡ଼ିଶାରେ ଗୋପବନ୍ଧୁଙ୍କୁ ବହୁ ଭାବରେ ପ୍ରଭାବିତ କରି କୃଚ୍ଛ୍ର ସାଧନାର ବାଟକୁ ଟାଣି ଆଣିଥିଲା । ତେଣୁ ପରପାଇଁ ବଞ୍ଚିବାର ରହସ୍ୟ ଉପଲବ୍ଧି କରି ସେ ଲେଖିଥିଲେ—

> "ମିଶୁ ମୋର ଦେହ ଏ ଦେଶ ମାଟିରେ
> ଦେଶବାସୀ ଚାଲି ଯାଆନ୍ତୁ ପିଠିରେ ।"

ଏ କେବଳ ଲେଖାର ଭାଷା ନୁହେଁ, ସାଧନାର ସାମଗ୍ରୀ ମଧ୍ୟ । ସମଗ୍ର ଜୀବନଟା ଏହିପରି ପଦାର୍ଥରେ ତିଳ ତିଳ କରି ଜାଳି ସେ ମାତ୍ର ବାଉନ ବର୍ଷରେ ଚିତ୍ତରଞ୍ଜନଙ୍କ ପରି ମୃତ୍ୟୁ ବରଣ କରିଥିଲେ । ବଡ଼ି ସକାଳୁ ଉଠିରେ ଅଖିଆ ଅପିଆ କାମ କଲାବେଳେ ଦେଶବାସୀଙ୍କର ସକଳ ଅବହେଳାକୁ ସେ ଆପଣାର କରି ସେବାର ରଥ ଟାଣୁଥିଲେ । ଆରାମ ଦୂରରେ ଥାଉ, ବିଶ୍ରାମ ଓ ଖିଆପିଆ ପାଇଁ ମଧ୍ୟ ଡାକେହେଲେ ନିଜପାଇଁ ସେ ଭାବୁ ନଥିଲେ, ଅପର କେହି ମଧ୍ୟ ତାଙ୍କପାଇଁ ସହଜ ନ ଥିଲେ । ଶ୍ରୀଯୁକ୍ତ ଶରତ ଚନ୍ଦ୍ର ମୁଖାର୍ଜୀ ଏହିପରି ଏକ ସ୍ମୃତିର

ଘଟଣା ଉଲ୍ଲେଖ କରିଛନ୍ତି । ସେ ହେବ ୧୯୨୭ ମସିହା ଆଳର ବଢ଼ି ବେଳ । ଏତେ ଭଲ ଘର, ଏପରିକି ଡାକବଙ୍ଗଳା, ସ୍କୁଲଘର ପ୍ରଭୃତି ସେଠାରେ ଥିବା ସତ୍ତ୍ୱେ, କେହି ଜଣେ ତାଙ୍କୁ ଗୋଟିଏ ଭଲଘରେ ରହିବାକୁ ନିମନ୍ତ୍ରଣ କଲେ ନାହିଁ । ସେ କିପରି ଭଲ ମୁଠିଏ ଖାଇବେ, ତାହାର ବ୍ୟବସ୍ଥା କଲେ ନାହିଁ । ଯେଉଁ ଦରିଦ୍ର ଜନତାର, ବନ୍ୟାକ୍ଲିଷ୍ଟ ଅନାହୃତ ନରନାରୀଗଣଙ୍କର ସେବା କରିବାକୁ ସେ ଆଳି ଯାଇଥିଲେ ସେମାନେ ହିଁ ଗୋଟାଏ କୁଡ଼ିଆ ଘରେ ତାଙ୍କୁ ରଖିଲେ ଏବଂ ତାଙ୍କ ପୂଜାରୀ ରାମ ବଜାରରୁ ଚାଉଳ ଡାଲି ଆଣି ରୋଷାଇ କଲା । ତ୍ୟାଗର ପ୍ରେରଣା ନିଶ୍ଚୟ ସେ ମହାମାନବର ଅନ୍ତରକୁ ଭରିଥିଲା ବୋଲି ମୁହଁରେ ହସ ରଖି ସେ କାମ କରିଗଲେ ସେଭଳି ପରିବେଷ୍ଟନୀ ଭିତରେ । ମାତ୍ର ଦେଶବାସୀଙ୍କର ସେଦିନର ଅବହେଳା ଉତ୍ତର ଯୁଗର ମଣିଷ କ୍ଷମା କରିବ କିପରି ?

ତା' ଆରଦିନ କଥା । ଉତ୍କଳମଣି ଫେରିବେ ଓ କେନାଲପାଖେ ପହଞ୍ଚି ଷ୍ଟିମର୍ ଧରିବେ । କେହି ଆଗେଇଦେଲେନାହିଁ ବଳଦ ଗାଡ଼ିଟାଏ, କେହି ଚାଲିଲେ ନାହିଁ ସାଙ୍ଗରେ । ପୁଣି ସେହି ପଦଯାତ୍ରା, ପୁଣି ସେଇ ଏକମାତ୍ର ସାଥୀ ପୂଜାରି ଟୋକା । ଷ୍ଟିମର ବାଟରେ ଖରାପ ହେଲା । କେହି କହିଲେ ନାହିଁ—"ଡଙ୍ଗାଖଣ୍ଡେ ଆଗେଇ ଦିଅ, ଉତ୍କଳମଣିଙ୍କୁ କଟକରେ ପହଞ୍ଚାଇ ଦିଅ ।" ସେମିତି ନିର୍ବିକାର ଭାବରେ ପୂଜାରି ଟୋକାକୁ ସାଙ୍ଗରେ ଧରି ସେ କେନାଲ ବନ୍ଧରେ ଆଗକୁ ଆଗକୁ ଚାଲିଲେ । କେବେ କଟକରେ ପହଞ୍ଚିବେ; ବାଟରେ କେଉଁଠି କଣ ଖାଇବେ ସେ ସବୁ ଚିନ୍ତା ମନରେ ଥିଲେ ମଧ୍ୟ ମୁହଁରେ ତାର ଲେଶମାତ୍ର ଚିହ୍ନ ନାହିଁ ।

ଶ୍ରୀ ମୁଖାର୍ଜୀ କିଛିବାଟ ଆଗେଇଯାଇ ଗାଳି ଗୁଲଜ ଓ ଧମକ୍ ଦେଇ ଗୋଟିଏ ଡଙ୍ଗା ଶେଷକୁ ବ୍ୟବସ୍ଥା କଲେ । ସେ ଡଙ୍ଗା ପଛରୁ ଆସି ଗୋପବନ୍ଧୁଙ୍କୁ ଭେଟିଲା । ଗୋପବନ୍ଧୁ ସତକୁ ସତ କ୍ଲାନ୍ତ ହୋଇପଡ଼ିଥିଲେ ଓ ଆଉ ଚାଲିପାରୁ ନ ଥିଲେ । ସେ ଗୋଡ଼ ହାତ ଧୋଇ, ମୁଣ୍ଡରେ ପାଣିଦେଇ ଯେତେବେଳେ ଡଙ୍ଗାରେ ବସିଲେ ତାଙ୍କ ମୁଖମଣ୍ଡଳରେ ସ୍ୱସ୍ତିର ଭାବ ଫୁଟିଉଠିଲା । ମହାମାନବର ଦେହ ମଧ୍ୟ ଆରାମ ଚାହେଁ, ମହାମାନବର ପେଟରେ ମଧ୍ୟ କ୍ଷୁଧାଗ୍ନି ଦାଉ ଦାଉ ହୋଇ ଜଳେ । ଆଉ ତାର ମଧ୍ୟ ତୃଷା ଥାଏ । ଯୀଶୁ କହିଥିଲେ, "ମୁଁ କ୍ଷୁଧାର୍ତ୍ତ ଥିବାବେଳେ କ୍ଷୁଧାପାଇଁ ଅନ୍ନ ମୁଠିଏ କେହି ଦେଇ ନାହିଁ, ମୁଁ ତୃଷାର୍ତ୍ତ ହେଲାବେଳେ ତୃଷ୍ଣା ନିବାରଣ ପାଇଁ ପାଣି ମୁନ୍ଦାଏ ପାଇନାହିଁ—ଖାଲି 'ଗୁରୁ' ବା 'ପ୍ରଭୁ' କହି କି ଭକ୍ତି ଦେଖାଉ ଅଛ ?"

ଅବଶ୍ୟ ଏ ଅଭିଯୋଗ ଗୋପବନ୍ଧୁଙ୍କଠାରୁ ଶୁଣାଯାଇନାହିଁ । ସକଳ ପ୍ରତି ଅଣିଚ୍ଛଭର ଏଇ ଅନ୍ତରରେ ଅଭିଶାପ ଓ ଅଶାନ୍ତିର ସ୍ପର୍ଶ ଲାଗିନାହିଁ । ତଥାପି ଦେହକୁ ଅଯତ୍ନକରି ଢଳଢଳ କରି ସେ ବଳିତାପରି ଜାଳିଦେଇଛନ୍ତି । ତାଙ୍କପରି ସନ୍ନ୍ୟାସୀ ସାଧକ 'ଭାଗ୍ୟବନ୍ତ' ହେବାର ସ୍ୱପ୍ନ କାହିଁ ବା ଦେଖନ୍ତେ ? ଦେଶର ନିରନ୍ନ ମଣିଷର ବ୍ୟଥା ଶୁଣି ଶୁଣି ସେ ଝଡ଼ିଯାଇଛନ୍ତି । ସେ ଧୂଳିର ଫୁଲ । ତାଙ୍କର ମସ୍ତକରେ ଓଡ଼ିଶାର ଅର୍ଦ୍ଧଶତାବ୍ଦୀର

ଉଚ୍ଛ୍ୱାସ ଅମୋଦିତ ହୋଇଛି । ତାଙ୍କରି ନୈବେଦ୍ୟ ଜଣାଇ କବି କଣ୍ଠରେ ଫୁଟି ଉଠିଛି—

"ଧୂଳିର ଫୁଲ ମହକ ସେ ତ
 କାହିଁରେ ଆସି ଯାଏରେ କାହିଁ
ସ୍ନିଗ୍ଧ ହାସେ ଆତୁର ହିଆ
 ଥରଇ ବ୍ୟଥା ପରଶ ପାଇ ।"
(ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ମୁଖାର୍ଜୀଙ୍କ ସ୍ମୃତିରୁ)

## କଂଗ୍ରେସ ପ୍ରାର୍ଥୀ ମଧୁବାବୁ

ମଧୁବାବୁ ଧୀରେ ଧୀରେ ନିଜର ମତ ବଦଳାଇ ଜାତୀୟ କଂଗ୍ରେସ ସହିତ ସହଯୋଗ କରିବାପାଇଁ ସିଦ୍ଧାନ୍ତ କରିଥିଲେ । ଏପରିକି କଂଗ୍ରେସ ପକ୍ଷରୁ ବିହାର ଓଡ଼ିଶା କାଉନ୍‌ସିଲକୁ ଠିଆହେବାପାଇଁ ସେ ପ୍ରାଦେଶିକ କଂଗ୍ରେସ କମିଟିକୁ ତାଙ୍କର ଅଭିପ୍ରାୟ ଜଣାଇଥିଲେ । ଗୋପବନ୍ଧୁ ଏ ସମ୍ବନ୍ଧରେ ଅତି ଆହ୍ଲାଦିତ ହୋଇ ୨୪।୪।୨୬ ତାରିଖ ସମାଜର ଏକ ଅଗ୍ରଲେଖାରେ ଲେଖିଥିଲେ—"ମଧୁବାବୁ କଂଗ୍ରେସ ପକ୍ଷରୁ କାଉନ୍‌ସିଲକୁ ଯିବା ଓଡ଼ିଶା ପକ୍ଷେ ଗୌରବର ବିଷୟ । ପାଟଣା ବିଶେଷରେ ତାଙ୍କ ସହିତ କାହାରି କାହାରି ମତଭେଦ ହେଲେ ସୁଦ୍ଧା ସେ ଯେ ଉତ୍କଳର ଜଣେ କୃତୀ ପୁରୁଷ; ନିଜ ବୁଦ୍ଧି, ବିବେକ ଓ ବିଶ୍ୱାସ ଅନୁସାରେ ଦେଶ ସେବାରେ ଆପଣାର ଶକ୍ତି, ସମୟ, ସମ୍ପଦ ବ୍ୟୟ କରି ଆଜି ଏ ବୃଦ୍ଧ ବୟସରେ ପଥରେ ଭିକାରି ରୂପେ ଠିଆ ହୋଇଛନ୍ତି—ଏହା କେହି ଅସ୍ୱୀକାର କରିପାରିବ ନାହିଁ । ମଧୁବାବୁ ସେ କାଳର ରାଜନୀତି କ୍ଷେତ୍ରର ଖେଳାଳି । ଓଡ଼ିଶାରେ ସେତେବେଳେ ତାଙ୍କର ସେପରି କେହି ସହକର୍ମୀ ନ ଥିଲେ । ସେ କାହାରିଠାରୁ ପରାମର୍ଶ ପାଇନାହାନ୍ତି କି ସମାଲୋଚନା ପାଇ ନାହାନ୍ତି । ସୁତରାଂ ଏକସିଧା ଖଣ୍ଡପରି ଯେଉଁଆଡ଼େ ଯେତେବେଳେ ବିସ୍ତରିଛନ୍ତି ସେଆଡ଼େ ଠେଲିପେଲି ମାଡ଼ିଯାଇଛନ୍ତି । ଭଲ କରିଛନ୍ତି । ଭୁଲ କରିଛନ୍ତି । ଯେ ଯାହା କହନ୍ତୁ ଓଡ଼ିଶାର ନବ ଜାତୀୟ ଜାଗରଣ ମୂଳରେ ତାଙ୍କର ଶକ୍ତି ଓ ସ୍ୱାର୍ଥତ୍ୟାଗ ବହୁ ପରିମାଣରେ ରହିଅଛି । ବହୁକାଳ ଗୋଟିଏ ଧାତ ଓ ଢଙ୍ଗରେ ଚାଲିଆସି ଦେଶର ବର୍ତ୍ତମାନ ସାଧାରଣ ଜୀବନର ପରିବର୍ତ୍ତନ ଅନୁସାରେ ସେ ନିଜର ଅଭ୍ୟାସ, ବ୍ୟବହାର ଓ ନୀତି ହଠାତ୍ ବଦଳାଇ ନ ପାରିଲେ କିଛି ଆଶ୍ଚର୍ଯ୍ୟ ନାହିଁ । ସେଥିଲାଗି ଆମ୍ଭମାନଙ୍କର ତାଙ୍କ ପ୍ରତି କେବେ ଭକ୍ତି ଊଣା ହୋଇନାହିଁ । × × ମଧୁବାବୁ ବୟସରେ ପରିପକ୍ୱ, ଅଭିଜ୍ଞତାରେ ପ୍ରବୀଣ, ସରକାର ସମ୍ପର୍କରୁ ବିରକ୍ତ, ସଂଗ୍ରାମ ନୀତିରେ ଧୂରନ୍ଧର । × × ଆମ୍ଭେମାନେ ଆଶା କରୁ,

ସେ ସେ କଂଗ୍ରେସ ଦଳଭୁକ୍ତ ହେବାକୁ ଯେ ଇଚ୍ଛା ବଳାଇଛନ୍ତି ତାହା ନିଶ୍ଚୟ କରିବେ ।"

ପରେ କିନ୍ତୁ ମଧୁବାବୁ କଂଗ୍ରେସ ପ୍ରାର୍ଥୀ ଭାବରେ ନିର୍ବାଚନ ପ୍ରତିଦ୍ୱନ୍ଦିତା କରି ନଥିଲେ । ଯେତେଦୂର ମନେହୁଏ ଆଉ ନିର୍ବାଚନ ଭିତରକୁ ପଶିବାକୁ ସେ ଶକ୍ତି ଓ ଆଗ୍ରହ ହରାଇ ବସିଥିଲେ ।

## କୁଳବୁଡ଼ାଳାବେଳକୁ......

୧୯୨୭ ମସିହା ସେପ୍‌ଟେମ୍ବର ମାସ । ଏ ସମସ୍ତକୁ ରେଭେନ୍‌ସା କଲେଜ କଣିକାର୍ଣ୍ଣି ସହରର ଉପକଣ୍ଠରେ ଏକ ଦ୍ୱିତଳ ପ୍ରାସାଦରେ ଅନୁଷ୍ଠିତ ହେଉଥାଏ । ରେଭେନ୍‌ସା କଲେଜର ହଷ୍ଟେଲ୍ ମେସ୍‌ମାନଙ୍କରେ ଖାଦ୍ୟପେୟ ନେଇ ଛାତ୍ରମାନଙ୍କ ମଧ୍ୟରେ ଥରେ ପ୍ରତିଯୋଗିତାମୂଳକ ବିବାଦ ଉପୁଜିଲା । ଯେଉଁ ମେସ୍‌ରେ ଅଧିକ ଥର ଭୋଜି ହୋଇଥିଲା ତାକୁ ଉପଲକ୍ଷ୍ୟ କରି ଅନ୍ୟ ମେସର ଛାତ୍ରମାନେ ବାଦବିବାଦ ଓ ହରତାଳର ସୂତ୍ରପାତ କରିଥିଲେ । ଏହି ସମୟରେ ଗଣେଶପୂଜା ଉତ୍ସବ ପଡ଼ିଥିଲା । କଲେଜ ହଷ୍ଟେଲ୍‌ରେ ଛାତ୍ରମାନଙ୍କର ଭୋଜିଭାତ ଓ ଆମୋଦ ପ୍ରମୋଦର ବହୁ ଆୟୋଜନ ହୋଇଥିଲା । ଗୋପବନ୍ଧୁଙ୍କ ଦରଦୀ ଅନ୍ତରକୁ ଛାତ୍ରମାନଙ୍କର ଏ ଆଚରଣ ଦାରୁଣ ଆଘାତ ଦେଲା । ବିଶେଷତଃ ୧୯୨୬ ମସିହାର ମରୁଡ଼ି ଜନିତ ଦୁର୍ଭିକ୍ଷ ଓ ୧୯୨୭ ମସିହାର ବନ୍ୟାଜନିତ କ୍ଷୟକ୍ଷତି ପରେ ଛାତ୍ରମାନଙ୍କର ଏ ବିଳାସ ତାଙ୍କୁ ଅତି ଅସଙ୍ଗତ ମନେହେଲା । ସେତେବେଳେ ଗୋପବନ୍ଧୁ ନିଜେ ସ୍ୱେଚ୍ଛାସେବୀ ଦଳ ନେଇ ବିପନ୍ନ ବିପର୍ଯ୍ୟସ୍ତ ଅଞ୍ଚଳରେ ସାହାଯ୍ୟ ବ୍ୟବସ୍ଥା କରୁଥିଲେ । ତଥାପି ଲୋକଙ୍କ ଦୁର୍ଦ୍ଦଶା ମେଣ୍ଟୁ ନଥାଏ, ଲୋକଙ୍କର କରୁଣ ଆର୍ତ୍ତନାଦ ତାଙ୍କ ଅନ୍ତରକୁ ବିଗଳିତ କରୁଥାଏ । ପୁଣି ଦେଶ ପରାଧୀନ, ବହୁ ସମସ୍ୟା ତଥାପି ଅସମାହିତ । ଅଥଚ ଏଇ ଖାଦ୍ୟପେୟ ନେଇ ପିଲାଙ୍କ ଭିତରେ ବିବାଦ, ପୁଣି ଉତ୍ସବ ଦିନରେ ଭୂରିଭୋଜନର କଳରୋଳ ।

ଗୋପବନ୍ଧୁ ୧୧।୯।୨୭ ତାରିଖ 'ସମାଜ'ରେ ଏ ଅଘଟଣକୁ ବିଦ୍ରୂପ କରି ଲେଖିଥିଲେ —"ଆଜି ଓଡ଼ିଶାର ସହସ୍ର ସହସ୍ର ଲୋକେ ଅନ୍ନ କଷ୍ଟରେ ମରିଯାଉଥିବା ବେଳେ ଦେଶର ଶିକ୍ଷିତ ଯୁବକମାନଙ୍କ ଏପରି ବିଳାସ-ଉନ୍ମତ୍ତ ଦେଖିଲେ ମନେହୁଏ—କୁଳକ୍ଷୟ ବେଳକୁ ଘୋଡ଼ାମୁହାଁ ପୁଅ ଜନ୍ମନେଲେ । ଏହିମାନେ ଜାତିର ଭାବୀ ନେତା । ବାପ ଭାଇଙ୍କ ବହୁ ଶ୍ରମାର୍ଜିତ ଧନରେ ଆମୋଦ ଉଲ୍ଲାସ କରୁଛନ୍ତି । ହୁଏତ ବିଜୁଳି ଆଲୁଅ ଯୋଗୁ ଦେଶର ଅନ୍ଧାର ସେମାନଙ୍କ ଆଖିରେ ପଡ଼ୁନାହିଁ । କିନ୍ତୁ 'କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକେ ବିଶନ୍ତି ।" ଅନେକଙ୍କୁ ବିଜୁଳି ଆଲୋକିତ ଦ'ତାଲା ଉପରୁ ଖସି ଘୋର ଅନ୍ଧକାରରେ 'ହା ହତୋସ୍ମି'

ହୋଇ ଶୀଘ୍ର ରାସ୍ତା ଖୋଜିବାକୁ ହେବ । ତେବେ ଏପରି ମତିଗତି ପାଇଁ କଲେଜ ପିଲାଙ୍କୁ କେବଳ ଦୋଷ ଦିଆଯାଇ ନ ପାରେ । ସେମାନଙ୍କୁ ଯେପରି ସଂସ୍ଥାନ ଓ ବେଷ୍ଟନୀ ମଧ୍ୟରେ ରଖାଯାଇଛି ସେଥିରେ ଏହିପରି ମନର ଭାବ ଓ ପ୍ରାଣର ତୃଷ୍ଣା ପ୍ରକାଶ ପାଇବା ସ୍ୱାଭାବିକ ।" ...ଇତ୍ୟାଦି ।

ଏ ଲେଖାରେ କେତେକ ଛାତ୍ର ସ୍ୱାଭାବିକ ରୁଷ୍ଟ ହୋଇ 'ଦୀପିକା'ରେ ଏହାର ପ୍ରତିବାଦ ପ୍ରକାଶ କରିଥିଲେ । ସେମାନେ ମିତବ୍ୟୟିତାର ପ୍ରମାଣ ସ୍ୱରୂପ ମାସିକ ଖର୍ଚ୍ଚର ହିସାବ ମଧ୍ୟ ଦେଇଥିଲେ । ପୁଣି ଛାତ୍ରମାନଙ୍କ ପ୍ରତିବାଦର ଆଉ ଏକ ପ୍ରତିବାଦ ବହୁସଂଖ୍ୟକ ଛାତ୍ରଙ୍କ ସ୍ୱାକ୍ଷରରେ 'ଦୀପିକା'ରେ ପ୍ରକାଶିତ ହେଲା । ଗୋପବନ୍ଧୁ ଏସବୁ ପଢ଼ି ବଡ଼ ମର୍ମାହତ ହୋଇଥିଲେ ଓ ୧୮।୦।୨୭ ତାରିଖ 'ସମାଜ'ରେ ଲେଖିଥିଲେ, "ମୋ ପ୍ରତି କେତେକ ଛାତ୍ର କଟାକ୍ଷ କରିଥିବାରୁ ଆଉ କେତେକ ଛାତ୍ର ଦୁଃଖ ପ୍ରକାଶ କରିଛନ୍ତି । ଛାତ୍ରସମାଜର ଏ ସ୍ନେହ ଆଦରକୁ ମୁଁ ପରମ ବିପଦ ବୋଲି ମଣୁଛି । ମୋ ମତରେ ଏ ପ୍ରତିବାଦ ଆବଶ୍ୟକ ନଥିଲା । ଛାତ୍ର ସମାଜର ଯେ ମୋତେ ଯାହା କୁହନ୍ତୁ, ନିନ୍ଦା କରନ୍ତୁ ବା ପ୍ରଶଂସା କରନ୍ତୁ, ଆଦର କରନ୍ତୁ ବା ଅପମାନ ଦିଅନ୍ତୁ ସେ ସମସ୍ତେ ମୋର । ମୋ ନିଜ ପୁଅ ପୁରୁଷଙ୍କଠାରୁ ଯେ କୌଣସି ପ୍ରକାର ବ୍ୟବହାର ପାଇଲେ ସୁଦ୍ଧା ସେମାନଙ୍କୁ ଭଲ ନ ପାଇ ମୁଁ ରହି ନ ପାରେ, ଗୁଡ଼ି ଅଲଗା ହୋଇ ନ ପାରେ । ଛାତ୍ରସମାଜ ମୋତେ ଯେ ଦୃଷ୍ଟିରେ ଦେଖି ପଛକେ ମୁଁ ସେମାନଙ୍କୁ ହୃଦୟରୁ ଅନ୍ତର କରି ପାରିବ ନାହିଁ । ଉତ୍କଳର ଭବିଷ୍ୟତ ଲାଗି ମୁଁ ସବୁବେଳେ ଯୁବକ, ଶିକ୍ଷିତ ଯୁବକ ସମାଜ ଆଡ଼କୁ ସତୃଷ୍ଣ ନୟନରେ ଅନାଇ ରହିଅଛି । ଏ ହାହାକାରମୟ ତମସାଚ୍ଛନ୍ନ ଦେଶରେ ସେହିମାନେ କେବଳ ଆଶାର ଆଲୋକରେଖା । ପ୍ରଭୁ ସେମାନଙ୍କୁ ଆୟୁ, ବଳ, ଉତ୍ସାହ, ସାଧନା, ଶକ୍ତି ଓ ସୁବୁଦ୍ଧିର ଦିଅନ୍ତୁ; ସେମାନେ ଦେଶର କୃତୀ ସନ୍ତାନ ହୋଇ ଏ ଜାତିର କଲ୍ୟାଣ ସାଧନରେ ସଦା ଅନୁବ୍ରତୀ ହୁଅନ୍ତୁ, ଏହା ମୋର ଆନ୍ତରିକ କାମନା ।"

ଛାତ୍ରମାନଙ୍କ ପ୍ରତିକ୍ରିୟା ଲକ୍ଷ୍ୟ କରିବାକୁ ଗୋପବନ୍ଧୁ କଲେଜ ହଷ୍ଟେଲରେ ଯାଇ ପହଞ୍ଚିଲେ । ତାଙ୍କୁ ସବୁ ମେସ୍‌ରୁ ନିମନ୍ତ୍ରଣ ଆସିଗଲା । ଗୋପବନ୍ଧୁ ଗୋଟିଏ ମେସ୍‌ରେ ଖାଇବସିଲେ; କିନ୍ତୁ ସବୁ ମେସ୍‌ରୁ ତାଙ୍କପାଇଁ ପିଲାମାନେ ତର୍କାରି ଆଣି ଥୋଇଦେଲେ । ବିଭିନ୍ନ ତର୍କାରିରେ ତାଙ୍କ ଥାଳୀ ପରିପୂର୍ଣ୍ଣ ।

ଖାଇସାରି ଗୋପବନ୍ଧୁ ସମସ୍ତଙ୍କୁ ଡାକି କହିଲେ—"ମୁଁ ମିଛ ଲେଖି ନାହିଁ । ଦେଶରେ ବହୁଲୋକ ଖାଇବାକୁ ପାଉ ନଥିବା ବେଳେ ତୁମେ ଏତେ ପ୍ରକାର ଖାଇ ମଧ୍ୟ ହରତାଳ କରୁଛ । ଏ ଠିକ୍ ଭୂଲ ବୁଝିପାରିବାର ଲକ୍ଷଣ । ଦେଶପାଇଁ ଏହା ଏକ ବଡ଼ ବିପଦର କଥା ।" ଏଥିରେ ସବୁ ଛାତ୍ର ଲଜ୍ଜିତ ହୋଇ ଗୋପବନ୍ଧୁଙ୍କ କଥାର ମର୍ମ ଉପଲବ୍ଧି କଲେ । ସମସ୍ୟାକୁ ସୂକ୍ଷ୍ମରେ ସାମ୍ନା କରି ତୁଟାଇ ଦେବାର ଏପରି ପ୍ରତ୍ୟୟ କୃତିତ୍ୱ ଦେଖାଅଛି ।

# ୧୯୨୭ର ନିର୍ବାଚନ

ଅସହଯୋଗକୁ ମହାତ୍ମା ଗାନ୍ଧି ଭାରତୀୟ କଂଗ୍ରେସ ଦଳର କାର୍ଯ୍ୟକ୍ରମ ଭାବରେ ଗ୍ରହଣ କରି ନେଇଥିଲେ ମଧ୍ୟ ପଣ୍ଡିତ ମୋତିଲାଲ ନେହେରୁ, ଦେଶବନ୍ଧୁ ଚିତ୍ତରଞ୍ଜନ ଦାସ ପ୍ରମୁଖଙ୍କ ନେତୃତ୍ୱରେ 'ସ୍ୱରାଜପାର୍ଟି' ଗଠିତ ହୋଇ ୧୯୧୯ର 'ଭାରତ ଶାସନ ଖସଡ଼ା' ଅନୁଯାୟୀ ରାଜ୍ୟ ଓ କେନ୍ଦ୍ରର ନିର୍ବାଚନରେ ଭାଗ ନେବାକୁ ପ୍ରସ୍ତୁତ ହେଉଥିଲା। ୧୯୧୯ ଶାସନ ଖସଡ଼ା ଅନୁସାରେ ୧୯୨୬ ମସିହାରେ ଭାରତୀୟ ସାଧାରଣ ନିର୍ବାଚନ ହେବାର କଥା। ଭାରତୀୟ କଂଗ୍ରେସ ପରି ଓଡ଼ିଶା କଂଗ୍ରେସର ଏ ସମସ୍ୟାକୁ ବିରୋଧ ଆନ୍ତର ସ୍ପଷ୍ଟ ହୋଇ ଯାଇଥିଲା। ପ୍ରଦେଶ କଂଗ୍ରେସର ପୁରୋଧା ଭାବରେ ଗୋପବନ୍ଧୁ ଏ ନିର୍ବାଚନକୁ ବର୍ଜନ କରିବାକୁ ଚାହୁଁଥିଲେ ମଧ୍ୟ ବହୁ ବିଶିଷ୍ଟ କଂଗ୍ରେସ ସଭ୍ୟ ଏଥିରେ ଭାଗ ନେବାକୁ ଆଗ୍ରହୀ ହୋଇ ପଡ଼ିଥିବାର ଲକ୍ଷ୍ୟ କଲେ। ଏଥିପାଇଁ ପ୍ରାଦେଶିକ କଂଗ୍ରେସ କମିଟିର ଏକ ଜରୁରୀ ବୈଠକ ୨୩।୮।୨୬ ତାରିଖରେ ଡକା ହେଲା। ଏହି ବୈଠକରେ ତତ୍କାଳୀନ ସଭାପତି ଶ୍ରୀ ଭଗୀରଥି ମହାପାତ୍ର ସଭାପତିତ୍ୱ କରିଥିଲେ। ଅଧିକ ସଂଖ୍ୟକ ସଭ୍ୟ ନିର୍ବାଚନରେ ଭାଗ ନେବାକୁ ମତ ଦେବାରୁ ଜଣେ ନିଷ୍ଠାପର ଗଣତନ୍ତ୍ରବାଦୀ ଭାବରେ ଗୋପବନ୍ଧୁ ସମସ୍ତଙ୍କ ଇଚ୍ଛାକୁ ମାନିନେଲେ। ନିଜ ଇଚ୍ଛାକୁ ସେ କଂଗ୍ରେସ ସଂସ୍ଥା ଉପରେ ଲଦି ଦେବାକୁ ଚାହୁଁ ନଥିଲେ।

ନିର୍ବାଚନର ସମସ୍ତ ଦାୟିତ୍ୱ ତୁଲାଇବା ପାଇଁ ଶ୍ରୀ ହରେକୃଷ୍ଣ ମହତାବଙ୍କ ପ୍ରସ୍ତାବ କ୍ରମେ ପ୍ରାଦେଶିକ କଂଗ୍ରେସ କମିଟି ଗୋପବନ୍ଧୁଙ୍କୁ ଅନୁରୋଧ କରିଥିଲେ। କିନ୍ତୁ ସେ ବ୍ୟକ୍ତିଗତ ଭାବରେ ଏହି ନିର୍ବାଚନର ପକ୍ଷପାତୀ ନଥିବାରୁ ଏ ଦାୟିତ୍ୱ ବହନ କରିବାକୁ ଅନିଚ୍ଛା ପ୍ରକାଶ କଲେ। ଶେଷକୁ କମିଟି ତରଫରୁ ପ୍ରବଳ ଅନୁରୋଧ ହେବାରୁ ସେ କେତୋଟି ସର୍ତ୍ତ ବାଢ଼ିଥିଲେ। ସେହି ସର୍ତ୍ତ ଅନୁଯାୟୀ ନିର୍ବାଚନ ଦାୟିତ୍ୱରେ ଗୋଟିଏ ସବ୍-କମିଟି ଗଠିତ ହେଲା। ଏହି ସବ୍-କମିଟି ନିର୍ବାଚନ ପରେ ନିର୍ବାଚିତ ସଭ୍ୟମାନଙ୍କ କାର୍ଯ୍ୟକଳାପ ଆଚରଣ ଅନୁଧ୍ୟାନ କରିବାପାଇଁ କ୍ଷମତା ପାଇଲା। ରାଜ୍ୟ ବିଧାନସଭା ଓ କେନ୍ଦ୍ର ସଭାକୁ ନିର୍ବାଚିତ ସଭ୍ୟ ଉତ୍କଳ ପ୍ରଦେଶ କଂଗ୍ରେସ ପାର୍ଟି ପାଇଁ ଯଥାକ୍ରମେ ମାସିକ ଦଶ ଟଙ୍କା ଓ କୋଡ଼ିଏ ଟଙ୍କା କରି ଚାନ୍ଦା ଦେବା ସ୍ଥିର ହେଲା। ପ୍ରତ୍ୟେକ ନିର୍ବାଚିତ ସଭ୍ୟ ଆସେମ୍ବ୍ଲିରେ ଓ ବାହାରେ ତାଙ୍କ କାର୍ଯ୍ୟକ୍ରମର ଏକ ତ୍ରୈମାସିକ ବିବରଣୀ ଏହି ସବ୍‌କମିଟୀ ପାଖରେ ଉପସ୍ଥାପିତ କରିବେ ଏବଂ ନିଜ ନିର୍ବାଚନ ମଣ୍ଡଳୀରେ 'ଭୋଟଦାତା ପରିଷଦ' ଗଢ଼ି ମଝିରେ ମଝିରେ ସେମାନଙ୍କୁ ଭେଟି ସୁବିଧା ଅସୁବିଧା ବୁଝି ପ୍ରତିକାର କରିବାପାଇଁ ପନ୍ଥା ଗ୍ରହଣ କରିବେ ବୋଲି ସର୍ତ୍ତରେ ଉଲ୍ଲେଖ ରହିଲା। ଏହି ସର୍ତ୍ତନାମା ପ୍ରତ୍ୟେକ ପ୍ରାର୍ଥୀଙ୍କ ପାଖକୁ ନିର୍ବାଚନ ପୂର୍ବରୁ ପଠାଇଦିଆଗଲା।

ପ୍ରତ୍ୟେକ କଂଗ୍ରେସ କମିଟିର ଏହି ବୈଠକରେ ଶ୍ରୀ ଯଦୁମଣି ମଙ୍ଗରାଜଙ୍କ ବ୍ୟତୀତ ଅନ୍ୟ

ସମସ୍ତେ ଗୋପବନ୍ଧୁଙ୍କର ଏହି ନେତୃତ୍ୱ ଓ ନିର୍ଦ୍ଦେଶକୁ ମାନିନେଇଥିଲେ । ଫଳରେ ପୁଣି ଗୋପବନ୍ଧୁ ରାଜନୈତିକ ଝଗଡ଼ା ଭିତରେ ଓଡ଼ିଶାର ମଙ୍ଗୁଆଳ ଭାବରେ ମନୋନୀତ ହୋଇଥିଲେ । ଶ୍ରୀ ମଙ୍ଗରାଜ ପ୍ରାଦେଶିକ କଂଗ୍ରେସ କମିଟିର ସମ୍ପାଦକ ପଦରୁ ତତ୍‌କ୍ଷଣାତ ଇସ୍ତଫା ଦେବାରୁ ଶ୍ରୀ ଦୟାନିଧି ସ୍ୱାଇଁ ଅସ୍ଥାୟୀ ସମ୍ପାଦକ ଭାବରେ ମନୋନୀତ ହୋଇଥିଲେ ।

ପରେ ସେପ୍‌ଟେମ୍ବର ମାସ ୨୬ ତାରିଖରେ କଟକ ସ୍ୱରାଜ୍ୟାଶ୍ରମରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଏକ ଜରୁରୀ ବୈଠକ ବସିଥିଲା । ଏହା ମଧ୍ୟରେ ଗୋପବନ୍ଧୁ ବାବୁ ନିର୍ବାଚନ ଦାୟିତ୍ୱରୁ ମଧ୍ୟ ଇସ୍ତଫା ଦେଇଥିଲେ । ଏହି ବୈଠକରେ ତାଙ୍କ ଇସ୍ତଫା ଓ ନିର୍ବାଚନ ପାଇଁ ନୂତନ ପ୍ରାର୍ଥୀ ମନୋନୟନ ଆଲୋଚନାର ବିଷୟବସ୍ତୁ ଥିଲା । ଅଧିକାଂଶ ମନୋନୀତ ସଭ୍ୟ ପୂର୍ବସତ୍ତ୍ୱର ସର୍ତ୍ତ ଗ୍ରହଣ କରିବାକୁ ଉଦାସୀନ ଓ ନାରାଜ ହେବାରୁ ଗୋପବନ୍ଧୁ ନିଜେ କହିଥିବା ମତେ ଇସ୍ତଫା ଦେଇଦେଲେ । ଏହି ସଭାରେ ତାଙ୍କୁ ଇସ୍ତଫା ପ୍ରତ୍ୟାହାର କରିନେବାକୁ ପ୍ରବଳ ଅନୁରୋଧ କରାଯାଇଥିଲା, କିନ୍ତୁ ସେ ସଭ୍ୟମାନଙ୍କ ମାନସିକ ଅସ୍ଥିରତା ପାଖରେ ଆତ୍ମସମର୍ପଣ କରିବାକୁ ପ୍ରସ୍ତୁତ ନଥିଲେ । ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚନ ପାଇଁ ପ୍ରାର୍ଥୀ ମନୋନୀତ ହୋଇଥିଲେ । ତଦନୁସାରେ ଉତ୍ତର ବାଲେଶ୍ୱର ପାଇଁ ଶ୍ରୀ ନନ୍ଦକିଶୋର ଦାସ, ଦକ୍ଷିଣ ପାଇଁ ଶ୍ରୀ ହରେକୃଷ୍ଣ ମହତାବ, ଉତ୍ତର କଟକ ପାଇଁ ଶ୍ରୀ ନାରାୟଣ ବୀରବର ସାମନ୍ତ, ଦକ୍ଷିଣ କଟକ ପାଇଁ ଶ୍ରୀ ନବକୃଷ୍ଣ ଚୌଧୁରୀ, ଉତ୍ତର ପୁରୀ ନିମନ୍ତେ ଗୋଦାବରୀଶ ମିଶ୍ର ଓ ଦକ୍ଷିଣ ପୁରୀ ପାଇଁ ପଣ୍ଡିତ ଲିଙ୍ଗରାଜ ମିଶ୍ର, ଓଡ଼ିଶା ମ୍ୟୁନିସିପାଲଟିମାନଙ୍କ ତରଫରୁ ଶ୍ରୀ ଯଦୁମଣି ମଙ୍ଗରାଜ, ବଡ଼ଲାଟ୍ ସଭାପାଇଁ ପଣ୍ଡିତ ନୀଳକଣ୍ଠ ଓ ଶ୍ରୀ ନୀଳକଣ୍ଠ ଦାସ ଚୌଧୁରୀ ମନୋନୀତ ହୋଇଥିଲେ । ଶ୍ରୀ ଜଗବନ୍ଧୁ ସିଂହ ଦକ୍ଷିଣ ପୁରୀ ବ୍ୟତୀତ ଅନ୍ୟ କୌଣସି ନିର୍ବାଚନ ମଣ୍ଡଳୀରୁ ଠିଆ ନ ହେବାକୁ ପତ୍ରଦ୍ୱାରା ଜଣାଇଥିଲେ । ତେଣୁ ତାଙ୍କ ପ୍ରସ୍ତାବ କାଟ୍ ଖାଇ ଯାଇଥିଲା । ଗୋପବନ୍ଧୁ ଏ ଭୋଟ୍‌ରେ ଭାଗ ନ ନେଇ ନୀରବ ଥିଲେ । ବସ୍ତୁତଃ ତାଙ୍କ ମନୋନୀତ ସଭ୍ୟମାନେ ହିଁ ଭୋଟ ବଳେ ସେହି ସେହି ସ୍ଥାନମାନଙ୍କରୁ ମନୋନୀତ ହୋଇଥିଲେ ।

## ରାଜନୈତିକ ଅପପ୍ରଚାର

୧୯୨୬ ମସିହା ଶେଷଭାଗରେ ଲାଲାଜୀ କଂଗ୍ରେସରୁ ଓହରିଯାଇ ସ୍ୱାଧୀନ କଂଗ୍ରେସ ପାର୍ଟି ନାମରେ ଏକ ଭିନ୍ନ କଂଗ୍ରେସ ସଂଗଠନ ଗଢ଼ିଥିଲେ । ଲାଲାଜୀଙ୍କ ସହିତ ଲୋକସେବକ ସମାଜ ମାଧ୍ୟମରେ ଗୋପବନ୍ଧୁଙ୍କର ଯୋଗାଯୋଗ ଥିବାରୁ ଗୋପବନ୍ଧୁ ମଧ୍ୟ କଂଗ୍ରେସରୁ ଅଲଗା ହୋଇ ଲାଲାଜୀଙ୍କ ଦଳରେ ଯୋଗ ଦେବେ ବୋଲି ବହୁ ନେତା ଓ ଓଡ଼ିଶାର ସାଧାରଣ ବୁଦ୍ଧିଜୀବୀ ଜନସାଧାରଣଙ୍କ ମନରେ ସ୍ୱାଭାବିକ ଏକ ଧାରଣା ଉପୁଜିଲା ।

ବିଶେଷତଃ କଂଗ୍ରେସର କେତେକ କାର୍ଯ୍ୟକଳାପ ଓ ନୀତିକୁ ଗଠନମୂଳକ ଦୃଷ୍ଟି ଭଙ୍ଗୀରୁ ଏ ସମ୍ବନ୍ଧରେ ଗୋପବନ୍ଧୁ ନିଜ କାଗଜରେ ସମାଲୋଚନା କରୁଥିଲେ ଏବଂ ଆସନ୍ତା ନିର୍ବାଚନ ପାଇଁ ନିଜ ପକ୍ଷରୁ କେତେକ ଉଦାସୀନତାର ଅନ୍ୟତମ କାରଣ ଥିଲା—ଓଡ଼ିଶାରୁ ବିଭିନ୍ନ ଦଳ ଓ ମାର୍ଗ ଦେଇ ଯାଉଥିବା କାଉନ୍‌ସିଲ ପ୍ରାର୍ଥୀମାନେ ଲାଟସଭାରେ ସଂଗଠିତ ଓ ଏକତାବଦ୍ଧ ହୋଇପାରୁନଥିଲେ । ଜାତୀୟ ସ୍ୱାର୍ଥପାଇଁ ଚିନ୍ତା ନକରି ନିଜ ନିଜ ମଧ୍ୟରେ ଥିବା ଦଳୀୟ ବିବାଦ ପାଇଁ ସେମାନେ କାଉନ୍‌ସିଲରରେ ଫାଟିଯାଉଥିଲେ । ଗୋପବନ୍ଧୁ ଏଥିପାଇଁ ବହୁବାର ଆହ୍ୱାନକରି ବହୁ ଲେଖା 'ସମାଜ'ରେ ପ୍ରକାଶ କରିଥିଲେ । ତେଣୁ 'ସ୍ୱରାଜ୍ୟ' ଦଳ ଯେ କାଉନ୍‌ସିଲରେ ବିଶେଷ କିଛି କରିପାରିବେ ନାହିଁ—ଏ ଧାରଣା ତାଙ୍କ ମନରେ ସ୍ୱାଭାବିକ ବଦ୍ଧମୂଳ ହୋଇଥିଲା । କଂଗ୍ରେସର ଏହି ରାଜନୈତିକ କାର୍ଯ୍ୟକ୍ରମ ପାଇଁ ତାଙ୍କ ମନରେ ଆଦୌ ଉଲ୍ଲାସ ନଥିଲା । ପୁନଶ୍ଚ ଓଡ଼ିଶା କଂଗ୍ରେସର ସମସାମୟିକ ଅପେକ୍ଷାକୃତ ତରୁଣମାନେ ଓ ନିର୍ବାଚନ ପ୍ରାର୍ଥୀମାନେ ତାଙ୍କ ଗଠନମୂଳକ ସର୍ତ୍ତଗୁଡ଼ିକୁ ଯଥାଯଥ ପାଳନ କରିବା ସମ୍ପର୍କରେ ସେ ସନ୍ଦିହାନ ଥିଲେ । ଏ ସବୁର ପ୍ରତିକ୍ରିୟା ସେ ଖବରକାଗଜରେ ପ୍ରକାଶ କଲାବେଳେ ଅପେକ୍ଷାକୃତ କମ୍ ଧୈର୍ଯ୍ୟସମ୍ପନ୍ନ ତରୁଣ କଂଗ୍ରେସ ସଭ୍ୟମାନେ ତାଙ୍କୁ କଟୁ ସମାଲୋଚନା କରିଥିଲେ । ଏ ସବୁ କାରଣରୁ ଗୋପବନ୍ଧୁ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିରୁ ଇସ୍ତଫା ଦେଇଥିଲେ ଓ ନିଜ ସମ୍ପର୍କରେ ଏକ ବିବରଣୀ ୨ । ୧୦ । ୨୬ ତାରିଖ 'ସମାଜ' ରେ ପ୍ରକାଶ କରିଥିଲେ—"ଭାରତର ରାଜନୈତିକ କ୍ଷେତ୍ରରେ ଯେତେଗୁଡ଼ିଏ ଦଳ ସୃଷ୍ଟି ହେଲେଣି ସେଥିରେ ଲୋକଙ୍କ ପକ୍ଷରୁ ସରକାରଙ୍କ ସଙ୍ଗେ ଲଢ଼ିବା ଚେତେ ସୁବିଧାଜନକ ନୁହେଁ । କଥାରେ ଅଛି, ବହୁତ ଲୋକରେ ମୂଷା ମରେ ନାହିଁ । ଓଡ଼ିଶାର ଅବସ୍ଥା ପୁଣି ସ୍ୱତନ୍ତ୍ର । ଓଡ଼ିଶାର ନିଜର କାଉନ୍‌ସିଲ ନାହିଁ । ବଡ଼ଲାଟ ସଭାରେ ଓଡ଼ିଶାରୁ ମାତ୍ର ଦୁଇଜଣ ସଭ୍ୟ ଅଛନ୍ତି । ସେ କାଣୀ ଆଖିରେ କଜଳ-ଗାର । ସେଠାରେ ଓଡ଼ିଶାର ପ୍ରାଦେଶିକ ପ୍ରସଙ୍ଗ ପଡ଼ିବାର ସୁବିଧା ନାହିଁ । ତେଣୁ ସେ ବିଷୟରେ ମୋର ଉଦ୍‌ବେଗ ନାହିଁ । ଯେ ମେମ୍ବର ଦୁଇଜଣ ଯିବେ ସେମାନେ ପୁରା ଲୋକଙ୍କ ପକ୍ଷରେ ହେଲେ ହେଲା । ସେମାନେ ସବୁବେଳେ ଲୋକଙ୍କ ସ୍ୱାର୍ଥ ଧରି ଭୋଟ ଦେଲେ ଆକ୍ଷେପ ବା ଉଦ୍‌ବେଗର କାରଣ କିଛି ରହିବ ନାହିଁ । ଛୋଟ ଲାଟ୍ ସଭାକୁ ମେମ୍ବର ପଠାଇବାରେ ଓଡ଼ିଶା ଲୋକଙ୍କୁ ବିଶେଷ ସାବଧାନ ହେବାକୁ ହେବ । ଏ ସଭାରେ ଥିବା ଓଡ଼ିଶାର ମାତ୍ର ଦଶଜଣ ସଭ୍ୟ ଏକମତ ନହେଲେ ତାଙ୍କର ସତ୍ତା ରହିବ ନାହିଁ । ଏପର୍ଯ୍ୟନ୍ତ ତାହାହିଁ ହୋଇଅଛି । ମୁଁ ଦେଶବାସୀଙ୍କୁ ଏହା ବରାବର ବୁଝାଇଅଛି । ଯେ ଯେଉଁ ଦଳର ହୁଅନ୍ତୁ ପଛକେ ଓଡ଼ିଶା ମେମ୍ବରମାନେ କାଉନ୍‌ସିଲରେ ଏକମୁଠାରେ ଯେପରି ରହିବେ ତହିଁ ପ୍ରତି ଦୃଷ୍ଟି ରଖି ମେମ୍ବର ବାଛିବାକୁ ହେବ । ତା ନ ହେଲେ ବିହାର ଓଡ଼ିଶା କାଉନସିଲରେ ଓଡ଼ିଶାର ସ୍ଥାନ ରହିବ ନାହିଁ । ଏଭଳି ମେମ୍ବରମାନେ ଯିବାଠାରୁ ବରଂ କେହି ନଯିବା ଭଲ । ତେଣୁ 'ସମାଜ'ରେ ବହୁବାର ସୂଚନା ଦିଆଯାଇଛି—ଓଡ଼ିଶାରୁ

ଯେଉଁମାନେ ଯିବେ ଓଡ଼ିଶା ଦଳ ବୋଲି ପରିଚିତ ହୁଅନ୍ତୁ । ସେମାନେ ଭାରତର ଉନ୍ନତି ଓ ଜାତୀୟ ଉଦ୍ଦେଶ୍ୟ ପ୍ରତି ଲକ୍ଷ୍ୟ ରଖି ଓଡ଼ିଶାର ସ୍ୱାର୍ଥ ଜଗି କାମ କରିବେ । × × ×
ଗତ ମାସରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ମୋ ଉପରେ କାଉନସିଲ ନିର୍ବାଚନ ସମ୍ପର୍କୀୟ ପୂର୍ଣ୍ଣ ଭାର ଦେଲାବେଳେ ମୁଁ ସେ ଦାୟିତ୍ୱ ଗ୍ରହଣ କରିଥିଲି । ଯେଉଁମାନଙ୍କୁ ଯେ ସର୍ତ୍ତରେ ଯେଉଁଠାରୁ ବାଛୁଥିଲି ସେମାନଙ୍କ ମଧ୍ୟରୁ କେହି କେହି ସେଥିରେ ରାଜି ନ ହେବାରୁ ମୁଁ ସେ ଦାୟିତ୍ୱ ତୁଟାଇ ଦେଇଛି ସତ୍ୟ; ମାତ୍ର ଓଡ଼ିଶାରୁ ଏକ ମତର ଗୋଟିଏ ଦଳ କାଉନସିଲକୁ ଯିବାର ଅନ୍ୟ ଉପାୟ ବା ଆଶା ନାହିଁ । କାଉନସିଲ ନିର୍ବାଚନରେ ମୋର କୌଣସି ବ୍ୟକ୍ତିଗତ ସ୍ୱାର୍ଥ ନାହିଁ ; କିନ୍ତୁ ଓଡ଼ିଶା ଓ ଭାରତର ଜାତୀୟ ସ୍ୱାର୍ଥକୁ ସମର୍ଥନ କରିବା ମୋର ତଥା ପ୍ରତ୍ୟେକ ଉତ୍କଳବାସୀର କର୍ତ୍ତବ୍ୟ । ତେଣୁ ମୁଁ ଦାୟିତ୍ୱ ତୁଟାଇ ଥିଲେ ସୁଦ୍ଧା ଉତ୍କଳ ପ୍ରଦେଶ କଂଗ୍ରେସ କମିଟି ଯେ ବ୍ୟବସ୍ଥା କରିବେ ତାହା ସମର୍ଥନ କରିବା ଆବଶ୍ୟକ ମନେକରେ । କଂଗ୍ରେସ ଏପର୍ଯ୍ୟନ୍ତ ଯେ ନୀତି ଅନୁସରଣ କରୁଛି ଦେଶ-କାଳ-ପାତ୍ର ବିଚାରରେ ତହିଁର କେତେକ ପରିବର୍ତ୍ତନ ହେବା ଦରକାର । ମୁଁ ଏକା ଏହା କହୁନାହିଁ, ଭାରତର ବଡ଼ ବଡ଼ ନେତାମାନଙ୍କର ମଧ୍ୟ ଏହି ମତ । ଏ ସମ୍ପର୍କରେ ମୋର ମତ ମୁଁ ଲାହୋରର ଜଣେ ବନ୍ଧୁଙ୍କ ପାଖକୁ ଲେଖିଥିଲି । ସେତେବେଳେ ଲାଲା ଲଜପତ ରାୟ ବିଲାତରେ ଥିଲେ । ସେ ଏ ଦେଶକୁ ଫେରି ମୋର ମତ ଉକ୍ତ ବନ୍ଧୁଙ୍କଠାରୁ ଜାଣି ମୋତେ ପତ୍ର ଲେଖିଲେଯେ ତାଙ୍କ ମତ ସମ୍ପୂର୍ଣ୍ଣ ମୋ ମତ ସଙ୍ଗେ ମିଳୁଛି । ତା'ପରେ ମୋର ଏହି ମତକୁ ପ୍ରକାଶ କରିବା ଲାଗି ମତେ ପଚାରିଥିଲେ ଏବଂ ସମ୍ମତି ପାଇ ତାଙ୍କ ସାପ୍ତାହିକ ପତ୍ରରେ ତାହା ଛାପିଛନ୍ତି ଏବଂ ନିଜେ ସେ ମତର ପୋଷକତାରେ କେତେକଥା ଲେଖିଛନ୍ତି । ଲାଲାଜୀ ନୂତନ କଂଗ୍ରେସ ସ୍ୱତନ୍ତ୍ର ଦଳର ପ୍ରଧାନ ପ୍ରତିଷ୍ଠାତା । ତାଙ୍କ ମତ ସହିତ ମୋ ମତ ମିଳିଯିବାରୁ ତାଙ୍କ ଦଳରେ ମୁଁ ଯୋଗ ଦେଇଛି ବୋଲି ଅନେକେ ଅନୁମାନ କରିଥିବେ ଏବଂ ଏ ଅନୁମାନକୁ ସଙ୍ଗେ ସଙ୍ଗେ ସତ୍ୟ ସିଦ୍ଧାନ୍ତ ବୋଲି ଧରି ନେଇ ସମ୍ବାଦପତ୍ରରେ ତହିଁର ସମାଲୋଚନା ଆରମ୍ଭ କରିଛନ୍ତି । ଏପରି ଗୁରୁତର କାର୍ଯ୍ୟରେ ଏଭଳି ତୁରନ୍ତ ସିଦ୍ଧାନ୍ତ କେତେଦୂର ଉଚିତ ହୋଇଛି ତାହା ସେମାନେ ବିଚାର କରନ୍ତୁ ।''

ଲାଲାଜୀଙ୍କ ସ୍ୱତନ୍ତ୍ର ବା ସ୍ୱାଧୀନ କଂଗ୍ରେସ ଦଳରେ ପଣ୍ଡିତ ମଦନ ମୋହନ ମାଲବ୍ୟ ଯୋଗ ଦେବାପରେ ଉଭୟେ ଭାରତର ବିଭିନ୍ନ ଅଞ୍ଚଳ ଭ୍ରମଣ କରି ଏହି ଦଳ ପକ୍ଷରୁ କିପରି ଅଧିକ ସଂଖ୍ୟକ ଯୋଗ୍ୟ ବ୍ୟକ୍ତି ବ୍ୟବସ୍ଥାସଭାକୁ ଯିବେ ତାହା ବ୍ୟବସ୍ଥା କରିଥିଲେ । ମଧ୍ୟପ୍ରଦେଶର ଅଧିକାଂଶ କଂଗ୍ରେସ ନେତା ଓ କଂଗ୍ରେସ କମିଟିର ବହୁ ସଭ୍ୟ ଏହି ଦଳରେ ଯୋଗଦେବା କଥା ଖବରକାଗଜରେ ଘୋଷିତ ହୋଇଥିଲା ।

ଗୋପବନ୍ଧୁ କିନ୍ତୁ ସ୍ଥିର ଓ ନିର୍ଧାର୍ଯ୍ୟ ଭାବରେ ଏ ଦଳରେ ଯୋଗ ନଦେଇ ସମୟକୁ ଅପେକ୍ଷା କରି ରହିଲେ । ତାଙ୍କ ପ୍ରତି ବହୁ କଟୁ ସମାଲୋଚନା ଓ ତୀବ୍ର ମନ୍ତବ୍ୟ ପ୍ରକାଶ ପାଉଥିଲା । ଏପରିକି ସ୍ୱରାଜ୍ୟାଶ୍ରମର କମିଟି ମିଟିଂମାନଙ୍କରେ ତାଙ୍କୁ ବହୁ ପ୍ରଶ୍ନବାଣରେ

ସମ୍ମୁଖୀନ ହେବାକୁ ପଡ଼ିଲା । ଏ ସବୁ ତାଙ୍କ ରାଜନୈତିକ କାର୍ଯ୍ୟଠାରୁ ସାଂଗଠନିକ କାର୍ଯ୍ୟ ଆଡ଼କୁ କ୍ରମେ ଅପସାରିତ କରିଥିଲା । ତଥାକଥିତ ରାଜନୀତିର ଧୂସର ସରଣୀରେ ଆପଣାର ବିଫଳତା ପାଇଁ ସେ ଅନୁଶୋଚନା କରି ନଥିଲେ । ବରଂ ଏହାକୁ ବିଭୁ ଆଶୀର୍ବାଦ ବୋଲି ମନେକରି ସେ ଅମ୍ଲାନ ବଦନରେ ଜନତାର ପଦ୍ମଆର ଭିତରକୁ ଖସି ଆସିଥିଲେ ; ଯେଉଁଠି ଅଗଣିତ ଜନତା ଏଇ ପ୍ରିୟ ମଣିଷର ଦର୍ଶନ ପାଇଁ ଉତ୍କଣ୍ଠାର ସହିତ ଅପେକ୍ଷା ରହୁଥିଲା, ସେଇଠି ସେ ସେବା ଓ ସାଧନାର ପ୍ରଦୀପ ଶିଖା ଜାଳି ଦେଲେ ।

## ଅଗା ବଗା ଲଗା

୧୯୨୬ ମସିହା ନଭେମ୍ବର ମାସ ନିର୍ବାଚନ ପାଇଁ ଗୋପବନ୍ଧୁ ମାନସିକ ପ୍ରସ୍ତୁତ କରି ନେଇଥିଲେ । ଏହି ସମୟରେ ଖବରକାଗଜ ମାଧ୍ୟମରେ ଦେଶବାସୀଙ୍କ ଆଗରେ ସେ ବହୁ ଉପାଦେୟ ଚିନ୍ତା ଉପସ୍ଥାପିତ କଲେ । ଭୋଟରର କର୍ତ୍ତବ୍ୟ, ଦେଶର ଅବସ୍ଥା, ସାଂଗଠନିକ ଭୂମିକା ଆଦି ସମ୍ପର୍କରେ ବହୁ ଚିନ୍ତାମୂଳକ ଲେଖା 'ସମାଜ'ରେ ପ୍ରକାଶ କଲେ । କଂଗ୍ରେସ ବାହାରୁ ଠିଆହୋଇଥିବା ପ୍ରାର୍ଥୀମାନଙ୍କର ଦଳ ବା ମେଳ ନଥିଲା । ଗୋପବନ୍ଧୁ ଏମାନଙ୍କୁ ଲକ୍ଷ୍ୟ କରି ଲେଖିଥିଲେ—"ସେମାନେ ଅଗା ବଗା ଲଗା—ତିନହେଁ ତିନି ଅଲଗା । ଅଗା ପ୍ରାର୍ଥୀ ବସିବୁଛନ୍ତି କାଉନ୍‌ସିଲ ଆଗରେ ବସିବେ, ଅର୍ଥାତ୍ ପ୍ରେସିଡେଣ୍ଟ ହେବେ ; ନହେଲେ ବା ଡେପୁଟି-ପ୍ରେସିଡେଣ୍ଟ ହେବେ । ବଗା ପାଞ୍ଚୁଛନ୍ତି ମନ୍ତ୍ରୀ ହେବେ । କବି ଉପେନ୍ଦ୍ର ଭଞ୍ଜଙ୍କ ବଗ ରାମଚନ୍ଦ୍ର ମହାପ୍ରଭୁଙ୍କୁ ବର ମାଗିଥିଲା—

"ବକ୍ସି ଚଉରମାସ ଆଣି ଦେବ,
ବର୍ଷାରେ ବସାରେ ମୋ ଦିନ ଯିବ ।"

ବଗା ମନ୍ତ୍ରୀ କେହି ଲାଟଙ୍କ ଗ୍ରାମୁରେ ମୁହଁରେ ସଫା ନ ହେଲେ ପୁଚ୍ଛ କାର୍ଯ୍ୟରେ ଇଙ୍ଗିତ ଦ୍ୱାରା ଜଣାଇବେ—

"ସେକ୍ରେଟାରି ମୋର କାମ ଚଳାଉ,
ବସାରେ ତିନିବର୍ଷ କଟିଯାଉ ।"

ଲଗା ପ୍ରାର୍ଥୀଙ୍କର ଏ ସବୁ ଫଳ କାମନା ନାହିଁ । ସେ ଭ୍ରାନ୍ତ ମେମ୍ବର ହେଲେ କପରି ମହାପ୍ରଭୁଙ୍କ ଦିବ୍ୟ ଅଙ୍ଗରେ ବାରମ୍ବାର କର ଲଗାଇବାର ସୁଯୋଗ ପାଇ କୃତାର୍ଥ ହେବେ ।

ସ୍ୱାଧୀନ ପ୍ରାର୍ଥୀମାନେ ବଂଶୀ ବଜାଇ ଘନ ଘନ ତାନରେ ଶୁଣାଉଛନ୍ତି—"ହାତୀ ନେ, ଘୋଡ଼ା ନେ; ମୋ ପେଁକାଳି ବଜେଇ ଦେ । ଯେ ଯାହା ଲୋଡ଼ିବ ଦେବ । ଦେଉଛି

ତୋଳାଇ ଦେବ । ସ୍କୁଲ ବସାଇ ଦେବ । ପୁଅକୁ ଚାକିରି ଦେବ । ଚାଷକୁ ଭୂମି ଦେବ । ତୁମେ ଖାଲି ମୋତେ ତୁମ ଭୋଟ ଦିଅ ।"

ମାତ୍ର କଂଗ୍ରେସ ପ୍ରାର୍ଥୀଙ୍କର ଅଣ୍ଟାବଳ ନାହିଁ । କୈବଲ୍ୟ ସମ୍ପଦ ନାହିଁ । ନିଜେ ତ ଜୀବନରେ ହାତୀ ଘୋଡ଼ା ଆଶା ଛାଡ଼ିଛନ୍ତି, ଅନ୍ୟକୁ ହାତୀ ଘୋଡ଼ାର ଆଶା ଦେଖାଇବେ କାହିଁ ? କିନ୍ତୁ ସେମାନେ ବଂଶୀ ବା ବାଦ୍ୟ ବଜାଉ ନାହାନ୍ତି—ବଜାଉଛନ୍ତି ଶଙ୍ଖ, ତୂରୀ ଓ ଭେରି । ସେମାନଙ୍କ ବିଜୟ ଦୁନ୍ଦୁଭି ଘନଘନ ନାଦରେ ରଡ଼ି ଛାଡ଼ୁଛି—

"ଜୟୋସ୍ତୁ ପାଣ୍ଡୁ ପୁତ୍ରାଣାଂ
ଯେଷାଂ ପକ୍ଷେ ଜନାର୍ଦ୍ଦନ ।"

କଂଗ୍ରେସ ଯେଉଁମାନଙ୍କ ପକ୍ଷରେ, ମହାଭାରତ ଜାତୀୟ ପତାକା ଯେଉଁମାନଙ୍କ ହାତରେ, ବନ୍ଦେ ମାତରଂ ଯେଉଁମାନଙ୍କ ମୁଖରେ, ମହାତ୍ମା ଗାନ୍ଧିଙ୍କ ଶୁଭ ଆଶୀର୍ବାଦ ଯେଉଁମାନଙ୍କ ଉପରେ ସେଇମାନଙ୍କର ଜୟ ।"

ଗୋପବନ୍ଧୁଙ୍କର ଏହି ହାସ୍ୟରସ ମୂଳକ ଆଲୋଚନା ପରେ ତାଙ୍କୁ କେହି କେହି ପ୍ରଶ୍ନ କରିଥିଲେ--"ଆପଣ ଅନ୍ୟମାନଙ୍କ ଲାଗି ଭୋଟ ଦେବା ପାଇଁ ଲୋକଙ୍କୁ କହୁଛନ୍ତି—ନିଜେ ପ୍ରାର୍ଥୀ ନହେଲେ କାହିଁକି ?"

ଏହାର ଉତ୍ତର ସେ ୨୦।୧୧।୨୬ ତାରିଖ 'ସମାଜ'ରେ ଦେଇ କହିଥିଲେ—"ମୋତେ ଦୁଇ ବର୍ଷ କାରାଦଣ୍ଡ ହୋଇଥିବାରୁ ଖଲାସ ତାରିଖଠାରୁ ପାଞ୍ଚ ବର୍ଷ ମଧ୍ୟରେ ମୁଁ କାଉନସିଲ ପ୍ରାର୍ଥୀ ହୋଇପାରିବ ନାହିଁ । ଏହି ସମୟ ମଧ୍ୟରେ ପ୍ରାର୍ଥୀ ହେବାକୁ ହେଲେ ସରକାରଙ୍କଠାରୁ ଅନୁମତି ନେବାକୁ ହେବ । କେତେକ ବିଶିଷ୍ଟ ବନ୍ଧୁ ଏଥିଲାଗି ମୋତେ ଅନୁରୋଧ କରିଥିଲେ । ମାତ୍ର କାଉନସିଲ ଯିବାଲାଗି ସରକାରଙ୍କଠାରୁ ଅନୁମତି ପ୍ରାର୍ଥନା କରିବା ମୁଁ ସଙ୍ଗତ ଓ ସୁନ୍ଦର ମନେ କଲି ନାହିଁ ।"

ଗୋପବନ୍ଧୁ ନିଜେ ପ୍ରତ୍ୟକ୍ଷ ଭାବରେ ଏ ନିର୍ବାଚନରେ ଭାଗ ନନେଇ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ପାଇଁ ନିବେଦନ କରିଥିଲେ ଓ ପ୍ରଚାରରେ ଭାଗ ନେଇଥିଲେ । ତାଙ୍କ ଆହ୍ୱାନ କ୍ରମେ ଦକ୍ଷିଣ ପୁରୀର ୯ଟି ଥାନାରୁ ଲିଙ୍ଗରାଜ ସର୍ବମୋଟ ୧୬୪୪ଟି ଭୋଟ ପାଇ ଜୟଯୁକ୍ତ ହୋଇଥିଲେ । ଏମାର ମଠ ମହାନ୍ତ ଓ ଶ୍ରୀ ଜଗବନ୍ଧୁ ସିଂହ ଯଥାକ୍ରମେ ୮୯୦ ଓ ୨୧୬ଟି ଭୋଟ ପାଇଥିଲେ ।

## ରାଧେ ଗୋବିନ୍ଦ ଭଜ

ଛାତ୍ର ଜୀବନରୁ ଗୋପବନ୍ଧୁଙ୍କ ସହିତ ପଣ୍ଡିତ ଲିଙ୍ଗରାଜଙ୍କର ପରିଚୟ ହୋଇଥିଲା । ଶ୍ରୀ ମିଶ୍ରେ ଅତି ଗରିବ ଥିବାରୁ ଗୋପବନ୍ଧୁଙ୍କ ପ୍ରତିଷ୍ଠିତ 'ୟୁନିଭର୍ସାଲ ଏଜୁକେସନ୍

ଲିଗ୍‌ରୁ ଧାରାବାହିକ ଭାବେ ସାହାଯ୍ୟ ପାଉଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟରୁ ସଂସ୍କୃତ ଏମ୍. ଏ.ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପାଇଲେ । ସତ୍ୟବାଦୀ ବନବିଦ୍ୟାଳୟ ପ୍ରତି ତାଙ୍କର ନୈତିକ ଦାୟିତ୍ୱ ଥିଲା । ତେଣୁ ଏଠାରେ ଚାକିରି କରିବାକୁ ସେ ଗୋପବନ୍ଧୁଙ୍କୁ ପତ୍ର ଲେଖିଥିଲେ; କିନ୍ତୁ ତାଙ୍କ ପରିବାରର ଅବସ୍ଥା ଦୃଷ୍ଟିରୁ କିଛି ଦିନ ସରକାରୀ ଚାକିରି କରି ଋଣ କରଜ ପରିଶୋଧ କରିଦେବାକୁ ଗୋପବନ୍ଧୁ ସେତେବେଳେ ପରାମର୍ଶ ଦେଇଥିଲେ ।

ପଣ୍ଡିତ ଲିଙ୍ଗରାଜ ବିହାର-ଓଡ଼ିଶା ସଂସ୍କୃତ ଶିକ୍ଷା ବିଭାଗର ସହକାରୀ ପରିଚାଳକ (ସୁପରିଣ୍ଟେଣ୍ଡେଣ୍ଟ୍) ଭାବରେ ଯୋଗ ଦେଇଥିଲେ; କିନ୍ତୁ ୧୯୨୧ ମସିହା ଶେଷ ଭାଗରେ ସେ ସତ୍ୟବାଦୀ ବିଦ୍ୟାଳୟର ଶିକ୍ଷକତାରେ ଯୋଗଦେଲେ ।

୧୯୨୨ ମସିହା ଫେବୃୟାରୀ ମାସରେ ଗୋପବନ୍ଧୁ ଓ ପଣ୍ଡିତ ଲିଙ୍ଗରାଜ ଓଡ଼ିଶାର ବନ୍ୟା ସାହାଯ୍ୟ ନିମନ୍ତେ ପାଣ୍ଠି ସଂଗ୍ରହ କରିବାକୁ ବମ୍ବେ ଯାତ୍ରା କରିଥିଲେ ଓ ଭାରତ ସେବକ ସମାଜ (Servants of India Society)ର ଅତିଥି ଭାବରେ ଅବସ୍ଥାନ କରୁଥିଲେ । ସେତେବେଳେ ସାକ୍ଷୀଗୋପାଳରେ ଚାଲୁଥିବା ଶିକ୍ଷାଗତ ନୂତନ ପରୀକ୍ଷାକୁ ବମ୍ବେର ବହୁ ଦୈନିକ ପତ୍ରିକା ସ୍ୱାଗତ ଜଣାଇଥିଲେ । ଏପରିକି ଏହି ଅନୁଷ୍ଠାନକୁ କେନ୍ଦ୍ର କରି ଚାଲୁଥିବା ବନ୍ୟା ସାହାଯ୍ୟ କାର୍ଯ୍ୟକୁ ସେମାନେ ଉଚ୍ଚ ପ୍ରଶଂସା କରି ବିବୃତିମାନ ଦେଉଥିଲେ ।

୧୯୨୫ ମସିହାରେ ସତ୍ୟବାଦୀ ବିଦ୍ୟାଳୟର ଘୋର ଆର୍ଥିକ ଦୁର୍ଗତି ଉପସ୍ଥିତ ହୋଇଥିଲା । ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ପରିଣତ ହେବା ପରେ ସରକାରୀ ସାହାଯ୍ୟରୁ ବଞ୍ଚିତ ହେଲା । ସେତେବେଳେ ଏହି ବିଦ୍ୟାଳୟ ସହିତ ନିବିଡ଼ ଭାବରେ ସମ୍ପୃକ୍ତ ବହୁ ବିଶିଷ୍ଟ ଲୋକ ଏହାକୁ ବିଶ୍ୱବିଦ୍ୟାଳୟ ସହିତ ସାମିଲ୍ କରି ରଖିବାକୁ ପୁନଶ୍ଚ ଆଗ୍ରହ ପ୍ରକାଶ କରିଥିଲେ । କାରଣ ଗାନ୍ଧି ମହାତ୍ମା ଘୋଷଣା କରିଥିବା ସ୍ୱରାଜ୍ୟ ୧୯୨୧ ମସିହାରେ ନଆସିବାରୁ କ୍ରମେ ଏହି ଜାତୀୟ ସଂଗ୍ରାମ ପ୍ରତି ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଆଗ୍ରହ ତିହିଲିଯାଇଥିଲା । ଦିନେ ପଣ୍ଡିତ ଲିଙ୍ଗରାଜ ପୁରୀରେ ଦାସେ ଆପଣଙ୍କୁ ସ୍କୁଲର ଦୁରବସ୍ଥା ଜଣାଇ ପୁନଶ୍ଚ ସରକାରୀ ସାହାଯ୍ୟ ଗ୍ରହଣ କରିବାକୁ ଅନୁରୋଧ କଲେ । ଏତେ ତ୍ୟାଗ ଓ ଶ୍ରମରେ ଗଢ଼ା ହୋଇଥିବା ଅନୁଷ୍ଠାନଟି କ୍ରମେ ଭାଙ୍ଗିପଡ଼ୁଥିବା ଦେଖି ପଣ୍ଡିତ ଲିଙ୍ଗରାଜ ଏ ବିକଳ୍ପ ପ୍ରସ୍ତାବ ଦେଇଥିଲେ ।

କିନ୍ତୁ ଗୋପବନ୍ଧୁ ଉତ୍ତର ଦେଲେ—"ଆପଣଙ୍କ ପରି ବହୁଲୋକ ସତ୍ୟବାଦୀର ବର୍ତ୍ତମାନ ଦୁର୍ଦ୍ଦଶା ଦେଖି ମ୍ରିୟମାଣ ହୋଇଛନ୍ତି । ଏହା ସ୍ୱାଭାବିକ କଥା । ବର୍ତ୍ତମାନ ପରିସ୍ଥିତିରେ ସମ୍ପୂର୍ଣ୍ଣ ନୂଆ ଏକ ଅନୁଷ୍ଠାନ ଚଳାଇବା ସମ୍ଭବ ନୁହେଁ । ଏ ସ୍କୁଲ୍ ଯେ ଦିନେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହେବ ଏ ଧାରଣା ମୋର ମୂଳରୁ ନଥିଲା । ଆମ ରାଜ୍ୟରେ ଶିକ୍ଷା ବିସ୍ତାର ନିମନ୍ତେ ଆମ ଜାତୀୟ ସଂଗ୍ରାମର ଏକ ଅଙ୍ଗ ଭାବରେ ଏ ଅନୁଷ୍ଠାନ

ଗଢ଼ାଯାଇଥିଲା । ଆମର ଉଦ୍ଦେଶ୍ୟ ବହୁ ଭାବରେ ସଫଳ ହୋଇଛି । ଓଡ଼ିଆ ଭାଷାର ସୁରକ୍ଷା ଓ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ, ଦରିଦ୍ର ଓଡ଼ିଆ ଜାତିର ସେବା ନିମନ୍ତେ ଓ ସେମାନଙ୍କର ସାମାଜିକ ପରିସ୍ଥିତିର ବିକାଶ ନିମନ୍ତେ ଏହି ଅନୁଷ୍ଠାନ ଗଢ଼ା ଯାଇଥିଲା । ସମାଜର ସବୁ କ୍ଷେତ୍ରରେ ସଂସ୍କାର, ଓଡ଼ିଶାର ଜନତା ପ୍ରାଣରେ ଜାତି ପ୍ରେମର ଆକାଙ୍‌କ୍ଷା ଆଣି ଭାରତର ସ୍ୱାଧୀନତା ପାଇଁ ପ୍ରଣୋଦିତ କରିବା ନିମନ୍ତେ ଏହି ଅନୁଷ୍ଠାନର ମୂଳ ଲକ୍ଷ୍ୟ ଅବଧାରିତ ହୋଇଥିଲା । ଏହିପରି ଯେତେ ଅନୁଷ୍ଠାନ ଗଢ଼ା ଯାଇଥିଲା ସେସବୁ ଆଜି କ୍ରମେ ଭୁଷୁଡ଼ି ପଡ଼ୁଛି—ଏହାର ପ୍ରଧାନ କାରଣ ହେଲା ଜାତୀୟ ସଂଗ୍ରାମରେ ମଧ୍ୟ ବିରତି ଆସିଛି । ଯେତେବେଳେ ଯୁଦ୍ଧ କ୍ଷେତ୍ରରେ ସୈନ୍ୟମାନେ କୌଣସି କାପର୍ଯ୍ୟସୂତ୍ରରୁ ପଛଘୁଞ୍ଚା ଦିଅନ୍ତି, ସେମାନେ ଏହାକୁ ପରାଜୟ ମନେ ନକରି ପୁଣି ସୁଯୋଗକୁ ଅପେକ୍ଷା କରି ରହନ୍ତି । ସୁଯୋଗ ମିଳିଲେ ପୁଣି ଆଗେଇ ଚାଲନ୍ତି । ସେହିପରି ବର୍ତ୍ତମାନ ପରିସ୍ଥିତିରେ ଆମକୁ ସୁଯୋଗ ପାଇଁ ଅପେକ୍ଷା କରିବାକୁ ହେବ ଏବଂ ଜାତୀୟ ଶିକ୍ଷା ବିସ୍ତାର ଦିଗରେ ଆମ ଉଦ୍ୟମକୁ ଚଳେଇ ରଖିବାକୁ ହେବ । ଏଥିପାଇଁ ଆତ୍ମତ୍ୟାଗ, ଧୈର୍ଯ୍ୟ ଓ ସାଧନା ଦରକାର ।''

ଲିଙ୍ଗରାଜ ଆଉ ଉତ୍ତର ଦେଇ ପାରିଲେ ନାହିଁ । ତାଙ୍କ ପ୍ରସ୍ତାବ ସେଇଠି ରହିଲା । ସେ ଫେରି ଆସିଲେ ।

ଏହା ପରେ ପରେ ୧୯୨୬ ମସିହାରେ ବିହାର-ଓଡ଼ିଶା ବିଧାନସଭା ଓ କେନ୍ଦ୍ର ବିଧାନ ପରିଷଦ ପାଇଁ ନିର୍ବାଚନ ବେଳ ଆସିଲା । ଗୋପବନ୍ଧୁଙ୍କ ପରାମର୍ଶ କ୍ରମେ ପଣ୍ଡିତ ଲିଙ୍ଗରାଜ ମିଶ୍ର ବିହାର-ଓଡ଼ିଶା ବିଧାନସଭା ପାଇଁ ପ୍ରାର୍ଥୀ ହେଲେ । ପୁରୀର ଉତ୍କଳ ଶ୍ରୀ ଜଗବନ୍ଧୁ ସିଂହ ଓ ଏମାର ମଠ ମହନ୍ତ ମହାରାଜ ଗଦାଧର ରାମାନୁଜ ଦାସ ମଧ୍ୟ ଏଥିପାଇଁ ପ୍ରାର୍ଥୀ ଥିଲେ । ଲିଙ୍ଗରାଜଙ୍କ ପାଇଁ ଗୋପବନ୍ଧୁ ଅତି ପ୍ରତ୍ୟକ୍ଷ ଭାବରେ ନିର୍ବାଚନ ପ୍ରଚାରରେ ଲାଗି ପଡ଼ିଲେ । ଫଳରେ ଏକଦା ପାଠସାଥୀ ଜଗବନ୍ଧୁଙ୍କ ସହିତ ତାଙ୍କର ଘୋର ମନାନ୍ତର ଉପୁଜିଲା । ଏହି ନିର୍ବାଚନରେ ଲିଙ୍ଗରାଜଙ୍କ ଭୋଟ ବାକ୍‌ସ ମଝିରେ ରହିବାର କଥା । ଦୁଇ ପାଖରେ ଜଗବନ୍ଧୁ ସିଂହ ଓ ମହନ୍ତ ମହାରାଜଙ୍କ ବାକ୍‌ସ ରହିଥିଲା । ଗୋପବନ୍ଧୁ ସେତେବେଳେ ସଂକୀର୍ତ୍ତନ ସ୍ୱରରେ ଗୋଟିଏ ପ୍ରଚାରପତ୍ର ତାଙ୍କ ପ୍ରେସରୁ କାଢ଼ିଥିଲେ । ହଠାତ୍ ବସିଥିବା ବେଳେ ସେ ପ୍ରେସ୍‌ର ସହକାରୀ ମ୍ୟାନେଜର ଶ୍ରୀଯୁକ୍ତ ହରିହର ରଥଙ୍କୁ ପ୍ରଚାରପତ୍ରରେ ଛପାଇବା ପାଇଁ ଡାକଦେଲେ—

ରାଧେ ଗୋବିନ୍ଦ ଭଜ<br>
ଏ ପାଖ ସେ ପାଖ ବାକ୍‌ସ ତେଜ ;<br>
ମଝି ବାକ୍‌ସରେ ଭୋଟ ଗୁଞ୍ଜ,<br>
ରାଧେ ଗୋବିନ୍ଦ ଭଜ,<br>
ସିଂହ ମହାରାଜ ତେଜ ।

ମଟି ବାକ୍ସରେ ଭୋଟ ଗୁଞ୍ଜ
ସୁଧେ ଗୋବିନ୍ଦ ଭଜ ।

ଏହାପରେ ସଙ୍ଗଠନ କାର୍ଯ୍ୟ ଆରମ୍ଭ ହେଲା । ଏହି ପ୍ରସ୍ତାବକୁ ଧରି ସଙ୍କୀର୍ତ୍ତନ ଦଳ ମଫସଲମାନଙ୍କରେ ଭୋଟ ପ୍ରଚାର କଲେ । ଲୋକେ ଏ ପ୍ରଚାରରେ ଅତି ମାତ୍ରାରେ ମୁଗ୍ଧ ହୋଇଯାଇଥିଲେ । ମଟି ବାକ୍ସରେ ଅଧିକ ଭୋଟ ଉଠିଲା । ଶ୍ରୀ ଲିଙ୍ଗରାଜ ମିଶ୍ର ବିହାର-ଓଡ଼ିଶା ବିଧାନସଭାକୁ ଗୋପବନ୍ଧୁଙ୍କ ପ୍ରାର୍ଥୀ ଭାବରେ ନିର୍ବାଚିତ ହେଲେ ।

ଶ୍ରୀ ମିଶ୍ରଙ୍କୁ ବିଧାନସଭାକୁ ପଠାଇ ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ନିମନ୍ତେ ମଧ୍ୟବର୍ତ୍ତୀ-କାଳୀନ ବ୍ୟବସ୍ଥା କରାଗଲା । ଯେଉଁମାନେ ନିର୍ବାଚିତ ସଭ୍ୟ ଭାବରେ ଗଲେ, ସେଠାରେ ସେମାନଙ୍କ ଖର୍ଚ୍ଚ ବାଦ ଅବଶିଷ୍ଟ ଟଙ୍କା ସତ୍ୟବାଦୀ ଜାତୀୟ ସ୍କୁଲ ପାଇଁ ଦାନ କରିବା ସର୍ତ୍ତ ରହିଲା । ନୀଳକଣ୍ଠବାବୁ କେନ୍ଦ୍ର ସଭାକୁ ନିର୍ବାଚିତ ହେଲେ ; କିନ୍ତୁ ପରେ ସତ୍ୟବାଦୀ ସ୍କୁଲ ପାଇଁ ଦେବା ପ୍ରାପ୍ୟ କେହି ଦେଲେ ନାହିଁ । ପଣ୍ଡିତ ଲିଙ୍ଗରାଜ କିଛି ଦିନ ଏହି ଦେୟ ଦେବାପରେ ବନ୍ଦ କରି ଦେଇଥିଲେ ।

## ଆଉ କଟକ ଫେରିବ ନାହିଁ

ବ୍ରଜସୁନ୍ଦର ଦାସ ଗୋପବନ୍ଧୁଙ୍କ କଲେଜ ସାଥୀ ଥିଲେ । ଗୋପବନ୍ଧୁ ଦେଶସେବୀ, ବ୍ରଜସୁନ୍ଦର ସ୍ୱାଧୀନଚେତା—ଉଭୟଙ୍କ ଭିତରେ ମନର ମେଳ ଘଟିଥିଲା । ବ୍ରଜସୁନ୍ଦର ଜୀବନରେ କେବେ ଚାକିରି କରି ନ ଥିଲେ । ଚାକିରି ପାଇଁ ଉଦ୍ୟମ ମଧ୍ୟ କରି ନଥିଲେ । ସୁନ୍ଦର ଚେହେରା । ବଡ଼ ମେଳାପୀ । ଗଞ୍ଜପା ଆଉ ପଶା ଖେଳରେ ଭାରି ମାତନ୍ତି । ନିଜ ହାତରେ ରାନ୍ଧି ଅନ୍ୟମାନଙ୍କୁ ଖୁଆଇବାରେ ତାଙ୍କର ବଡ଼ ସଉକ ଥାଏ । ଥରେ ପାଟଣାରେ ଗୋଟିଏ ଡାକବଙ୍ଗଳାରେ ଉଭୟେ ଥା'ନ୍ତି । ଗୋପବନ୍ଧୁ ଖଟା ମାଗିଲେ । ବ୍ରଜବାବୁ ସାଙ୍ଗରେ ବରାବର ଆଚାର ରଖିଥାନ୍ତି । ଅତି ଉତ୍କଟ ରାଗ । ଗୋପବନ୍ଧୁଙ୍କୁ ଆଚାର ଦେଲେ । ଗୋପବନ୍ଧୁଙ୍କର ପାଇଲ୍ସ (ଅର୍ଶ) ବେମାରୀ ଥାଏ । ରାଗ ଆଚାର ଖାଇ ବାରମ୍ବାର ପାଇଖାନା ଗଲେ । ପାଇଲ୍ସ ବି କଷ୍ଟ ଦେଲା । ବ୍ରଜସୁନ୍ଦରଙ୍କୁ ଥଟ୍ଟାରେ କହିଲେ—"ଭଲ ଖଟା ଖୋଇଲ ?"

ବ୍ରଜସୁନ୍ଦର ଉତ୍ତର ଦେଲେ—"ଦି' ଦାସେ ତ ଏକାଠି ହେଲେ । ତୁମେ ମାଗିଲ, ମୁଁ ଦେଲି—ମୁଁ ଆଉ କ'ଣ କରିବି ?"

ପ୍ରକୃତରେ ଦି' ଦାସେ ଜୀବନଭରି ଏକାଠି ହୋଇଥିଲେ । ଗୋପବନ୍ଧୁ ଓ ବ୍ରଜସୁନ୍ଦର ଛାତ୍ର ଜୀବନରେ ଥିଲେ ଆସନ୍ତା ନବଯୁଗର ପ୍ରତୀକ । ପ୍ରତିଦିନ ବ୍ରଜବାବୁଙ୍କ ଘରେ କଲେଜ ଛାତ୍ରଙ୍କ ଆଡ୍ଡା ଜମୁଥିଲା । ସାହିତ୍ୟଠାରୁ ଦେଶଯାଏ କେତେ ଅସରନ୍ତି ଆଲୋଚନାର ସ୍ରୋତ

ମେଲୁଥିଲା । ତାର ଫଳସ୍ୱରୂପ ପ୍ରକାଶ ପାଇଲା 'ମୁକୁର' । ବ୍ରଜସୁନ୍ଦର ମୂଳରୁ ତା'ର ସମ୍ପାଦକ ଓ ପ୍ରତିଷ୍ଠାତା ଥିଲେ । 'ମୁକୁର' ବିଶ୍ୱନାଥ କରଙ୍କ 'ଉତ୍କଳ ସାହିତ୍ୟ' ସହିତ ପ୍ରତିଯୋଗିତା କରି ପ୍ରକାଶ ପାଉଥିଲା । ବହୁ ତରୁଣ ଓ ନବାଗତଙ୍କ ଲେଖା ଓ ରେଖାରେ ଉଦାରତାର ବ୍ୟାପ୍ତି ନେଇ ସାର୍ଘଦିନ ଧରି 'ମୁକୁର' ପ୍ରକାଶିତ ହେଉଥିଲା ।

'କର୍ତ୍ତବ୍ୟବୋଧିନୀ' ଓ 'ୟଙ୍ଗ ଉତ୍କଳ ଆସୋସିଏସନ୍'—ଗୋପବନ୍ଧୁ ଓ ବ୍ରଜସୁନ୍ଦରଙ୍କ ମିଳିତ ଉଦ୍ୟମରେ ସେତେବେଳେ ଗଢ଼ି ଉଠିଥିଲା । ଅତି ଆତ୍ମୀୟ ପରି ଉଭୟେ ଚଳୁଥିଲେ । ବନ୍ୟାମରୁଡ଼ିରେ ସହରରେ ଭୁକ୍ତ ରୂଦ୍ଧା ମାଗିବାଠାରୁ ଦେଶର ରାଜନୀତି ଯାଏ— ଉଭୟେ ବହୁଭାବରେ ଶେଷଯାଏ ମିଳିମିଶି ସବୁ କରୁଥିଲେ ; କିନ୍ତୁ ଅସହଯୋଗ ଆନ୍ଦୋଳନରେ ସାକ୍ଷାତ୍ ଭାବରେ ବ୍ରଜସୁନ୍ଦର ବିଶେଷ ଭାଗ ନେଇ ନଥିଲେ । ଗ୍ରୁପ୍ଗଣବନର ଏ ଘନିଷ୍ଠତା ଜୀବନର ଧୂସର ବାଲୁଚରରେ ନିଭିଯାଇ ନଥିଲା ।

୧୯୨୭ ମସିହାର ଶେଷଭାଗର ଘଟଣା ହେବ । ପଣ୍ଡିତ ଗୋପବନ୍ଧୁ ସେତେବେଳେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭ୍ୟପଦରୁ ଇସ୍ତଫା ଦେଇଥାନ୍ତି—କିନ୍ତୁ ଇସ୍ତଫା ଗୃହୀତ ହୋଇନଥାଏ । ଶ୍ରୀ ଗୋପବନ୍ଧୁ ଚୌଧୁରୀ ପ୍ରାଦେଶିକ କଂଗ୍ରେସ କମିଟୀର ସମ୍ପାଦକ ଥା'ନ୍ତି । ରାଜନୀତିର ବିଚକ୍ଷଣତା ଓ କୁଟକୌଶଳ ଗୋପବନ୍ଧୁଙ୍କ ଜଣା ନ ଥିଲା । ସମସ୍ତ ରାଜନୈତିକ ସମସ୍ୟାକୁ ସେ ଉଦାର ହୃଦୟଶୀଳତା ନେଇ ସମାଧାନ କରିବାକୁ ଉଦ୍ୟମ କରୁଥିଲେ । ରାଜନୀତିର ପେଞ୍ଚ ଭିତରେ କାହା ଗୋଡ଼ ଟାଣି, କାହା ଗୋଡ଼ ହାଣି, କାହାକୁ ବଦନାମ କରି, କାହାକୁ ଅବଦମିତ କରି କ୍ଷମତାକୁ ଆବୋରି ବସିବା ତାଙ୍କର ସ୍ୱଭାବ-ବିରୁଦ୍ଧ ଥିଲା । ତାଙ୍କ ଆଖିରେ ରାଜନୀତି ଥିଲା ଜନସେବାର ଏକ ମାଧ୍ୟମ । ତେଣୁ କର୍ମୀର ବିନମ୍ର ଓ ପୌରୁଷର ଆତ୍ମାଶ୍ଳାଘାହୀନ ପ୍ରତ୍ୟୟ ନେଇ ସେ କାମକରି ଯାଉଥିଲେ । କିନ୍ତୁ ସମକାଳୀନ ବହୁ କଂଗ୍ରେସ ଉପନେତା ଓ କେତେକ ଯୁବନେତା ଗୋପବନ୍ଧୁଙ୍କୁ ଅଯଥା ବେଳେବେଳେ ବିବ୍ରତ କରୁଥିଲେ । କଂଗ୍ରେସ କମିଟିରେ ନାନା ଅବାନ୍ତର ପ୍ରଶ୍ନ ପଚାରି ତାଙ୍କୁ ହଇରାଣ କରିବାରେ ଆନନ୍ଦ ପାଉଥିଲେ । ସେଥିପାଇଁ କୋମଳପ୍ରାଣ ଗୋପବନ୍ଧୁ ସେ କମିଟୀରୁ ବାରମ୍ବାର କାନ୍ଦି କାନ୍ଦି ଫେରୁଥିଲେ । ଥରେ ଏହିପରି ଏକ ଘଟଣାରୁ ସେ ପ୍ରତିଜ୍ଞା କଲେ ଆଉ ସକ୍ରିୟ ଭାବରେ ପ୍ରାଦେଶିକ କଂଗ୍ରେସ କମିଟିକୁ ଯିବେ ନାହିଁ । ସେଇଦିନ କାନ୍ଦି କାନ୍ଦି ବ୍ରଜବାବୁଙ୍କୁ ତାଙ୍କ ଘରେ ଆସି କହିଲେ—"ଦାସେ, ସତ୍ୟବାଦୀ ଯାଉଚି, ଆଉ ଫେରିବି ନାହିଁ ।" ପ୍ରାଦେଶିକ କଂଗ୍ରେସ କମିଟୀ ସକ୍ରିୟ ଭାବରେ ସେ ଆଉ କଟକ ଫେରିଲେ ନାହିଁ । ଜୀବନର ଉପାନ୍ତରେ ସେ ପହଞ୍ଚି ସାରିଥିଲେ । ଦୂରରୁ ନିଷ୍ଠୁର ମୃତ୍ୟୁ ହାଇ ମାରୁଥିଲା, ହାତଠାରି ଇଙ୍ଗିତ ଦେଉଥିଲା । ମରଣର ଉପକଣ୍ଠରେ ଏ ମହାଜନର ବାଣୀ କ୍ରମେ କ୍ଷୀଣତର ହୋଇ ଆସୁଥିଲା ।

# ସତ୍ୟବାଦୀର ଅସ୍ତରେଖା

ସତ୍ୟବାଦୀକୁ କେନ୍ଦ୍ରକରି ଗୋପବନ୍ଧୁ ତାଙ୍କ ଜୀବନର ବ୍ୟାପକ ପରୀକ୍ଷା ଓ ପ୍ରୟୋଗ ଚଳାଇଥିଲେ । ସତ୍ୟବାଦୀ ତାଙ୍କ ପାଇଁ କେତେ ସବୁଜ ଆଶା ଓ କଳ୍ପନାର ଉଦ୍ୟାନ ଥିଲା । ନିଜର ନିର୍ଜନ ପ୍ରକୋଷ୍ଠରେ ବସି ସେ ଓଡ଼ିଶାର ଭବିଷ୍ୟତ ପାଇଁ କେତେ କଳ୍ପନା ଜଳ୍ପନା କରୁଥିଲେ । ଦରିଦ୍ର ଅନୁନ୍ନତ ଓଡ଼ିଶାରେ ବ୍ୟାପକ ଶିକ୍ଷା ବିସ୍ତାର ତାଙ୍କ ଉଦ୍ୟମର ପ୍ରଥମ ପ୍ରୟାସ ଥିଲା । ସତ୍ୟବାଦୀ ବନବିଦ୍ୟାଳୟ ଥିଲା ଏହି ଚିନ୍ତାର ଶ୍ରେଷ୍ଠତମ ସ୍ମରଣ ଓ ଦର୍ଶନ । ଓଡ଼ିଶାରେ ଶିକ୍ଷା ପ୍ରସାର ନିମନ୍ତେ ୧୯୧୯ ମସିହାରେ ଗୋପବନ୍ଧୁ 'ୟୁନିଭର୍‌ସାଲ ଏଜୁକେସନ୍ ଲିଗ୍' ନାମକ ଏକ ଅନୁଷ୍ଠାନ ଗଢ଼ିଥିବା କଥା ଆଗରୁ ଆଲୋଚିତ ହୋଇଛି । ୧୯୧୮ ମସିହା ସତ୍ୟବାଦୀ ସ୍କୁଲ ବିବରଣୀରେ ଏହାର ଆଭିମୁଖ୍ୟ ସ୍ପଷ୍ଟ ପ୍ରକାଶ ପାଇଥିଲା— "ସରକାର ମାତ୍ର କେତୋଟି ସ୍ଥାନରେ ସ୍କୁଲ ଓ କଲେଜ ପ୍ରତିଷ୍ଠା କରିଥିଲେ ମଧ୍ୟ ଓଡ଼ିଶାର ଶିକ୍ଷା ପ୍ରସାର ଦିଗରେ ତାହା ଯଥେଷ୍ଟ ନୁହେଁ । ଯେଉଁଠାରେ ଲୋକମାନେ ଅଶିକ୍ଷାର ଅନ୍ଧକାରରେ ସମାଚ୍ଛନ୍ନ, ଯେଉଁଠାରେ କୌଣସି ସରକାରୀ ପ୍ରତିଷ୍ଠାନ ନାହିଁ ଏବଂ ଯେଉଁଠାରେ ସ୍କୁଲ କଲେଜ ଖୋଲିଯିବାର ସମ୍ଭାବନା ନାହିଁ; ସେଠାରେ ଶିକ୍ଷା ପ୍ରସାର ଦିଗରେ ଉଦ୍ୟମ କରିବା ଉଚିତ । ଏହି 'ଶିକ୍ଷା ସଂସଦ' (Education League)ରେ ଦୁଇ ଶ୍ରେଣୀର କର୍ମୀ ରହିବେ । ପ୍ରଥମ ଶ୍ରେଣୀର କର୍ମୀ ଏହାର ପୃଷ୍ଠପୋଷକ ଓ ଆଜୀବନ ସଭ୍ୟ ରହିବେ । ଏମାନଙ୍କ ମଧ୍ୟରୁ କାଉନ୍‌ସିଲ୍‌କୁ ସଭ୍ୟ ନିର୍ବାଚିତ ହେବେ ଓ କାଉନ୍‌ସିଲ୍‌ର ସଭ୍ୟମାନେ କେତେକଙ୍କୁ ନିର୍ବାଚିତ କରି ପରିଚାଳନା ବୋର୍ଡ଼ ଗଠନ କରିବେ । ଏହି ସଂସଦର ଦ୍ୱିତୀୟ ଶ୍ରେଣୀର ସଭ୍ୟ ସତ୍ୟବାଦୀ ଅନୁଷ୍ଠାନରୁ ଉତ୍ତୀର୍ଣ୍ଣ ହୋଇ ଉଚ୍ଚ ଶିକ୍ଷା ପାଉଥିବା ଛାତ୍ରମାନେ ରହିବେ । ସେମାନେ ଏହି ଅନୁଷ୍ଠାନର ସାହାଯ୍ୟ କ୍ରମେ ଉଚ୍ଚ ଶିକ୍ଷା ଲାଭକରିବେ ଓ ସେମାନଙ୍କ ଶିକ୍ଷା ସମାପ୍ତ ହେବାପରେ ଏହି ଲିଗ୍‌ଦ୍ୱାରା ପ୍ରତିଷ୍ଠିତ ସ୍କୁଲମାନଙ୍କରେ ଶିକ୍ଷକତା କରିବେ । ଏହି ଲିଗ୍‌ର ଆଭିମୁଖ୍ୟ ପୂରଣ ନିମନ୍ତେ ଏକ କେନ୍ଦ୍ରସ୍ଥଳରେ ଲିଗ୍ ତରଫରୁ ଗୋଟିଏ କଲେଜ ପ୍ରତିଷ୍ଠା କରାଯିବ । କଲେଜ ପ୍ରତିଷ୍ଠିତ ହେଲେ ବିଭିନ୍ନ ସ୍ଥାନରେ ହାଇସ୍କୁଲ ସ୍ଥାପନ କରିବା ଦୁରୂହ ହେବନାହିଁ । ଏହି କଲେଜରୁ ସ୍କୁଲମାନଙ୍କ ପାଇଁ ଶିକ୍ଷକ ଯୋଗାଇ ପାରିବେ । ପରେ ପରେ ସତ୍ୟବାଦୀକୁ କେନ୍ଦ୍ରକରି ଏହି ଲିଗ୍ ଓଡ଼ିଶାର ବିଭିନ୍ନସ୍ଥାନରେ ସ୍କୁଲ ପ୍ରତିଷ୍ଠା କରିପାରିବ । ଏହି ଲିଗ୍‌ର ସଫଳତା ଏହାର ଆଜୀବନ ସଭ୍ୟମାନଙ୍କ ଦକ୍ଷତା, ତ୍ୟାଗ, ନିଷ୍ଠା ଓ ସାଧନା ଉପରେ ଭିତ୍ତି କରିପାରିବ । କାଉନ୍‌ସିଲ ଓ ପରିଚାଳନା ବୋର୍ଡ଼ର ଆଜୀବନ ସଭ୍ୟମାନଙ୍କ ଉପରେ ନିୟନ୍ତ୍ରଣ ରହିବ ।

ଏକାଥରକେ ଛ'ଶହ ଟଙ୍କା ବା ବାର୍ଷିକ ଟ୧୨୦-୦୦ ଦାନ କରିବା ବ୍ୟକ୍ତି ଏହି ଲିଗ୍‌ର ପୃଷ୍ଠପୋଷକ ହୋଇ ପାରିବେ । ଉଚ୍ଚଶିକ୍ଷାଗତ ଯୋଗ୍ୟତାସମ୍ପନ୍ନ ଲୋକଙ୍କୁ ଏହି ଲିଗ୍‌ର ଆସୋସିଏଟ୍ ସଭ୍ୟ ଭାବରେ ଗ୍ରହଣ କରାଯିବ । ସେମାନେ ଆର୍ଥିକ ଦାନ ଦେଇନ୍ତୁ, ବା

ନହଅନ୍ତୁ ସେମାନଙ୍କ ସାହଚର୍ଯ୍ୟ ଓ ଉପଦେଶ ଲିଗ୍ ପାଇଁ ଅତି ଜରୁରୀ ଆବଶ୍ୟକତା ରୂପେ ବିବେଚିତ ହେବେ ।

ଆଜୀବନ ସଭ୍ୟମାନେ ଲିଗ୍‌ର ମୁଖ୍ୟ ଭାବରେ ବିବେଚିତ ହେବେ । ଏଥିରେ ପଶିବା ପାଇଁ ସେମାନଙ୍କ ଯୋଗ୍ୟତା ଓ ଆବଶ୍ୟକ ସର୍ତ୍ତ ଉଲ୍ଲେଖ ରହିବ । ସେମାନେ ଦୁଇ ପ୍ରକାର କାର୍ଯ୍ୟରେ ଅଂଶ ନେବେ । ବିଶ୍ୱବିଦ୍ୟାଳୟ ଡିଗ୍ରୀଧାରୀ ବ୍ୟକ୍ତିମାନେ ପ୍ରଥମ ଶ୍ରେଣୀର ଶିକ୍ଷକ ଭାବରେ ଆଜୀବନ ସଭ୍ୟ ଓ ତତ୍‌ନିମ୍ନବର୍ତ୍ତୀ ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତିମାନେ ଦ୍ୱିତୀୟ ଶ୍ରେଣୀର ଶିକ୍ଷକ ଭାବରେ ବିବେଚିତ ହେବେ । କାଉନ୍‌ସିଲ ଚାହିଁଲେ ୨ୟ ଶ୍ରେଣୀର ଶିକ୍ଷକଙ୍କୁ ତାଙ୍କର ନିଷ୍ଠା ଓ କର୍ମଦକ୍ଷତା ପାଇଁ ପ୍ରଥମ ଶ୍ରେଣୀକୁ ଉତ୍ତୀର୍ଣ୍ଣ କରିପାରିବେ ।

ବର୍ତ୍ତମାନ ପାଇଁ ମଧ୍ୟଇଂରାଜୀ ସ୍କୁଲ ପ୍ରତିଷ୍ଠା ଲିଗ୍‌ର ପ୍ରଥମ କର୍ମଯୋଜନା ହେଲେ ମଧ୍ୟ ନିମ୍ନ ପ୍ରାଥମିକ ଶିକ୍ଷାଠାରୁ ଉଚ୍ଚ ବୈଷୟିକ ଓ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା କରିବା ଲିଗ୍‌ର ଉଦ୍ଦେଶ୍ୟ । ଯେତେଦୂର ସମ୍ଭବ ପ୍ରାଥମିକ ଓ ମାଧ୍ୟମିକ ସ୍କୁଲ ପ୍ରତିଷ୍ଠା ଲିଗ୍‌ର ସର୍ବପ୍ରଥମ କାର୍ଯ୍ୟଭାବରେ ଗୁରୁତ୍ୱ ପାଇବ । ପ୍ରତ୍ୟେକ ମଧ୍ୟଇଂରାଜୀ ବିଦ୍ୟାଳୟ ପାଇଁ ଯେଉଁ ପୃଷ୍ଠପୋଷକମାନେ ରହିବେ, ସେମାନେ ଲିଗ୍ ପାଇଁ ଜଣେ ପ୍ରତିନିଧି ପଠାଇପାରିବେ ।

ମଧ୍ୟ ଇଂରାଜୀ ବିଦ୍ୟାଳୟ ବା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଯେଉଁଠି ହେଉ ଆଜୀବନ ଶିକ୍ଷକ ସଭ୍ୟଙ୍କୁ କିଛିଦିନ ପ୍ରଥମେ ତାଲିମ୍ ନେବାକୁ ହେବ । ଏହି ତାଲିମ୍ ସମୟରେ ସେମାନେ ତାଙ୍କ ପାଉଣା ପାଇବେ ଓ ତା'ପରେ ପରେ ସେମାନଙ୍କୁ ସ୍ଥାୟୀ ଶିକ୍ଷକତାରେ ନିଯୁକ୍ତ ଦିଆଯିବ । ଏଥିପାଇଁ କାଉନ୍‌ସିଲ ସମ୍ପୃକ୍ତ ଶିକ୍ଷକଙ୍କ ଚରିତ୍ର, ଦକ୍ଷତା ଓ ନିଷ୍ଠା ବିବେଚନା କରିବେ । ସତ୍ୟବାଦୀ ସ୍କୁଲର ଆଜୀବନ ଶିକ୍ଷକ ସଭ୍ୟଙ୍କ ମାସିକ ଦରମା ନିମ୍ନ ପ୍ରକାରେ ସ୍ଥିର ହୋଇଅଛି ।

୧ । ଏମ୍. ଏ. ଡିଗ୍ରୀ ପ୍ରାପ୍ତ ଶିକ୍ଷକ ମାସିକ ଷାଠିଏ ଟଙ୍କା ।

୨ । ବି. ଏ. ଡିଗ୍ରୀ ପ୍ରାପ୍ତ ଶିକ୍ଷକ ମାସିକ ପଚିଶ ଟଙ୍କା ।

ପ୍ରତ୍ୟେକ ଶିକ୍ଷକଙ୍କର ଜୀବନ ଦୁଇ ହଜାର ଟଙ୍କାରେ ବୀମା କରାଯିବ । କୋଡ଼ିଏ ବର୍ଷ ଶିକ୍ଷକତା ପରେ ସେମାନେ ଚାହିଁଲେ ବିରତି ନେଇ ପାରିବେ ଓ ମାସିକ ବେତନର ଅଧା ପେନ୍‌ସନ୍ ଆକାରରେ ପାଇବେ ।"

ଶେଷରେ ଲିଗ୍‌ର ଆଭିମୁଖ୍ୟ ଘୋଷିତ ହୋଇ କୁହାଯାଇଥିଲା—"ଏ ଦେଶର ପ୍ରଧାନ ଓ ପ୍ରଥମ ଆବଶ୍ୟକତା ହେଉଛି ଶିକ୍ଷା । ଓଡ଼ିଶାର ଲୋକେ ଏହା ଆଜି ଅନୁଭବ କରିପାରିଛନ୍ତି । ଅନ୍ୟାନ୍ୟ ପ୍ରଦେଶର ବିତ୍ତଶାଳୀ ଲୋକମାନେ ଏହି ଶିକ୍ଷା ପ୍ରସାର ଦିଗରେ ଯେତେ ଅବଦାନ ଦେଉଛନ୍ତି ଓଡ଼ିଶାର ଧନୀବ୍ୟକ୍ତିମାନେ ସେଥିରେ ଉତ୍ସାହିତ ହେବା କଥା । ସେମାନେ ସେମାନଙ୍କ କର୍ତ୍ତବ୍ୟ ବୁଝିବେ ବୋଲି ଲିଗ୍ ଆଶା ପ୍ରକାଶ କରୁଛି । ବର୍ତ୍ତମାନ ପାଇଁ ଏହି ପ୍ରସ୍ତାବ ଯଥେଷ୍ଟ ପରିମାଣରେ ଜନମତ ଉଦ୍‌ବୁଦ୍ଧ କରି ପାରିବାର ସମ୍ଭାବନା ନଥିଲେ ବି ଆମ ଦେଶର ଶିକ୍ଷିତ ବ୍ୟକ୍ତିମାନେ କ୍ରମେ ଏହାର ଉପଯୋଗିତା

ହୃଦୟଙ୍ଗମ କରି ପାରିବେ । ସେମାନଙ୍କ ପାଇଁ ଏହା ଆହ୍ୱାନ ମାତ୍ର । ଜୀବନବ୍ୟାପୀ ସାଧନା ଓ କର୍ମତତ୍ପରତା ଆମ ଶିକ୍ଷିତ ଦେଶପ୍ରେମୀ ଯୁବକଙ୍କଠାରୁ ଦେଶ ଆଶା କରୁଛି ।”

ସତ୍ୟବାଦୀର ଏହି ଅରୁଣୋଦୟ ଦେଖି ମହାତ୍ମା ଗାନ୍ଧୀ ମଧ୍ୟ ଉଚ୍ଛ୍ୱସିତ ହୋଇ ପଡ଼ିଥିଲେ । ସେ ୧୯୨୧ ମସିହା ଏପ୍ରିଲ୍ ୧୩ ତାରିଖ 'Young India' ରେ ଲେଖିଥିଲେ — × × "No wonder if I believe that with such earnest men, Swaraj is possible to attainment within the year. Pandit Gopabandhu has an open-air school at Sakhigopal twelve miles of this side of Puri. It is worthy of a visit. I passed a most delightful day in the midst of the boys and their teachers. It is a serious experiment in open-air teaching."

ଏପରି କି କଲିକତା ବିଶ୍ୱବିଦ୍ୟାଳୟର କୁଳପତି ଶ୍ରୀ ଆଶୁତୋଷ ମୁଖାର୍ଜୀ ୨ । ୭ । ୧୯୧୭ ତାରିଖରେ ଏହି ସ୍କୁଲ ପରିଦର୍ଶନ କରି ବଙ୍ଗଳାର ପ୍ରତ୍ୟେକ ଗ୍ରାମରେ ଏହିପରି ଗୋଟିଏ ଗୋଟିଏ ସ୍କୁଲ ପ୍ରତିଷ୍ଠା ହେବା ଉଚିତ ବୋଲି ମନ୍ତବ୍ୟ ଦେଇଥିଲେ ।

କିନ୍ତୁ ଏହି ଦୁରୂହ ଓ ଦୁଷ୍କର ପରିକଳ୍ପନାକୁ କାର୍ଯ୍ୟକାରୀ କରିବା ପାଇଁ ଗୋପବନ୍ଧୁଙ୍କୁ ଅବକାଶ ମିଳିଲା ନାହିଁ । ସତ୍ୟବାଦୀ ବିଦ୍ୟାଳୟରେ ଅନେକ ଦିନ ଧରି ଏହାର ସଫଳ ପରୀକ୍ଷା ଚାଲିଲେ ମଧ୍ୟ ବୃହତ୍ତର ରାଜନୈତିକ କର୍ତ୍ତବ୍ୟରେ ଗୋପବନ୍ଧୁ ନିମଗ୍ନ ହେଇ 'ଲିଗ୍'ର ଉଦ୍ଦେଶ୍ୟ ପୂରଣ ଦିଗରେ ଫଳପ୍ରଦ ଏକକ ପ୍ରଚେଷ୍ଟା ଚଳାଇ ପାରିଲେ ନାହିଁ । ସ୍କୁଲରେ ଶିକ୍ଷକମାନଙ୍କ ଭିତରେ କେତେକ ମତାନ୍ତର ସୃଷ୍ଟି ହେଲା । ପରେ ଅସହଯୋଗ ଆନ୍ଦୋଳନରେ ଶିକ୍ଷକମାନଙ୍କ ସମେତ ବିଦ୍ୟାଳୟ ମଧ୍ୟ ଯୋଗଦେଲା । ଏହି ବିଦ୍ୟାଳୟ ଜାତୀୟ ବିଦ୍ୟାଳୟରେ ପରିଣତ ହେବାପରେ ସରକାରୀ ସାହାଯ୍ୟରୁ ବଞ୍ଚିତ ହେଲା । ତଥାପି ଗୋପବନ୍ଧୁ ନିରୁତ୍ସାହିତ ହୋଇନଥିଲେ, କିନ୍ତୁ ତାଙ୍କର ଦୁଇବର୍ଷ ଜେଲ୍ ରହଣୀ କାଳରେ ସ୍କୁଲର ଆର୍ଥିକ ପରିସ୍ଥିତି ଅଧିକ ଶୋଚନୀୟ ହୋଇପଡ଼ିଲା । ଶିକ୍ଷକମାନେ ଦରମା ପାଇଲେ ନାହିଁ, ସ୍କୁଲର ଅତ୍ୟାବଶ୍ୟକ ଖର୍ଚ୍ଚ ତୁଲେଇ ହେଲାନାହିଁ । ନୀଳକଣ୍ଠ ଓ ଗୋଦାବରୀଶ ଗୋପବନ୍ଧୁଙ୍କ ନେତୃତ୍ୱରେ ଆଗରୁ ଯାଇ ସମ୍ବଲପୁର ଓ ଚକ୍ରଧରପୁରରେ ଜାତୀୟ ସ୍କୁଲ ଖୋଲିଥିବା କଥା ଆଗରୁ କୁହାଯାଇଛି ।

ବିଶ୍ୱବିଦ୍ୟାଳୟ ସହିତ ସତ୍ୟବାଦୀ ସ୍କୁଲର ସଂପର୍କ ଛିନ୍ନ ହେବାରୁ ଅଭିଭାବକମାନେ ଅସହଯୋଗ ଆନ୍ଦୋଳନର ପରବର୍ତ୍ତୀ କାଳରେ ଏ ସ୍କୁଲକୁ ଛାତ୍ର ପଠାଇବାରେ କୁଣ୍ଠିତ ହେଲେ । ଏ ସ୍କୁଲର ଛାତ୍ରମାନେ ଭବିଷ୍ୟତରେ ଚାକିରି କରିପାରିବେନି ଓ ଇଂରେଜ ସରକାରଙ୍କ ଦ୍ୱାରା ତାଙ୍କ ପରିବାରବର୍ଗ ପିଷ୍ଟ ହେବେ ବୋଲି ଏକ ଆଶଙ୍କା ସେମାନଙ୍କ-ଠାରେ ଦେଖାଗଲା । ମୋଟ ଉପରେ ଜାତିପ୍ରାଣର ଉନ୍ନତ ବନ୍ୟା କୂଳ ଲଙ୍ଘି

ଏ ଦେଶର ଗଳକନ୍ଧରେ ଖାଲ ଖମାରେ ପଶି ପାରନ୍ତି ନାହିଁ । ଜାତିପ୍ରାଣରେ ସେ ଦୁରନ୍ତ ବହ୍ନି ଜଳି ଉଠିଲାନାହିଁ ।

ସତ୍ୟବାଦୀର କେତେ ଗୌରବ କାହାଣୀ—ମଧୁବାବୁ, ଆଶୁତୋଷ, ସାର୍ ଏଡ଼ୱାର୍ଡ ଗେଟ୍, ସାର୍ କେ. ଜି. ଗୁପ୍ତ, ମହାତ୍ମା ଗାନ୍ଧି, ମହାତ୍ମା ଆଣ୍ଡ୍ରୁଜଙ୍କ ଆଶା ନୈରାଶ୍ୟ ଅବସାଦରେ ପରିଣତ ହେଲା । 'ନବ୍ୟଭାରତ' ନାମକ ଏକ ବଙ୍ଗଳା-ଦୈନିକ ଯେଉଁ ବିଦ୍ୟାଳୟ ଓ ତାହାର ଋଷିସାଧକମାନଙ୍କୁ ପୁନାର ଗୋଖଲେ ଓ ପାରଂଜପେ ତଥା ବଙ୍ଗଳାର ବିଦ୍ୟାସାଗରଙ୍କ ସହିତ ତୁଳନା କରୁଥିଲା ଓ ଗୋପବନ୍ଧୁ, ନୀଳକଣ୍ଠ, ଆଚାର୍ଯ୍ୟ ହରିହରଙ୍କଠାରେ ଜାତିପ୍ରାଣର ବହ୍ନିକଣା ଦେଖି ସତ୍ୟବାଦୀ ପାଇଁ କେତେ ସୁନେଲି କଳ୍ପନା କରିଥିଲା—ସେ ସବୁ କଳ୍ପନାରେ ରହିଲା ।

୧୯୨୬ ମସିହା ଶିକ୍ଷାବର୍ଷ ଆରମ୍ଭରୁ ସତ୍ୟବାଦୀ ସ୍କୁଲ ବନ୍ଦ ହୋଇଗଲା । ଏତେବେଳକୁ ଗୋପବନ୍ଧୁଙ୍କର କେତେକ ସହକର୍ମୀ ତାଙ୍କ ପାଖଛଡ଼ା ହୋଇ ଯାଇ-ଥିଲେ । ଶେଷବେଳକୁ ସତ୍ୟବାଦୀର ଗୈରିକ ଅସ୍ତରେଖାରେ ସାରଥୀ ଓ ସବ୍ୟସାଚୀ ହୋଇ ରଥ ଚଳାଉଥିଲେ ଗୋପବନ୍ଧୁ ଓ ଆଚାର୍ଯ୍ୟ ହରିହର । ସେ ରଥର ଚକ ବାଲିରେ ଅଟକିଗଲା । ଲକ୍ଷ ଜନତାର ଆର୍ତ୍ତି, ଅସହାୟତାର ବେଦନା ଗୋପବନ୍ଧୁଙ୍କୁ ଆହୁରି ବ୍ୟାପକ ପରିଧି ଭିତରକୁ ହାତ ଠାରିଲା । ଶୋକାକୁଳା ଉତ୍କଳ ଜନନୀ ବିଷଣ୍ଣ ବଦନରେ ଜାତିର ଅଗଣିତ ପୀଡ଼ିତ, ପିଷ୍ଟ ଦୁର୍ଭାଗ୍ୟଗ୍ରସ୍ତଙ୍କ ପାଇଁ କାମ କରିବାକୁ ତାଙ୍କୁ ଇଙ୍ଗିତ ଦେଲା ।

ଥରେ ଆଚାର୍ଯ୍ୟ ହରିହରଙ୍କୁ ବିମର୍ଷ ଦେଖି ଗୋପବନ୍ଧୁ କହିଲେ—"ବେଳେ ବେଳେ ମୁଁ ଭାବୁଛି ଏ ସ୍କୁଲପାଇଁ ଏତେ ଶ୍ରମ ଦେଇ ଲାଭ କ'ଣ ? ଏଠାରେ କିଏ କାମ କରିବ ? ଯେଉଁମାନଙ୍କ ପାଇଁ ଏ ସ୍କୁଲ ଗଢ଼ା ହୋଇଥିଲା, ସେମାନେ ଓଡ଼ିଶାର କେତେ ଅନାମିତ ଗଳକନ୍ଧରେ ଲୋକ ଉପାସରେ, ବନ୍ୟା ମହାମାରୀରେ ଟଳି ପଡ଼ୁଛନ୍ତି । ଯେଉଁମାନେ ବଞ୍ଚିଛନ୍ତି ସେମାନେ ଅସ୍ଥିକଙ୍କାଳସାର । ଲୋକ ଆଉର ଛୁଆ ପେଟରେ ମାଆ ଆହାର ଦେଇପାରୁନି । ରୋଗ ବାଧକାରେ ଔଷଧ ପାଉନି । କାହାପାଇଁ ତା'ହେଲେ ଏ ସ୍କୁଲ ଆଉ ରହିବ ? କିଏ ସେ ଏ ଜାତିର ଶିକ୍ଷା ଓ ସଭ୍ୟତାକୁ ଗଢ଼ି ଥୋଇବ ? ଯାଜପୁର ଓ କେନ୍ଦ୍ରାପଡ଼ାର ବନ୍ୟା ବିପ୍ଲବ କଥା ମୋର ତୁହାଇ ତୁହାଇ ମନେ ପଡ଼ୁଛି । ଆମ ପ୍ରଦେଶ କେଡ଼େ ଭାଗ୍ୟହୀନ ସତେ ? ବୋଧହୁଏ ଆମେ ଏଇ ବନ୍ୟା ଦୁର୍ଭିକ୍ଷରେ ଧଳଧଳ ହୋଇ ମରିବାକୁ ଜନ୍ମିଥାଉଁ । ଗୋପ ଥାନାରେ ଯାହା ମୁଁ ଦେଖି ଆସିଲି ତା' କଳ୍ପନା କରିହେବନାହିଁ । କେତେ ଛାତ୍ର, ଶିକ୍ଷକ, ସ୍ୱେଚ୍ଛାସେବୀ ଅନୁଷ୍ଠାନ ବଡ଼ିରେ କାମ କରୁଛନ୍ତି; କିନ୍ତୁ ଫଳ କ'ଣ ? ଏସବୁ ସମୁଦ୍ରକୁ ଶଙ୍ଖେ ପାଣି ମାତ୍ର ।"

ଗୋପବନ୍ଧୁ ଅତି ବିବ୍ରତ ହୋଇପଡ଼ିଥିଲେ । ସତେ ଯେପରି ଓଡ଼ିଶାକୁ କେନ୍ଦ୍ରକରି ଗୋଟିଏ ପାଖରେ ସେ ଆଉ ଆର ପାଖରେ ପ୍ରାକୃତିକ ବିପର୍ଯ୍ୟୟ । ତା'ର ଅନ୍ତ ନାହିଁ,

ସୀମାନାହିଁ । ଦାରୁଣ ଦୁଃଖରେ ପ୍ରପୀଡ଼ିତ ଓଡ଼ିଶା ଜାତିର ଆଖିରୁ ଲୁହ ନିଭିବାର ସେ ଦେଖିପାରିଲେନି ।

ସତ୍ୟବାଦୀ ସ୍କୁଲ ଭାଙ୍ଗିଗଲା । ପଛରେ ପଡ଼ିରହିଲା ଗୋପବନ୍ଧୁଙ୍କ ଶିକ୍ଷାପ୍ରସାରର ପରିକଳ୍ପନା । ୭ ତାରିଖ ଅଗଷ୍ଟ ୧୯୨୬ରେ ଓଡ଼ିଶାର ପ୍ରିୟବନ୍ଧୁ ଆଣ୍ଡ୍ରୁଜ୍ ଗୋପବନ୍ଧୁଙ୍କ ମାନସିକ ଦୁରବସ୍ଥାକୁ ଲକ୍ଷ୍ୟ କରି ତାଙ୍କୁ ଆଶ୍ୱାସନା ଜଣାଇ ଲେଖିଥିଲେ—"I know, you must have been feeling terrible mental anguish on account of the closure of the Satyabadi school, for you have spent best part of your life for this institution. It would be a still greater shock if that school becomes an aided institution. I realise that it is more painful for you to see it as a Government aided institution than to close it down altogether. This is the condition of all National Institutions except Shanti Niketan and the Gujrat Vidyapitha. These two institutions exist because there are two great men of India behind them."

ଗୋପବନ୍ଧୁଙ୍କ ସାଧନାରେ ଅନ୍ତ ନଥିଲା ; କିନ୍ତୁ ଜାତୀୟ ସଂଗ୍ରାମ ହେତୁ ସେ ସତ୍ୟବାଦୀ ପାଇଁ ଏକନିଷ୍ଠ ହୋଇ ପାରିଲେ ନାହିଁ । ରବିଠାକୁରଙ୍କର ଜାତୀୟ ସଂଗ୍ରାମରେ ସେପରି ଅଂଶ ନଥିଲା । ଫଳରେ ଶାନ୍ତିନିକେତନ ପାଇଁ ସେ ସମ୍ପୂର୍ଣ୍ଣ ଲାଗିପଡ଼ିଥିଲେ । ଗୋପବନ୍ଧୁଙ୍କ କାନରେ ପରାଧୀନ ଜାତିର କରୁଣ କାରୁଣ୍ୟ ଅହରହ ପ୍ରତିଧ୍ୱନିତ ହେଉଥିଲା । ତା'ଆଗରେ ସତ୍ୟବାଦୀର ଏଇ ପରୀକ୍ଷା କେତେ ଶ୍ରେଷ୍ଠ, କେତେ ସୀମିତ ଥିଲା ସତେ !

## ଜଗନ୍ନାଥ ବିଧବା ଆଶ୍ରମ

ଊନବିଂଶ ଶତାବ୍ଦୀରେ ବ୍ରାହ୍ମଣ ପରିବାରର ରକ୍ଷଣଶୀଳତା ପୁରୀ ଶାସନ ମାନଙ୍କରେ ଅତି ଉତ୍କଟ ଥିଲା । ଗ୍ରାମେ ଗ୍ରାମେ ବହୁସଂଖ୍ୟାରେ ବିଧବା ନାରୀ ଜୀବନ ଯନ୍ତ୍ରଣାରେ କାଳ କାଟୁଥିଲେ । ସେମାନଙ୍କ ପାଇଁ ସମାଜରେ ଆଦର ପରିବର୍ତ୍ତେ ଘୃଣା ସ୍ପଷ୍ଟ ପରିଲକ୍ଷିତ ହେଉଥିଲା । ପୁଣି ଜଗନ୍ନାଥ ମନ୍ଦିରରେ ଏହି ଅଭାଗିନୀମାନଙ୍କର ଜାଣିଁ ନିବୃତ ଗୋପବନ୍ଧୁଙ୍କୁ ତରୁଣ କାଳରୁ ଭାବାନ୍ୱିତ କରିଥିଲା । କାର୍ତ୍ତିକ ମାସ ସାରା ହଜାର ହଜାର ବିଧବା ନାରୀ ପୁରୀ ମନ୍ଦିର ବେଢ଼ାରେ ସମାଗତ ହେଉଥିଲେ ଓ ପ୍ରିୟତମର ସ୍ମୃତିରେ ଦୀପାଳି ଜାଳି ହବିଷ୍ୟ ପାଳନ କରୁଥିଲେ । ପୁଣି ବାଲ୍ୟ-ବିଧବାମାନଙ୍କର ସମାଜରେ ଦୁଃଖ ଓ ବିପଦର

ସୀମା ନଥିଲା । ବେଳେ ବେଳେ ସେମାନେ ସମାଜର ଦୁଷ୍ଟ ଲୋକଙ୍କ ନଷ୍ଟ ଆଶାର ଶିକାର ହୋଇ ହିନ୍ଦୁ ସମାଜକୁ କଳଙ୍କିତ କରୁଥିଲେ । ଲଜ୍ଜା ଓ ଦୁଃଖରେ ବହୁ ତରୁଣୀ ବିଧବା ଆତ୍ମହତ୍ୟା ମଧ୍ୟ କରୁଥିଲେ । ଶ୍ୱଶୁରାଳୟର ସନ୍ତୋଷ ବା ପିତ୍ରାଳୟର ନିରାପତ୍ତା ସେମାନଙ୍କ ପାଇଁ ପ୍ରଶ୍ନାୟିତ ହୋଇପଡ଼ିଥିଲା । ପୁରୀ ଜିଲ୍ଲାରେ ଏ ସମସ୍ୟା ପୁଣି ଅତ୍ୟନ୍ତ ଉତ୍କଟ ଭାବରେ ଠିଆ ହୋଇଥିଲା । ଗୋପବନ୍ଧୁ ବ୍ରାହ୍ମଣ ପରିବାରରେ ଜନ୍ମ ହୋଇ ବାଲ୍ୟକାଳରୁ ବିଧବା କମଳାନାମୀଙ୍କ ଯତ୍ନରେ ବଢ଼ି ବିଧବାମାନଙ୍କ ଦୁଃଖର ବ୍ୟଥା ବେଶ୍ ବୁଝିଥିଲେ । ଏହି ଅଭିଶପ୍ତ ମଣିଷମାନଙ୍କ ପାଇଁ ତାଙ୍କ ହୃଦୟରେ ଅସରନ୍ତି ଶ୍ରଦ୍ଧା ଓ ସହାନୁଭୂତି ଭରି ରହିଥିଲା ।

ଗୋପବନ୍ଧୁ ବାଲ୍ୟବିଧବାମାନଙ୍କ ପୁନର୍ବିବାହ ଦେବା ସପକ୍ଷରେ ଚିନ୍ତା କରୁଥିଲେ ଓ ସେମାନଙ୍କୁ ଗ୍ରହଣ କରିବା ପାଇଁ ବହୁ ପ୍ରଗତିଶୀଳ ତରୁଣଙ୍କୁ ପରାମର୍ଶ ଦେଉଥିଲେ ; କିନ୍ତୁ ରକ୍ଷଣଶୀଳ ବ୍ରାହ୍ମଣ ସମାଜରେ ଏ ଉଦ୍ୟମ ବହୁ ବାଧା ଓ ପ୍ରତିକ୍ରିୟା ସୃଷ୍ଟି କରୁଥିଲା । ବ୍ରାହ୍ମଣ ଯୁବକମାନେ ଏପରି କ୍ରାନ୍ତିକାରୀ ଉଦ୍ୟମରେ ପଦକ୍ଷେପ ନେବାକୁ ସହଜେ ଆଗେଇ ଆସୁ ନଥିଲେ । ତେଣୁ ଗୋପବନ୍ଧୁ ଏହି ଦୁର୍ଭାଗ୍ୟ ପ୍ରପୀଡ଼ିତା ନାରୀମାନଙ୍କ ରକ୍ଷଣାବେକ୍ଷଣ ଓ ବସବାସ ପାଇଁ ୧୯୧୭ ମସିହାରେ 'ଜଗନ୍ନାଥ ବିଧବାଶ୍ରମ' ନାମକ ଏକ ଆଶ୍ରମ ପ୍ରତିଷ୍ଠା କଲେ । ଏହି ଅଭାଗିନୀ ନାରୀମାନେ ସ୍ୱାବଲମ୍ବୀ ଭାବରେ ଧର୍ମପୂତ ଜୀବନ ଯାପନ କରିବାପାଇଁ ଗୋପବନ୍ଧୁ ଏହି ଆଶ୍ରମରେ କେତେକ ହସ୍ତଶିଳ୍ପ ପ୍ରଚଳନ କଲେ । ସେମାନଙ୍କ ମଧ୍ୟରୁ କେହି କେହି ଜାତୀୟ କାର୍ଯ୍ୟରେ ଗୋପବନ୍ଧୁଙ୍କ ସହକର୍ମୀ ଭାବରେ ମଧ୍ୟ ଆଗେଇ ଆସିଲେ । ସୂତାକଟା ଓ ଲୁଗାବୁଣା, ଭଗବତ ଚର୍ଚ୍ଚା, ରୋଗୀ ଓ ଶିଶୁସେବା ସେମାନଙ୍କର ପ୍ରଧାନ କାର୍ଯ୍ୟରୂପେ ବିବେଚିତ ହେଲା । ଏହି ଆଶ୍ରମରେ ପ୍ରବେଶ କରିବା ନିମନ୍ତେ କୌଣସି ଜାତିଗତ ବାଛବିଚାର ନଥିଲା ; କିନ୍ତୁ ବ୍ରାହ୍ମଣ ବିଧବାମାନଙ୍କ ଜନ୍ମଗତ ରକ୍ଷଣଶୀଳତା ହେତୁ ଅନ୍ୟମାନେ ଏଠାରେ ପ୍ରବେଶ କରିବା ସହଜ ବ୍ୟାପାର ନଥିଲା ।

ଆଚାର୍ଯ୍ୟ ହରିହର ଦାସ ପ୍ରଥମେ ଏହି ଆଶ୍ରମର ପରିଚାଳନା ଦାୟିତ୍ୱରେ ଥିଲେ । ପରେ ଉତ୍କଟ ଅର୍ଥାଭାବ ହେତୁ ସେ ପରିଚାଳନାରେ ରହିବାକୁ ସମ୍ପୂର୍ଣ୍ଣ ନାରାଜ ହୋଇଥିଲେ । ଫଳରେ ଏହି ଆଶ୍ରମକୁ ଅଗତ୍ୟା ସତ୍ୟବାଦୀକୁ ଉଠାଇ ନିଆଗଲା । ସେଠାରେ ଗୋପବନ୍ଧୁଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହି ଅଭାଗିନୀ ନାରୀମାନେ ଜୀବନ ଯୁଦ୍ଧରେ ପାରିଉଠିବାର ଆବଶ୍ୟକ ତାଲିମ ନେବାକୁ ଲାଗିଲେ । ଏ ପ୍ରସଙ୍ଗରେ ଗୋପବନ୍ଧୁ ୯ । ୫ । ୮ ତାରିଖ 'ସମାଜ'ରେ ଏକ ଆବେଦନ କରି ଲେଖିଥିଲେ—"ବାଲ୍ୟାବସ୍ଥା ଓ ଯୌବନାବସ୍ଥାର ଅନେକ ବିଧବା ପରିବାର ମଧ୍ୟରେ ରହିଛନ୍ତି ଏବଂ କୌଣସି ପ୍ରକାର ଶିକ୍ଷା ଓ ଉଚ୍ଚ ଆଦର୍ଶ ନପାଇବାରୁ ସେମାନଙ୍କର ଅନେକ ସ୍ଥଳେ ଅଧୋଗତି ହେଉଅଛି । ସେମାନେ ଆସି ସତ୍ୟବାଦୀର ଏହି ଆଶ୍ରମରେ ରହିଲେ ଜୀବନରେ ଉନ୍ନତ କରିପାରିବେ ବୋଲି ମୋର ଆଶା । ମୋ ପକ୍ଷେ ସେମାନଙ୍କ ମଧ୍ୟରୁ କେହି ଝିଅ ବା ଭଉଣୀ ପରି ହେବେ । ସତ୍ୟବାଦୀ

ବିଦ୍ୟାଳୟର ବାଳକମାନଙ୍କୁ ସେମାନେ ପୁତ୍ରବତ୍ ପାଳନ କରିବାର ସୁଯୋଗ ପାଇବେ । ସତ୍ୟବାଦୀ ସହର ନୁହେଁ, ପଲ୍ଲୀଗ୍ରାମ । ଏଠାରେ ସେମାନଙ୍କର ନିଭୃତ ଖୁଆଡ଼ ଭିତରେ ରହିବାରେ କୌଣସି ବିପଦ ବା ଲୋକନିନ୍ଦାର ଆଶଙ୍କା ନାହିଁ । ଘରର ମୁରବୀମାନେ ଏ କାର୍ଯ୍ୟର ଉଦ୍ଦେଶ୍ୟ ଓ ମହତ୍ତ୍ୱ ବୁଝି ଏଠାରେ ଆପଣାର ବିଧବା ଝିଅ ବୋହୂଙ୍କୁ ଛାଡ଼ିବାକୁ କୁଣ୍ଠିତ ହେବେନାହିଁ ବୋଲି ମୋର ଆଶା । ଏଠାରେ ଛାଡ଼ିଲେ ଯଥାର୍ଥରେ ମାନହାନି ହେବନାହିଁ, ଧର୍ମ ନଷ୍ଟ ହେବନାହିଁ । ବିଧବାମାନେ ଘରେ ରହି ଯେପରି ସ୍ଥଢରେ ଜୀବନ ନିର୍ବାହ କରୁଛନ୍ତି, ସେଥିରେ ହିଁ ଧର୍ମହାନି ଓ କୁଳନିନ୍ଦା ହେଉଛି । ଏଠାରେ ସେମାନେ ଶିକ୍ଷା ଓ ସେବାରେ ଉପଯୁକ୍ତ ହୋଇ ନିଜ ଜୀବନ ସାର୍ଥକ କରିବେ, ପତି ପିତୃ ଉଭୟ କୁଳର ଗୌରବ ବିଧାନ କରିବେ ଏବଂ ଦେଶର ହିତ ସାଧନ କରିବେ ।"

## ପଦ୍ମ ଘୁଞ୍ଚି ଘୁଞ୍ଚି ଯାଉଛି

ଦୀର୍ଘଦିନ ଧରି ଓଡ଼ିଶା ପ୍ରଦେଶ ଗଠନ ନେଇ ଯେତେ ଆନ୍ଦୋଳନ ଓ ସଭାସମିତି ହୋଇ ଆସୁଥିଲା, ସେ ସମ୍ପର୍କରେ ଓଡ଼ିଶାବାସୀଙ୍କ ପ୍ରକୃତ ଇଚ୍ଛା ଓ ଉଦ୍ଦେଶ୍ୟ ବୁଝିବାପାଇଁ ୧୯୨୭ ମସିହା ଫେବ୍ରୁଆରୀ ମାସର ପ୍ରଥମ ଭାଗରେ ମୁଡ଼ିମାନ୍ ସାହେବ ଓଡ଼ିଶା ଗସ୍ତରେ ଆସିଥିଲେ । ସେ ଯିବା ପରେ ପରେ ୮ । ୨ । ୨୭ ତାରିଖରେ ପଣ୍ଡିତ ନୀଳକଣ୍ଠ ଦାସ କେନ୍ଦ୍ର ଆସେମ୍ବ୍ଲିରେ ଦେଶମିଶ୍ରଣ ପ୍ରସ୍ତାବ ଉତ୍ଥାପନ କରିଥିଲେ । ଓଡ଼ିଶା ଏକ ସବ୍-ପ୍ରଭିନସ୍ ବା ଉପପ୍ରଦେଶ ହୋଇ ରହିବା ବିରୋଧରେ ସେ ଦୃଢ଼ତାର ସହିତ କହି ଶେଷକୁ ଓଡ଼ିଆ ଭାଷାଭାଷୀ ସମଗ୍ର ଅଞ୍ଚଳକୁ ଯେ କୌଣସି ପ୍ରଦେଶ ସହିତ ଶାସନଗତ ସୁବିଧାରୁ ଏକତ୍ର ରଖିବାକୁ ସେ ଦାବୀ କରିଥିଲେ । ତାଙ୍କ ଦାବୀରେ ଓଡ଼ିଶା ବଙ୍ଗଳା ସହିତ ମିଶି ରହିବା ଅଧିକ ସୁବିଧାଜନକ ବୋଲି ପ୍ରତିପନ୍ନ ହୋଇଥିଲେ ; କିନ୍ତୁ କୌଣସି ପ୍ରଦେଶର ଗୋଡ଼ାଣିଆ ବା ଡଳଆଗ୍ରବରେ ଓଡ଼ିଶା ରହି ନପାରେ ବୋଲି ସେ ସ୍ପଷ୍ଟ ଯୁକ୍ତି କରିଥିଲେ । ଗୋପବନ୍ଧୁ ନୀଳକଣ୍ଠଙ୍କ ଉକ୍ତିକୁ ସମର୍ଥନ କରି ପରେ ମନ୍ତବ୍ୟ ଦେଇଥିଲେ—ମୁଡ଼ିମାନ୍ ସାହେବଙ୍କ ମନରେ ଓଡ଼ିଶା କଥା ସଜ ସତେଜ ଥିବାବେଳେ ଦେଶ ମିଶ୍ରଣ ପ୍ରସ୍ତାବ ଉଠାଇବା ବିଚକ୍ଷଣତାର କାର୍ଯ୍ୟ ହୋଇଛି । ଓଡ଼ିଆଙ୍କର ସ୍ୱତନ୍ତ୍ର ଶିଳ୍ପ, ସଭ୍ୟତା ଓ ଜାତୀୟତା କଥା ମୁଡ଼ିମାନ୍ ସ୍ୱୀକାର କରିଛନ୍ତି । ଓଡ଼ିଆମାନଙ୍କ ଜାତୀୟ ସ୍ୱତନ୍ତ୍ରତା ଓ ଜାତୀୟ ଅଭିମାନକୁ ମୂଲ୍ୟ ଦିଆଯିବା ଉଚିତ ବୋଲି ସେ ଅନୁଭବ କରିଛନ୍ତି । ଓଡ଼ିଆମାନେ ସ୍ୱତନ୍ତ୍ର ଶାସନ ଚାହାନ୍ତି—ଏକଥା ସରକାର ଏତେଦିନେ ମାନିଲେ ଓ ହୃଦ୍‌ବୋଧ କଲେ—ଏହା ଭାଗ୍ୟର କଥା । ସବ୍-ପ୍ରଭିନସ୍ କଥା ନୀଳକଣ୍ଠବାବୁ ଉଠାଇ ଥିଲେ ଓଡ଼ିଶାର ମୌଳିକ ଦାବୀ ଜଟିଳ ହୋଇ ପଡ଼ିଥାନ୍ତା । ଆମ୍ଭମାନଙ୍କ ଜାତୀୟ ଆକାଙ୍‌କ୍ଷା ସବୁବେଳେ

ସ୍ପଷ୍ଟ ଓ ଅଭ୍ରାନ୍ତ ଭାଷାରେ ପ୍ରକଟିତ ହେବା ଉଚିତ । ଆମ୍ଭେମାନେ ଏକତ୍ର ହେବା ଲୋଡ଼ୁ—ତା'ପରେ କେଉଁଠି କପରି ରହିବୁ ସେ ପ୍ରଶ୍ନ ଉଠିବ । ସରକାରଙ୍କର ଯେଉଁଠାରେ ଉପସ୍ଥିତ ସୁବିଧା ହେବ ସେଠାରେ ରଖୁ । ନିତାନ୍ତ ଯଦି କୌଣସିଠାରେ କାହା ସହିତ ରହିବାକୁ ହୁଏ, ସମାନସ୍କନ୍ଧ ଭାଇ ହୋଇ ରହିବାକୁ ଓଡ଼ିଶା ଚାହେଁ । କାହାର ତଳିଆ ବା ଅଧୀନରେ ରହିବା ଓଡ଼ିଶାର ଇଚ୍ଛା ନୁହେଁ ।

ଏହି ସମୟରେ କେନ୍ଦ୍ର ଆସମ୍ବ୍ଲିରେ ନୀଳକଣ୍ଠଙ୍କ ପ୍ରସ୍ତାବକୁ ଅନ୍ୟତମ ଓଡ଼ିଆ ସଭ୍ୟ ଶ୍ରୀ ଭୁବନାନନ୍ଦ ଦାସ ସମର୍ଥନ ଜଣାଇ ନଥିଲେ । ତେଣୁ ଗୋପବନ୍ଧୁ ଖେଦ ପ୍ରକାଶ କରି କହିଥିଲେ—"ଶ୍ରଦ୍ଧେୟ ଭୁବନାନନ୍ଦ ବାବୁ ଏହା ବୁଝି ନୀଳକଣ୍ଠଙ୍କ ପ୍ରସ୍ତାବକୁ ପୁରାପୁରି ସମର୍ଥନ କରିଥିଲେ ଭଲ ହୋଇଥାନ୍ତା ।"

× × × ମୁଡ଼ିମାନ୍ ସାହେବ ଓଡ଼ିଆଙ୍କ ଗୌରବ ଗାଇଲେ, ସ୍ୱାତନ୍ତ୍ର୍ୟ ସ୍ୱୀକାର କଲେ, ମାତ୍ର ମଝିରେ ମଝିରେ ଯେ ଟିପ୍ପଣୀ ଖଣ୍ଡେ ଖଣ୍ଡେ ଦେଲେ ତାହା ଦେହରେ ଗନ୍ଧକ ବୋଳି ତା' ଉପରେ ନିଆଁ ଖୁଣ୍ଟା ମାରିଲା ପରି ଲାଗୁଛି । ଓଡ଼ିଆ ଯେପରି ଆଜି ଆଶ୍ରୟ ପାଇଁ ବାରଦ୍ୱାର ଶୁଣ୍ଢିପିଣ୍ଡା ହେଉଛି । ଓଡ଼ିଆ କାହାର ଆଶ୍ରୟରେ ଆଉଜିବାକୁ ଚାହେଁ ନାହିଁ । କାହାର କୁଳୁଆଁ ହେବାକୁ ଚାହେଁ ନାହିଁ । ସେ ତ ଆଗେ ସ୍ୱତନ୍ତ୍ର ଥିଲା, ବରଂ ଅନ୍ୟ କେତେ ଲୋକଙ୍କର ଆଶ୍ରୟ ସ୍ଥଳ ଥିଲା । ଆଜି ମଧ୍ୟ ତାକୁ ସ୍ୱତନ୍ତ୍ର ରଖିଲେ ସେ ଚଳିପାରେ । ତା'ର ଅବସ୍ଥାକୁ ଚାହିଁ ଶାସନ ବ୍ୟବସ୍ଥା କରାଗଲେ କିଛି ଅସୁବିଧା ହେବ ନାହିଁ । ସରକାରଙ୍କ ତରଫରୁ ଏପରି ଟିପ୍ପଣୀ ଶୁଣିଲେ ମନରେ ସନ୍ଦେହ ଶଙ୍କା ହେବାର କଥା । ମୁଡ଼ିମାନ ସାହେବଙ୍କ ସହାନୁଭୂତିରେ ଓଡ଼ିଆଙ୍କର ଯଥାର୍ଥରେ ବିଶ୍ୱାସ ଆସୁନାହିଁ । ଏଭଳି କଥା କେତେ ଶୁଣାଗଲା । ମାତ୍ର ପଦ୍ମ ଘୁଞ୍ଚୁ ଘୁଞ୍ଚୁ ଯାଉଛି । ଭାରତ ସରକାର ନିଜ ଉପରୁ ଦୋଷ ଛଡ଼ାଇ ଦେଇ ଏକ ପ୍ରକାର ବିହାର ସରକାର ଉପରେ ସବୁ ଭାର ପକାଇ ବସିଛି । ଯେତେଦୂର ଜଣାଯାଏ, ବିହାର-ଓଡ଼ିଶା ସରକାର ଏଥି ମଧ୍ୟରେ ଗଞ୍ଜାମ ଓ ଜୟପୁର ଏଜେନ୍ସିର ଆୟ ବ୍ୟୟ ହିସାବ ମଗାଇ ଥିଲେ । ବିହାର ଓଡ଼ିଶା ସରକାର କାର୍ଯ୍ୟ ତତ୍ପରତା ଦେଖାଇଲେ ଶୀଘ୍ର ହେବା ନ ହେବା ଗୋଟିଏ ମୀମାଂସା ହୋଇଯିବା ସମ୍ଭବ । ବର୍ତ୍ତମାନ ବିହାର ଓଡ଼ିଶା କାଉନ୍‌ସିଲର ଓଡ଼ିଶା ସଭ୍ୟମାନେ ଏ ଦିଗରେ ଅଗ୍ରସର ହେବା ଆବଶ୍ୟକ । ମାତ୍ର ଓଡ଼ିଶା ଦେଶ ମିଶ୍ରଣ ବୋଇଲେ କେବଳ ମାନ୍ଦ୍ରାଜ ପ୍ରଦେଶ ଅନ୍ତର୍ଗତ ଓଡ଼ିଆ ଅଞ୍ଚଳ ପ୍ରତି ବିଶେଷ ଭାବରେ ସମସ୍ତଙ୍କର ଦୃଷ୍ଟି ପଡ଼ୁଛି । ସରକାର ମଧ୍ୟ ତାହାହିଁ ଦେଖୁଛି । ଅନ୍ୟାନ୍ୟ ଆଉ ଯେ ଓଡ଼ିଆ ଅଞ୍ଚଳ ସବୁ ରହିଛି ତହିଁର ବ୍ୟବସ୍ଥା କ'ଣ ହେବ ? ଫୁଲଝର, ପଦ୍ମପୁର ସମ୍ପର୍କରେ ସମ୍ବଲପୁରର ଆନ୍ଦୋଳନ କେତେଦୂର ଅଗ୍ରସର ହେଲା ? ଆଉ ଯେତେ ଆଉ ଯେତେ ଓଡ଼ିଆ ବିଚ୍ଛିନ୍ନ ଭାବରେ ପଡ଼ି ରହିଛନ୍ତି ଏବଂ ନିଜର ଭାଷା ଆଶା ଅନେକ ପରିମାଣରେ ହରାଇ ବସିଲେଣି, ସେମାନଙ୍କର ଅବସ୍ଥା କ'ଣ ହେବ ? ଏହା ନିଶ୍ଚିତ ଯେ ସରକାରୀ ସୂତ୍ରରେ ଯଦି ଦେଶମିଶ୍ରଣର କିଛି

ସଫଳତା ହୁଏ, ତଦ୍ୱାରା ଓଡ଼ିଆ ସମସ୍ୟାର ପୂର୍ତ୍ତି ହେବ ନାହିଁ । ଓଡ଼ିଆ ଜାତୀୟତା ରକ୍ଷାର ପୂର୍ଣ୍ଣ ବ୍ୟବସ୍ଥା ହେବ ନାହିଁ । ଏ ବ୍ୟବସ୍ଥା ଭାର ଓଡ଼ିଆଙ୍କ ନିଜ ଉପରେ । ଶୀଘ୍ର ଦେଶମିଶ୍ରଣର ବ୍ୟବସ୍ଥା ନ ହେଲେ ଓଡ଼ିଆ ଶାନ୍ତ ଓ କ୍ଷାନ୍ତ ହେବ ନାହିଁ ବୋଲି ପଣ୍ଡିତ ନୀଳକଣ୍ଠ ଟାଣରେ ବଡ଼ଲାଟ ସଭାରେ କହିଲେ । ଓଡ଼ିଆମାନେ ତାହାର ପ୍ରମାଣ ଦେବା ଲାଗି ଆଜଠୁଁ ପ୍ରସ୍ତୁତ ହେବା ଉଚିତ ।

## ଖୋର୍ଦ୍ଧାରୋଡ଼ରେ ଶ୍ରମିକ ସଭା

୧୯ । ୬ । ୨୭ ତାରିଖରେ ଖୋର୍ଦ୍ଧାରୋଡ଼ ଷ୍ଟେସନରେ ରେଲଓ୍ୱେ ଶ୍ରମିକମାନଙ୍କର ଏକ ସଭାରେ ଗୋପବନ୍ଧୁ ସଭାପତିତ୍ୱ କରିଥିଲେ । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ ଓ ଖଡ଼ଗପୁରର ଶ୍ରମିକ ସଂଘର ଜଣେ ନେତା ଶ୍ରୀଯୁକ୍ତ ପି. କେ. ଦାସ ଏ ସଭାରେ ଯୋଗ ଦେଇଥିଲେ । ସଭାସ୍ଥଳରେ ଖୋର୍ଦ୍ଧାର ସବ୍‌ଡିଭିଜନାଲ୍ ଅଫିସର, ପୁରୀର ପୋଲିସ୍ ସାହେବ, ରେଲଓ୍ୱେର ଜିଲ୍ଲା ଟ୍ରାଫିକ୍ ପରିଚାଳକ ଉପସ୍ଥିତ ଥିଲେ । ବହୁ ସଂଖ୍ୟାରେ ପୋଲିସ୍ କନେଷ୍ଟବଲ ଲମ୍ବାଲାଠି ଧରି ଚାରିଆଡ଼େ ଘେରି ରହିଥିଲେ । ଏ ସଭାରେ ରେଲଓ୍ୱେ କର୍ତ୍ତୃପକ୍ଷଙ୍କ ଅନ୍ୟାୟ ଆଦେଶ ବିରୁଦ୍ଧରେ ପ୍ରତିବାଦ କରାଯାଇଥିଲା । ସଭା ହେବା ବିପକ୍ଷରେ ପୋଲିସ୍ ସାହେବ ଓ ଟ୍ରାଫିକ ପରିଚାଳକ ପ୍ରଥମରୁ ନାନା ଆପତ୍ତି ଉଠାଇଥିଲେ । ମାତ୍ର ସେ ସବୁ ଆପତ୍ତି ଗ୍ରହଣ ନକରି ସଭାପତି ଗୋପବନ୍ଧୁ ବାବୁ ସଭାକାର୍ଯ୍ୟ ଚଳାଇବାକୁ ଆଦେଶ ଦେଲେ । ସଭାପତିଙ୍କ ଅନୁରୋଧ କ୍ରମେ ଖୋର୍ଦ୍ଧାର ସବ୍‌ଡିଭିଜନାଲ୍ ମାଜିଷ୍ଟ୍ରେଟ ସଂକ୍ଷେପରେ କେତୋଟି କଥା କହିଥିଲେ । ଲକ୍ଷ୍ମୀନାରାୟଣ ସାହୁ ଶ୍ରମିକ ସଂଘର ଉପକାରିତା, ସଂଘର ଶକ୍ତି ବଢ଼ାଇବାର ଆବଶ୍ୟକତା ଏବଂ ଏପରି ଆନ୍ଦୋଳନରେ ଶାନ୍ତି ରକ୍ଷାର ପ୍ରୟୋଜନୀୟତା ବିଷୟରେ ଲୋକମାନଙ୍କୁ ସୁନ୍ଦର ରୂପେ ବୁଝାଇଥିଲେ । ପରେ ଜଣେ ପୋଲିସ୍ ସବ୍-ଇନସପେକ୍‌ଟର ରେଲ କମ୍ପାନୀ ପ୍ରତି ଅନୁରକ୍ତ ହେବାପାଇଁ ଏହି ସଭାରେ ଉପଦେଶ ମଧ୍ୟ ଦେଇଥିଲେ ।

ସର୍ବଶେଷରେ ଗୋପବନ୍ଧୁ କହିଲେ—ଏ ଝଗଡ଼ା ମାଲିକ ଓ ମଜୁରିଆଙ୍କ ଭିତରେ । ମଜୁରିଆଙ୍କ ପେଟ ପୂରୁନାହିଁ । ମାଲିକମାନେ ସେମାନଙ୍କ ପେଟରୁ କାଟି ବେଶୀ ବେଶୀ ଲାଭ ନେଉଛନ୍ତି । ପେଟ ନପୂରିବାଯାଏ ସେମାନେ ମଝେ ମଝେ ଗୋଳମାଳ ଲଗାଇବା ସ୍ୱାଭାବିକ । ସେ କହିଲେ—ଧର୍ମଘଟ ବେଆଇନ୍ ନୁହେଁ । ଶାନ୍ତିର ସହିତ ନିଜ ଦାବୀ ହାସଲ ପାଇଁ ଧର୍ମଘଟ କରିବା ନିମନ୍ତେ ସେ ସଭାରେ ପରାମର୍ଶ ଦେଇଥିଲେ । ସବ୍‌ଡିଭିଜନାଲ୍ ଅଫିସର ଓ ଅନ୍ୟାନ୍ୟ ଅଫିସରଙ୍କ ସଦ୍‌ବ୍ୟବହାର ଲାଗି ସେ ତାରିଫ୍

କରିଥିଲେ । ପୋଲିସ ଫୌଜ ଚାରିଆଡ଼େ ଘେରି ରହିଥିଲେ ମଧ୍ୟ ଲୋକେ ଟିକେ ବିଚଳିତ ହୋଇନଥିଲେ ।

ସେତେବେଳେ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ ରାୟ ବାହାଦୂର ଦୟାନିଧି ଦାସ । ୨୮ । ୨ । ୨୭ ତାରିଖରେ ସେ ଦୁଇମାସ ପାଇଁ ପୁରୀ ଜିଲ୍ଲାର ଯେ କୌଣସି ସ୍ଥାନରେ ସଭାସମିତି ଓ ଗୋପବନ୍ଧୁଙ୍କ ବକ୍ତବ୍ୟ ପ୍ରତି ନିଷେଧାଜ୍ଞା ଜାରି କରି ୧୪୪ ଧାରା ନୋଟିସ୍ ଦେଲେ । ଗୋପବନ୍ଧୁଙ୍କ ବକ୍ତୃତାରେ ଉତ୍ତେଜିତ ହୋଇ କେତେଜଣ ରେଲ କର୍ମଚାରୀ କାମ ବନ୍ଦ କରିଛନ୍ତି ଓ ତହିଁ ସଙ୍ଗେ ସଙ୍ଗେ ଶାନ୍ତିଭଙ୍ଗ ଓ ବିଶୃଙ୍ଖଳା ଘଟିଛି ବୋଲି ଏଥିରେ ଅଭିଯୋଗ କରାଯାଇଥିଲା ।

୫ । ୩ । ୨୭ ତାରିଖ ‘ସମାଜ’ରେ ଗୋପବନ୍ଧୁ ସ୍ପଷ୍ଟ ଲେଖିଥିଲେ—“ଲୋକ କାମ ବନ୍ଦ କଲେ ମଧ୍ୟ ଖୋର୍ଦ୍ଧାରୋଡ଼ରେ କୌଣସି ଶାନ୍ତିଭଙ୍ଗ ଏ ପର୍ଯ୍ୟନ୍ତ ସେମାନଙ୍କ ଦ୍ୱାରା ଘଟିନାହିଁ । ମାତ୍ର ଜିଲ୍ଲା ମାଜିଷ୍ଟ୍ରେଟ୍ ବାବୁ ଦୟାନିଧି ଦାସଙ୍କ ମନ୍ତବକୁ ଶାନ୍ତିଭଗ୍ନର ଆଶଙ୍କା ଆସିଲା । ଆମ୍ଭେମାନେ ଓଡ଼ିଆ ମେଜେଷ୍ଟରଙ୍କୁ ପଚାରୁ ସତ୍ୟ ସତ୍ୟ ତାଙ୍କର କି ବିଶ୍ୱାସ ହୋଇଛି ଯେ ଗୋପବନ୍ଧୁ ବାବୁଙ୍କ ବକ୍ତୃତାରେ ଶାନ୍ତି ଭଗ୍ନ ହୋଇଛି ଏବଂ ପୁଣି ଶାନ୍ତି ଭଗ୍ନ ହେବ ? ବ୍ୟାପାରଟା ପୁଣି ଏତେ ଗୁରୁତର ଓ ଜରୁରୀ ସେ ମଣିଥିଲେ ଯେ ନୋଟିସ୍ ଦେବାକୁ ତର ସହିଲା ନାହିଁ । ଏହାକୁ ହିଁ କହନ୍ତି, ‘ନଈ ନଦେଖି ଲଙ୍ଗଳା’ । ସାବାସ୍ ଅତି ସାବଧାନ ମେଜେଷ୍ଟର । ଅତି ତଳୁ ଉଠି ଦେଶୀ (ଓଡ଼ିଆ) ଲୋକ ଜିଲ୍ଲା ହାକମୀ ପାଇଲେ ଏହିଭଳି ଏକା ସବୁଦିନେ ସାବଧାନ ରହିବା ଦରକାର ।”

ଓଡ଼ିଆ ଭାଇଙ୍କର ଏପରି ଆଚରଣ ପାଇଁ ଗୋପବନ୍ଧୁ ଅତି ବ୍ୟଥିତ ହୋଇ ପଡ଼ୁଥିଲେ ଓ ଚାରିଆଡ଼େ ଯେପରି ଏକ ଅନ୍ଧକାର ଘୋଟି ରହିଥିବା ଅନୁଭବ କରୁଥିଲେ ।

## ଲୋକସେବକ ସମାଜ

ଆଗରୁ କୁହାଯାଇଛି—୧୯୨୦ ମସିହା କଲିକତା କଂଗ୍ରେସର ବିଶେଷ ଅଧିବେଶନରେ ଗୋପବନ୍ଧୁ ଲାଲାଜୀଙ୍କୁ ଦେଖିଥିଲେ । ସେ ସ୍ମୃତି ତାଙ୍କ ପାଇଁ ଭୁଲିବାର ନୁହେଁ । ସେ କଥା ସେ ଅତି ଉଚ୍ଛ୍ୱସିତ ଭାବରେ ସତ୍ୟବାଦୀରେ ସବୁ ଶିକ୍ଷକଙ୍କ ଆଗରେ ପ୍ରକାଶ କରିଥିଲେ । ତା’ ପୂର୍ବରୁ ୧୯୧୯ରେ କୋଠଦେଶ ବଢ଼ିବେଳେ ଲାଲାଜୀ ଲୋକସେବକ ସମାଜ ତରଫରୁ ଲାଲାମୋହନଲାଲଙ୍କୁ ଓଡ଼ିଶା ପଠାଇ ଥିଲେ । ଏହି ସମୟରେ ମୋହନଲାଲଙ୍କ ସହିତ ଗୋପବନ୍ଧୁଙ୍କର ବନ୍ଧୁତା ସ୍ଥାପିତ ହୋଇଥିଲା ଓ ପରୋକ୍ଷରେ ଗୋପବନ୍ଧୁ ଲାଲାଜୀଙ୍କ ପ୍ରତି ଆସକ୍ତ ହୋଇ ପଡ଼ିଥିଲେ । ୧୭ । ୪ । '୨୫ ତାରିଖରେ ନିଜେ ଲାଲାଜୀ ପୁରୀ ଆସିଲେ ଏବଂ ଘଟଣାକ୍ରମେ ସେତେବେଳେ ପୁରୀରେ ‘ସମାଜ’

ପ୍ରତିଷ୍ଠାନରେ ସେ ଅତିଥି ଭାବରେ ଉପସ୍ଥିତ ରହିଥିଲେ । ଭାରତୀୟ ହିନ୍ଦୁ ମହାସଭାର ଶାଖା ଗଠନ କରିବାରେ ଲାଲାଜୀ ସେତେବେଳେ ଅପ୍ରାଣ ଲାଗିଥାନ୍ତି । ଗୋପବନ୍ଧୁ, ଲିଙ୍ଗରାଜ ଓ. 'ସମାଜ' ପ୍ରେସର ତତ୍କାଳୀନ ମ୍ୟାନେଜର ଶ୍ରୀ ରାଧାନାଥ ରଥ ଏହି ପୁରୀ ରହଣୀ କାଳରେ ଲାଲାଜୀଙ୍କ ସମ୍ପର୍କରେ ଅଧିକ ଆସିଥିଲେ ।

୧୯ ତାରିଖ ଦିନ ପୁରୀରେ ଏକ ସାଧାରଣ ଜନସଭାର ଆୟୋଜନ ହେଲା । ଏହି ସଭାରେ ଲାଲାଜୀ ହିନ୍ଦୁ ମହାସଭା ଗଠନର ଉଦ୍ଦେଶ୍ୟ ସମ୍ପର୍କରେ ବିସ୍ତୃତଭାବରେ ତାଙ୍କ ବକ୍ତବ୍ୟରେ ବିଶ୍ଳେଷଣ କରିଥିଲେ । ସେ ତାଙ୍କ ଭାଷଣରେ କହିଲେ ଯେ, ଭାରତର ସ୍ୱାଧୀନତା ଆମ ସମସ୍ତଙ୍କର କାମ୍ୟ ହେଲେ ମଧ୍ୟ ଏକ ଅର୍ଦ୍ଧମୃତ ନିଶ୍ଚେତନ ଜାତି ପାଇଁ ଏହା ଏକମାତ୍ର କାମନା ନୁହେଁ । ଭାରତ ଏକ ବହୁ ଧର୍ମ ମତବାଦର ଦେଶ । ଏଠାରେ ବାସକରୁଥିବା ମୁସଲମାନ୍ ଓ ଖ୍ରୀଷ୍ଟିୟାନ୍‌ମାନେ ଯେତେବେଳେ ସେମାନଙ୍କ ଧର୍ମକୁ ଦୃଢ଼ଭାବରେ ଧରି ରଖିଛନ୍ତି, ଆଚାର ଓ ପରଂପରାରେ ଫୁଟାଉଛନ୍ତି, ସେତେବେଳେ ହିନ୍ଦୁମାନେ ନିଜ ଧର୍ମ ଦିଗରେ ଅତି ଉଦାସୀନ ହୋଇ ବେଳେ ବେଳେ ଅନ୍ୟ ଧର୍ମକୁ ନିର୍ବିଘ୍ନରେ ଗ୍ରହଣ କରି ବସୁଛନ୍ତି । ଭାରତର ଏହି ଜନସଂଖ୍ୟା ବିପୁଳ ସଂଖ୍ୟକ ହିନ୍ଦୁଙ୍କୁ ନେଇ ଗଠିତ । ଯଦି ହିନ୍ଦୁମାନେ ନିଜ ଧର୍ମ ପ୍ରତି ଶ୍ରଦ୍ଧା ଓ ସମ୍ମାନ ପ୍ରକାଶ ନକରି ଅନ୍ୟ ଧର୍ମ ଦ୍ୱାରା ପ୍ରଲୋଭିତ ହୁଅନ୍ତି, ତେବେ ସେମାନେ ସ୍ୱାଧୀନତା ହାସଲ କରିବା ପାଇଁ କିପରି ସମର୍ଥ ହେବେ ? ତାଙ୍କର ଏଥିପାଇଁ ଯୋଗ୍ୟତା କାହୁଁ ଆସିବ ? ଲାଲାଜୀ ତେଣୁ ଗୋପବନ୍ଧୁଙ୍କୁ ତଥା ତାଙ୍କ ସହକର୍ମୀମାନଙ୍କୁ ହିନ୍ଦୁ ଧର୍ମର ପବିତ୍ରତା ତଥା ପ୍ରାଧାନ୍ୟକୁ କଂଗ୍ରେସର ସମସ୍ତ କାର୍ଯ୍ୟ ପରିସର ଭିତରେ ବଞ୍ଚେଇ ରଖିବାକୁ ଏବଂ ହିନ୍ଦୁମାନଙ୍କ ସଙ୍ଗଠନକୁ ମଜଭୁତ କରିବାପାଇଁ ପରାମର୍ଶ ଦେଇଥିଲେ । ଗୋପବନ୍ଧୁଙ୍କ ଉଦ୍ୟମରେ ଓଡ଼ିଶାରେ ହିନ୍ଦୁ ମହାସଭାର ଶାଖା ଗଠିତ ହେଲା । ଶ୍ରୀ ଧନପତି ବାନାର୍ଜୀ ଓ ପଣ୍ଡିତ ନୀଳକଣ୍ଠ ଯଥାକ୍ରମେ ଏହି ଅନୁଷ୍ଠାନର ପ୍ରଦେଶ ଶାଖା ସଭାପତି ଓ ସମ୍ପାଦକ ରହିଲେ ।

ଲାଲାଜୀ ୨୮ । ୧ । ୧୯୨୬ ତାରିଖରେ ଏ ସମ୍ପର୍କରେ ଏକ ପତ୍ରରେ ଗୋପବନ୍ଧୁଙ୍କୁ ଲେଖିଥିଲେ, "ପ୍ରିୟ ଗୋପବନ୍ଧୁ, ଏଣିକି ତୁମକୁ ଗୋପବନ୍ଧୁ ବୋଲି ଡାକିବାର ସ୍ୱାଧୀନତା ମୁଁ ନେଉଛି । ତୁମ ଚିଠି ପାଇଛି ଓ ଅନୁଧ୍ୟାନ ମଧ୍ୟ କରିଛି । ତୁମ ପ୍ରଦେଶରେ ହିନ୍ଦୁ ମହାସଭାର ସମସ୍ତ ଦାୟିତ୍ୱ ତୁମ ଉପରେ ସମର୍ପିଦେଲେ ମୁଁ ଅତିମାତ୍ରାରେ ଆଶ୍ୱସ୍ତ ଓ ଆନନ୍ଦିତ ହେବି । ଖୁବ୍ ଶୀଘ୍ର ଅଫିସରୁ ତୁମେ ଏ ସମ୍ପର୍କରେ ଚିଠି ପାଇଯିବ । ମୁଁ ବର୍ତ୍ତମାନ ଏତେ ବ୍ୟସ୍ତ ଅଛି ଯେ, ତୁମ ପାଖକୁ ଚାହିଁଲେ ମଧ୍ୟ ଦୀର୍ଘ ଚିଠିଟିଏ ଲେଖି ପାରୁନାହିଁ ; କିନ୍ତୁ ଶୀଘ୍ର ଲେଖିବାର ଆଶା ରଖୁଛି । ସ୍ନେହ ସହ ।"

ପୁଣି ଫେବୃୟାରୀ ମାସରେ ଗୋପବନ୍ଧୁଙ୍କର ଲାହୋରଠାରେ ଲାଲାଜୀଙ୍କ ସହ ସାକ୍ଷାତ ହେଲା । ଲାଲାଜୀ ଅତି ଆନ୍ତରିକତାର ସହିତ କହିଲେ—"ଗୋପବନ୍ଧୁ, ତୁମେ 'ଲୋକସେବକ ସମାଜ'ର ସଭ୍ୟ ହେଲେ ପଚିଶ ବର୍ଷ ଧରି ଯେଉଁ କାମ କରି ଆସିଅଛ

ତାହା ଅନ୍ତର ପ୍ରକଟିତ ହୋଇ ପାରିବ । ତୁମକୁ ପାଇଲେ ଆମେ ଆପଣାକୁ ଭାଗ୍ୟବାନ ମନେ କରିବୁ । ତୁମର ଲୋକସେବକ ମୂଳକ କାମ ମଧ୍ୟ ଶୃଙ୍ଖଳିତ ଭାବରେ ଆଗେଇ ପାରିବ । ଏଥିପାଇଁ ଆନୁଷ୍ଠାନିକ ଭିତ୍ତି ଓ ଉଦ୍ୟମ ଦରକାର । ତୁମ ସ୍ୱାଧୀନ ଚିନ୍ତା ଓ ମତବାଦରେ କେହି ହସ୍ତକ୍ଷେପ କରିବେ ନାହିଁ ।”

ଲାଲାଜୀଙ୍କର ଏହି ଶ୍ରଦ୍ଧାପୂର୍ଣ୍ଣ କଥା ଗୋପବନ୍ଧୁଙ୍କୁ ସ୍ପର୍ଶ କଲା । କିଛି ଦିନ ଚିନ୍ତାରୁ ସେ ଲୋକସେବକ ସମାଜର ସଭ୍ୟଭାବରେ ତାଙ୍କୁ ସ୍ୱୀକୃତି ଦେଇଥିଲେ । ଏହି ଭାରତବ୍ୟାପୀ ସଂସ୍ଥା ମାଧ୍ୟମରେ ଓଡ଼ିଶାର ଦରିଦ୍ର ନର-ନାରାୟଣଙ୍କର ଅଧିକ ସେବା କରି ପାରିବେ ବୋଲି ଗୋପବନ୍ଧୁଙ୍କର ହୃଦ୍‌ବୋଧ ହୋଇଥିଲା ।

୧୯୨୬ ମସିହା ଫେବୃୟାରୀ ୧୮ ତାରିଖରେ ସେ ଲାଲାଜୀଙ୍କ ପାଖକୁ ଏକ ଦୀର୍ଘ ପତ୍ରରେ ଓଡ଼ିଶା ପାଇଁ କାର୍ଯ୍ୟକ୍ରମର ଏକ ଚିଠା ଉପସ୍ଥାପିତ କରିଥିଲେ । ପଣ୍ଡିତ ଗୋଦାବରୀଶ, ଶ୍ରୀ ନନ୍ଦକିଶୋର ଦାସ, ଶ୍ରୀ ମଥୁରାନନ୍ଦ ମହାନ୍ତି ଓ ରାଧାନାଥ ରଥଙ୍କୁ ଲୋକସେବକ ସମାଜର ସଭ୍ୟଭାବରେ ଗ୍ରହଣ କରିବାକୁ ଗୋପବନ୍ଧୁ ପ୍ରସ୍ତାବ ଦେଇଥିଲେ । ଏହି ସଂସ୍ଥାର ସଂଗଠନ, ପରିବର୍ଦ୍ଧନ, ପାଠଚକ୍ର ଆୟୋଜନ, ଯୁବ ତାଲିମ ଓ ସଭା ସମିତି, ବନ୍ୟା ସାହାଯ୍ୟ କାର୍ଯ୍ୟ ଆଦି ସହିତ ଦୁଇଟି ମୂଲ୍ୟବାନ୍ କାର୍ଯ୍ୟକ୍ରମ ଗ୍ରହଣ କରିବାପାଇଁ ସେ ଲାଲାଜୀଙ୍କୁ ଲେଖିଥିଲେ । ପ୍ରଥମତଃ ଓଡ଼ିଶାର ଗ୍ରାମମାନଙ୍କରେ ଆର୍ଥିକାର୍ଥିକ, ସ୍ୱାସ୍ଥ୍ୟ ଓ ଶିକ୍ଷାଗତ ପୁନର୍ଗଠନ । ଅଶିକ୍ଷା ଓ ଦାରିଦ୍ର୍ୟ ଓଡ଼ିଶାର ପ୍ରଗତିର ପ୍ରଧାନ ପ୍ରତିବନ୍ଧକ ଭାବରେ ଠିଆ ହୋଇଛି । ଏ ଦେଶର ଲୋକ ଏତେ ଦରିଦ୍ର ଯେ, ରୋଗ ବାଧକାରେ ଔଷଧ ଓ ପଥ୍ୟ ଖାଇବାପାଇଁ ସେମାନଙ୍କର ସମ୍ବଳ ନାହିଁ । ତେଣୁ ଅସମୟରେ ମୃତ୍ୟୁର ଶିକାର ହେବା ସାର ହେଉଛି । ଦ୍ୱିତୀୟରେ ଶ୍ରମିକ ସଂଗଠନ । ମଜୁରି ଅଭାବରୁ ଓଡ଼ିଶାର ଲୋକେ କଲିକତା, ଜାଲମାଟି, ରେଙ୍ଗୁନ୍ ଓ ଆସାମକୁ ଚାଲି ଯାଉଛନ୍ତି । ସେମାନେ ପୁଣି ସେମାନଙ୍କ ଅନ୍ନଦାତାରୁ ଯାହା ପାଇବାର କଥା ସେ ପ୍ରାପ୍ୟରୁ ବଞ୍ଚିତ ହେଉଛନ୍ତି । ନିଜ ଶ୍ରମର ଦାବୀ ସେମାନେ ବୁଝିନାହାନ୍ତି । ସେଥିପାଇଁ ସଂଗଠନ ମଧ୍ୟ ନାହିଁ । ଏହି କାମ ପାଇଁ ବହୁ ଅର୍ଥ ଓ କର୍ମୀ ଆବଶ୍ୟକ । ଲୋକ କ୍ରମେ କ୍ରମେ ତାଲିମ ପାଇ ଏ କାମରେ ଲାଗିଲେ ମଧ୍ୟ ଅର୍ଥ ପ୍ରଧାନ ଅନ୍ତରାୟ ଭାବରେ ଠିଆ ହେବ । ଲୋକଙ୍କ ଭିତରେ ଅଭାବ ଏତେ ଉତ୍କଟ ଭାବରେ ରହିଛି ଯେ, ରାଜନୈତିକ ତଥା ସାମାଜିକ ଚେତନା ସେମାନଙ୍କଠାରେ ଆଦୌ ଦେଖାଯାଉ ନାହିଁ । କିନ୍ତୁ କାମ ଆରମ୍ଭ ହେଲା ପରେ ଯେ କ୍ରମେ କ୍ରମେ ସମ୍ବଳ ଆସିଯିବ—ଏଥିରେ ମୋର ସନ୍ଦେହନାହିଁ । ଲୋକେ ମଧ୍ୟ ଏହାର ଉପଯୋଗିତା ଉପଲବ୍ଧି କରିପାରିବେ । ମୁଁ କଲିକତାରେ ଗୋଟିଏ ଶ୍ରମିକ ସଂଗଠନ ଆରମ୍ଭ କରିଥିଲି । ବର୍ଷେ ଚାଲିଲା ପରେ ଏହା ଆତ୍ମନିର୍ଭରଶୀଳ ହୋଇ ପାରିଥାନ୍ତା ; କିନ୍ତୁ ମୋର ଦୁଇବର୍ଷ ଜେଲ୍ ରହଣି କାଳରେ ସବୁ ଗୋଳମାଳ ହୋଇଗଲା । ସଂଗଠନ ପ୍ରାୟ

ଅଚଳ ହୋଇପଡ଼ିଲା । ଏହି ସଂଗଠନକୁ ପୁନର୍ଜୀବିତ କରିବାକୁ ହେବ । ବର୍ତ୍ତମାନ ଛ'ମାସ ଏହାକୁ ଚଳେଇବା ପାଇଁ ଅର୍ଥ ଆବଶ୍ୟକ । ମୁଁ ଏହି ସଂଗଠନର ସକ୍ରିୟତା ପାଇଁ ଆଶା ରଖୁଛି ।

ଶେଷକୁ ଗୋପବନ୍ଧୁ ଲେଖିଥିଲେ ଯେ—"ଏ ଚିଠି ବହୁତ ଦୀର୍ଘ ହୋଇଗଲା ବୋଲି ମୁଁ ଶଙ୍କିତ । ମୁଁ ଏଇମାତ୍ର କଟକରେ ଏକ ବନ୍ୟାବିଧ୍ୱସ୍ତ ଗ୍ରାମାଞ୍ଚଳକୁ ବାହାରୁଛି । ମୁଁ ସପ୍ତାହକ ମଧ୍ୟରେ ଫେରି ଆସିବି । ସେତେବେଳେ ଆପଣଙ୍କ ଉତ୍ତର ପୁରୀ ଠିକଣାରେ ପାଇବି ବୋଲି ଆଶା ରଖୁଛି ।

ଗୋପବନ୍ଧୁଙ୍କ ପାଖୁ ୧୧ ମାର୍ଚ୍ଚ ୧୯୨୭ ତାରିଖରେ ଲାଲଜୀ ଯେଉଁ ପତ୍ର ଦେଇଥିଲେ, ସେଥିରେ ଗୋପବନ୍ଧୁଙ୍କ ହାତରେ ହିନ୍ଦୁ ମହାସଭା ସଂଗଠନର ସମସ୍ତ ଦାୟିତ୍ୱ ଟେକିଦେବା ପାଇଁ ସିଦ୍ଧାନ୍ତ କରିଥିବା କଥା ଜଣାଇଥିଲେ । ଓଡ଼ିଶାର ସାହାଯ୍ୟ କାର୍ଯ୍ୟ ସମ୍ପର୍କରେ ସମସ୍ତ ଦାୟିତ୍ୱ ଏହି ଅନୁଷ୍ଠାନ ତରଫରୁ ଗୋପବନ୍ଧୁଙ୍କ ଉପରେ ନ୍ୟସ୍ତ ହେଲା ଓ ଏଥିପାଇଁ ୧୦,୦୦୦ଟଙ୍କାରୁ ସାମାନ୍ୟ ଊର୍ଦ୍ଧ୍ୱ ଏକ ପାଣ୍ଠି ଗୋପବନ୍ଧୁଙ୍କ ହାତରେ ଦିଆଯିବାର ନିଷ୍ପତ୍ତି ଲାଲଜୀ ଜଣାଇଥିଲେ । ଏହା ବ୍ୟତୀତ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶାର ଚିତ୍ର ତଥା ସାହାଯ୍ୟ ପାଇଁ ନିବେଦନ The Tribune ଓ The People ପତ୍ରିକାରେ ପ୍ରକାଶନ ନିମନ୍ତେ ଲାଲଜୀ ପଠାଇଥିଲେ । ଏହି ସହଯୋଗ ଗୋପବନ୍ଧୁଙ୍କୁ ଅଧିକ ଉତ୍ସାହିତ କରିଥିଲା ଓ ସେ ଅଧିକ ସାହସର ସହିତ ଲୋକମାନଙ୍କ ଦୁର୍ଦ୍ଦଶାର ସମ୍ମୁଖୀନ ହୋଇଥିଲେ ।

ଏହା ପରେ ପରେ 'ଲୋକସେବକ ସମାଜ'ର ଏକ ଶାଖା କଟକରେ ପ୍ରତିଷ୍ଠିତ ହେଲା ଓ ଗୋଟିଏ ଭଡ଼ାଘରେ ଏହି ସଂସ୍ଥା ତରଫରୁ ପାଠାଗାରଟିଏ ପରିଚାଳିତ ହେଲା । 'ସମାଜ' ଏକ ସ୍ୱାଧୀନ ମତବାଦ ସମ୍ବାଦପତ୍ର ଥିଲେ ମଧ୍ୟ 'ଲୋକସେବକ ସମାଜ'ର ମୁଖପତ୍ର ଭାବେ କାର୍ଯ୍ୟ କଲା । କଟକ ଓ ପୁରୀର ବନ୍ୟା ଦୁର୍ଗତ ଅଞ୍ଚଳରେ ଲୋକସେବକ ସମାଜ ତରଫରୁ ଗୋପବନ୍ଧୁଙ୍କ ନେତୃତ୍ୱରେ ଗଠିତ 'ଓଡ଼ିଶା ରିଲିଫ ଫଣ୍ଡ' ଆନୁକୂଲ୍ୟରେ ସ୍ୱଦେଶୀ ଧାନକୁଟା କେନ୍ଦ୍ର ସ୍ଥାପିତ ହୋଇଥିଲା । ଓଡ଼ିଶାର ଦଳିତ ଓ ହରିଜନ ଜାତି ତଥା କଲିକତାର ଶ୍ରମିକ ସଂଗଠନ ପାଇଁ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ଏହି କାର୍ଯ୍ୟର ପରିସର ପରିବ୍ୟାପ୍ତ ହେବାରୁ ଗୋପବନ୍ଧୁ ତାଙ୍କ ସହକର୍ମୀ ଭାବରେ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କୁ ଏହି ସଂସ୍ଥାର ଦ୍ୱିତୀୟ ସର୍ବସ୍ୱ ସଭ୍ୟ ଭାବରେ ବାଛି ନେଲେ । ଓଡ଼ିଶାରେ ବହୁ ଜନହିତକର କାର୍ଯ୍ୟକ୍ରମ ଅତି ସୁଚାରୁରୂପେ ଏଣିକି ପରିଚାଳିତ ହେଲା ।

୨୫ । ୩ । ୨୭ ତାରିଖରୁ ଧନପତ ଧର ଲାହୋରରେ ଲୋକସେବକ ସମାଜର ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ସମଗ୍ର ଭାରତରେ ମାତ୍ର ବଛା ବଛା ପନ୍ଦର ଜଣ ବ୍ୟକ୍ତି ଏହି ସମାଜର ଆଜୀବନ ସଭ୍ୟ ନିର୍ବାଚିତ ହୋଇଥିଲେ । ଏହି ଉତ୍ସବରେ ତତ୍କାଳୀନ କଂଗ୍ରେସ ସଭାପତି ଶ୍ରୀଯୁକ୍ତ ଶ୍ରୀନିବାସ ଆୟଙ୍ଗାର ସଭାପତିତ୍ୱ କରିଥିଲେ । ସେଠ୍ ଯମୁନାଲାଲ,

ମଗନଲାଲ, ଗାନ୍ଧି, ଶଙ୍କରଲାଲ୍ ବ୍ୟାଙ୍କର୍, ଶ୍ରୀମତୀ ସରୋଜିନୀ ନାଇଡୁ, ଲାଲ ଦୁନିଚାନ୍ଦ ପ୍ରଭୃତି ତତ୍କାଳୀନ ବହୁ ବିଶିଷ୍ଟ କଂଗ୍ରେସ ନେତା ଏହି ଉତ୍ସବରେ ଯୋଗଦେଇଥିଲେ ।

ଉତ୍କଳମଣି ଗୋପବନ୍ଧୁ 'ଲୋକସେବକ ସମାଜ'ର ବାର୍ଷିକ ଉତ୍ସବରେ ଯୋଗଦେଇ ବ୍ୟାପକ ଅନୁଭୂତି ନେଇ ଫେରି ଆସିଲେ । ୨୧ । ୫ । ୨୭ ତାରିଖ 'ସମାଜ'ରେ ସେ 'ଲୋକସେବକ ସମାଜ'ର ନୀତି, ଆଭିମୁଖ୍ୟ ଓ ଲକ୍ଷ୍ୟ ସମ୍ପର୍କରେ ବିସ୍ତୃତ ଭାବରେ ଆଲୋଚନା କରି ଲେଖିଥିଲେ—"ଧର୍ମ, ସମାଜ, ରାଜନୀତି ଆଦି କୌଣସି ବିଷୟରେ ଏ ସମାଜର ସ୍ୱତନ୍ତ୍ର ସାମ୍ପ୍ରଦାୟିକ ନୀତି ନାହିଁ । ଲୋକ ସେବା, ଦେଶାନୁରାଗ ଓ ଜାତୀୟତା ଏହାର ନୀତି ଓ ଭିତ୍ତି । ସୁତରାଂ ଯେ କୌଣସି ମତ ବା ଦଳର ବ୍ୟକ୍ତି ଏଥିରେ ସଭ୍ୟ ହୋଇପାରିବେ । 'ଭାରତ ସେବକ ସମିତି'ର ଏକ ନିର୍ଦ୍ଦିଷ୍ଟ ରାଜନୈତିକ ନୀତି ଅଛି । ସଭ୍ୟମାନେ ସେ ନୀତିରୁ ବହିର୍ଭୂତ ହୋଇ ପାରିବେ ନାହିଁ । ତେଣୁ ଅସହଯୋଗ ଆନ୍ଦୋଳନ ସମୟରେ କୌଣସି କୌଣସି ଲୋକଙ୍କର ଅସହଯୋଗରେ ବିଶ୍ୱାସ ଓ ଅଭିମତ ଥିଲେ ସୁଦ୍ଧା ସମିତିର ମୂଳ ନୀତିରେ ବାଧ୍ୟ ଥିବାରୁ ସେମାନେ ଇଚ୍ଛା ଅନୁସାରେ କାର୍ଯ୍ୟ କରିପାରିଲେ ନାହିଁ । ୧୯୨୭ ସାଲ ଫେବୃୟାରୀ ମାସରେ ଲାଲା ଲଜପତ ରାୟ ମୋତେ ଯେତେବେଳେ ଏ ସମାଜରେ ଯୋଗ ଦେବାକୁ ପ୍ରବର୍ତ୍ତାଇଲେ, ସେ ମୋତେ ଏହି ମତ-ସ୍ୱାତନ୍ତ୍ର୍ୟର କଥା କହିଲେ । ମୁଁ ମଧ୍ୟ ଏହାହିଁ ଏ ସମାଜର ବିଶେଷତ୍ୱ ବୋଲି ମନେକରେ । ଯଥାର୍ଥରେ 'ଲୋକସେବକ ସମାଜ' ରାଜନୈତିକ, ସାମାଜିକ ବା ଧର୍ମ ସଂଘ ନୁହେଁ । ଦେଶସେବା ନିମନ୍ତେ ଯେ ପ୍ରସ୍ତୁତ ସେ ଏଥିରେ ସଭ୍ୟ ହୋଇପାରନ୍ତି । ଉଦାରତା, ସହିଷ୍ଣୁତା ଓ ଅନ୍ୟର ମତ ପ୍ରତି ଆସ୍ଥା ଏ ସମାଜର ସଭ୍ୟମାନଙ୍କର ପ୍ରଧାନ ଗୁଣ ଓ ଧର୍ମ ହେବା ଉଚିତ । ଏହି ମତର ସ୍ୱତନ୍ତ୍ରତା ହେତୁ ଗଲା କାଉନସିଲ ନିର୍ବାଚନରେ ଲାଲାଜୀ ସ୍ୱାଧୀନ କଂଗ୍ରେସ ଦଳ ପାଇଁ ଲଢ଼ୁଥିବାବେଳେ ମୁଁ ଓଡ଼ିଶାରେ କଂଗ୍ରେସ ଦଳର ସଭ୍ୟମାନଙ୍କ ପାଇଁ ଚେଷ୍ଟା କରୁଥିଲି । ଏ ସମାଜର ଆଉ ଜଣେ ଦୁ'ଜଣ ମଧ୍ୟ ଲାଲାଜୀଙ୍କ ମତରୁ ଅଲଗା ହୋଇ କାମ କରୁଥିଲେ । ଏଥିରେ ଆମ୍ଭମାନଙ୍କ ମଧ୍ୟରେ କୌଣସି ପ୍ରକାର ବିବାଦ ବା ମନାନ୍ତର ଘଟି ନାହିଁ । ବରଂ ନିଜ ମତ ଅନୁସାରେ କାମ କରିବାର ସୁଯୋଗ ପାଇବା ଫଳରେ ପରସ୍ପର ପ୍ରତି ଶ୍ରଦ୍ଧା ଓ ସମ୍ମାନ ଜାଗ୍ରତ ହୋଇଛି । ଗଲା କାଉନ୍‌ସିଲ ନିର୍ବାଚନରେ କଂଗ୍ରେସ ସପକ୍ଷ ଓ ବିପକ୍ଷରେ ଯେ ଯାହା କାର୍ଯ୍ୟ କରିଥିଲେ ତାହା ସମାଜର ରିପୋର୍ଟରେ ପ୍ରକାଶ ପାଇଛି ।

ଲୋକସେବକ ସମାଜ ପୂର୍ଣ୍ଣ ସାଧାରଣତନ୍ତ୍ର ନୀତି ଉପରେ ପ୍ରତିଷ୍ଠିତ । ବିଶୁଦ୍ଧ ଦେଶାନୁରାଗ ଓ ନୈଷ୍ଠିକ ଲୋକସେବା ଏହାର ସାଧାରଣ ମୂଳମନ୍ତ୍ର । ଏହି ମନ୍ତ୍ରରେ ସମସ୍ତ ସଭ୍ୟଙ୍କୁ ଆବଦ୍ଧ ଓ ଅନୁପ୍ରାଣିତ କରିବାକୁ ହେବ । ସ୍ୱାଧୀନତାର ଅନୁଭୂତିରେ ପ୍ରତ୍ୟେକ ସଭ୍ୟର ଉତ୍ସାହ ଓ ଉଦ୍ୟମ କାର୍ଯ୍ୟକ୍ଷେତ୍ରରେ ସ୍ୱଚ୍ଛନ୍ଦ ବିକାଶର ଅବକାଶ ପାଇବ ।"

ପରେ ଶ୍ରୀ ନନ୍ଦକିଶୋର ଦାଶ ଓ ଶ୍ରୀ ମଥୁରାନନ୍ଦ ମହାନ୍ତି ଲୋକ ସେବକ ସମାଜରୁ ସେମାନଙ୍କ ସମ୍ପର୍କ ତୁଟାଇ ଦେଇଥିଲେ; କିନ୍ତୁ ଲିଙ୍ଗରାଜ ମିଶ୍ର ଶେଷ ପର୍ଯ୍ୟନ୍ତ 'ଲୋକସେବକ ସମାଜ'ର ସଭ୍ୟ ଥିଲେ ।

ଡିସେମ୍ବର ୨୩ ତାରିଖ ୧୯୨୭ ମସିହାରେ ଗୋପବନ୍ଧୁ ଲାଲାଜୀଙ୍କ ପାଖକୁ ଯେଉଁ ପତ୍ର ଲେଖିଥିଲେ, ସେଥିରେ ତାଙ୍କ ବ୍ୟକ୍ତିତ୍ୱର ବିକଚ ବିକାଶ ଘଟିଥିଲା । ବିନମ୍ର ଓ ଆତ୍ମପ୍ରତ୍ୟୟର ବାଣୀ ବହନ କରି ଏ ପତ୍ର ପଞ୍ଜାବକେଶରୀ ଲାଲାଜୀଙ୍କୁ ବିସ୍ମିତ କରିଦେଇଥିଲା । ଗୋପବନ୍ଧୁ ଲେଖିଥିଲେ—"ଆପଣ ଓଡ଼ିଶାରେ ମୋର କାର୍ଯ୍ୟକଳାପକୁ ବାହାର କାଗଜମାନଙ୍କରେ ପ୍ରକାଶ କରିବାକୁ ଚାହୁଁଛନ୍ତି; କିନ୍ତୁ ତା ମୋର ପ୍ରକୃତ ନୁହେଁ । ଦେଶରେ ନାଆଁ ଓ ସମ୍ମାନ କମେଇବାରେ ମୋର ଆଦୌ ଆଗ୍ରହ ନାହିଁ । ମୋର ଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ ଦେଶପାଇଁ ମୁଁ ଯେ କୌଣସି କଷ୍ଟ କାମ କରିବାକୁ ପଛେଇ ନାହିଁ । ଲୋକେ ସେଥିପାଇଁ ଜାଣିବା ନଜାଣିବା ମୋ ପାଇଁ ଏକାକଥା । ମୁଁ ନିଜକୁ ଜନତାର ଆଜୀବନ ସେବକ ଭାବରେ ଧରିନେଇଛି ଏବଂ ଭଗବାନଙ୍କୁ ସାକ୍ଷୀ ରଖି ମୁଁ ନିଜ ବାଟରେ ଲୋକଙ୍କ ସେବା କରି ଆସିଛି । ମୁଁ ଆପଣଙ୍କ ସଂସ୍ଥାରେ ଯୋଗଦେବାରେ ଦୃଢ଼ ଧାରଣା ରଖିଛି ଯେ, ଆପଣଙ୍କ ସହଯୋଗରେ ମୁଁ ଅଧିକ ଭାବରେ ଭଗବାନଙ୍କ ଇଚ୍ଛାକୁ ଜନତାର ସେବାରେ ନିୟୋଜିତ କରିପାରିବି । ଜଣେ ସାଧାରଣ ଜନସେବୀ ତା'ର ବୁଦ୍ଧି, ବୃତ୍ତି, ଶକ୍ତି, ସାମର୍ଥ୍ୟ, ହସ କାନ୍ଦକୁ ପୂର୍ଣ୍ଣ ପ୍ରାଣରେ ଜନତା ପାଇଁ ଉତ୍ସର୍ଗ କରିଦେବା ବିଧେୟ । ତା'ର ଯାହା କିଛି ନିଜସ୍ୱ ସେ ସବୁ ଜନତାର ସମ୍ପତ୍ତି । ତେଣୁ ଜନସେବାର ଅବହେଳା କରିବା ତା' ପକ୍ଷରେ ଏକ ମହାପାପ ଭାବରେ ପରିଗଣିତ ହେବା ଉଚିତ । ଆପଣ ଓଡ଼ିଶାରେ ନିକଟରେ ହୋଇ-ଯାଇଥିବା ବନ୍ୟା ସମ୍ପର୍କରେ ଶୁଣିଥିବେ । ଏଥିପାଇଁ ଗୋଟିଏ ତଦନ୍ତ କମିଟି ବସିଥିବାରୁ ମୁଁ ସମ୍ପୃକ୍ତ କାଗଜପତ୍ର ପ୍ରସ୍ତୁତ କରିବାରେ ବ୍ୟସ୍ତ ଅଛି ।"

## ପୁଣି ବନ୍ୟା

ଆଜି ବଢ଼ି ମରୁଡ଼ି ଆସିଲେ ଗୋପବନ୍ଧୁହିଁ ଆମର ମନେପଡ଼ନ୍ତି । ଜୀବନସାରା ବନ୍ୟା ବିଗିଡ଼ିତ ବିରୁଦ୍ଧରେ ଲଢ଼ି ଲଢ଼ି ସେ ନିସ୍ତାନ୍ତ ହୋଇ ପଡ଼ିଥିଲେ । ଓଡ଼ିଶାର ଏ ପ୍ରାକୃତିକ ବିପତ୍ତିର ସତେ ଯେପରି ଅନ୍ତ ନ ଥିଲା । ପୁଣି ୧୯୨୭ ମସିହାରେ ବୈତରଣୀ ଓ ବ୍ରାହ୍ମଣୀ ନଦୀ କ୍ଷୁବ୍ଧିତ ହୋଇ ଉଠିଲେ । ୨୨ । ୭ । ୧୯୨୭ ତାରିଖରୁ ଘନଘନ ଧରି ବର୍ଷା ଲାଗି ରହିଲା । ସାଧାରଣ ଜୀବନ ଯାତ୍ରା ଅଚଳ ହୋଇପଡ଼ିଲା । ରେଳ ଚଳାଚଳ ବନ୍ଦ ହୋଇଗଲା । ଲୋକଙ୍କ ଘରେ ଚୂଲି ଜଳିଲାନି । ସମସ୍ତେ ଭାବିଲେ ସତେ ଯେପରି ପ୍ରଳୟ ଘୋଟି ଆସିଲା । କେବଳ ଓଡ଼ିଶାରେ ନୁହେଁ—ଭାରତର ପ୍ରାୟ ପ୍ରତ୍ୟେକ ନଦୀରେ ଏହି

ସମସ୍ତରେ ବନ୍ୟା ଆସିଥିଲା । ଓଡ଼ିଶା ଓ ଗୁଜୁରାଟ ଏଥିରେ ଅଧିକ କ୍ଷତିଗ୍ରସ୍ତ ହୋଇଥିଲା ।
ପାଣିତଳେ ମୂଠିଏ ଉଚ୍ଚର ସବୁଜ ଧାନଗଛ ସାର୍ଦ୍ଧଦିନ ଧରି ବୁଡ଼ି ରହି ପଚି ଯିବାକୁ ଲାଗିଲା । ଗୋରୁ ଗାଈଙ୍କ ପାଇଁ ଘାସ ମିଳିଲାନି । ବହୁ ଲୋକ ଘରଦ୍ୱାର ଛାଡ଼ିଦେଇ ଗଛମୂଳେ, ଉଚ୍ଚ ସ୍ଥାନମାନଙ୍କରେ ଆଶ୍ରୟ ନେଲେ । ଶହ ଶହ ମଣିଷ ଓ ଗୋରୁଗାଈ ବନ୍ୟା ସ୍ରୋତରେ ଭାସିଗଲେ । ପୁଣି ଯେଉଁଠି ମଣିଷ ଆଶ୍ରୟ ନେଲା, ସେଠାରେ କେତେକ ଲୋକ ସାପ କାମୁଡ଼ାରେ ଟଳିପଡ଼ିଲେ ।

ଗୋପବନ୍ଧୁ ଅସୁସ୍ଥ ଥିବାରୁ ବାଲେଶ୍ୱର ଜିଲ୍ଲାର ଏଇ ବଡ଼ି ଅଞ୍ଚଳକୁ ଲିଙ୍ଗରାଜଙ୍କ ସହିତ ସ୍ୱେଚ୍ଛାସେବୀ ଦଳ ପଠାଇଲେ । ଏହି ସମୟରେ ଭାଇସ୍‌ରାୟ ଲର୍ଡ ଇର୍‌ଉଇନ୍‌ଙ୍କର ଓଡ଼ିଶା ଗସ୍ତରେ ଆସିବାର ଥାଏ । ତାଙ୍କ ସ୍ୱତନ୍ତ୍ର ରେଳଗାଡ଼ି ଆସି ନ ପାରିବାରୁ ସେ ବିହାର-ଓଡ଼ିଶା ଗଭର୍ଣ୍ଣରଙ୍କ ପାଖକୁ ଗୋଟିଏ ବାର୍ତ୍ତା ପଠାଇ ବାଟରୁ ଫେରି ଯାଇଥିଲେ । ଏହି ବାର୍ତ୍ତାରେ ସେ ଓଡ଼ିଶାର ବନ୍ୟା ପ୍ରପୀଡ଼ିତ ଲୋକଙ୍କ ପାଇଁ ସମବେଦନା ଜଣାଇ ଥିଲେ । ପରେ ପରେ କେନ୍ଦ୍ର ବ୍ୟବସ୍ଥା ସଭା ବସିଲା ଓ ସେଠାରେ ମଧ୍ୟ ଏକ ପ୍ରସ୍ତାବ ଅନୁମୋଦିତ ହୋଇଥିଲା । ଏହି ପ୍ରସ୍ତାବର ଗୋଟିଏ ନକଲ ପଣ୍ଡିତ ଗୋପବନ୍ଧୁଙ୍କ ପାଖକୁ ପଠାଯାଇ ଜନସାଧାରଣଙ୍କୁ ଜଣାଇ ଦେବାକୁ ଅନୁରୋଧ କରାଯାଇଥିଲା । ସେଥିରେ ଲେଖାଯାଇଥିଲା—This assembly expresses its sympathy for the sufferings of the people affected by the unprecedented flood in Gujrat, Orissa and Sind and requests President to convey this sympathy to the affected people. The assembly trusts that the Government, Princes and the public will do their utmost for relieving this distress."
ଗୋପବନ୍ଧୁବାବୁ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥିବାରୁ ଏହି ଚିଠି ତାଙ୍କ ପାଖରେ ପହଞ୍ଚିଲା । ସେ ଉତ୍ତର ଦେଇ ଲେଖିଥିଲେ—"କେନ୍ଦ୍ର ବ୍ୟବସ୍ଥା ସଭାର ଏହି ପ୍ରସ୍ତାବ ପାଇଁ ଧନ୍ୟବାଦ । ଏହା ଲୋକଙ୍କୁ ସେମାନଙ୍କ ଦୁଃଖରେ ସାନ୍ତ୍ୱନା ମାତ୍ର ଦେବ । ସେମାନଙ୍କର କୃତଜ୍ଞତା ଜଣାଉଛୁ । ଓଡ଼ିଶାର ଏହି ବନ୍ୟାଦୁର୍ଗତି ନିମନ୍ତେ ସ୍ଥାୟୀ ପ୍ରତିକାର ଦାବୀ କରୁଛୁ ।"

ଅଗଷ୍ଟ ୧୬ ତାରିଖ ୧୯୨୭ରେ କଟକ ଟାଉନ୍ ହଲ୍‌ରେ ଗୋପବନ୍ଧୁଙ୍କ ନେତୃତ୍ୱରେ ଏକ ବନ୍ୟା ପ୍ରତିକାରାର୍ଥୀ ସଭା ଡକାଗଲା । ଏହି ସଭାରେ ଯେଉଁ 'ବନ୍ୟା ସାହାଯ୍ୟ କମିଟି' ଗଢ଼ାଗଲା ସେଥିରେ ଗୋପବନ୍ଧୁ ସାଧାରଣ ସମ୍ପାଦକ ରହିଲେ । ଖବରକାଗଜମାନଙ୍କରେ ନିବେଦନ ଛପା ହେଲା । ଗୋପବନ୍ଧୁଙ୍କ 'ସମାଜ'ରେ ବହୁ କରୁଣ ଚିତ୍ର ପ୍ରକାଶିତ ହେଲା; କିନ୍ତୁ ସରକାରୀ ହିସାବରେ ଏ ଚିତ୍ର ପ୍ରକାଶ ପାଇଲା ନାହିଁ । ବନ୍ୟାରେ କ'ଣ କ୍ଷୟ କ୍ଷତି ହେଲା

ତା'ର ହିସାବ ଲୋକମାନେ ରଖି ପାରିଲେ ନାହିଁ । ଯାହାର ସର୍ବସ୍ୱ ଗଲା, ସେ କେବଳ ଦାଣ୍ଡର ଭିକାରି ହୋଇ ଝୁଲି ଧରି ବାହାରି ପଡ଼ିଲା ।

ଗୋପବନ୍ଧୁଙ୍କ ଶ୍ରମ ଓ ନିବେଦନ ଫଳରେ ଓଡ଼ିଶା ଓ ଓଡ଼ିଶା ବାହାରୁ ବହୁ ପରିମାଣରେ ସାହାଯ୍ୟ ମିଳିଲା । ଲୁଗା ପଟା, ଚୂଡ଼ାଗୁଡ଼ଲ ଆକାରରେ ମଧ୍ୟ ବହୁ ସାହାଯ୍ୟ ଆସି ପହଞ୍ଚିଲା । ଗୋପବନ୍ଧୁ ସ୍ୱେଚ୍ଛାସେବୀ ସଂଘ ମାଧ୍ୟମରେ ଏ ସବୁର ବଣ୍ଟନ କଲେ । ନିଜେ ପାଦରେ ବୁଲି ବୁଲି ଲୋକଙ୍କ ଅବସ୍ଥା ଓ ସାହାଯ୍ୟ କାର୍ଯ୍ୟ ଅନୁଧ୍ୟାନ କରୁଥିଲେ ।

ବିହାର-ଓଡ଼ିଶା ବିଧାନସଭାରେ ବନ୍ୟା ବିଷୟରେ ଖୁବ୍ ଆଲୋଚନା ହେବା ଫଳରେ ଓଡ଼ିଶା ବାହାର ଲୋକେ ବନ୍ୟାର ପ୍ରକୋପ ଅନୁଭବ କଲେ । ବଦାନ୍ୟ ଅନୁଷ୍ଠାନ ଓ ଧନୀ ଲୋକମାନେ ଲୁଗା, କମ୍ବଳ, ଔଷଧ, ବିସ୍କୁଟ ଆଦି ପଠାଇଲେ । ମୁଖ୍ୟ ସ୍ଥାନମାନଙ୍କରେ ଶସ୍ୟ ଗୋଲା ଖୋଲିଗଲା । ଲୋକମାନଙ୍କୁ ଘର ତିଆରି ପାଇଁ ସରକାରୀ ଓ ବେସରକାରୀ ସାହାଯ୍ୟ ମିଳିଲା ।

ଗୋପବନ୍ଧୁ ଅତି ଉଦ୍‌ବେଗର ସହିତ ସ୍ଥାୟୀ ବନ୍ୟା ନିରୋଧ କଥା ଚିନ୍ତା କରୁଥିଲେ । କାରଣ ପ୍ରତିବର୍ଷର ବନ୍ୟା ବିପ୍ଳବରେ ଓଡ଼ିଶା ବିକଳାଙ୍ଗ ହୋଇ ପଡ଼ୁଥିଲା । ସାମୟିକ ସାହାଯ୍ୟ ଲୋକମାନଙ୍କ ନୈତିକ ବଳକୁ ବରଂ ଭାଙ୍ଗି ଦେଉଥିଲା । ସେମାନେ ଅତି ଅସହାୟ ଭାବରେ ପ୍ରକୃତି ଓ ମଣିଷର କ୍ରୀଡ଼ନକ ହୋଇ ପଡ଼ୁଥିଲେ ।

ଏଥିପାଇଁ ୧୯୨୭ ମସିହା ଅକ୍ଟୋବର ମାସରେ କଟକରେ 'ନିଖିଳ ଉତ୍କଳ ବନ୍ୟା ସମ୍ମିଳନୀ' ଡକାହେଲା । ଏଥିରେ ବନ୍ୟାର ସ୍ଥାୟୀ ପ୍ରତିକାର ପାଇଁ ବହୁ ଆଲୋଚନା ଓ ପ୍ରସ୍ତାବ ଗ୍ରହଣ ହୋଇଥିଲା । ପରେ ପରେ ଏହିପରି ସମ୍ମିଳନୀ ଜିଲ୍ଲା ଓ ଥାନା ସ୍ତରରେ ମଧ୍ୟ କରାଗଲା । ରାଜ୍ୟସାରା ବନ୍ୟା ପ୍ରତିକାରିଣୀ ସମିତିମାନ ସ୍ଥାପିତ ହେବା ଫଳରେ ଲୋକଙ୍କ ମଧ୍ୟରେ ଭରସା ଆସିଲା । ଏସବୁ ସଭା ସମିତିର ବିବରଣୀ ଖବର କାଗଜ 'ସମାଜ' ଓ ଇଂରାଜୀ କାଗଜମାନଙ୍କରେ ପ୍ରକାଶିତ ହେଲା । ଓଡ଼ିଶାର ଦାବୀ ସମ୍ପର୍କରେ ସରକାର ସଚେତନ ହେଲେ । ବହୁ ବଡ଼ ବଡ଼ ନେତା ଓଡ଼ିଶାର ବିଭିନ୍ନ ଅଞ୍ଚଳ ଦେଖିବାକୁ ଆସିଲେ । ଫଳରେ ବିହାର-ଓଡ଼ିଶା ସରକାର ବନ୍ୟା ଅନୁଧ୍ୟାନ ନିମନ୍ତେ ଗୋଟିଏ ବିଶେଷଜ୍ଞ କମିଟି ଗଠନ କରି ସ୍ଥାୟୀ ପ୍ରତିକାରର ପନ୍ଥା ଲୋଡ଼ିଲେ । ଗୋପବନ୍ଧୁଙ୍କ ଅନୁରୋଧ କ୍ରମେ ମହାତ୍ମା ଗାନ୍ଧି ବନ୍ୟା ବିଶାରଦ ସାର୍ ବିଶ୍ୱେଶ୍ୱରୟାଙ୍କୁ ଓଡ଼ିଶା ପଠାଇଲେ ଓ ତାଙ୍କ ସୁପାରିଶ ଅନୁସାରେ ଓଡ଼ିଶାର ବନ୍ୟା ନିୟନ୍ତ୍ରଣ ପାଇଁ ବ୍ୟବସ୍ଥାମାନ ପରିକଳ୍ପିତ ହେଲା । ଆଜିର ହୀରାକୁଦ ହିଁ ଏହାର ପରିଣତି । ଗୋପବନ୍ଧୁ ଏସବୁ କମିଟିରେ ବହୁ ନିର୍ଭରଯୋଗ୍ୟ ତଥ୍ୟ ଉପସ୍ଥାପିତ କଲେ । ତାଙ୍କ ନିଜ ଅନୁଭୂତିସିଦ୍ଧ ତଥ୍ୟ କମିଟି ପାଇଁ ଅତ୍ୟାବଶ୍ୟକ ବିବେଚିତ ହୋଇଥିଲା ।

# ଏ ଜାତ ଏବେ ମଧ୍ୟ ବଞ୍ଚିଛି

ଗୃସିଖି ଗ୍ରାମର ସାହାଯ୍ୟ କେନ୍ଦ୍ର । ବନ୍ୟାର କରାଳ ଗର୍ଭରେ ଆସବାବ, ଧନସମ୍ପତ୍ତି, ଜମିବାଡ଼ି ହରେଇ କେତେ ଦୟନୀୟ ନିଃସ୍ୱର ପଟୁଆର ଆଗେଇ ଚାଲିଚି ଗୃସିଖି ଗ୍ରାମର ସାହାଯ୍ୟ କେନ୍ଦ୍ର ଅଭିମୁଖେ । ଗୃସିଖି ଗ୍ରାମ—ଦୁର୍ଭିକ୍ଷ ରାକ୍ଷସର ବିରାଟ ଯାଦୁଘର । ଯେଉଁ ଦେଶରେ ଯୁଗ ଯୁଗ ଧରି ବିରାଟ ପଥରସ୍ତୂପ ଉପରେ ପତିତପାବନ ବାନା ଉଡ଼ୁଛି ସେହି ଦେଶର ହଜାର ହଜାର ଅଶ୍ରୁ-ଆକୁଳିତ ଜନତାର କରୁଣ ଧ୍ୱନି ଗୃସିଖିର ଆକାଶକୁ ସେଦିନ ଆର୍ଦ୍ର କରିଥିଲା । ଯେଉଁ ଦେଶରେ ମଣିଷର ସାକ୍ଷୀ ରୂପେ ସ୍ୱୟଂ ଦେବତା ବାଟ ଚାଲି ଆସିଥିଲେ ବୋଲି କଥା ଅଛି, ଦୁଃଖ ଦାରିଦ୍ର୍ୟର ପ୍ରିୟ ସାଥୀ ପରମ ସନ୍ୟାସୀ ଉତ୍କଳମଣି ସେଠାରେ ଏ ଐତିହାସିକ ଜାତିର ଚରମ ଦୁର୍ଦ୍ଦଶା ଦେଖି ଦୁଃଖରେ ବିଗଳିତ ହୋଇପଡ଼ୁଥିଲେ ।

ସେତେବେଳେ ଗୃସିଖି ଗାଁ ଗୋଟାଏ ବିରାଟ ମଶାଣି ପରି ଆସନ୍ନ ମୃତ୍ୟୁର ଧୂସର ଛାୟାରେ ତନ୍ଦ୍ରାଚ୍ଛନ୍ନ । ଜୀବନ ଥିବା ମଣିଷ କଙ୍କାଳର ଟଳଲି ଦେହ ଧରି ସେଠାରେ ସାହାଯ୍ୟ ପାଇଁ ଏକାଠି ହେଉଥିଲେ । ଆଖିରେ ଜ୍ୟୋତି ନଥିଲା, ମୁହଁରେ ହସ ନଥିଲା, ପେଟରେ ଦାନା ନଥିଲା । ସମସ୍ତଙ୍କ ମୁହଁରେ ବିକଳ ଭାବ—ମୁଠେ ଚାଉଳ ପାଇଁ କେତେ ଆକୁଳ ଅନୁନୟ ।

କିନ୍ତୁ ଗୋଟିଏ ଯୁବକ ଦ୍ୱନ୍ଦ୍ୱରେ ପଡ଼ି ଚାଉଳ ପାଇଁ ହାତ ବଢ଼େଇ ପାରିଲା ନାହିଁ । ଲଜ୍ଜା ଓ ସଙ୍କୋଚରେ ଚକ୍ଷୁ ଲୋତକାର୍ଦ୍ର ହେଲା । ସମସ୍ତଙ୍କ ଭିତରେ ଜଣେ ହୋଇ ସେ ଉପଯାଚକ ଭାବରେ ଏ ଦୟାର କଷ୍ଟିତ ଦାନ ଗ୍ରହଣ କରିବାକୁ କୁଣ୍ଠିତ । ସ୍ମୃତିରେ ତା'ର ସତ୍ୟବାଦୀ ବନବିଦ୍ୟାଳୟର କେତେ ଗୌରବମୟ ଅଧ୍ୟାୟ ତଥାପି ବିମୂର୍ତ୍ତି ହେଉଥିଲା । ସେ ଫେରିଆସି ଗ୍ରାମ ମୁଣ୍ଡ ବରଗଛ ମୂଳରେ ବସି ରହିଲା ।

କିଛି ସମୟ ପରେ ସେଇବାଟେ ଗୋପବନ୍ଧୁ ଆସିଲେ । କୋମଳ କଣ୍ଠରେ ପଚାରିଲେ—"ବାବୁ, ତୋର ଗାଁ ?"

ସେତେବେଳେ ଯୁବକଟି ମୁଖ ଆନତ କରି ଯେତେ ଯେପରି ଧ୍ୟାନମଗ୍ନ ଥିଲା । ସେ ଦେଖୁଥିଲା ଗୋଟିଏ ପ୍ରାଚୀନ ଜାତି ହଠାତ୍ କିପରି ଭିକାରୀ ପାଲଟି ଗଲା । ଜୀବନ ଥାଉ ଥାଉ ଏ ଐତିହାସିକ ଜାତି କିପରି ଆତ୍ମାର ଅପମାନ ବରଣ କରିନେଲା ।

ଦଶ ପାଞ୍ଚବାର ପଚାରିବା ପରେ ଯୁବକଟି ମୁହଁ ଟେକି ଚାହିଁଲା । ଆଖିରେ ଆକୁଳ ଅଶ୍ରୁର ବନ୍ୟା । ମୁହଁ ଶେତା ଓ ପାଣ୍ଡୁର ।

ଗୋପବନ୍ଧୁ ପଚାରିଲେ—"ତୋର ଘର କେଉଁଠି ?"

ସେ ନିରୁତ୍ତର ରହିଲା । ତା'ପରେ ଗୋପବନ୍ଧୁ ଧୀରେ ଧୀରେ ତା' ପାଖ ଲାଗି ଆସି ତା' ଦେହରେ ତାଙ୍କ ହାତ ବୁଲାଇଲେ । ପିଠିର ଚିରା କାମିଜ ତଳୁ ଯୁବକର

ଅକାଳଜରାଗ୍ରସ୍ତ ହେତୁ ସ୍ପଷ୍ଟ ବାରହୋଇପଡ଼ୁଥିଲା । ପିଠିଟା ତା'ର କେବଳ ଗୋଟାଏ କଙ୍କାଳ ମାତ୍ର ।

ଗୋପବନ୍ଧୁ ପଚାରିଲେ—"ଚାଉଳ ନେଇଚୁ ବାବୁ ?"

"ନା"—ସେ ସେତିକ ମାତ୍ର ଉତ୍ତର ଦେଲା ।

"କେବୁ ?"—ଗୋପବନ୍ଧୁ ପଚାରିଲେ ।

"ମୁଁ ନେବାକୁ ଆସିନାହିଁ"—ଯୁବକଟି ଉତ୍ତର ଦେଲା ।

ଗୋପବନ୍ଧୁ ଅବାକ୍ ହେଲେ । ପୁଣି ପଚାରିଲେ—"କିଛୁ ଖାଇନାହୁଁ ଯେ ?" ଏଥର ଯୁବକଟି ଭୋ'କରି କାନ୍ଦି ଉଠିଲା । କହିଲା, ଏହିପରି ଗୋଟିଏ ଗଛମୂଳେ ଏହି ଚରଣତଳେ ବସି ଶୁଣିଥିଲି ଆପଣଙ୍କ ଉପଦେଶ—

"ଜୀବନ ଥିଲେ ଭାଇ ପାରିବା ନାହିଁ ହାତ
ମଣିଷ ପରି ଦିନେ ମଣିଷ ହୋଇବା ତ ।"

ଏଥର ଯୁବକଟି ଭକ୍ତିରେ ସେ ପାଦତଳେ ନଇଁ ପଡ଼ିଲା । ଗୋପବନ୍ଧୁ ଅବାକ୍ ହୋଇ ଠିଆ ହୋଇ ରହିଲେ । ଆଖି ତାଙ୍କର କ୍ରମେ ମୁଦି ହୋଇ ଆସୁଥିଲା । ପରେ ପରେ କେତେଜଣ ସ୍ୱେଚ୍ଛାସେବକ ତାଙ୍କୁ ଡାକିବାରୁ ହଠାତ୍ ଯେପରି ଗୋପବନ୍ଧୁ ସଚେତନ ହୋଇ ଉଠିଲେ; ତାଙ୍କ ମୁହଁରୁ ପଦେକଥା ବାହାରି ପଡ଼ିଲା—"ଏ ଜାତି ଏବେ ମଧ୍ୟ ବଞ୍ଚିଛି ।"

(ସ୍ୱର୍ଗତ ଗୋଦାବରୀଶ ମହାପାତ୍ରଙ୍କ ସ୍ମୃତିରୁ—ଘଟଣାଟି ସତ୍ୟ ବୋଲି ତାଙ୍କଠାରୁ ପ୍ରକାଶ )

## ଖଦି ପ୍ରଚାରରେ ମହାତ୍ମା ଗାନ୍ଧି

୧୯୨୭ ମସିହା ନଭେମ୍ବର ମାସରେ ଗାନ୍ଧି ପୁନଶ୍ଚ ଖଦି ପ୍ରଚାର କାର୍ଯ୍ୟରେ ଓଡ଼ିଶା ଆସିଲେ । ସେତେବେଳେ ଗଞ୍ଜାମ ଜିଲ୍ଲା ଆସିକାର ଶ୍ରୀ ନିରଞ୍ଜନ ପଟ୍ଟନାୟକ ଓଡ଼ିଶାରେ ଖଦି ପ୍ରଚାର ଦାୟିତ୍ୱରେ ଥା'ନ୍ତି । ତାଙ୍କ ପାଖୁ ଗାନ୍ଧି ଗୋଟିଏ ଚିଠି ଲେଖିଥା'ନ୍ତି । ସହିରେ ଲେଖାଥାଏ—Gopabandhu Babu possesses a large and stout heart, but he is not business like." ଗୋପବନ୍ଧୁ ଏ ଖଦି ପ୍ରଚାର କାମରେ ଗାନ୍ଧିଙ୍କୁ ବିଶେଷ ଭାବରେ ସାହାଯ୍ୟ କରି ପାରିବେ ନାହିଁ ବୋଲି ଗାନ୍ଧି ଅନୁଭବ କରିଥା'ନ୍ତି । ତେଣୁ ଶ୍ରୀ ନିରଞ୍ଜନ ପଟ୍ଟନାୟକଙ୍କ ପରିକଳ୍ପନା ଅନୁଯାୟୀ ଏ କାର୍ଯ୍ୟରେ ଗାନ୍ଧିଙ୍କର ଗସ୍ତକ୍ରମ ସ୍ଥିର ହୋଇଥାଏ । ପୁନଶ୍ଚ ଏତେବେଳକୁ ଉତ୍କଳ ପ୍ରଦେଶ କଂଗ୍ରେସ ମଧ୍ୟରେ କେତେକ ପରିମାଣରେ ନିରୁତ୍ସାହ ଓ କାର୍ଯ୍ୟହୀନତା ପ୍ରକାଶ ପାଇଥିଲା ।

ଏପରିକ ଗୋପବନ୍ଧୁଙ୍କ ପ୍ରତି ଉତ୍କଳ ପ୍ରଦେଶ କଂଗ୍ରେସ ମଧ୍ୟରେ ମଧ୍ୟ କ୍ରମେ ବିରୋଧ ଭାବ ମୁଣ୍ଡ ଟେକୁଥିଲା – ତାହାର ସୂଚନା ଆଗରୁ ଦିଆଯାଇଛି । ଏହି ସମୟରେ ଗୋଟିଏ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଘଟଣା ଘଟିଥିଲା । ତାହା ନୀଳକଣ୍ଠଙ୍କ ଆତ୍ମଜୀବନୀରୁ ମୁଁ ଉଦ୍ଧାର କରୁଛି—

'ଗାନ୍ଧି ସମାଚାର' ବୋଲି ଦୈନିକ ପତ୍ର ଗୋଟିଏ କାଢ଼ି ଗଞ୍ଜାମର ସ୍ୱର୍ଗତ ନିରଞ୍ଜନ ପଟ୍ଟନାୟକ ନିଜେ ସେଥିରେ ସମ୍ପାଦକ ହୋଇ ଗାନ୍ଧି କିପରି ସତ୍ୟବାଦୀ ନଆସିବେ ସେଥିପାଇଁ ସବୁ ବ୍ୟବସ୍ଥା କରିଥିଲେ । ଗାନ୍ଧି ଆସି ବାଣପୁରରେ ରହିଲେ । ସେଠାରୁ ଗାନ୍ଧିଜୀ ଚମ୍ପାପୁରର ଗୋବିନ୍ଦ ମିଶ୍ରଙ୍କୁ ସତ୍ୟବାଦୀ ପଠାଇଲେ । ଉଦ୍ଦେଶ୍ୟ ଥିଲା ସତ୍ୟବାଦୀ ଆସିବା ପାଇଁ ଗୋପବନ୍ଧୁଙ୍କୁ ପଚାରି ବୁଝିବା । ଗୋପବନ୍ଧୁ ଆଗରୁ ସବୁକଥା ଜାଣିଥିଲେ । ସେ ବିରକ୍ତ ହୋଇ ଗୋବିନ୍ଦ ମିଶ୍ରଙ୍କୁ କହିଲେ—"ଆରେ ଯା, ସେଉଁ ଗାନ୍ଧି 'Young India' କାଗଜରେ ମହାଶୂର ରଜାଙ୍କୁ ଭୂୟସୀ ପ୍ରଶଂସା କରି certificate ଦିଏ ସେ ଗାନ୍ଧି ସତ୍ୟବାଦୀକୁ ଆସେ ନାହିଁ ।" ତାଙ୍କ ରାଗ ଓ କ୍ଷୋଭ ଶାନ୍ତ ପଡ଼ିବା ପରେ ଗୋବିନ୍ଦ ମିଶ୍ରେ ବୁଝାଇ ବସିଲେ । ଗୋପବନ୍ଧୁବାବୁ ରାଜି ହୋଇ ଗାନ୍ଧିଙ୍କୁ ପାଛୋଟି ଆଣିବାକୁ ମୋତେ ପଠାଇଲେ । ମୁଁ ଯାଇ ଗାନ୍ଧିଙ୍କୁ ଡାକିଲି । ଗାନ୍ଧି ସତ୍ୟବାଦୀ ଆସିବା ସ୍ଥିର ହେଲା ।"

× × × ପୁରୀରେ ସେଉଁଠାରେ ନରେନ୍ଦ୍ର ଆଡ଼ୁ ରାସ୍ତା ବଡଦାଣ୍ଡରେ ମିଶିଛି, ସେହିଠାରେ ସଭାପାଇଁ ବ୍ୟବସ୍ଥା ହୋଇଥିଲା ; କିନ୍ତୁ ଗୋପବନ୍ଧୁବାବୁଙ୍କ ନଡାକିବା ପ୍ରଚାର ହୋଇଯାଇଥିବାରୁ ସେଠାକୁ ଠିକ୍ ସମୟରେ (ଅର୍ଥାତ୍ ଅପରାହ୍ଣ ୫ଟା ବେଳକୁ) କେହି ଆସି ନଥିଲେ । ଗାନ୍ଧି ସେଠାରେ ଘଣ୍ଟାଏ ଅପେକ୍ଷା କଲେ । ଶେଷକୁ ଗୋପବନ୍ଧୁବାବୁ ଓ ଜଗବନ୍ଧୁବାବୁ ପ୍ରଭୃତି ପଚିଶ ଜଣ ସହରର ପ୍ରଧାନ ପ୍ରଧାନ ଲୋକଙ୍କୁ ଡାକି ଆଣିଲେ । ମନେରଖିବାର ଅଛି, ଏହି ଗାନ୍ଧି ୧୯୨୧ରେ ଆସିଲାବେଳେ 'ଶରଧାବାଲି'ରେ ଅତ୍ୟନ୍ତ ଲୋକଗହଳି ହୋଇଥିଲା । ପୁରୀ ଜିଲ୍ଲାର ସବୁଆଡ଼ୁ ଲୋକେ ଉପସ୍ଥିତ ଥିଲେ । ସେହି ସହରରେ ନରେନ୍ଦ୍ରଠାରେ ମାତ୍ର ପଚିଶ ଜଣ ଲୋକ ଧରି ଗାନ୍ଧି ପ୍ରଥମେ ସଭା ଆରମ୍ଭ କଲେ । ସଭା ହେବାରୁ ପରେ କିଛି ଲୋକ କ୍ରମେ ଆସି ଉପସ୍ଥିତ ହେଲେ ; କିନ୍ତୁ ସେ ସଂଖ୍ୟା ସେପରି କିଛି ଉଲ୍ଲେଖଯୋଗ୍ୟ ନୁହେଁ ।"

## ବଡ଼ଭାଇଙ୍କ ଦେହାନ୍ତ

୧୯୨୭ ମସିହା ବଢ଼ି ପରେ ପରେ ଲୋକଙ୍କୁ ଅଇଥାନ କରିବା, ସାହାଯ୍ୟ ଯୋଗାଇବା ଓ ବନ୍ୟାର ସ୍ଥାୟୀ ପ୍ରତିକାର ପାଇଁ ସଙ୍ଗଠନ ମାଧ୍ୟମରେ ସରକାରଙ୍କୁ ପ୍ରଭାବିତ କରିବା ଆଦି କାର୍ଯ୍ୟରେ ଗୋପବନ୍ଧୁ ବ୍ୟସ୍ତ ଥିଲାବେଳେ ହଠାତ୍ ସେ ନଭେମ୍ବର ୨୨ ତାରିଖ ୧୯୨୭

ମସିହାରେ ବଡ଼ଭାଇ ନାରାୟଣଙ୍କ ମୃତ୍ୟୁ ଖବର ପାଇ ବଡ଼ ବ୍ୟଥିତ ହୋଇପଡ଼ିଲେ। ଗୋଟିକ ପରେ ଗୋଟିଏ ପ୍ରିୟଜନର ମୃତ୍ୟୁ ଖବର ଗୋପବନ୍ଧୁଙ୍କୁ ଅନ୍ତରରେ ପଥର କରି ଦେଇଥିଲା; କିନ୍ତୁ ଶେଷକୁ ବଡ଼ ଭାଇଙ୍କ ବିୟୋଗ ତାଙ୍କୁ ଅତିମାତ୍ରାରେ ଦୋହଲେଇ ଦେଲା। ସେ ପ୍ରଥମେ ସ୍ତବ୍ଧ ହୋଇଗଲେ। ସଂସାର ଓ ପରିବାରର ଜଞ୍ଜାଳକୁ ବହୁ ଦୂର ଅତୀତରେ ଫିଙ୍ଗି ସେ ସମଗ୍ର ଓଡ଼ିଶାକୁ ଆବୋରି ବସିଥିଲେ। ଏବେ ତାଙ୍କୁ ପୁଣି ପରିବାର ଆଡ଼କୁ ଦୃଷ୍ଟି ଦେବାକୁ ହେଲା। ରାଜନୀତି ଓ ସମାଜ ସେବାର କେନ୍ଦ୍ର ଭାବରେ ସେ ବର୍ଷକ ଆଗରୁ କଟକକୁ କର୍ମକ୍ଷେତ୍ର ଭାବରେ ବାଛି ନେଇଥିଲେ, କିନ୍ତୁ ବର୍ତ୍ତମାନ ତାଙ୍କୁ ପୁଣି ଗ୍ରାମ ଓ ସହରର ଯୋଗସୂତ୍ର ଭାବରେ ସତ୍ୟବାଦୀର ଆଶ୍ରମଜୀବନକୁ ବାଛି ନେବାକୁ ହେଲା। ଏ ସମୟକୁ ସତ୍ୟବାଦୀ ସ୍କୁଲ ଭାଙ୍ଗିଯାଇଥିଲା ସତ, କିନ୍ତୁ ସତ୍ୟବାଦୀ ନିକଟବର୍ତ୍ତୀ କାଦୁଆଠାରେ ଏକ ବ୍ରହ୍ମଚର୍ଯ୍ୟ ଆଶ୍ରମ ଗୋପବନ୍ଧୁ ଖୋଲିଥିଲେ। ତରୁଣ ଯୁବକମାନଙ୍କୁ ଦେଶସେବା ବ୍ରତରେ ଆଜୀବନ ଦୀକ୍ଷିତ କରିବା ଏହି ଆଶ୍ରମର ପ୍ରଧାନ ଲକ୍ଷ୍ୟ ଥିଲା।

ଗୋପବନ୍ଧୁ କଟକରୁ ଏଠାକୁ ଫେରି ଆସିଲେ। ପୈତୃକ ସମ୍ପତ୍ତିର ରକ୍ଷଣାବେକ୍ଷଣ ପାଇଁ ବର୍ତ୍ତମାନ ତାଙ୍କ ଉପରେ ଅଶ୍ୱନକ ଗୁରୁଦାୟିତ୍ୱ ଲଦିହୋଇ ପଡ଼ିଲା। ବଡ଼ଭାଇଙ୍କ ମୃତ୍ୟୁର ୪ ଦିନ ପରେ ୨୬ । ୧୧ । ୨୭ ତାରିଖ ପ୍ରକାଶିତ ସମାଜରେ ସେ ଏ ସମ୍ବନ୍ଧରେ ଏକ କରୁଣ ଲେଖା ପ୍ରକାଶ କରିଥିଲେ। ଏହି ଲେଖାଟି ତାଙ୍କ ଜୀବନର ଏକ ବିଶିଷ୍ଟ ଅଧ୍ୟାୟ ଭାବରେ ପ୍ରକଟିତ।

"ଦେଶର ଶତଶତ ଭାଇଙ୍କର ବନ୍ୟା ବିପତ୍ତିରେ ବ୍ୟଥିତ ହୋଇ ସାଧ୍ୟମତେ ସେମାନଙ୍କ ସେବାରେ ନିଯୁକ୍ତ ଥିଲାବେଳେ ବର୍ତ୍ତମାନ ମୋର ଘୋର ପାରିବାରିକ ବିପତ୍ତି ଉପସ୍ଥିତ। ମୋ ଭାଇନା ନାରାୟଣ ଦାସଙ୍କର ଏ ମାସ ୨୨ ତାରିଖ ମଙ୍ଗଳବାର ଶ୍ରୀକ୍ଷେତ୍ର ପ୍ରାପ୍ତି ହୋଇଗଲା। ସେ ମୋଠାରୁ ଆଠ ବର୍ଷ ବଡ଼, ମୃତ୍ୟୁ ସମୟକୁ ତାଙ୍କର ଅଠାବନ ବର୍ଷ ମାତ୍ର ହୋଇଥିଲା। ବୈମାତୃକ ହେଲେହେଁ ତାଙ୍କର ମୋଠାରେ ଅକୃତ୍ରିମ ସ୍ନେହ ଏବଂ ଅଭେଦ ପ୍ରୀତି ଥିଲା। ଅତି ଶୈଶବାବସ୍ଥାରେ ମୋର ମାତୃବିୟୋଗ ଘଟିଥିଲା।

"ଦେଖିନାହିଁ ମୁଁ ମାତୃ ବଦନ
ପାନ କରିନାହିଁ ମାତୃ ସ୍ତନ୍ୟ।"

ସ୍କୁଲରେ ପଢ଼ୁଥିବା ବେଳେ ପିତା ଚାଲିଗଲେ। କଲେଜରେ ପଢ଼ୁଥିବାବେଳେ ମୋର ଏକମାତ୍ର ପୁଅ ମଲା ଏବଂ ଜୀବନର ସଖା ଓ ପ୍ରେରକ ଅଭେଦାତ୍ମା ବନ୍ଧୁ ରାମଚନ୍ଦ୍ର ଦାସ (ମୁକ୍ତାର)ଙ୍କର ପରଲୋକ ହେଲା। ପଢ଼ା ଶେଷ ହେବା ସଙ୍ଗେ ସଙ୍ଗେ ମୋର ଗୃହସ୍ଥାଶ୍ରମ ଶେଷ ହେଲା। ବି. ଏଲ୍. ପରୀକ୍ଷା ପାଶ୍ ଖବର ଓ ପତ୍ନୀ ବିୟୋଗ ବାର୍ତ୍ତା ମୁଁ ଏକାଦିନକେ ପାଇଥିଲି। ଜେଲ୍‌ରେ ଥିବାବେଳେ ମୋ ଶିକ୍ଷକ ଏବଂ ସହୃଦୟ ବନ୍ଧୁ ଦିବ୍ୟସିଂହ ମିଶ୍ରଙ୍କ ମୃତ୍ୟୁ ସମ୍ବାଦ ମୋତେ ଦାରୁଣ ବ୍ୟଥା ଦେଇଥିଲା। ଜେଲ୍‌ରୁ ଫେରିବାର ଅଳ୍ପଦିନ ପରେ

ପୁଣ୍ୟକଳ୍ପ, ନିଷ୍ଠକର୍ମୀ ଓ ସତ୍ୟବାଦୀ ବିଦ୍ୟାଳୟର ଅନ୍ୟତମ ଶିକ୍ଷକ ଶ୍ରୀମାନ କୃପାସିନ୍ଧୁଙ୍କୁ ହରାଇଲି । ମାତା, ପିତା, ପତ୍ନୀ, ପୁତ୍ର, ବନ୍ଧୁ, ସଖାମାନଙ୍କ ବିଚ୍ଛେଦ ବେତ ବାରମ୍ବାର ଖାଇ ଖାଇ ଏହି ମୋର ଦେହ ଶିଝି ଗଲାଣି । ଦେଶର ସାଧାରଣ କାର୍ଯ୍ୟରେ ନିରନ୍ତର ନିରତ ରହି ମୁଁ ଏସବୁ ଦୁଃଖ ପାସୋରୁଥିଲି । ପଲ୍ଲୀର ଅଜ୍ଞାତ କୋଣରେ ରହି ଯେ ମୋର ଏ ସାଧାରଣ କାର୍ଯ୍ୟରେ ସହାୟ ଥିଲେ, ଯାହାଙ୍କ ବଳରେ ମୁଁ ନିଶ୍ଚିନ୍ତ ଓ ସ୍ୱଚ୍ଛନ୍ଦରେ ମୋର ସମସ୍ତ ଶକ୍ତି, ସମୟ, ମନଧ୍ୟାନ ଦେଶସେବାରେ ଲଗାଇ ପାରୁଥିଲି, ଆଜି ସେ ମୋତେ ଛାଡ଼ି ଚାଲିଗଲେ । ପଢ଼ିଲାବେଳେ ଭାଇନା ମୋତେ ଅକୁଣ୍ଠିତ ଭାବରେ ସାହାଯ୍ୟ କରିଛନ୍ତି । ଓକିଲାତି କରି ମୁଁ ତାଙ୍କୁ ହଜାରେ ଟଙ୍କା ସୁଦ୍ଧା ଦେଇନାହିଁ । ସେଥିରେ ସେ କେବେ ବିରକ୍ତି ବା ଅସନ୍ତୋଷ ପ୍ରକାଶ କରିନାହାନ୍ତି । ମୋ ଅର୍ଜନ ମୋ ଇଚ୍ଛାମତେ ଖର୍ଚ୍ଚ କରି-ବାରେ ତାଙ୍କର କୌଣସି ଆପତ୍ତି ନଥିଲା । ବରଂ ଓକିଲାତି କଲାବେଳେ ଏବଂ ପରେ ଓକିଲାତି ଛାଡ଼ି ଦେଶ କାର୍ଯ୍ୟରେ ସମ୍ପୂର୍ଣ୍ଣଭାବେ ଲାଗିଲାବେଳେ ମୋର ଅଭାବ ଜାଣି ସେ ଅନେକ ସମୟରେ ସାହାଯ୍ୟ ଦେଉଥିଲେ । ଅସହଯୋଗ ଆନ୍ଦୋଳନର ଛ' ସାତ ବର୍ଷ ଆଗରୁ ମୁଁ ଓକିଲାତି ଛାଡ଼ିଥିଲି । ସେତେବେଳେ ଲାଇସେନ୍‌ସ ନେବାଲାଗି ମତେ ଅନୁରୋଧ କରିଥିଲେ, ମାତ୍ର ମୋର ଏକାନ୍ତ ଅନିଚ୍ଛା ଦେଖି ଅଧିକ ବଳାଇଲେ ନାହିଁ । ସ୍ତ୍ରୀ ବିୟୋଗ ପରେ ଅନେକ ଦିନଯାଏ ପୁନର୍ବାର ବିବାହ କରିବାକୁ ମୋ ପଛେ ଲଗାଇଲେ, ମୁଁ ନମଙ୍ଗିବାରୁ ନିରସ୍ତ ହେଲେ, ମାତ୍ର ମୁଁ ଜାଣେ ସେଥିରେ ତାଙ୍କ ମନରେ ଚିରଦିନ ପାଇଁ ଦାରୁଣ ଦୁଃଖ ରହିଲା । ମୁଁ ଅସହଯୋଗ ଦୀକ୍ଷା ଗ୍ରହଣ କଲି । ସେ ମଧ୍ୟ ସେଥିରେ ସଙ୍ଗେ ସଙ୍ଗେ ଦୀକ୍ଷିତ ହେଲେ । ସେ ଏବଂ ତାଙ୍କ ସ୍ତ୍ରୀ ଉଭୟେ ପରମ ଖଦଡ଼ଭକ୍ତ ଥିଲେ । ମୁଁ ଜେଲ୍‌ଖାନାରେ ଥିଲାବେଳେ ଦୁହେଁ ହାତରେ ସୂତାକାଟି ଦୁଇଖଣ୍ଡି ଲୁଗା ତିଆରି କରାଇ କୁମାରପୂର୍ଣ୍ଣିମାକୁ ମୋ ଲାଗି ହଜାରିବାଗ ଜେଲ୍‌କୁ ପଠାଇଥିଲେ । ବାଡ଼ିରେ କପା କରାଇ ଯେତେଦୂର ସମ୍ଭବ ନିଜଘରେ ସୂତା କଟାଇ ଘରର ପ୍ରୟୋଜନୀୟ ଲୁଗା ଖର୍ଚ୍ଚ ଚଳାଉଥିଲେ । ମୋ ଅପେକ୍ଷା ସେ ଅଧିକ ସ୍ୱଦେଶୀ ଥିଲେ । ବିଦେଶୀ ଲୁଣର ବ୍ୟବହାର ଏକାବେଳକେ ଛାଡ଼ି ଦେଇଥିଲେ । ଆମ ଘରେ କିରାସିନି ଏପର୍ଯ୍ୟନ୍ତ ପଶି ନାହିଁ । ଆଗେ ଗୁହାଳରେ ଡିବି ବ୍ୟବହୃତ ହେଉଥିଲା । ଅସହଯୋଗ ଆନ୍ଦୋଳନ ଦିନୁ ଭାଇନା ତାହା ବନ୍ଦ କରାଇ ଦେଲେ । ସେହିଦିନୁ ମଧ୍ୟ ବିଲାତି ମହଣବେଠ ସେ ଛାଡ଼ିଥିଲେ । କେବଳ ଏତିକି ନୁହେଁ, ୧୯୨୧, ୧୯୨୨ ସାଲ ମଧ୍ୟରେ କେତେଗୁଡ଼ିଏ ତମସୁକ ଡିଗ୍ରୀ ତମାଦି ହୋଇଥିଲେ ସୁଦ୍ଧା ସେ ମକଦ୍ଦମା କରିବାକୁ ଯାଇନଥିଲେ । ଦେଶର ଜନସାଧାରଣଙ୍କଠାରେ ମୁଁ ଯେ ଆର୍ଥିକ ସ୍ୱରାଜ୍ୟ କଥା କହୁଥାଏ, ସେ ଅନେକ ପରିମାଣରେ ତାହା ସାଧନ କରିପାରି ଥିଲେ । ପାରିବାରିକ ବ୍ୟବହାର ନିମନ୍ତେ ଲୁଣ, ହଳଦୀ, ଜିରାମରିଚ ଛଡ଼ା ଅନ୍ୟ କିଛି ତାଙ୍କୁ କିଣିବାକୁ ହେଉନଥିଲା । କୁଟି ମୋଟା ଖାଇବା ଓ କାଟି ମୋଟା ପିନ୍ଧିବା ଦ୍ୱାରା ସେ ଶାନ୍ତି-ସୁଖ-ସମୃଦ୍ଧିରେ ଦିନ ବିତାଉଥିଲେ ଏବଂ ଦେବତା ବ୍ରାହ୍ମଣ ଅତିଥି ଅଭ୍ୟାଗତଙ୍କର

ସାଧ୍ୟାନୁସାରେ ଗୃହସ୍ଥୋଚିତ ସେବା କରି ପାରୁଥିଲେ । ଆମ ଅଞ୍ଚଳରେ ସେ ଜଣେ ପଲ୍ଲୀର କର୍ମୀ ଥିଲେ, ସତ୍ କାର୍ଯ୍ୟରେ ଲୋକଙ୍କୁ ପରାମର୍ଶ ଦେଉଥିଲେ ଏବଂ ବିଶେଷତଃ ଖଦଡ଼ ପ୍ରଚାର ବିଷୟରେ ସମସ୍ତଙ୍କୁ ସାଧ୍ୟମତେ ପ୍ରବର୍ତ୍ତାଉଥିଲେ । ସେ ନିରଳସ, କର୍ମଠ, ତେଜସ୍ୱୀ, ତ୍ୟାଗୀ ଗୃହସ୍ଥ ଥିଲେ । ତାଙ୍କ ବିୟୋଗରେ ମୋର ମେରୁଦଣ୍ଡ ଭାଙ୍ଗିଯାଇଛି ଏବଂ ଜୀବନର କାର୍ଯ୍ୟକ୍ରମରେ ବିଭ୍ରାଟ ଉପସ୍ଥିତ ହୋଇଛି । ସାଧାରଣ କାର୍ଯ୍ୟକ୍ଷେତ୍ରରେ ମୁଁ ଯେ ଏଣିକି ଅବାଧରେ ସମସ୍ତ ଶକ୍ତି, ସମସ୍ତ କେତେଦୂର ଲଗାଇ ପାରିବି ଏହା ଘୋର ଚିନ୍ତାର ବିଷୟ । ମୋର ବ୍ୟକ୍ତିଗତ ଦୁଃଖ କାହାଣୀ ଏଠାରେ ଏତେ ଲେଖିଲି କେବଳ ମୋର ଉପସ୍ଥିତ ଅବସ୍ଥା ଜନସାଧାରଣଙ୍କୁ ଜଣାଇବା ପାଇଁ । ମୁଁ ଜାଣେ ଅନେକ ଯୁବକ ପଢ଼ୁଥିବାବେଳେ ଓ ପଢ଼ାସାରି ଦେଶ କାର୍ଯ୍ୟରେ ଲାଗି ରହିବାକୁ ଏକାନ୍ତ ଇଚ୍ଛୁକ ଏବଂ ଉତ୍ସାହି ଥିଲେ ସୁଦ୍ଧା ଘରଲୋକେ ସେମାନଙ୍କୁ ସେ ସୁବିଧା ଦିଅନ୍ତି ନାହିଁ । ବାପ, ଭାଇ, ମା, ମାଇପ ଅର୍ଥ ଉପାର୍ଜନ ଲାଗି ସେମାନଙ୍କୁ କେଳେଇ ଖାଇଯାଆନ୍ତି । ସମସ୍ତେ ଯେ ଅଭାବ ହେତୁ ଏପରି କରନ୍ତି ତାହା ନୁହେଁ, ଅର୍ଥତୃଷ୍ଣା ଓ କ୍ଷମତାଲାଲସା ଯୋଗୁ ସେମାନେ ଏପରି କରିଥା'ନ୍ତି । ଭାଇନା ନାରାୟଣ ଦାଶ ମୋତେ ସେହିପରି ବିରକ୍ତ ଏବଂ ବିବ୍ରତ କରିଥିଲେ, ମୁଁ ଏକନିଷ୍ଠ ହୋଇ ସ୍ୱଦେଶସେବା କରି ପାରିଥା'ନ୍ତି କି ନାହିଁ ସନ୍ଦେହ । ବିଦେଶୀ ବର୍ଜନ କରି ଲୋକ ଯେ ଏ ଯୁଗରେ ଚଳିପାରେ ତାହା ଭାଇନାଙ୍କ ଜୀବନରେ ମୁଁ ଦେଖିଛି ଏବଂ ମୋର ଏହି ଧାରଣା ହୋଇଛି ଯେ, ସହରରେ ରହି ଯେଉଁମାନେ ବିଦେଶୀ ବା ବିଲାତି ବର୍ଜନ କରିବାକୁ ଚିତ୍କାର କରୁଛନ୍ତି ସେମାନଙ୍କ ଅପେକ୍ଷା ପଲ୍ଲୀବାସୀଙ୍କ ପକ୍ଷରେ ଏହା କାର୍ଯ୍ୟକାରୀ କରିବା ଅଧିକ ସହଜ । ପଲ୍ଲୀ ଉନ୍ନତି, ଗ୍ରାମ ସଙ୍ଗଠନ ଆଦି ବଡ଼ ବଡ଼ କଥା ସହରରେ କହିବା ଅପେକ୍ଷା ପଲ୍ଲୀରେ ସ୍ୱାବଲମ୍ବନ ମତରେ ଚଳିଲେ ଏବଂ ଅନ୍ୟମାନଙ୍କୁ ସେ ମତରେ ପ୍ରବର୍ତ୍ତାଇଲେ ଅଧିକ କାର୍ଯ୍ୟ ହେବ—ମୋର ଏହି ବିଶ୍ୱାସ ଜନ୍ମିଅଛି । ଭାଇନାଙ୍କୁ ମୁଁ ଜୀବନରେ କିଛିମାତ୍ର ସାହାଯ୍ୟ ଦେଇ ନାହିଁ । ମୋ ଦେଶ ସେବାରେ ସେ ଯଥେଷ୍ଟ ସାହାଯ୍ୟ ସହାନୁଭୂତି ଦେଖାଇଛନ୍ତି । ପଲ୍ଲୀର ଗୃହସ୍ଥ ଜୀବନ ବିଷୟରେ ସେ ମୋ ଆଗରେ ଆଦର୍ଶ, ଜୀବନ କାଳରେ ମୋଠାରେ ତାଙ୍କର କିଛି ଭାର ନଥିଲା । ମୃତ୍ୟୁପରେ ମୋ ଉପରେ ସେ ଗୁରୁ ଦାୟିତ୍ୱ ଦେଇ ଚାଲିଗଲେ । ପଲ୍ଲୀରେ ଗୃହସ୍ଥ ଜୀବନର ଆଦର୍ଶ ଜାଗ୍ରତ କରିରଖିବା ସହଜସାଧ୍ୟ ବ୍ୟାପାର ନୁହେଁ । ମୁଁ ପାରିବାରିକ ବ୍ୟାପାରରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ନିଜର ଜମି, ଜାଗା, ବଗିଚାବାଡ଼ି କେଉଁଠାରେ ତାହା ଜାଣେନାହିଁ । ସବୁଘର ମଧ୍ୟ ଦେଖି ନାହିଁ । ମୋର ଘରସଙ୍ଗେ ଏକ ପ୍ରକାର ସମ୍ପର୍କ ନଥିଲା । ଯେ ବୟସରେ ଗୃହୀ ହୋଇଥା'ନ୍ତି ସେ ବୟସରେ ଗୃହତ୍ୟାଗୀ ହୋଇ ରହିଛି । ଯେ ବୟସରେ ଘରଛାଡ଼ି ବାନପ୍ରସ୍ଥ ସାଜନ୍ତି ସେ ବୟସକୁ ଗୃହ ଭାର ଆସି ମୋ ଉପରେ ପଡ଼ୁଛି । ବିଧାତାଙ୍କର ଏଥିରେ କି ଗୂଢ଼ ରହସ୍ୟ ଅଛି ସେ ଜାଣନ୍ତି । ମୁଁ ଏ ଶୋକାଭିଭୂତ ଅବସ୍ଥାରେ କିଛି କର୍ତ୍ତବ୍ୟ ନିରୂପଣ କରିପାରୁ ନାହିଁ । ଭ୍ରାତୃବିୟୋଗ

ଫଳରେ ଦେଶସେବାରେ ଯଦି ମୋର କିଛି ତ୍ରୁଟି ଘଟେ, କରୁଣା ପ୍ରକାଶ କରି କ୍ଷମା ଦେବାଲାଗି ଦେଶବାସୀଙ୍କଠାରେ ପ୍ରାର୍ଥନା କରୁଅଛି । ସବୁ ମଙ୍ଗଳମୟଙ୍କ ଇଚ୍ଛା, ମୁଁ ତାଙ୍କରି ଚରଣରେ ଆତ୍ମୋତ୍ସର୍ଗ କରିଅଛି । ଯହିଁ ତହିଁ ଯେ ଅବସ୍ଥାରେ ଥାଏଁ ତାଙ୍କରି ଇଚ୍ଛା ଓ ଆଦେଶ ପାଳନ କରି ଜୀବନରେ ଶାନ୍ତି ପାଇବି—ଏହି ଆଶାରେ ଆଜି ଆଶ୍ୱସ୍ତ ହେଉଅଛି । ଭାଇ ନାରାୟଣଙ୍କ ସ୍ନେହ-ସୋଦରତାରୁ ଏ ଜୀବନରେ ବଞ୍ଚିତ ହେଲେହେଁ ପରମ ପିତା ମଙ୍ଗଳନିଦାନ ନାରାୟଣଙ୍କ ଅନନ୍ତ ଉତ୍ସଙ୍ଗରେ ଚିରଦିନଲାଗି ମୋ ନିମନ୍ତେ ସ୍ନେହ-ସୁଧାମୟ ସ୍ଥାନ ରହିଛି—ଏହି ବିଶ୍ୱାସରେ ମୁଁ ଦମ୍ଭ ଧୈର୍ଯ୍ୟ ଧରି ରହିଛି । ଏହି ବିଶ୍ୱାସ ନିରନ୍ତର ଦୃଢ଼ ରହୁ—ପ୍ରଭୁଙ୍କ ଶ୍ରୀପଦ୍ମରେ ମୋର ଏକାନ୍ତ ଭିକ୍ଷା ଏବଂ ଦେଶବାସୀଙ୍କଠାରେ ଏହି ଆଶୀର୍ବାଦ ମୋର କାମନା ।

## ନୈତିକତାର ପ୍ରଭାବ

ବଡ଼ଭାଇ ନାରାୟଣ ଦାଶଙ୍କ ଶୁଦ୍ଧି ପାଇଁ ଗୋପବନ୍ଧୁ ଗ୍ରାମକୁ ଯାଇଥା'ନ୍ତି । ସମାଜର ପ୍ରଚଳିତ ନୀତି ଅନୁସାରେ ଅନେକ ବନ୍ଧୁ ବେଭାର ଓ ଲୁଗା ଆଦି ପଠାଇଥାନ୍ତି । ଏହିପରି ଗୋଟିଏ ନୂଆ ଲୁଗାକୁ କୌଣସି ଲୋକ ଚୋରି କରି ନେଇଗଲା । ବହୁତ ଖୋଜାଖୋଜି ପରେ ସନ୍ଧାନ ମିଳିଲା ନାହିଁ । ଏଥିରେ ଗୋପବନ୍ଧୁ ବଡ଼ ବିଚଳିତ ହୋଇ ପଡ଼ିଲେ । କହିଲେ—"ଯେ ଲୁଗା ଚୋରି କରି ନେଇଛି ସେ ନ ଦେଲେ ମୁଁ ଦିନେ ଉପବାସ କରିବି ।" ତାହା ହିଁ କଲେ । ତା'ପର ଦିନ କଚେରୀ ପିଣ୍ଡାରେ ଲୁଗା ଥୁଆ ହୋଇଥିବାର ଦେଖାଗଲା ।

ଆଉ ଥରେ ତାଙ୍କ ଘରେଇ ମାଷ୍ଟରଙ୍କ ଲୁଗାକୁ ତାଙ୍କ ବଡ଼ଭାଇଙ୍କ ନିଜ ନାତି (ସଦାନନ୍ଦ) ଚିରି ଦେଲା । ଗୋପବନ୍ଧୁ ନାତିର ଦୁଷ୍ଟାମିରେ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ । "କହିଲେ, ମୁଁ ଭାରତର ବହୁ ସ୍ଥାନ ବୁଲି ଦେଖିଛି । ଏମିତି ବହୁ ଲୋକଙ୍କ ଘର ଠିଆ ହୋଇଛି । ଭୁଲି ପଡ଼ିଗଲାଣି । ଖାଲି କାନ୍ଥ ଆଁ କରି ଠିଆ ହୋଇଛି । ଏ ଘରର ଅବସ୍ଥା ମଧ୍ୟ ଠିକ୍ ସେଇଆ ହେବ । ଏଠି କେହି ଆଉ ରହିବେନି ।"

ସତକୁସତ ଗୋପବନ୍ଧୁଙ୍କ ଅତି ପ୍ରିୟ କଚେରୀ ଘର ଭାଙ୍ଗିଗଲା । ଆଉ କେହି ଏ ବଂଶରେ ବଂଶଧର ରହିଲେନି । ଏବେ ସଦାନନ୍ଦ ହିଁ ସୁଆଣ୍ଡୋରେ ରହୁଛନ୍ତି ।

ସମସ୍ତ ଓଡ଼ିଶା ଯାହାର ଉତ୍ତରପୁରୁଷ—ତା'ର ଆପଣାର ଘର ଓ ସନ୍ତାନରେ କି ଆବଶ୍ୟକତା ଅଛି ? ପ୍ରତି ଘରକୁ ସେ ଯେପରି ଆପଣାର ବୋଲି ମଣୁଥିଲେ, ଭାରତର ପ୍ରତି ତୀର୍ଥ ଓ ପୁଣ୍ୟ ଭୂମିକୁ ନୀଳାଚଳଧାମ ଭାବରେ ଦେଖୁଥିଲେ । ତାଙ୍କରି ଭାଷାରେ ସେ ନିଜେ ଲେଖିଥିଲେ—

ଥିଲେ ଯହିଁ ତହିଁ ଭାରତ-ବକ୍ଷରେ
ମରିବି ମୁଁ ଅଛୁ ଆପଣା କକ୍ଷରେ ।
ମୋ ନେତ୍ରେ ଭାରତ-ଶିଳା-ଶାଳଗ୍ରାମ,
ପ୍ରତି ସ୍ଥାନ ମୋର ପ୍ରିୟ ପୁଣ୍ୟଧାମ ।
ସକଳ ସଲିଳ ପଞ୍ଚତୀର୍ଥ ଜଳ,
ପ୍ରତି ଧର୍ମାଳୟ ମୋର ନୀଳାଚଳ ।
× × ×
ଥିଲେ ଯହିଁ ତହିଁ ଭାରତ-ଶସ୍ଥଳେ,
ମରିବି ମୁଁ ଅଛୁ ନୀଳାଚଳ ତଳେ ।
ପ୍ରଭୁ ଜଗନ୍ନାଥ ପତିତ-ପାବନ
ଜୀବନେ ମରଣେ ତୁମ୍ଭେ ମୋ ଶରଣ ।''

## ବଢ଼ି କଉଡ଼ି

ଓଡ଼ିଶା ବନ୍ୟା ସାହାଯ୍ୟ କମିଟିର ମୁଖ୍ୟ ଭାବରେ ଗୋପବନ୍ଧୁ ବନ୍ୟା ସାହାଯ୍ୟ କାର୍ଯ୍ୟ ନିୟନ୍ତ୍ରଣ କରୁଥା'ନ୍ତି । ତାଙ୍କ ଆବେଦନକ୍ରମେ 'ଲୋକ-ସେବକ ସମାଜ' ଓ ଭାରତର ବହୁ ବଦାନ୍ୟ ଅନୁଷ୍ଠାନ ତଥା ବ୍ୟକ୍ତିବିଶେଷଙ୍କଠାରୁ ବହୁ ଦାନ ଆସି ପହଞ୍ଚୁଥାଏ । ସେସବୁ କେବଳ ଅନ୍ନଛତ୍ର ଖୋଲି ଦାନ କରିଦେବା ଅପେକ୍ଷା ସ୍ଥାୟୀ କାର୍ଯ୍ୟ ଉଦ୍ଦେଶ୍ୟରେ ବିନିଯୁକ୍ତ ହେଉଥାଏ । ଏପରିକି ଏହି କମିଟି ତରଫରୁ ଘର ତିଆରି ଓ ମରାମତି କାର୍ଯ୍ୟ ମଧ୍ୟ ଚାଲିଥାଏ । ଏଥିରେ ଅସନ୍ତୁଷ୍ଟ ହୋଇ କେହି କେହି କେବଳ ପଇସା ବାଣ୍ଟିବା ଉପରେ ଗୁରୁତ୍ୱ ଦେଉଥା'ନ୍ତି ଓ ଦାବୀ କରୁଥା'ନ୍ତି । ଗୋପବନ୍ଧୁ କିନ୍ତୁ ନିଜ ସିଦ୍ଧାନ୍ତ ଅନୁସାରେ ସାହାଯ୍ୟ ଦାନ କାର୍ଯ୍ୟ ଦୃଢ଼ତାର ସହିତ ନିୟନ୍ତ୍ରଣ କରୁଥା'ନ୍ତି ।

୧୯୨୭ ମସିହା ଡିସେମ୍ବର ଶେଷ ସୁଦ୍ଧା 'ଓଡ଼ିଶା ବନ୍ୟା ସାହାଯ୍ୟ କମିଟି' ଏକ ଖର୍ଚ୍ଚ ଓ କାର୍ଯ୍ୟ ବିବରଣୀ ପ୍ରକାଶ କରିଥିଲେ । ଭାରତର ବହୁ ବିଶିଷ୍ଟ ଖବରକାଗଜମାନଙ୍କରେ ଏହା ପ୍ରକାଶିତ ହୋଇଥିଲା, ମାତ୍ର ଶ୍ରୀ ଭୁବନାନନ୍ଦ ଦାସଙ୍କ ସମ୍ପାଦିତ 'Young Utkal' ସମୁଦାୟ ବିବରଣୀ ପ୍ରକାଶ ନକରି କେବଳ ଆୟବ୍ୟୟ ଛପାଇ କମିଟି କାର୍ଯ୍ୟକଳାପ ଉପରେ ତୀବ୍ର ସମାଲୋଚନା କରିଥିଲେ । ଏ ସମାଲୋଚନା ଆମୂଳଚୂଳ ଗୋପବନ୍ଧୁଙ୍କ ଉପରେ ତୀବ୍ର ଆକ୍ରମଣ ଓ କଟାକ୍ଷପାତ କରିଥିଲା । ସାଧାରଣ କାର୍ଯ୍ୟର ଆଲୋଚନାରେ ଯେଉଁ ସମ୍ପାଦକୀୟ ମର୍ଯ୍ୟାଦା ରହିବା କଥା 'Young Utkal' ସେ ସୀମାକୁ ଟପିଯାଇଥିଲା । ମୋଟ ଉପରେ ଗୋପବନ୍ଧୁଙ୍କ ବିରୁଦ୍ଧରେ ବଢ଼ି କଉଡ଼ି ଆତ୍ମସାତ୍

ହୋଇ ଥିବାର ଅଭିଯୋଗ ଅଣାଯାଇ ୪୨୦୦୦ ଟଙ୍କା ଆଦାୟ ହୋଇଥିବା ସ୍ଥଳେ ଖର୍ଚ୍ଚ ଯଥେଷ୍ଟ କମ୍ ହୋଇଛି ବୋଲି ତୀବ୍ର ଆକ୍ଷେପ କରାଯାଇଥିଲା ।

ଗୋପବନ୍ଧୁ ଏହି ସମ୍ବାଦ ପଢ଼ି ଅତି ଅଧୀରଭାବରେ କାନ୍ଦି ଉଠିଥିଲେ । ନୀଳକଣ୍ଠ ଓ ଲିଙ୍ଗରାଜ ବାବୁ ବଢ଼ି କାମରେ ଗୋପବନ୍ଧୁଙ୍କ ସହିତ ଅତି ପ୍ରତ୍ୟକ୍ଷଭାବରେ ସଂପୃକ୍ତ ଥା'ନ୍ତି । ତାଙ୍କୁ ଟେଲିଗ୍ରାମ୍ ଯୋଗେ ଡକାଇ ଥିଲେ । ନୀଳକଣ୍ଠ ପହଞ୍ଚିବା ମାତ୍ରେ ଗୋପବନ୍ଧୁ ଭୋ' ଭୋ' କାନ୍ଦିପକାଇ କହିଲେ—"ଦେଖ, ଭୁବନାନନ୍ଦ ଲେଖିଚି, ମୁଁ ବଢ଼ି କଉଡ଼ି ଖାଇଗଲି ।" ଆଉ କଥା କହି ପାରିଲେନି । ମାଡ଼ଖାଇଥିବା ଛୋଟ ପିଲା ପରି କେବଳ କାନ୍ଦିବାରେ ଲାଗିଲେ । କୋହ ପରେ କୋହ ଉଠୁଥାଏ । ତାଙ୍କ ନିର୍ମଳ ନିଷ୍ପାପ ଅନ୍ତରରୁ କେତେ ଦୁଃଖ ଓ ବେଦନା ଲୁହ ଆକାରରେ ବୋହିଯାଉଥାଏ ।

ଗୋପବନ୍ଧୁଙ୍କ ବିରୁଦ୍ଧରେ ଏହି ଅଭିଯୋଗ ତାଙ୍କ ବନ୍ଧୁ ଓ ସହକର୍ମୀଙ୍କ ମଧ୍ୟରେ ଖୁବ୍ ଆନ୍ଦୋଳନ ସୃଷ୍ଟି କରିଥିଲା । ସେମାନେ ଏହାର ପ୍ରତିବାଦ ପାଇଁ ବହୁ ଲୋକଙ୍କ ସ୍ୱାକ୍ଷରରେ କଟକରେ ଏକ ସଭା ଡକାଇଲେ । ଏହି ସଭାରେ ବିପୁଳ ଜନସମାଗମ ହୋଇଥିଲା ଏବଂ ଗୋପବନ୍ଧୁ ଚୌଧୁରୀ, ଲିଙ୍ଗରାଜ ମିଶ୍ର ପ୍ରଭୃତି ଦୃଢ଼ତାର ସହିତ ଏହିନୀଚ ଅଭିସନ୍ଧିର ପ୍ରତିବାଦ କରିଥିଲେ । ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ସେନଗୁପ୍ତ ଏହି ବିରାଟ ଜନସଭାରେ ସଭାପତିତ୍ୱ କରିଥିଲେ । ପରେ ଓଡ଼ିଶା ବନ୍ୟା ସାହାଯ୍ୟ କମିଟି ତରଫରୁ ମଧ୍ୟ ଗୋଟିଏ ସ୍ପଷ୍ଟୀକରଣ ପ୍ରକାଶ ପାଇଥିଲା ।

ଏ ସବୁ ସାମୟିକ ମନଗଢ଼ା ଆକ୍ରୋଶମୂଳକ ଆକ୍ଷେପ ନିର୍ଜୀବ ହୋଇ ଯାଇଥିଲେ ମଧ୍ୟ ଗୋପବନ୍ଧୁଙ୍କ କୋମଳପ୍ରାଣ ନିର୍ମଳ ହୃଦୟରେ ଯେଉଁ ଆଘାତ ଲାଗିଥିଲା, ତାହା ସେ ଭୁଲିପାରିଲେ ନାହିଁ । ଦେଶ ଓ ଦଶର ସେବାପାଇଁ ସେ ବ୍ରହ୍ମଚାରୀର ଦୀକ୍ଷା ଆଉ ସନ୍ନ୍ୟାସୀର ସାଧନା ନେଇ ବୁଲୁଥିଲେ । ଖରାତରାରେ, ବର୍ଷା-କାକରରେ ଯେ ନିଜ ଦେହର ସମସ୍ତ ତୃଷ୍ଣା ଓ ଆକାଙ୍‌କ୍ଷାକୁ ଭୁଲି ଦେଶ ପାଇଁ ଆପ୍ରାଣ ଖଟୁଥିଲେ ସେ କିପରି ଏ ଆକ୍ଷେପକୁ ଜପାମାଳି କଲେ । ଏହି ଆଘାତରେ ତାଙ୍କ ସ୍ୱାସ୍ଥ୍ୟ କରତି ହେଉଥିଲା । ଜୀବନ ପ୍ରତି ତାଙ୍କର ମାୟା ଓ ଲୋଭ କ୍ରମେ ତୁଟି ଆସୁଥିଲା । ମରଣର କୀଟ କେଉଁଠି ସେ ସଜଫୁଟା ମନର ଅପଲ୍ଲରାରେ ପଶି ତାକୁ ଘୂଣ କରିବାରେ ଲାଗିଲା । ପ୍ରାଣ ଚାହିଁଲା ଜୀବନର ସମସ୍ତ ଜଞ୍ଜାଳ ତୁଟେଇ ଅନନ୍ତ ବ୍ୟାପ୍ତିରେ ମିଶିଯିବାକୁ । ମନର ସଫା ପରଦାରୁ ଏ କଳା ଛିଟାର ଦାଗକୁ ପୋଛି ଦେଇ ପାରିଲେନି । ବଞ୍ଚିବା କ୍ରମେ ଦୁର୍ବିସହ ବୋଧହେଲା । ଦୁଃଖ, ବେଦନା ଓ ଦୁଶ୍ଚିନ୍ତା ସହିତ ଆତ୍ମାର ଏ ଅପମାନ ଏହି କାନ୍ଦୁରା ମଣିଷଟିକୁ ଅହରହ ଅସ୍ଥିର କରି ପକେଇଲା । ଜଣେ ସାଧାରଣ ରାଜନୀତିଜ୍ଞ ପରି ସେ ଏହି ନିନ୍ଦାବାଦକୁ ସହଜମନରେ ଆତ୍ମସାତ କରିପାରିଲେନି । ତାଙ୍କ ମନ ଅରଣ୍ୟରେ ଏ ଅଗ୍ନିର ଦାହ କ୍ରମେ ସଞ୍ଚରିତ ହେବାକୁ ଲାଗିଲା । ସେ ଦୁର୍ବଳ ହୋଇପଡ଼ୁଥିଲେ ।

# ରୟାଲ କମିସନ

ଭାରତବାସୀଙ୍କ ସ୍ୱାଧୀନତା ଆନ୍ଦୋଳନର ପ୍ରକୃତ ସ୍ୱରୂପ ବୁଝିବା ପାଇଁ ଓ ଶାସନ ବ୍ୟବସ୍ଥା ନିରୂପଣ କରିବା ନିମନ୍ତେ ବ୍ରିଟିଶ୍ ସରକାରଙ୍କ ତରଫରୁ ରୟାଲ କମିସନ ନିଯୁକ୍ତ ହୋଇଥିଲେ । ଏହି କମିସନ ନିଯୁକ୍ତି ଭାରତବାସୀଙ୍କ ପକ୍ଷରେ ଅତ୍ୟନ୍ତ ଅପମାନଜନକ ଥିଲା । କେବଳ ଭାରତୀୟ ମୁକ୍ତିଦାବୀକୁ କାଳକ୍ଷେପ କରି ଗଡ଼ାଇ ଦେବାକୁ ଏ କମିସନ ନିଯୁକ୍ତ ହୋଇଥିଲା ବୋଲି ଗାନ୍ଧିମହାତ୍ମାଙ୍କ ମନରେ ଧାରଣା ଦୃଢ଼ୀଭୂତ ହେଲା । ପରେ ୧୬ । ୧ । ୧୯୨୮ ତାରିଖରେ ଜାତୀୟବାଦୀମାନେ କାଶୀପୀଠରେ ଏକତ୍ର ହୋଇ ଏ ସମ୍ପର୍କରେ ଆଲୋଚନା କରିଥିଲେ । ଭାରତବାସୀଙ୍କ ଇଚ୍ଛା ଓ ମତର ପୂର୍ଣ୍ଣ ଅବଜ୍ଞା କରି ଏ କମିସନ ନିଯୁକ୍ତ ହୋଇଥିବାରୁ ଏ କମିସନ ସହିତ କୌଣସି ଅବସ୍ଥାରେ ସହଯୋଗ ନ କରିବାକୁ ଏଠାରେ ଏକ ପ୍ରସ୍ତାବ ଧାର୍ଯ୍ୟ ହୋଇଥିଲା । ଭାରତର ଶାସନ ବ୍ୟବସ୍ଥା ଭାରତୀୟମାନଙ୍କ ଦ୍ୱାରା ନିରୂପିତ ହେବାପାଇଁ ଦଳମତ ନିର୍ବିଶେଷରେ ଏହି ସଭାରେ ପ୍ରସ୍ତାବ ଗୃହୀତ ହୋଇଥିଲା । ନିଜେ ଗୋପବନ୍ଧୁ ଓଡ଼ିଶାବାସୀଙ୍କୁ ନିବେଦନ ଜଣାଇ ସମସ୍ତ ଘଟଣା ଉଲ୍ଲେଖ କରିଥିଲେ ଓ ରୟାଲ କମିସନକୁ ପୂର୍ଣ୍ଣରୂପେ ବାଛନ୍ଦ କରିବାକୁ ଆହ୍ୱାନ କରିଥିଲେ । ତାଙ୍କର ମନ୍ତବ୍ୟ ଥିଲା—"ମହାଜନୋ ଯେନ ଗତଃ ସ ପନ୍ଥାଃ ।"

୩ । ୨ । ୨୮ ତାରିଖ ଶୁକ୍ରବାର ଦିନ ବମ୍ବେ ବନ୍ଦରରେ ରୟାଲ ଭ୍ରାତୃଦ୍ୱୟ ପହଞ୍ଚିବା ମାତ୍ରେ ସମଗ୍ର ବମ୍ବେ ସହର ଓ ଭାରତର ସମସ୍ତ ସାନବଡ଼ ସହରରେ ପ୍ରତିକ୍ରିୟା ସ୍ପଷ୍ଟ ହୋଇ ଉଠିଥିଲା । ବମ୍ବେ ସହରରେ ସତ୍ୟାଗ୍ରହ ଓ ହରତାଳ ଧ୍ୱଂସାକାଣ୍ଡ ଆଡ଼କୁ କ୍ରମେ ଗତିକଲା । ଓଡ଼ିଶାରେ ସ୍ୱତଃସ୍ଫୁର୍ତ୍ତି ଭାବରେ ପ୍ରାୟ ସମସ୍ତ ସହର ଓ ସଦର ମହକୁମାରେ କମିସନ ବିରୁଦ୍ଧରେ ହରତାଳ ପାଳିତ ହେଲା । ଅସହଯୋଗ ଆନ୍ଦୋଳନର ପାଞ୍ଚ-ଛ'ବର୍ଷ ମଧ୍ୟରେ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ଏପରି ଉତ୍ତେଜନା ବା ହରତାଳର ଚହଲ ନଥିଲା । ଆନ୍ଦୋଳନର ଶେଷ ଅଗ୍ନିଶିଖା ଗୋପବନ୍ଧୁଙ୍କ ଜେଲଯାତ୍ରା ସହିତ ଓଡ଼ିଶାରୁ ପ୍ରାୟ ନିଭି ଯାଇଥିଲା । ତେଣୁ କଟକରେ ସୁଦ୍ଧା ଏ ହରତାଳ ହେବ କି ନହେବ ଅନେକଙ୍କର ଆଶଙ୍କା ଥିଲା, ମାତ୍ର କାର୍ଯ୍ୟରେ ଠିକ୍ ଭିନ୍ନ ରୂପ ପ୍ରକାଶ ପାଇଥିଲା । ଦିନ ତାରିଖ ସକାଳେ ଦେଖିଲାବେଳକୁ କଟକ ସହର ନିସ୍ତବ୍ଧ । ଘୋଡ଼ାଗାଡ଼ି ଓ ବଳଦଗାଡ଼ି ଖଣ୍ଡିଏ ହେଲେ ଚାଲୁନାହିଁ । ଜାତୀୟ ସଙ୍ଗୀତ ବୋଲି କଂଗ୍ରେସକର୍ମୀ ଓ ଯୁବକଗଣ ପଟୁଆରରେ ସହର ପରିକ୍ରମା କରିଥିଲେ । ସନ୍ଧ୍ୟା ୫ ଘଣ୍ଟାରେ କଦମରସୁଲ୍‌ଠାରେ ବିରାଟ ସାଧାରଣ ସଭା ହୋଇଥିଲା । ଓକିଲ, ମୁକ୍ତାର, ଜମିଦାର ଆଦି ଇଂରେଜ ସରକାରଙ୍କ ଅନୁଗ୍ରହପ୍ରାର୍ଥୀ ବିଶିଷ୍ଟ ବ୍ୟକ୍ତିମାନେ ଏଥିରେ ଯୋଗ ଦେଇନଥିଲେ । ଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଏ ସଭାରେ ସଭାପତିତ୍ୱ କରିଥିଲେ । ଏ ସଭାରେ କାଶୀସଭା ଅନୁରୂପ କେତେକ ପ୍ରସ୍ତାବ ଗୃହୀତ ହୋଇଥିଲା । ଏ ପ୍ରସ୍ତାବ ତତ୍କାଳୀନ ବିହାର-

ଓଡ଼ିଶା କାଉନ୍‌ସିଲ୍ ସଭ୍ୟ ପଣ୍ଡିତ ଲିଙ୍ଗରାଜ ମିଶ୍ର ଆଗତ କରିଥିଲେ ଓ ଉତ୍କଳମଣି ଗୋପବନ୍ଧୁ ଏହାକୁ ସମର୍ଥନ କରି ବକ୍ତବ୍ୟ ଦେଇଥିଲେ ।

ଓଡ଼ିଶାର ଏକ ଜାତୀୟ ସତ୍ୟାଗ୍ରହ ବିରୁଦ୍ଧରେ ସରକାରୀ କର୍ତ୍ତୃପକ୍ଷ ସ୍ୱାଭାବିକ ପ୍ରତିକ୍ରିୟାଶୀଳ ହୋଇ ଉଠିଥିଲେ । ବକ୍‌ସିବଜାର ମାର୍କେଟର ଖାସମାହାଲ ଭଡ଼ାଘରେ ଦୋକାନ କରୁଥିବା କେତେକ ମୁଖିଆ ବ୍ୟବସାୟୀ ହରତାଳରେ ଯୋଗ ଦେଇଥିବାରୁ ଖାସମାହାଲ ଡେପୁଟି କଲେକ୍ଟର ସେମାନଙ୍କ ଦୋକାନ ଦୁଆରେ ଘୃଷ ପକାଇ ଦେଇଥିଲେ । କଟକରେ କେହି କେହି ମ୍ୟୁନିସିପାଲିଟି ସଭ୍ୟ ଓ କର୍ମଚାରୀ ଏହି ହରତାଳରେ ବାଧା ଜନ୍ମାଇବା ନିମନ୍ତେ ଲୋକଙ୍କୁ ନାନାପ୍ରକାର ଧମକ-ଚମକ ମଧ୍ୟ ଦେଇଥିଲେ ।

ଓଡ଼ିଶାର ଛାତ୍ରମାନେ ଏ ଜାତୀୟ ଜାଗରଣରେ ଅଭୂତପୂର୍ବ କୃତିତ୍ୱ ପ୍ରଦର୍ଶନ କରିଥିଲେ । ଏ ଜାତୀୟ ଆଦେଶକୁ ପାଳନ କରି ସେମାନେ ସେଦିନ ସ୍କୁଲ କଲେଜ ବର୍ଜନ କରିଥିଲେ । ବିଶେଷତଃ ଡାକ୍ତରୀ ଛାତ୍ରମାନେ ଏ ହରତାଳରେ ପୂର୍ଣ୍ଣରୂପେ ଯୋଗ ଦେଇଥିଲେ । ଓଡ଼ିଶାର ପ୍ରାୟ ସବୁ ଶ୍ରେଷ୍ଠ ବଡ଼ ସହର ଓ ମହକୁମାରେ ଏ ହରତାଳ ସଫଳତାର ସହିତ ପାଳିତ ହୋଇଥିଲା ।

## ପରୋପକାରାୟ ସ୍ୱର୍ଗାୟ

ଗୋପବନ୍ଧୁଙ୍କ ପାଇଁ ସ୍ୱର୍ଗ ଥିଲା ଓଡ଼ିଶାର ଧୂଳିମଳିନ ଜୀବନ । ଧର୍ମ ଥିଲା ଜନତାର ସେବା । ସେ ଜଗନ୍ନାଥ, ରାମ, କୃଷ୍ଣ, ଯୀଶୁ, ନାନକ ସମସ୍ତଙ୍କୁ ଏହି ବିଶାଳ ନରନାରୀସମୂହଙ୍କ ଦେହରେ ଦେଖୁଥିଲେ । ଜୀବନର ଏ ମହତୀ ଦୀକ୍ଷାରେ ସେ କେବେ ତ୍ରୁଟି କରିନାହାନ୍ତି— କେବେ ବ୍ୟତିକ୍ରମ ହୋଇନାହିଁ ।

ସନ ୧୯୨୮ ମସିହା ଫେବ୍ରୁଆରୀ କିମ୍ବା ମାର୍ଚ୍ଚ ମାସ ହେବ । ଗୋପବନ୍ଧୁଙ୍କ ବନବିଦ୍ୟାଳୟ ଛାଞ୍ଚରେ ଯାଜପୁର ଥାନାର ଓଲସିଂହରେ ଗୋଟିଏ ବିଦ୍ୟାଳୟ ଗଠିତ ହେଉଥାଏ । ଗୋପବନ୍ଧୁ ଏ ଖବର ପାଇ ସ୍କୁଲ ଦେଖିବାକୁ ଆସିଥାନ୍ତି । ଗୋପବନ୍ଧୁ ଆସିଛନ୍ତି ବୋଲି ଚାରିଆଡ଼େ ଆଶା, ଉତ୍ସାହ ଓ ଉଦ୍ଦୀପନା ଖେଳିଯାଇଥାଏ । ସେ ଆସି ପହଞ୍ଚିଲେ । ଗୋଟିଏ ଖଟରେ ତାଙ୍କ ପାଇଁ ସାଦାସିଧା ବିଛଣାଟିଏ କରିଦିଆହେଲା । ପିଲାମାନେ ଉତ୍ସୁକ ହୋଇ ଖଟତଳେ ଘେରି ବସିଥାନ୍ତି । ହସ ଖୁସିରେ ଅନେକ କଥାବାର୍ତ୍ତା ଚାଲିଥାଏ । ଗୋପବନ୍ଧୁ ଦେଶ, ଜନତା, ବଢ଼ି, ମରୁଡ଼ି ଓ ଲୋକସେବା କଥା କୋମଳମତି ଛାତ୍ରଙ୍କୁ କହି ତନ୍ମୟ କରୁଥାନ୍ତି । ଦେଶଆଡ଼ୁ ଈଶ୍ୱରଙ୍କ ପର୍ଯ୍ୟନ୍ତ ଆଲୋଚନାର ପରିସର ବ୍ୟାପୃତ ଥିଲା ।

ବର୍ତ୍ତମାନ ଶ୍ରୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକ, ବି. ଏ., ଓ. ଏ. ଏସ୍. ସେତେବେଳେ ଓଲସିଂହ ସ୍କୁଲର ଅଷ୍ଟମ ଶ୍ରେଣୀର ଛାତ୍ର । ସେ ଅନୁସନ୍ଧିତ୍ସୁ ହୋଇ ପଚାରିଲେ—"ଈଶ୍ୱରଙ୍କୁ ଦେଖିବାର ଉପାୟ କ'ଣ ?"

ଉତ୍ତରରେ ଗୋପବନ୍ଧୁ କହିଲେ—"ଦୁଃଖୀରଙ୍କୀଙ୍କ ଦୁଃଖ ଦୂର କଲେ, କ୍ଷୁଧାର୍ତ୍ତକୁ ଅନ୍ନ ମୁଠାଏ ଦେଲେ, ତୃଷାର୍ତ୍ତକୁ ଜଳ ମୁନ୍ଦାଏ ଦେଲେ, କେହି ବିପଦ ଆପଦରେ ପଡ଼ିଲାବେଳେ ତାଙ୍କୁ ସର୍ବାନ୍ତଃକରଣରେ ସାହାଯ୍ୟ କଲେ, ମୂଳତଃ ପରର ଉପକାର କଲେ ଈଶ୍ୱରଙ୍କ ଦର୍ଶନ ମିଳେ । ତେଣୁ କଥାରେ ଅଛି—''ପରୋପକାରାୟ ସ୍ୱର୍ଗୀୟ" । ଏହି କଥାକୁ ବୁଝାଇ ସାଧୁ ସନ୍ନ୍ୟାସୀମାନେ ଗୋଟିଏ ଭଲକଥା କହିଛନ୍ତି—ଶହେ କାମ ଥାଉ ପଛକେ, ଭୋକ ଲାଗିଲେ ଖାଇବାକୁ ହେବ । ହଜାର କାମ ଥିଲେ ଗାଧୁଆବେଳ ଆସିଲେ ଗାଧୋଇବାକୁ ହେବ । ଅଯୁତ କାମ ଥିଲେ ମଧ୍ୟ ଝାଡ଼ା ପରିସ୍ରା ଦେଖାଇଲେ ଯିବାକୁ ହେବ । ସେହିପରି ଲକ୍ଷେ କାମ ପଛକୁ ରଖି ପରକୁ ଦରକାର ବେଳେ ସାହାଯ୍ୟ କରିବାକୁ ଯିବାକୁ ହେବ । ପର ସେବା କରିବା ଯାହା, ଭଗବାନଙ୍କୁ ପ୍ରାର୍ଥନା କରିବା ତାହା । ବରଂ ଭଗବାନ୍ ଚାହାନ୍ତି କେହି ତାଙ୍କୁ ନଡାକି ପରର ସେବା କରୁ ସେଥିରେ ତା'ର ସ୍ୱର୍ଗଲାଭ ହେବ ।

ଛାତ୍ର ଶ୍ରୀ ପଟ୍ଟନାୟକ ପୁଣି ପଚାରିଲେ—''ଆଜ୍ଞା, ମୁନି ଋଷିମାନେ ତ ସବୁବେଳେ ଆଖିବୁଜି ଧ୍ୟାନ କରୁଥାନ୍ତି । ସେମାନେ ପରର ଉପକାର କରନ୍ତି କେତେବେଳେ ? ତା'ହେଲେ ସେମାନେ ଈଶ୍ୱରଙ୍କୁ କ'ଣ ପାଆନ୍ତି ନାହିଁ ?"

ଅତି ଗମ୍ଭୀରଭାବରେ ଭାବଗଦ୍‌ଗଦ ହୋଇ ଗୋପବନ୍ଧୁ ଉତ୍ତର ଦେଲେ, "ଆରେ ବାପା ଏ ତ ବଡ଼ ମୁସ୍କିଲ ପ୍ରଶ୍ନ । କିଏ କହିଲା ମୁନି ଋଷିମାନେ କେବଳ ଆଖିବୁଜି ଈଶ୍ୱରଙ୍କୁ ଧ୍ୟାନ କରନ୍ତି—ଆଉ କିଛି କରନ୍ତି ନାହିଁ ?" ତୁମେ ପଢ଼ିଥିବ ବାଲ୍ମୀକି ମୁନି ନିରାଶ୍ରୟା ସୀତାଙ୍କୁ ଆଶ୍ରୟ ଦେଇଥିଲେ; କଣ୍ୱମୁନି ଶକୁନ୍ତଳାଙ୍କୁ ପାଳିଥିଲେ । ପ୍ରାୟ ସବୁ ମୁନିଋଷିଙ୍କ ଆଶ୍ରମରେ ବିଦ୍ୟାଦାନ କରାଯାଉଥିଲା । ସେମାନେ ଥିଲେ ଗୁରୁ । ତେଣୁ ବହୁ ଶିକ୍ଷାର୍ଥୀଙ୍କୁ ଅନ୍ନବସ୍ତ୍ର ଦେଇ ବିଦ୍ୟାଶିକ୍ଷା ଦେଉଥିଲେ । ତୁମେ ଋଷ୍ୟଶୃଙ୍ଗ ମୁନିଙ୍କ କଥା ଶୁଣିଥିବ । ଯେତେବେଳେ ଲୋମପାଦ ରାଜାଙ୍କ ରାଜ୍ୟରେ ବାର ବର୍ଷ କାଳ ବର୍ଷା ନହେବାରୁ ମହା ମରୁଡ଼ି ପଡ଼ିଲା, ଲକ୍ଷ ଲକ୍ଷ ଲୋକ ଭୋକ ଉପାସରେ ମଲେ, ସେତେବେଳେ ଋଷ୍ୟଶୃଙ୍ଗ ଆସି ଲୋକଙ୍କୁ ଏ କଷ୍ଟରୁ ରକ୍ଷାକଲେ । ଋଷିମାନେ ଈଶ୍ୱରଙ୍କୁ ଧ୍ୟାନ କରିବା ସଙ୍ଗେ ସଙ୍ଗେ ପରୋପକାରକୁ ବ୍ରତ ଭାବରେ ଗ୍ରହଣ କରିଥାନ୍ତି । ତେଣୁ ଦରକାର ହେଲେ ଧ୍ୟାନରୁ ଉଠି ଆଗ ପରୋପକାର ପାଇଁ ବାହାରିପଡ଼ନ୍ତି ।

ଏଇ ସରଳ ଉତ୍ତର କିଛି ଅଭିନବ ନଥିଲା; କିନ୍ତୁ ଏ କଥା କହିବାରେ ସେଇ ପବିତ୍ର ଆତ୍ମାର ଆନ୍ତରିକତା ଆଜି ଭୁଲିବାର ନୁହେଁ । ଗୋବିନ୍ଦବାବୁ କହନ୍ତି, ଏଇ ସରଳ କଥା କେଉଁପରି ସେଦିନ ଛାତ୍ରଙ୍କ ହୃଦୟକୁ ବେଶ୍ ଅଭିଭୂତ କରିପାରିଥିଲା । କେହି ବା ନିଜ

ଜୀବନ ପାଇଁ ଏଇ ମୂଲ୍ୟବାନ୍ କେତୋଟି ମୁହୂର୍ତ୍ତ ଓ କେତୋଟି କଥାକୁ ଜୀବନ ଭରି ହୃଦୟସ୍ଥ କରି ରଖିଥିଲେ ।

( ଶ୍ରୀ ଗୋବିନ୍ଦଚନ୍ଦ୍ର ପଟ୍ଟନାୟକଙ୍କ ସ୍ମୃତିରୁ

## 'ସମାଜ' ନାମରେ ମାନହାନି ମୋକଦ୍ଦମା

୧୨।୧୧।୧୯୨୭ ତାରିଖ 'ସମାଜ'ରେ ପାରିକୁଦରେ ପୋଲିସ୍ ଜୁଲମ ନାମରେ ଏକ ଲେଖା ପ୍ରକାଶ ପାଇଥିଲା । ଖଲିକୋଟ୍‌ରୁ ପାରିକୁଦକୁ ଆସୁଥିବା ଜଣେ ତେଲିକ ମହାଜନଠାରେ ଘେରି ଆଣିଙ୍କା କରି ପୋଲିସ୍ ମହାଜନ ଉପରେ ବହୁତ ଜୁଲମ କରିଥିଲେ । ଶେଷକୁ ମହାଜନ ପାଞ୍ଚ ଟଙ୍କା ଲାଞ୍ଚଦେଇ ଉଦ୍ଧାର ପାଇଲା ବୋଲି ଖବରରେ ପ୍ରକାଶ ପାଇଥିଲା । ନଭେମ୍ବର ୨୬ ତାରିଖରେ ଏ ଲେଖା ଉପରେ ପୋଲିସ୍ ତରଫରୁ ଏକ ପ୍ରତିବାଦ ମଧ୍ୟ ଏହି 'ସମାଜ'ରେ ପ୍ରକାଶିତ ହୋଇଥିଲା । ଅଧିକନ୍ତୁ ତେଲି ମହାଜନ ପୋଲିସ୍ ନାମରେ ଫୌଜଦାରୀ ଦଫା ଅନୁସାରେ ନାଲିସ୍ କରିଥିଲେ । ଜୁଲମ ଘଟଣା ସତ ବୋଲି ଡେପୁଟୀ ମାଜିଷ୍ଟ୍ରେଟ ବିଶ୍ୱାସ କଲେ, ମାତ୍ର ଯଥେଷ୍ଟ ପ୍ରମାଣ ନଥିବାରୁ ଆସାମୀକୁ ସଜା ଦେଇ ପାରିଲେ ନାହିଁ । ମୁଦେଇ ପକ୍ଷରୁ ସାକ୍ଷ୍ୟ ଦିଆଯାଇଛି ବୋଲି ତାଙ୍କ ନାମରେ ୧୯୩ ଧାରାରେ ମକଦ୍ଦମା ଚଳାଇବାକୁ ପୋଲିସ୍ ଅନୁମତି ଲୋଡ଼ିଥିଲେ । ବିଚାରପତି କିନ୍ତୁ ଏହାକୁ ନାମଞ୍ଜୁର କରିଥିଲେ । ପରେ ଜଜ୍‌କୋର୍ଟରେ ପୋଲିସ ଏଥିପାଇଁ ଅପିଲ୍ କଲେ; ତାହା ମଧ୍ୟ ନାମଞ୍ଜୁର୍ ହେଲା ।

ଏହାମଧ୍ୟରେ ପାରିକୁଦର ସମ୍ବାଦଦାତା ଜଣାଇଲେ ଯେ, "ମହାଜନ ପୋଲିସ୍‌କୁ ପାଞ୍ଚ ଟଙ୍କା ଦେଇଥିବା ଠିକ୍ ନୁହେଁ ।" ତେଣୁ ପୂର୍ବ ସମ୍ବାଦ ପାଇଁ 'ସମାଜ'ରେ ସ୍ପଷ୍ଟ ଭାବରେ ଦୁଃଖ ପ୍ରକାଶ ସହିତ କ୍ଷମାପ୍ରାର୍ଥନା କରାଯାଇଥିଲା । ତଥାପି ପାରିକୁଦର ପୋଲିସ୍ ସବ୍-ଇନସ୍‌ପେକ୍ଟର ସମ୍ପାଦକ ଓ ପ୍ରକାଶକଙ୍କ ନାମରେ ପୁରୀ ଜିଲା ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ ଫୌଜଦାରୀ ମାନହାନି ମକଦ୍ଦମା ଦାଏର୍ କରିଥିଲେ ।

ଏ ସମୟରେ ଗୋପବନ୍ଧୁଙ୍କ ଦେହ ବାରମ୍ବାର ବେରାମ ରହୁଥିଲା, ସ୍ୱାସ୍ଥ୍ୟ କ୍ରମେ ଭାଙ୍ଗି ଯାଉଥିଲା । ଏପରି ଅବସ୍ଥାରେ ସତ୍ୟାନୁରାଗ ଓ ସତ୍ୟପ୍ରକାଶ ପାଇଁ ପୁଣି ଏ ମକଦ୍ଦମା ତାଙ୍କୁ ବିବ୍ରତ କରି ଦେଇଥିଲା । ତାଙ୍କ ପ୍ରାଣର ନିଷ୍ଠାପର ଆକାଙ୍କ୍ଷାକୁ ବୁଝିବା ପାଇଁ ପୋଲିସ୍‌ର ବିବେକ ନଥିଲା । ସମାଜ ଓ ସାମ୍ବାଦିକତାର ଏକ ଶୁଭ ପରମ୍ପରା ସୃଷ୍ଟି କରିବାକୁଯାଇ ସେ ପୁନଶ୍ଚ ପୋଲିସର ଶରବ୍ୟ ହେଲେ । ୧୯୨୮ ମସିହା ମେ' ମାସ ଦଶ ତାରିଖକୁ ଏହି ମକଦ୍ଦମାର ତାରିଖ ଧାର୍ଯ୍ୟ ହୋଇଥିଲା ।

# ଏ ସମୟର ଓଡ଼ିଶା

ସମସାମୟିକ ପ୍ରଚଳିତ ଶିକ୍ଷାରେ ଓଡ଼ିଶା ଅନ୍ୟାନ୍ୟ ପ୍ରଦେଶମାନଙ୍କ ତୁଳନାରେ ବହୁ ପଛରେ ପଡ଼ିଥିଲା । ଫଳରେ ଏହି ବିସ୍ତୃତ ଭୌଗୋଳିକ ଅଞ୍ଚଳର ଲୋକମାନଙ୍କ ମନରେ ବହୁ ଗ୍ଲାନି, ଦୈନ୍ୟ ଓ କୁସଂସ୍କାର ସ୍ୱାଭାବିକ ଭାବରେ ଭରି ରହିଥିଲା । ସାମାଜିକ ବ୍ୟାଧି ସହିତ ମାନସିକ ବ୍ୟାଧି ସେମାନଙ୍କ ମନରୁ ସମସ୍ତ ସରସତାକୁ ଅପସାରଣ କରିଦେଇଥିଲା । ମାଲିମୋକଦ୍ଦମା କରି ଓ ଗଞ୍ଜେଇ ଅଫିମ ଖାଇ ଲୋକେ ସର୍ବସ୍ୱାନ୍ତ ହେଉଥିଲେ । ସମଗ୍ର ଭାରତ ମଧ୍ୟରେ ଓଡ଼ିଶାରେ ହିଁ ଅଧିକ ଭାବରେ ଲୋକେ ଅଫିମ ଖାଉଥିଲେ । ଗୋପବନ୍ଧୁ ଏଥିରେ ଅତି ବ୍ୟଥିତ ହୋଇ ଏହାକୁ ଏକ ଅଜ୍ଞାତ ଆତ୍ମହତ୍ୟା ବୋଲି ଦୃଢ଼ଭାବରେ କହିଥିଲେ । ଦେଶର ଏପରି ଅବସ୍ଥାରେ ଦେଶମିଶ୍ରଣ ପ୍ରଶ୍ନ ନିରର୍ଥକ ଭାବ ତାଙ୍କ ହୃଦୟ ଶୋକକାତର ହୋଇ ପଡ଼ୁଥିଲା । ଲୋକଙ୍କୁ ଅଧିକ ଅବକାଶ ନିଶା ସେବନ କରିବାର ସୁଯୋଗ ଦେଇ ପରୋକ୍ଷରେ ସେମାନଙ୍କ ଚିନ୍ତାଶକ୍ତିକୁ ପଙ୍ଗୁ କରିଦିଆଯାଉଛି ବୋଲି ସେ ସରକାରଙ୍କୁ ଅଭିଯୁକ୍ତ କରିଥିଲେ । ୧୧ । ୪ । ୨୮ ତାରିଖ ସମାଜରେ 'ଓଡ଼ିଆର ଆତ୍ମହତ୍ୟା' ଶିରୋନାମାରେ ସେ ଏ ସମ୍ପର୍କରେ ସମସ୍ତ ହିସାବ ଦେଇ ଏକ ଚିନ୍ତାମୂଳକ ଲେଖା ପ୍ରକାଶ କରିଥିଲେ । ଅଧିକ ପରିମାଣରେ ଅଫିମ ସେବନ ଓଡ଼ିଶାବାସୀଙ୍କ ମନକୁ ଦୁର୍ବଳ କରି ଦେଉଥିବା କଥା ସେ ସ୍ପଷ୍ଟ ଅନୁଭବ କରିଥିଲେ ।

ପୁନଶ୍ଚ ଇଂରେଜ ସରକାରଙ୍କ ଅତ୍ୟାଚାରରେ ଲୋକେ ଏପରି ଭୟଭୀତ ହୋଇପଡ଼ିଥିଲେ ଯେ, ତାହାର ଏକ ସ୍ପଷ୍ଟ ଓ ନିର୍ଦ୍ଦିଷ୍ଟ ଘଟଣା ୧୯୨୮ ମସିହାରେ କଟକ ସହରରେ ଘଟିଥିଲା । ସେତେବେଳେ କଟକ ଜିଲ୍ଲା କଂଗ୍ରେସ ସମ୍ମିଳନୀ ପାଇଁ ଆୟୋଜନ ହେଉଥାଏ । ବିଜ୍ଞାପନ ଓ ପ୍ରଚାରପତ୍ର ଛପାଇବା ପାଇଁ ଗୋଟିଏ ଛାପାଖାନାକୁ ବରାଦ କରାଯାଇଥିଲା । ବିଜ୍ଞାପନ କମ୍ପୋଜ୍ ହେଲା, ପ୍ରୁଫ୍ ସଂଶୋଧନ ହେଲା; ମାତ୍ର ତା' ପରଦିନ ଉଦ୍ୟୋକ୍ତାମାନେ ଛାପା ବିଜ୍ଞାପନ ନେଇଗଲା ବେଳକୁ ପ୍ରେସର ପରିଚାଳକ ଛାପା ହୋଇ ନାହିଁ ବୋଲି କହିଲେ । ବିଜ୍ଞାପନରୁ 'ବନ୍ଦେମାତରଂ' ଓ 'ବୁଲେଟିନ୍ ନମ୍ବର ଦୁଇ'—ଏ ଦୁଇଟି କଥା ଉଠାଇ ନଦେଲେ ସେ ଛାପିବାକୁ ତାଙ୍କ ଅକ୍ଷମତା ଜଣାଇଲେ । ଉଦ୍ୟୋକ୍ତା ପଚାରିଲେ— "ବନ୍ଦେମାତରଂ" କହିଲେ ଆପଣ କଣ 'ବାନ୍ଧ ବା ମାର' ବୋଲି ବୁଝୁଁଛନ୍ତି କି ? ପ୍ରେସ୍ ପରିଚାଳକ କହିଲେ—"ଆମେ ସିନା ବୁଝୁଁନାହୁଁ, ସରକାର ତ ତାହାହିଁ ବୁଝୁଁଛନ୍ତି ।" ପରିଚାଳକ ଶେଷପର୍ଯ୍ୟନ୍ତ ବୁଝିଲେ ନାହିଁ କମ୍ବା ବିଜ୍ଞାପନ ଛପାଇଲେ ନାହିଁ । 'ବୁଲେଟିନ୍' ବୋଇଲେ 'ଗୁଳି ଭିତରେ' ଓ 'ବନ୍ଦେମାତରଂ' ବୋଇଲେ 'ବାନ୍ଧ ଓ ମାର' ଏହା ଯେ ସେ ବୁଝିଛନ୍ତି ସେଥିରୁ ଆଉ ଘଲେ ଟଳିଲେ ନାହିଁ । ଗୋପବନ୍ଧୁ ଏଥିରେ ବ୍ୟଥିତ ହୋଇ 'ସମାଜ' ମାଧ୍ୟମରେ ପ୍ରେସ୍ କର୍ମଚାରୀମାନଙ୍କୁ ନିର୍ଭୀକ ହେବାକୁ ଉଦ୍‌ବୋଧନ ଦେଇଥିଲେ ।

ଏହି ସମୟରେ ବ୍ରାହ୍ମଣ ସମାଜରେ ପ୍ରଚଳିତ ଥିବା ନିଷ୍ଠୁର ବୈଧବ୍ୟ ପ୍ରଥା ଅନୁସାରେ ବହୁ ବାଳ-ବିଧବା ଆଜୀବନ ଦୁଃଖ ଓ କଷ୍ଟ ଭୋଗୁଥିଲେ । ସେମାନଙ୍କୁ ନେଇ ବେଳେବେଳେ ସମାଜରେ ବହୁ କଳଙ୍କର କାହାଣୀ ରଚିତ ହେଉଥିଲା । କେତେକ ଦୁଷ୍ଟମତି ଲୋକ ଏହିପରି ଅନେକ ବିଧବାଙ୍କୁ କୁମନ୍ତ୍ରଣା ଦେଇ କଲିକତା ଓ ରେଙ୍ଗୁନ ଆଦିରେ ବିକ୍ରୀ କରି ଦେଉଥିଲେ । ଏହା ଗୋପବନ୍ଧୁଙ୍କ ଅନ୍ତରରେ ଘୋର ଆଘାତ ଦେଇଥିଲା । ସେ ନିଜେ ବିଧବାମାନଙ୍କ ସାମାଜିକ ନିରାପତ୍ତା ଓ ବୌଦ୍ଧିକ ଉନ୍ନତି ପାଇଁ ସତ୍ୟବାଦୀଠାରେ ବିଧବାଶ୍ରମ ଖୋଲିଥିବା କଥା ଆଗରୁ ଆଲୋଚିତ ହୋଇଅଛି । ତଥାପି ଏ ଉତ୍କଟ ସମସ୍ୟାକୁ ସେ ସମାଧାନ କରି ପାରିନଥିଲେ । 'ସମାଜ'ରେ ତାଙ୍କର ବାରମ୍ବାର ନିବେଦନ ସତ୍ତ୍ୱେ ପ୍ରଗତିପନ୍ଥୀ ଓଡ଼ିଆ ଯୁବକମାନେ ବିଧବା ବିବାହ ପାଇଁ ଅଧିକ ସଂଖ୍ୟାରେ ଆଗେଇ ଆସୁ ନଥିବା ସେ ସ୍ପଷ୍ଟ ଲକ୍ଷ୍ୟ କରିଥିଲେ ।

ଆଉ ଗୋଟିଏ ସମସ୍ୟା ଉପରେ ଗୋପବନ୍ଧୁ ଲେଖନୀ ଚଳାଇଥିଲେ । ତାହା ହେଉଛି ଓଡ଼ିଶା ଛାଡ଼ି ପେଟ ପୋଷିବା ନିମନ୍ତେ ଓଡ଼ିଆମାନଙ୍କର ବିଦେଶ ଯାତ୍ରା । ଏମାନେ କଲିକତା, କାଲିମାଟି ଓ ରେଙ୍ଗୁନ୍ ଆଦିରେ ବହୁ ହୀନ କାର୍ଯ୍ୟରେ ଆପଣାର ଶକ୍ତି ସାମର୍ଥ୍ୟର ଅପଚୟ କରୁଥିଲେ । ଏକଦା ଦୁର୍ମଦ ଓଡ଼ିଆ ଜାତିର ଏହି କରୁଣ ପରିଣତି ଗୋପବନ୍ଧୁଙ୍କ କୋମଳ ଅନ୍ତରକୁ ଦୋହଲେଇ ଦେଇଥିଲା । ସେ ଯେଉଁ ଆଡ଼କୁ ଚାହୁଁଥିଲେ, ସେଆଡ଼ ଯେପରି ତାଙ୍କୁ ନିଶୂନ୍ ଜଣାଯାଉଥିଲା, ତାଙ୍କ ମନର ସକଳ ଆଶା, ଉଦ୍ୟମ ଓ କର୍ମପ୍ରବାହ ନିଷ୍ଠୁର ପରିସ୍ଥିତିର ନିଷ୍ପୀଡ଼ନ ପାଖରେ ଅସହାୟଭାବରେ ଆତ୍ମସମର୍ପଣ କରିବା ସାର ହେଉଥିଲା । ସେ ବିଚଳିତ ହୋଇପଡ଼ୁଥିଲେ ।

## ଲୋକସେବକ ସମାଜର ଉପସଭାପତି

ଲାହୋରଠାରେ 'ଲୋକସେବକ ସମାଜ'ର ବାର୍ଷିକ ଅଧିବେଶନ ୧୯୨୮ ମସିହା ଏପ୍ରିଲ ମାସ ଶେଷ ଭାଗରେ ଅନୁଷ୍ଠିତ ହେଲା । ଗୋପବନ୍ଧୁ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ଏହି ସଭାରେ ଯୋଗ ଦେବାପାଇଁ ଏପ୍ରିଲ ୧୨ ତାରିଖରେ ସତ୍ୟବାଦୀ ଛାଡ଼ିଲେ । ଲାଲାଜୀ ସେତେବେଳେ କୌଣସି କାର୍ଯ୍ୟ ଉଦ୍ଦେଶ୍ୟରେ ଦିଲ୍ଲୀରେ ଥା'ନ୍ତି । ସେଠାରେ ଲାଲାଜୀଙ୍କ ସହିତ ଗୋପବନ୍ଧୁଙ୍କର ସାକ୍ଷାତ ହେଲା । ଲୋକସେବକ ସମାଜ ତରଫରୁ ବନ୍ୟା ଅଞ୍ଚଳରେ ଘର ମରାମତି ଓ ରିଲିଫ କାର୍ଯ୍ୟ ଚାଲିଥାଏ । ଏ ସବୁର ଅଗ୍ରଗତି ସମ୍ପର୍କରେ ଲାଲାଜୀଙ୍କ ସହ ବିସ୍ତୃତ ଆଲୋଚନା ହୋଇଥିଲା । ଏପରିକି ତାଙ୍କ ବିରୁଦ୍ଧରେ ଯେଉଁ ଅଭିସନ୍ଧିମୂଳକ ଅପପ୍ରଚାର ହୋଇଥିଲା, ସେ ବିଷୟରେ ସେ ଲାଲାଜୀଙ୍କୁ ସ୍ପଷ୍ଟ ଧାରଣା

ଦେଇଥିଲେ । ଲୋକସେବକ ସମାଜର ଏହି ଘର ଉଆର କାର୍ଯ୍ୟକ୍ରମ ଅପେକ୍ଷା ଦୁର୍ଗତ ଲୋକଙ୍କୁ ପଢ଼ ବାଣ୍ଟିବା ଅଧିକ ଆବଶ୍ୟକ ବୋଲି କେତେକ ପ୍ରଶ୍ନପତ୍ର ଛପାଯାଇ ଓଡ଼ିଶାରେ ବଣ୍ଟାଯାଇଥାଏ । ସେ କଥା ଆଗରୁ ଆଲୋଚିତ ହୋଇଛି । ଗୋପବନ୍ଧୁଙ୍କ କୋମଳ ନିଷ୍ପାପ ପ୍ରାଣରେ ଏହାର ଆଘାତ ଖୁବ୍ ଲାଗିଥିଲା । ସେ ଲାଲାଜୀଙ୍କୁ ଏ ସବୁ କଥା କହିଲାବେଳେ ତାଙ୍କ ଆଖି ଲୁହ ଛଳଛଳ ହୋଇଯାଉଥିଲା ।

ସମସ୍ତେ ଲାହୋରରେ ଏପ୍ରିଲ୍ ମାସ ୨୨ ତାରିଖରେ ପହଞ୍ଚିଲେ । ଏହି ବାର୍ଷିକ ଅଧିବେଶନ ୩ ଦିନ ପାଇଁ ଚାଲିଥିଲା ଓ ୨୫ ତାରିଖରେ ସମାପ୍ତ ହେଲା । ଏଠାରେ ଗୋପବନ୍ଧୁ, 'ଲୋକସେବକ ସମାଜ'ର ଉପସଭାପତି ଭାବରେ ନିର୍ବାଚିତ ହେଲେ । ଏତେବଡ଼ ସମ୍ମାନ ଆଗରୁ କୌଣସି ଓଡ଼ିଆ ଭାଗ୍ୟରେ ଘଟି ନଥିଲା । ଓଡ଼ିଶାର ସୀମିତ ଗଣ୍ଡି ଭିତରୁ ଭାରତର ବ୍ୟାପକ ପରିସର ଭିତରକୁ ଗୋପବନ୍ଧୁଙ୍କୁ ଟାଣି ଆଣିବା ଲାଲାଜୀଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା । ଏହି ବାଙ୍ଗାଳୀ ମଣିଷଟି ଭିତରେ ସେ ବିରାଟ ପୌରୁଷର ସନ୍ଧାନ କରିଥିଲେ ଏବଂ ତା'ର ବିକାଶ ପାଇଁ ଉପଯୁକ୍ତ ପରିସ୍ଥିତି ସୃଷ୍ଟି କରିବାରେ ଲାଲାଜୀଙ୍କ ଉଦାରତାର ପରିଚୟ ମିଳିଥିଲା ।

ଲାହୋରରେ ଲୋକସେବକ ସମାଜ ବାର୍ଷିକ ସମ୍ମିଳନୀରେ ଯୋଗ ଦେଇ ଆସିବା ବାଟରେ ଗାଡ଼ିରେ ତାଙ୍କୁ ଟାଇଫଏଡ୍ ଜ୍ୱର ଆକ୍ରମଣ କଲା । ଦେହରେ ଜ୍ୱର ଥାଏ । ତଥାପି ସେ ନିଶ୍ଚିନ୍ତ ହୋଇ ପାରିଲେ ନାହିଁ । ୨୯ ତାରିଖରେ ହାୱଡ଼ା ଷ୍ଟେସନ୍ ପ୍ଲାଟଫର୍ମରେ ତାଙ୍କ ଦେହ ଅଧିକ ଅସୁସ୍ଥ ହୋଇପଡ଼ିଲା । ପ୍ରାୟ ଅଚେତନ ଅବସ୍ଥାରେ ତାଙ୍କୁ ପୁରୀ ଏକସ୍‌ପ୍ରେସ୍‌କୁ ନିଆହେଲା; କିନ୍ତୁ ବାଲେଶ୍ୱର ଷ୍ଟେସନରେ ପହଞ୍ଚିଲାବେଳକୁ ସେ ଟିକିଏ ସୁସ୍ଥ ଅନୁଭବ କରୁଥିଲେ । ସେଠାରେ ଓହ୍ଲାଇ ବଢ଼ି ଅଞ୍ଚଳର ଘର ଉଆର କାମ ଦେଖିବା ପାଇଁ ଜିଦ୍ କଲେ; କିନ୍ତୁ ଲିଙ୍ଗରାଜ ବାବୁ ତାଙ୍କୁ କୌଣସି ପରିସ୍ଥିତିରେ ସେଠାରେ ଓହ୍ଲାଇ ଦେବାକୁ ପ୍ରସ୍ତୁତ ନଥିଲେ । ଏପ୍ରିଲ୍ ମାସ ୩୦ ତାରିଖରେ ସେ ସତ୍ୟବାଦୀ ଲେଉଟି ଆସିଥିଲେ । ସତ୍ୟବାଦୀରେ ତିନି ସପ୍ତାହ ଧରି ସେ ଶଯ୍ୟାଶାୟୀ ରହିଲେ ।

ମେ ମାସ ୧୭ ତାରିଖ ୧୯୨୮ ମସିହାରେ ଲାଲାଜୀଙ୍କ ପାଖକୁ ଗୋପବନ୍ଧୁ ଏକ କରୁଣ ପତ୍ର ଲେଖିଥିଲେ—ଆପଣ ଦକ୍ଷିଣ ଭାରତ ଗସ୍ତରୁ ଫେରି ଲାହୋରରେ ପହଞ୍ଚିବେଣି ବୋଲି ଆଶା କରୁଛି । ଗତ ତିନି ସପ୍ତାହ ଧରି ମୁଁ ଜ୍ୱର ଶର୍ଦ୍ଦି ଭୋଗୁଛି, ବିଛଣାରେ ପଡ଼ିରହିଛି । ଜବଲପୁରରୁ ମୁଁ ଗୋଟିଏ ଟେଲିଗ୍ରାମ ଆପଣଙ୍କ ପାଖକୁ ପଠାଇଥିଲି, ଆପଣ ପାଇଛନ୍ତି କି ନାହିଁ ଜାଣେ ନାହିଁ । ମୁଁ ମୋର ସ୍ୱାସ୍ଥ୍ୟ ଓ ପୁରୁଣା ଉତ୍ସାହ ହରେଇ ବସିଛି । ମଝିରେ ମଝିରେ ଜ୍ୱର ହେବା ଫଳରେ ଗୋଡ଼ ଓ ପିଠିରେ ଯନ୍ତ୍ରଣା ଭୋଗୁଛି । ଡାକ୍ତର ପୂର୍ଣ୍ଣ ବିଶ୍ରାମ ପାଇଁ ପରାମର୍ଶ ଦେଉଛନ୍ତି; କିନ୍ତୁ ମୁଁ ଏ ବିଶ୍ରାମ କାହୁଁ ପାଇବି ?

କେତେ କାର୍ଯ୍ୟ ଆଗରେ ପଡ଼ିରହିଛି । ଅବଶ୍ୟ ଲାହୋରରୁ ଫେରିବା ବାଟରେ ଜର ହେବା-ଠାରୁ ମୁଁ ଏଠାରେ ଶଯ୍ୟାଶାୟୀ ରହିଛି ଏବଂ ଯିବା ଆସିବା କରିବାକୁ ଶକ୍ତି ପାଉନି ; କିନ୍ତୁ ମୋ ହାତରେ ଯେତେ କାମ ଅଛି ସେ ସବୁ କିପରି ମୁଁ ଉପେକ୍ଷା କରି ପାରିବି ? ସାଇମନ୍ କମିସନ୍ ଖୁବ୍ ଶୀଘ୍ର ଓଡ଼ିଶାକୁ ଆସୁଛନ୍ତି । ସେଥିପାଇଁ କଂଗ୍ରେସ ସମ୍ବାଦ ଭାବରେ ସ୍ଥାନେ ସ୍ଥାନେ ପ୍ରଚାର କରିବା ଦାୟିତ୍ୱ ମୋ ଉପରେ; କିନ୍ତୁ ମୁଁ ଏତେ ଦୁର୍ବଳ ହୋଇପଡ଼ିଛି ଯେ ଏ ଗୁରୁ ଦାୟିତ୍ୱ ତୁଲାଇବାକୁ ମୋର କ୍ଷମତା ନାହିଁ । ଗତ ବନ୍ୟାରେ ଯେଉଁ ଘରଗୁଡ଼ିକ ଭାଙ୍ଗି ଯାଇଥିଲା ସେସବୁର ମରାମତି କାମ ଆଗେଇ ଚାଲିଛି । ଏ କାମ ସରିଗଲେ, ମୁଁ ଭାବୁଛି, ଲିଙ୍ଗରାଜ ବାବୁଙ୍କୁ କଲିକତା ଶ୍ରମିକ ସଙ୍ଗଠନ କାମରେ ପଠାଇବି । ଅନେକ ଓଡ଼ିଆ ଶ୍ରମିକ କଲିକତାରୁ ଆସି ଏଠାରେ ମୋତେ ଭେଟିଥିଲେ । ଗରିବ ଓ ଦଳିତମାନଙ୍କ ସେବା କରିବା ଆମର କର୍ତ୍ତବ୍ୟ । ଏହି ଦୁଃସ୍ଥ ଓ ଶୋଷିତ ଲୋକମାନେ ହିଁ ଜାତିର ମେରୁଦଣ୍ଡ । ଯେହେତୁ ଆମେ ସେମାନଙ୍କର ସେବକ, ଜୀବନ ଥିବାଯାଏ ତାଙ୍କ ସେବା କରିବା ଆମର କର୍ତ୍ତବ୍ୟ ନୁହେଁ କି ? ସମ୍ମାନର ସହିତ ।”

ଏହାପରେ ଜୁନ୍ ମାସ ୮ ତାରିଖରେ ଗୋପବନ୍ଧୁ ଲାଲାଜୀଙ୍କ ପାଖକୁ ଆଉ ଖଣ୍ଡିଏ ଚିଠି ଲେଖିଥିଲେ । ଲାଲାଜୀ ତାଙ୍କ ପୁସ୍ତକ 'Unhappy India'ରେ ଛପେଇବା ପାଇଁ ଗୋପବନ୍ଧୁଙ୍କୁ ତାଙ୍କର ଗୋଟିଏ ଫଟୋ ପଠାଇବା ପାଇଁ ଚିଠି ଦେଇଥିଲେ । ଗୋପବନ୍ଧୁ ଲେଖିଥିଲେ—“ମୁଁ ଆପଣଙ୍କ ଚିଠି ପାଇଛି, କିନ୍ତୁ ଦୁଃଖର ସହିତ ଜଣାଉଛି ଯେ ମୋ ନିଜର କୌଣସି ଛବି ମୋ ପାଖରେ ନାହିଁ । ତେଣୁ କିପରି ବା ପଠାଇବି ? ଅନେକ ସମୟରେ କ୍ୟାଲେଣ୍ଡରରେ ଛାପିବା ପାଇଁ ମୋତେ ବହୁ ଲୋକ ଫଟୋ ମାଗିଥାନ୍ତି, କିନ୍ତୁ ମୁଁ ଦେଇ ପାରିନାହିଁ । ମୁଁ ଆପଣଙ୍କ ପାଖକୁ ଫଟୋ ପଠାଇ ନପାରୁଥିବାରୁ କ୍ଷମା ଚାହୁଁଛି ।”

ବୋଧହୁଏ ଏହାହିଁ ଲାଲାଜୀଙ୍କ ପାଖକୁ ଗୋପବନ୍ଧୁଙ୍କର ଶେଷ ଚିଠି ଥିଲା । ତାଙ୍କର ରୋଗ ବିବର୍ଣ୍ଣ ପାଣ୍ଡୁର ଦେହ କ୍ରମେ ନିସ୍ତେଜ ହୋଇ ପଡ଼ୁଥିଲା । ଏହାର ଅଳ୍ପ ଦିନପରେ ଓଡ଼ିଶା ଇତିହାସରେ ଏକ ମହାନାଟକର ଯବନିକା ଟାଣିହୋଇଗଲା ।

## ଅନ୍ତିମ ଜୀବନର ଉପକ୍ରମଣିକା

ଲୋକସେବକ ସମାଜ ବାର୍ଷିକ ଅଧିବେଶନରୁ ଫେରିବା ବାଟରେ ଗୋପବନ୍ଧୁଙ୍କୁ ଜର ହୋଇଥିବା କଥା ଆଗରୁ କୁହାଯାଇଛି । ସତ୍ୟବାଦୀରେ ପହଞ୍ଚିବାର କିଛି ଦିନ ପରେ ସେ ଏହି ଟାଇଫଏଡ଼୍ ଜରରୁ ଆରୋଗ୍ୟ ଲାଭକଲେ; କିନ୍ତୁ ଅତି ନିସ୍ତେଜ ହୋଇପଡ଼ିଥିଲେ । ତାଙ୍କ ଦେହପାଇଁ ଦୀର୍ଘଦିନ ବିଶ୍ରାମ ଲୋଡ଼ାହେଉଥିଲା ।

ଠିକ୍ ଏହି ସମୟରେ କଲିକତାରେ ଓଡ଼ିଆ କୁଲି ଓ ଶ୍ରମିକମାନଙ୍କ ମଧ୍ୟରେ ଅସନ୍ତୋଷ ଓ ଆନ୍ଦୋଳନ ଦେଖାଗଲା । ସେମାନଙ୍କ ମଧ୍ୟରୁ କେତେଜଣ କୁଲିସର୍ଦ୍ଦାର ଗୋପବନ୍ଧୁଙ୍କୁ ନେବାପାଇଁ ସାକ୍ଷୀଗୋପାଳରେ ଆସି ପହଞ୍ଚିଲେ । ଗୋପବନ୍ଧୁ ନିଜର ଶାରୀରିକ ଅକ୍ଷମତା ସତ୍ତ୍ୱେ ସେମାନଙ୍କ ସ୍ନେହ ଶ୍ରଦ୍ଧାକୁ ଉପେକ୍ଷା କରି ପାରିଲେ ନାହିଁ । ଏହା ପୂର୍ବରୁ ସର୍ଦ୍ଦାରମାନେ ଶ୍ରମିକ ସଂଗଠନର କର୍ମକର୍ତ୍ତାଙ୍କ ମନମୁଖୀ କାରବାର ଓ ଜୁଲମରେ ଅତିଷ୍ଠ ହୋଇ ଗୋପବନ୍ଧୁଙ୍କ ପାଖକୁ ଲଗ୍ ଲଗ୍ କେତୋଟି ଟେଲିଗ୍ରାମ୍ ମଧ୍ୟ କରିଥିଲେ । କଲିକତାର ହରିସାନ୍ ରୋଡ଼୍ ଓ ବଡ଼ବଜାରରେ ଶ୍ରମିକ ଅସନ୍ତୋଷ ଖୁବ୍ ଉଦ୍‌ବେଗର କାରଣ ହୋଇପଡ଼ିଥାଏ । ଗୋପବନ୍ଧୁ ଜୁନ୍ ୨ ତାରିଖ ୧୯୨୮ ମସିହା ସନ୍ଧ୍ୟା ଗାଡ଼ିରେ କଲିକତା ଅଭିମୁଖେ ବାହାରିଲେ । ୩ ତାରିଖ ସକାଳେ ହାବଡ଼ା ଷ୍ଟେସନରେ ପହଞ୍ଚିବାମାତ୍ରେ ବିରାଟ ଜନସମାଗମରେ ତାଙ୍କୁ ସାଗ୍ରହେ ନିଆଗଲା । ସେଦିନ କଲିକତାରେ ଥିବା ସହସ୍ରାଧିକ ଓଡ଼ିଆ ବିପୁଳ ଜୟଧ୍ୱନି ଭିତରେ ଗୋପବନ୍ଧୁଙ୍କୁ ସ୍ୱାଗତ କରିଥିଲେ । ଶ୍ରମିକ ସଂଗଠନ ଗୋପବନ୍ଧୁଙ୍କ ଲୋକସେବକ ସମାଜ କାର୍ଯ୍ୟକ୍ରମ ମଧ୍ୟରୁ ଅନ୍ୟତମ ଥିଲା । ପୁଣି କଲିକତାରେ ଆଉନ ଅଧିବେଶନ କାଳରେ ଏଇ ଦରିଦ୍ର ଓଡ଼ିଆମାନଙ୍କ ଦୁରବସ୍ଥା ଦେଖି ଗୋପବନ୍ଧୁ ମ୍ରିୟମାଣ ହୋଇପଡ଼ିଥିଲେ ।

ଗୋପବନ୍ଧୁଙ୍କ ପାଇଁ ଜନସଭାର ଆୟୋଜନ ହୋଇଥିଲା । ଏହି ଜନସଭାରେ ସେ ଓଡ଼ିଆମାନଙ୍କୁ ଏକଜୁଟ ହେବାପାଇଁ ଆହ୍ୱାନ ଦେଇଥିଲେ । ଓଡ଼ିଆ ଲୋକମାନଙ୍କ ଭିତରେ ସେଦିନ ଖୁବ୍ ଉଲ୍ଲାସ ଖେଳି ଯାଇଥିଲା । ଯଦିଓ ଗୋପବନ୍ଧୁଙ୍କ ରହଣି ପାଇଁ ଭଲ ସ୍ଥାନଟିଏ ଆଗରୁ ସ୍ଥିର ହୋଇଥିଲା, ସେ କୁଲି ସର୍ଦ୍ଦାରମାନଙ୍କ ସହିତ ସେମାନଙ୍କ ରହିବା ସ୍ଥାନରେ ରାତି ଯାପନ କରିବାକୁ ଜିଦ୍ କଲେ । ସେମାନଙ୍କ ସମସ୍ୟାକୁ ଅଧିକ ନିବିଡ଼ତାର ସହିତ ଅନୁଧ୍ୟାନ କରିବାକୁ ଗୋପବନ୍ଧୁ ଚାହୁଁଥିଲେ ।

ସେତେବେଳେ କୁଲିମାନେ ବିଭିନ୍ନ ସ୍ଥାନରେ ଅତି ବିଚିତ୍ର ଭାବରେ ବାସ କରୁଥିଲେ । ଗୋଟିଏ ଗୋଟିଏ ହଲ୍‌ରେ ଭାଡ଼ାକରି ଶତାଧିକ ଶ୍ରମିକ ରହୁଥିଲେ । ପୁଣି ଭାଡ଼ାଗୃହଗୁଡ଼ିକ ୩।୪ ମହଲରେ ନିର୍ମିତ ହୋଇଥିଲା । ଉପରକୁ ଯିବାପାଇଁ ସିଡ଼ିର ବନ୍ଦୋବସ୍ତ ହୋଇଥିଲା । ଜଣେ ଜଣେ ଶ୍ରମିକ ସିଡ଼ିବାଟେ ଚଢ଼ି ଗୋଟିଏ ଗୋଟିଏ ଥାକରେ ରାତି ଯାପନ କରୁଥିଲେ ।

ଗୋପବନ୍ଧୁଙ୍କୁ ପ୍ରେମସ୍ନିଗ୍ଧ ବରାଳ ଗଳିର ଏହିପରି ଗୋଟିଏ ଲମ୍ବା ଅସ୍ୱାସ୍ଥ୍ୟକର ହଲ୍‌ରେ ରାତି ଯାପନ କରିବାକୁ ହେଲା । ଗୋପବନ୍ଧୁ ସେସବୁ ଅନୁଭୂତି ନିଜ ଭାଷାରେ ୭।୭।୧୯୨୮ ତାରିଖ 'ସମାଜ'ରେ ନିମ୍ନମତେ ପ୍ରକାଶ କରିଛନ୍ତି—

"ସେମାନଙ୍କ ସଙ୍ଗେ ରହି ସେମାନଙ୍କ ଅବସ୍ଥା ଦେଖିବା ଓ ଗତିବିଧି ଜାଣିବା ମୋର ଉଦ୍ଦେଶ୍ୟ ଥିଲା । ଘରଟା ଅବଶ୍ୟ ଦ'ତାଲା କୋଠା । ତା'ର ଚାରିପାଖରେ ଖାନକି ବେଶ୍ୟା

ପୂର ରହିଛନ୍ତି । ଓଡ଼ିଆମାନେ ଯେ ଖୁଆଡ଼ରେ ଅଛନ୍ତି ସେଥିରେ ଅବଶ୍ୟ ବେଶ୍ୟା ନାହାନ୍ତି । କୋଠାଘର ହେଲେ ମଧ୍ୟ ତାହା ଏପରି ଭାବରେ ତିଆରି ଯେ ଭିତରକୁ ପବନ ଯିବାର ବାଟନାହିଁ । ସାତ ହାତ ଲମ୍ବ ଓ ସାତ ହାତ ଓସାର ଗୋଟିଏ କୋଠରିରେ ବାର ଚଉଦ ଜଣ ଲେଖାଏଁ ଲୋକ ରହନ୍ତି । ଘରେ ନାନା ପ୍ରକାର ଜଞ୍ଜାଳ ଭର୍ତ୍ତିହୋଇଛି । ତନ୍ଦ୍ରିର ଫଳରେ ଘରେ ଗୁରୁପୋକ ଏତେ ଯେ, ଦିନବେଳେ ମଧ୍ୟ ବସିବା ଦୁଷ୍କର । ଘରର ବାସିନ୍ଦାମାନେ କହିଲେ ଯେ ଗୁରପୋକ ଦାଉରେ ସେମାନେ ଘରେ ଶୋଇ ପାରନ୍ତି ନାହିଁ । ରାତି ହେଲେ ପିମ୍ପୁଡ଼ି ଚାଲିଲା ପରି ଘରେ ଗୁରପୋକ ଚାଲନ୍ତି ଏବଂ ଛାତ ଉପରୁ ମଝି ଖସିପଡ଼ି ଉପରେ ଚାଲନ୍ତି । ମୁଁ ଯିବା ଦିନ ସେମାନଙ୍କର କାମ ବନ୍ଦଥିଲା । ସେମାନଙ୍କ ମଧ୍ୟରୁ କେହି ପଶା, କେହି ତା'ସ ଖେଳୁଥିଲେ । ମଧ୍ୟେ ମଧ୍ୟେ କଳିକଜିଆ କରୁଥିଲେ । ଘରଗୁଡ଼ିକ ମଧ୍ୟରେ ଅଧିକାଂଶରେ ପବନପରି ଆଲୋକର ପ୍ରବେଶ ମଧ୍ୟ ନିଷିଦ୍ଧ । ପ୍ରତ୍ୟେକ ଓଡ଼ିଆ ବାସିନ୍ଦାକୁ ମାସକୁ ୧୨ଟଙ୍କା କରି ଘରଭଡ଼ା ଦେବାକୁ ହୁଏ । ଶୁଣିଲି ଅଛି କେତେ ଜାଗାରେ ଓଡ଼ିଆ ଅଛନ୍ତି, ଘରେ ଖଡ଼ିକରି ଖଡ଼ି ଉପରେ ଓ ତଳେ ଶୁଅନ୍ତି । ସାଧାରଣ ଭାବେ ଯେ ଘରେ ଚାରିଜଣ ରହିବା କଷ୍ଟ ସେ ଘରେ ଏପରି ଖଡ଼ିକରି ୨୦ ଜଣ ପରିନ୍ତ ରହିଥାନ୍ତି । ଶୀତ ବର୍ଷାଦିନ ଛଡ଼ା ବର୍ଷର ଅନ୍ୟଦିନ ଏମାନେ ରାସ୍ତା ଧାରରେ ଫୁଟ୍‌ପାଥରେ ଶୁଅନ୍ତି । ମାଲିକ, ପୋଲିସ ଓ ଅନ୍ୟମାନେ ଏମାନଙ୍କ ଉପରେ ନାନା ପ୍ରକାର ଅତ୍ୟାଚାର କରନ୍ତି । କଲିକତା ବଡ଼ବଜାରରେ ଓଡ଼ିଆମାନେ ମାରବାଡ଼ିମାନଙ୍କର ଲୁଗା ବୁହନ୍ତି । ରାସ୍ତା ଉପରେ ଅନେକ ସମୟରେ ଗାଣ୍ଠି ପଡ଼ିରହିବା ଯଦି ପୋଲିସ୍ କନେଷ୍ଟବଲ ନଜରରେ ପଡ଼ିଲା ସେ କାହା ଗାଣ୍ଠି ବୋଲି ପଚାରିଲା ବେଳକୁ ମାଲିକ ନିଜ ନାମ ନକହି ଓଡ଼ିଆ କୁଲି ନାମ କହିଦିଏ । ବିଚରା ମଜୁରିଆକୁ ସେଥିପାଇଁ ଚାଲାଣ ହୁଏ ଏବଂ କଚେରିରେ ଦଶ ପନ୍ଦର ଟଙ୍କା ଜୋରିମାନା ଦେଇ ଆସେ । ଅନେକ ସମୟରେ ପୋଲିସ କନେଷ୍ଟବଲ ବିନା କାରଣରେ ଏମାନଙ୍କୁ ରାସ୍ତା ଉପରେ ନିର୍ଘାତ ପ୍ରହାର କରନ୍ତି । ମାଲିକମାନେ ଏମାନଙ୍କ ସହାୟ ହୁଅନ୍ତି ନାହିଁ । ବରଂ ମାଲିକମାନେ ଓଲଟି ଏମାନଙ୍କୁ ଅନେକ ସମୟରେ ପ୍ରହାର କରନ୍ତି । ଓଡ଼ିଆମାନେ ଏତେ ଗଞ୍ଜଣା ସହିଲେ ସୁଦ୍ଧା ନିଜ ନିଜ ମଧ୍ୟରେ ମିଳିମିଶି ସଙ୍ଘବଦ୍ଧ ହୋଇ କାମ କରିବାକୁ ଏ ପର୍ଯ୍ୟନ୍ତ ପ୍ରସ୍ତୁତ ହୋଇନାହାନ୍ତି । ଏମାନଙ୍କର ପରସ୍ପରଠାରେ ବିଶ୍ୱାସ ନାହିଁ । ବିଦେଶରେ ଓଡ଼ିଆମାନଙ୍କ ଦୁଃଖ ଦୁର୍ଦ୍ଦଶା ମୋଚନର ଉପାୟ ନ ହେଲେ ଓଡ଼ିଆ ଜାତିର ଅପମାନର ଆଉ ଶେଷ ନାହିଁ । ପ୍ରକୃତ ଓଡ଼ିଆ ଓଡ଼ିଶାରେ ନାହିଁ । ଓଡ଼ିଶାର କି ମୋଗଲବନ୍ଦି, କି ଗଡ଼ଜାତ ଅଧିକାଂଶ ଗ୍ରାମରେ କେବଳ ସ୍ତ୍ରୀ, ବାଳକ, ବୃଦ୍ଧମାନେ ରହିଛନ୍ତି । ଯେଉଁମାନେ କର୍ମକ୍ଷମ ସେମାନେ ବିଦେଶକୁ ଆସିଛନ୍ତି । ମାତ୍ର ବିଦେଶରେ ଯେ ଅବସ୍ଥାରେ ରହି ଜୀବିକା ଅର୍ଜନ କରୁଛନ୍ତି, ସେଥିରେ ସେମାନଙ୍କର ଆୟୁ କ୍ଷୀଣ ହେଉଛି ଏବଂ ସେ ଅବସ୍ଥା ଓଡ଼ିଆ ଜାତି ପକ୍ଷେ ନିନ୍ଦନୀୟ । କଲିକତା,

ରେଙ୍ଗୁନ ଓ ଅନ୍ୟାନ୍ୟ ଶ୍ରମ କେନ୍ଦ୍ରରେ ଓଡ଼ିଆ ମଜୁରିଆର ସ୍ୱାର୍ଥ ତଥା ମାନରକ୍ଷା ନିମନ୍ତେ ଯତ୍ନ ଓ ଉଦ୍ୟମ କରିବା ଓଡ଼ିଶାର ବର୍ତ୍ତମାନ ଏକ ପ୍ରଧାନ ଜାତୀୟ କାର୍ଯ୍ୟ ।”

ଦିନ ଦିନ ରହଣୀ ମଧ୍ୟରେ ଗୋପବନ୍ଧୁ ରାତିଏ ହେଲେ ନିଶ୍ଚିନ୍ତ ଭାବରେ ଶୋଇପାରିଲେ ନାହିଁ । ଭୀଷଣ ମଶା ଓ ଗୁଡ଼ିପୋକଙ୍କ ଉତ୍ପାତରେ ଘୋର ଅନିଦ୍ରା ରହିବାକୁ ହେଲା । ସହଜେ ତାଙ୍କର ଅର୍ଶ ବେମାରି ଥିଲା । ପୁଣି କାମର ଜଞ୍ଜାଳ ଭିତରେ ତା ସାଙ୍ଗକୁ ଏଇ ଘୋର ଅନିଦ୍ରା ରହିବା ଫଳରେ ତାଙ୍କୁ ଅତି ଶାରୀରିକ କଷ୍ଟ ବୋଧ ହେଲା । ପଣ୍ଡିତ ଲିଙ୍ଗରାଜଙ୍କୁ କଲିକତାରେ ଛାଡ଼ି ସତ୍ୟବାଦୀକୁ ଫେରି ଆସିବା ପରେ ପୁଣି ଜର ଲେଉଟିଲା । ଜୁନ୍ ୧୬ ତାରିଖରୁ ୧୭ ତାରିଖ ଯାଏ ଜର ଲାଗି ରହିଲା । ତା ୧୬ ଜୁନ୍ ୧୯୨୮ରେ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ବରଦୋଲି ସତ୍ୟାଗ୍ରହର ବିଜୟ ଉତ୍ସବ ସମସ୍ତ ଭାରତରେ ପାଳିତ ହେଉଥାଏ । ଗୋପବନ୍ଧୁ ଆଗରୁ ପୁରୀର କେତେକ ସଭାରେ ଯୋଗ ଦେବାକୁ ଯୋଜନା ପ୍ରସ୍ତୁତ କରିଥିଲେ ଓ ସେହିମତେ ପ୍ରଚାର ମଧ୍ୟ ହୋଇଥିଲା; କିନ୍ତୁ ଜରରେ ପଡ଼ିବାରୁ ସବୁ କାର୍ଯ୍ୟକ୍ରମ ବାତିଲ କରାଯାଇଥିଲା । ସେ ପୁରୀ ଆସି ପାରିଲେ ନାହିଁ । ୧୭ ତାରିଖ ସକାଳଠାରୁ ସନ୍ଧ୍ୟା ଯାଏ ପାଖଆଖ ବହୁ ଅଞ୍ଚଳରୁ ଲୋକମାନେ ତାଙ୍କୁ ରୋଗ ଶଯ୍ୟାରେ ଭେଟିଥିଲେ । ସେମାନଙ୍କୁ ଦେଖି ସେ ବଡ଼ ଅଧୈର୍ଯ୍ୟ ହୋଇ ସେଦିନ କାନ୍ଦିଥିଲେ । ସତ୍ୟବାଦୀ ଚିକିତ୍ସାଳୟର ଡାକ୍ତର ଆସିବା ପରେ ସେ ଅତି ଶୋକାତୁର କଣ୍ଠରେ ତାଙ୍କୁ କହିଲେ—“ଡାକ୍ତରବାବୁ, ମୁଁ ରୋଗରେ ପଡ଼ି କେବେ କାନ୍ଦିନଥିଲି । ଆଜି ଏ ଅଘଟଣ କାହିଁକି ? ମୋ ଆଖିରେ ଲୁହ ଭରିରହିଛି । ଆପଣ ଜାଣନ୍ତି ମୁଁ କିଛି କିଛି କବିତା ଲେଖାଲେଖି କରେ । ମୋର ଆଜି ଗୋଟିଏ କବିତାର ପଦଟିଏ ମନେ ପଡ଼ୁଛି, ଯହିଁରେ ଲେଖାଥିଲି—‘କେତେଦିନ ଆଉ ଏ ବିକ୍ଷୁବ୍ଧ ଜୀବନ-ସାଗରରେ ମୁଁ ଭଙ୍ଗା ଡଙ୍ଗାଟିଏ ଧରି ଆଗେଇ ପାରିବି ?’ ଦୟାକରି ଦେଖନ୍ତୁ—ମୋ ଗ୍ରୀବା ଦବି ଦବି ଗଲାପରି ମୋତେ ଲାଗୁଛି ।” ଡାକ୍ତରବାବୁଙ୍କ ସମେତ ଉପସ୍ଥିତ ସମସ୍ତ ଲୋକ ଗୋପବନ୍ଧୁଙ୍କ କଥା ଶୁଣି ବ୍ୟଥିତ ହୋଇ ପଡ଼ିଲେ । ଡାକ୍ତର ସ୍ୱାଭାବିକ ସ୍ୱରରେ ଧୈର୍ଯ୍ୟର ବାଣୀ ଶୁଣାଇଲେ ।

ଏହି ରୋଗଶଯ୍ୟାରେ ଏକ ମାନହାନି ମକଦ୍ଦମାର ନୋଟିସ୍ ମଧ୍ୟ ତାଙ୍କୁ ମିଳିଥିଲା । ‘ସମାଜ’ରେ ପାରିକୁଦ ସମ୍ପର୍କୀୟ ଏକ ବିବରଣୀ ଛପା ଯାଇଥିବା ହେତୁ ସମ୍ପାଦକ ଓ ପ୍ରକାଶକ—ଉଭୟଙ୍କ ନାମରେ ଏ ମକଦ୍ଦମା ରୁଜୁ ହୋଇଥିଲା । ଏହି ମକଦ୍ଦମାର ବିଚାର ଜୁନ୍ ୧୪ ତାରିଖକୁ ମୁଲତବୀ ରହିଥିଲା । ଗୋପବନ୍ଧୁ ଜୁନ୍ ୧୧ ତାରିଖ ଦିନ ରୋଗ ଶଯ୍ୟାରୁ ଗୋଟିଏ ଚିଠି ‘ସମାଜ’ ଅଫିସ୍‌ର ଜଣେ ସହକର୍ମୀଙ୍କ ପାଖକୁ ଲେଖିଥିଲେ— “ମତେ ପୁଣି ଜର ଲେଉଟିଲି; ମୁଁ ବିଛଣାରେ ପଡ଼ି ରହିଚି । ମାନହାନି ମକଦ୍ଦମାର ତାରିଖ ଚଉଦକୁ ଅଛି । ଦିନେ ଆଗରୁ ପୁରୀ ଯିବାପାଇଁ ବନମାଳୀ ଲେଖିଛି । ଆଜି ଲିଙ୍ଗରାଜର ଫେରିବା କଥା, କିନ୍ତୁ ସେ ବୋଧହୁଏ ଆସି ନାହିଁ । ମୁଁ ‘ସମାଜ’ ପାଇଁ

ବେମାରୀ ପଡ଼ିବା ଆଗରୁ ଲେଖାଟିଏ ଲେଖିଥିଲି । କାଲି ପଠାଇ ଦେଉଛି । ମୁଁ ଏ ଚିଠି ଅନ୍ୟଦ୍ୱାରା ଲେଖାଉଛି । ଆଜ ବି ଗୋଟିଏ ଲେଖା 'ସମାଜ' ପାଇଁ ଲେଖିବାକୁ ଆଶା ରଖିଛି । ମୁଁ ଦେଖୁଛି ମୋ ସ୍ୱାସ୍ଥ୍ୟ ତଳକୁ ଯାଉଛି । ମୋ ବୟସରେ କାହାର ଦେହ ଭାଙ୍ଗିଗଲେ ଆଉ ଭଲ ହେବ ନାହିଁ । ଏଣିକି ଗୋଟିଏ ଜାଗାରେ ମୋତେ ରହିବାକୁ ପଡ଼ିବ ଦେଖୁଛି । ଯାହା ହେଉ, ଭଗବାନ୍‌ଙ୍କର ଯାହା ଇଚ୍ଛା ଥିବ ତାହା ପୂରଣ ହେବ । ଦୁଃଖୀଶ୍ୟାମକୁ କହିଦେବ, ତାଙ୍କ ସହିତ ବନ୍ୟା ଅଞ୍ଚଳ ଦେଖିଯିବା ଆଉ ସମ୍ଭବ ନୁହେଁ ।"

ଗୋପବନ୍ଧୁଙ୍କ ଦେହ ଦୁଃଖ ଖବର ପାଇ ମଧୁବାବୁ ଗୋଟିଏ ଚିଠି ଲେଖି ପଠାଇଥିଲେ । ସେ ଚିଠିରେ ଓଡ଼ିଶାର ଆର୍ଥିକ ସ୍ଥିତି ଓ ପ୍ରଗତି ସମ୍ପର୍କରେ କେତେକ ତଥ୍ୟ ସେ ଲେଖିଥିଲେ ଏବଂ ଗୋପବନ୍ଧୁ ସେସବୁକୁ ନିଜ ସ୍ୱାଧୀନ ମତ ଅନୁସାରେ ନିୟୋଜିତ କରିବା ପାଇଁ ମଧୁବାବୁ ଅନୁରୋଧ ମଧ୍ୟ କରିଥିଲେ । ଥିଲାବାଲା ଓ ଧନୀ ଲୋକମାନେ ସେମାନଙ୍କ ଅର୍ଥରେ ପୁଞ୍ଜୀଭୂତ ଶକ୍ତି ନିଜମାଇଲେ ଦରିଦ୍ର ଓଡ଼ିଶାର ଉନ୍ନତି ହୋଇପାରିବ ନାହିଁ ବୋଲି ମଧୁବାବୁ ଅତି ଉଦ୍‌ବେଗ ଓ କାରୁଣ୍ୟର ସହିତ ଲେଖିଥିଲେ—"ମୁଁ ତୁମ ସ୍ୱାସ୍ଥ୍ୟ ବିଷୟରେ ବଡ଼ ଉଦ୍‌ବିଗ୍ନ । ମୋ ମନ ଭାଙ୍ଗି ପଡ଼ୁଛି ଓ ମୁଁ ଯେକୌଣସି ମୁହୂର୍ତ୍ତରେ ଝଡ଼ି ଯିବାକୁ ଅପେକ୍ଷା ରଖିଛି । ତୁମେ ହିଁ ଏକମାତ୍ର ଲୋକ, ମୋ ମୃତ୍ୟୁଶଯ୍ୟାରେ ଯାହାକୁ ପ୍ରାର୍ଥନା କରୁଥିବାର ଦେଖିଲେ ମୁଁ ସ୍ୱସ୍ତିରେ ନିଶ୍ୱାସ ମାରିବି । ତୁମ ସ୍ୱାସ୍ଥ୍ୟର ଯତ୍ନ ନିଅ । ଓଡ଼ିଶା ବଡ଼ ଦୁର୍ଭାଗା ଦେଶ । ଯଦି ଅଶୁତୋଷ ବଞ୍ଚିଥାନ୍ତେ ସେ 'ଉତ୍କଳ ଟାନେରୀ'କୁ ଖୁବ୍ ପରିବ୍ୟାପ୍ତ କରି ପାରିଥାନ୍ତେ । ସେ ବ୍ୟକ୍ତିଗତ ଭାବରେ ମୋର ନିବିଡ଼ ସମ୍ପର୍କରେ ଆସିଥିଲେ ଏବଂ ତାଙ୍କୁ ମୁଁ ମୋ ନିଜ ଭାଇ ପରି ଦେଖୁଥିଲି । ମୁଁ ଏକାଏକା ନିଜ ବାଟରେ ଆଜଯାଏ ଦେଶସେବା କରି ଆସିଲି । ତେଣୁ ସ୍ୱାଭାବିକ ଭାବରେ ବହୁ ଭୁଲଭଟକା କରିଥିବି, କିନ୍ତୁ କେହି ନଜାଣିଲେ ଅନ୍ତତଃ ତୁମେ ବୁଝିଥିବ ଯେ କେବଳ ଦେଶର ମଙ୍ଗଳ ହିଁ ମୋର ଏକମାତ୍ର ଧ୍ୟାନ ଥିଲା ।"

ମଧୁବାବୁଙ୍କ ମୃତ୍ୟୁଶଯ୍ୟାରେ ପ୍ରାର୍ଥନା କରିବା ପାଇଁ ଗୋପବନ୍ଧୁ ଆଉ ଅଟକି ପାରିଲେ ନାହିଁ । ଆଉ ଦୁଇଦିନ ବାକି ଥାଏ—ସେଦିନ ଜୁନ୍ ପନ୍ଦର ତାରିଖ । ଜର ଛାଡ଼ିଗଲା, କିନ୍ତୁ ହିକ୍‌କା ଉଠିବାକୁ ଆରମ୍ଭ କଲା । ଛାତିରେ ବଡ଼ ଯନ୍ତ୍ରଣା ହେଉଥାଏ । ଗୋପବନ୍ଧୁ ବରିବର କହୁଥା'ନ୍ତି—"କିଛି ନାହିଁ, ଏ ହିକ୍‌କାଟା ବନ୍ଦ ହୋଇଗଲେ ଦେହ ଭଲ ହୋଇଯିବ ।" ଅଗ୍ନିହୋତ୍ରୀ ମହାଶୟ ବରିବର ଛାତିକୁ ଆଉଁସୁଥା'ନ୍ତି । ସେଥିରେ ପୀଡ଼ା ଟିକିଏ ଉପଶମ ହେଉଥାଏ ।

କିନ୍ତୁ ହଠାତ୍ ଶେଷଦିନ ( ତା ୧୭ । ୬ । ୨୮ ) ଜର ବଢ଼ିଗଲା । ପୁରୀରୁ ସିଭିଲ୍ ସର୍ଜନ ଆସି ପହଞ୍ଚିଲେ । ତା' ପୂର୍ବରୁ ସତ୍ୟବାଦୀ ଜିଲ୍ଲା ବୋର୍ଡ଼ ଡାକ୍ତରଖାନାର ଡାକ୍ତର ଆସି ଚିକିତ୍ସା କରୁଥା'ନ୍ତି । ସିଭିଲ୍ ସର୍ଜନ ପ୍ରାୟ ଦିନ ୧୨ଟା ୩୦ ମିନିଟରେ

ପହଞ୍ଚିଲେ । କେତେକ ଔଷଧପତ୍ର ବ୍ୟବସ୍ଥା କରି ଅନ୍ୟ ଡାକ୍ତରଙ୍କୁ କହିଗଲେ—"ଖୁବ୍ ବେଶି ହେଲେ ଆଜି ରାତି ବା କାଲି ସକାଳ ।" ସେତେବେଳକୁ ଗୋପବନ୍ଧୁଙ୍କୁ ସନ୍ନିପାତ ଆରମ୍ଭ ହୋଇଯାଇଥିଲା, ତଥାପି ସେ ସଜ୍ଞାନ ଓ ପ୍ରଫୁଲ୍ଲ ଥିଲେ । କବିରାଜ ମତରେ ସନ୍ଧ୍ୟାବେଳକୁ ମକରଧ୍ୱଜ ଓ କସ୍ତୁରୀ ଦେଇ ପିବାକୁ ସିଭିଲ୍ ସର୍ଜନ ମଧ୍ୟ କହିଗଲେ ।

ଦିନ ୨ଟା ବେଳକୁ ଶ୍ରୀ ଜଗବନ୍ଧୁ ସିଂହ ଓ ପୁରୀର ଉତ୍କଳ ଶ୍ରୀ ବନମାଳୀ ଦାସ ଆସି ରୋଗଶଯ୍ୟା ପାଖରେ ଦାସ ଆପଣଙ୍କୁ ପ୍ରଣାମ ଜଣାଇଲେ । ଗୋପବନ୍ଧୁ ଜଗବନ୍ଧୁଙ୍କୁ ଧରିପକାଇ ଅତି ସ୍ପଷ୍ଟ ଭାଷାରେ କହିଲେ—"ଘଟଣାକ୍ରମେ ତୁମ ସହିତ କେତେବେଳେ କେତେବେଳେ ମତ ପାର୍ଥକ୍ୟ ଘଟିଛି । ସେ ସବୁ ମନରେ ଧରିବନି । କ୍ଷମା ଦେବ ଓ ଭୁଲିଯିବ ।"

ପ୍ରାୟ ଦିନ ତିନିଟା ବେଳକୁ ଦାସେ ଆପଣେ କ୍ରମେ କ୍ରମେ ବେଶି ନିସ୍ତେଜ ଓ ଦୁର୍ବଳ ହୋଇପଡ଼ିଲେ । ବାରମ୍ବାର ତରଳ ଝାଡ଼ା ଓ ହିକ୍କା ହେଉଥାଏ । ସମସ୍ତେ ବିଚାର କଲେ ଯେ ଶେଷବେଳ ହୋଇଗଲା । ନୀଳକଣ୍ଠ, ହରିହର, ଲିଙ୍ଗରାଜ, ଜଗବନ୍ଧୁ, ଉତ୍କଳ ବନମାଳୀ ଦାସ ଓ ସତ୍ୟବାଦୀର ବହୁ ଛାତ୍ର ଓ ଶିକ୍ଷକ ଉପସ୍ଥିତ ଥା'ନ୍ତି । ସମସ୍ତେ ଗୋଟାଏ 'ଉଇଲ୍' ଲେଖିବା କଥା ବିଚାର କରୁଥା'ନ୍ତି; କିନ୍ତୁ କିଏ ଏ କଥା ଦାସ ଆପଣଙ୍କୁ କହିବ କିଛି ଠିକ୍ କରିଯାଇପାରୁନଥାଏ ।

ଶେଷରେ ଲିଙ୍ଗରାଜଙ୍କ ଉପରେ ଏ ଦାୟିତ୍ୱ ପଡ଼ିଲା । ଲିଙ୍ଗରାଜ କହିଲେ—"ଆପଣେ, ଆପଣ କ'ଣ ଗୋଟାଏ ଲେଖିଦେବେ ବୋଲି ଭାବୁଛନ୍ତି କି ?"

ଦାସେ ଆପଣ କହିଲେ—"କ'ଣ ଲେଖିବା ବେଳ ହୋଇଗଲାଣି କି ? ସମସ୍ତେ ଏଠିକି ଆସ । ଅନ୍ୟମାନଙ୍କୁ ମୋ ପାଖକୁ ଡାକ ।" ଲିଙ୍ଗରାଜବାବୁଙ୍କୁ କାଗଜ କଲମ ଧରି ଲେଖିବାକୁ ଗୋପବନ୍ଧୁ ସଙ୍କେତ ଦେଲେ ।

ଗୋପବନ୍ଧୁ ଅତି ସ୍ପଷ୍ଟ ଓ ଅନର୍ଗଳ ସ୍ୱରରେ ଦୀର୍ଘ ଉଇଲ୍‌ଟିଏ ଡାକିଗଲେ । ଲିଙ୍ଗରାଜ ବସି ଲେଖୁଥା'ନ୍ତି । ଏହି ସମୟରେ କଟକରୁ ତାଙ୍କ ଜ୍ୟେଷ୍ଠ ଜାମାତା ଶ୍ରୀ ରତ୍ନାକର ପତି ଓ ଶ୍ରୀ ରାଧାନାଥ ରଥ ଆସି ପହଞ୍ଚିଲେ । ଗୋପବନ୍ଧୁ ସେ ଦୁହିଁଙ୍କୁ ଦେଖି କହିଲେ, "I am dictating my last will and testament." ଶ୍ରୀଯୁକ୍ତ ରତ୍ନାକର ପତି ଓ ରାଧାନାଥ ରଥ ଉଭୟେ କାନ୍ଦିପକାଇଲେ ।

ଉଇଲ ଡାକ ସାରି ସେ ଲେଖାଟା ଲିଙ୍ଗରାଜଙ୍କ ହାତରୁ ନେଇ ଗୋପବନ୍ଧୁ ଧରି ପଢ଼ିଲେ । ସେଥିରେ ଥିବା ଭୁଲକୁ ସଂଶୋଧନ କଲେ ଓ ସଂଶୋଧନ ସ୍ଥାନରେ ନିଜ ଦସ୍ତଖତ ବି କଲେ ।

# ଗୋପବନ୍ଧୁଙ୍କ ଶେଷ ଲେଖା

୧ । ବର୍ଦ୍ଦୋଲି ସାହାଯ୍ୟ ପ୍ରାର୍ଥନା
୨ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ

ଜୀବନର ସାୟାହ୍ନରେ ଗୋପବନ୍ଧୁ ଭାରତ ମହାଜାତି ଓ ଓଡ଼ିଆ ଜାତି ପାଇଁ ଜୀବନବ୍ୟାପୀ ସାଧନାର ଯେଉଁ ଦୁଇଟି କ୍ଷୀଣ ସ୍ପନ୍ଦନ ପ୍ରକାଶ କରିଥିଲେ, ତା ଏଠାରେ ପ୍ରକାଶ କରିବାର ଦୁରନ୍ତ ପ୍ରଲୋଭନ ମୁଁ ଏଡ଼ାଇ ପାରୁନାହିଁ । ତାଙ୍କ ବ୍ୟକ୍ତିତ୍ୱର ଦୁଇଟି ସମୁନ୍ନତ ଦିଗ ଏ ଦୁଇଟି ଲେଖାରେ ସ୍ପଷ୍ଟ । ଗୋଟିଏ ଲେଖାରେ ସେ ବର୍ଦ୍ଦୋଲି ସତ୍ୟାଗ୍ରହ ପାଇଁ ଅର୍ଥଦାନ ନିମନ୍ତେ ଓଡ଼ିଶାବାସୀଙ୍କୁ ଅତି ବିନମ୍ର ଆନ୍ତରିକ ନିବେଦନ କରିଥିଲେ—“ଓଡ଼ିଶାର ବିପଦଆପଦବେଳେ ଭାରତର ଭିନ୍ନ ଭିନ୍ନ ପ୍ରଦେଶର ଲୋକେ ସର୍ବଦା ଅଳ୍ପ ବହୁତ ସାହାଯ୍ୟ ଦେଇଛନ୍ତି । ସେମାନଙ୍କ ପ୍ରୟୋଜନ ବେଳେ ଆମ୍ଭେମାନେ ଏକାବେଳକେ ଉଦାସୀନ ହେଲେ ନିତାନ୍ତ ଅମନୁଷ୍ୟତା ଓ କୃତଘ୍ନତା ହେବ । ସେମାନେ ସହସ୍ର ଟଙ୍କା ଦେଇ ପାରନ୍ତି, ମାତ୍ର ଓଡ଼ିଆ ଟଙ୍କାଏ ଦେଲେ ତାଙ୍କ ସହସ୍ରକୁ ବଳିବ । ବର୍ଦ୍ଦୋଲିର ମହାଜାତୀୟ ଯଜ୍ଞରେ ଓଡ଼ିଆ ନାମରେ ଆହୁତିଏ ହେଲେ ପଡ଼ୁ ।

(୧୦ । ୬ । ୧୯୨୮ ତାରିଖ ) ।

ଏହି ମାସ ୧୨ ତାରିଖରେ ଭାରତର ଚତୁର୍ଦ୍ଦିଗରେ ବର୍ଦ୍ଦୋଲି ଦିବସ ପାଳିତ ହେବାର ଥାଏ । ଓଡ଼ିଶାର ସବୁଆଡ଼େ ଏହି ସତ୍ୟାଗ୍ରହ ପାଳନ କରିବା ପାଇଁ ଓ ସଭାସମିତି କରିବା ପାଇଁ ଗୋପବନ୍ଧୁ ଆହ୍ୱାନ ଦେଇଥିଲେ । ସେ ନିଜେ ମଧ୍ୟ ଅନେକ ସ୍ଥାନରେ ସଭାରେ ଯୋଗଦେବେ ବୋଲି ଆଗରୁ ଘୋଷଣା ହୋଇଥିଲା ।

‘ସମାଜ’ର ସମ୍ପାଦକୀୟ ସ୍ତମ୍ଭରେ ବହୁବାର ସେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ବହୁ ସୁଚିନ୍ତିତ ଆଲୋଚନା ପ୍ରକାଶ କରିଥିଲେ । ରୋଗ ଶଯ୍ୟାରେ ଥାଇ ମଧ୍ୟ ଏ ଚିନ୍ତାରୁ ସେ ବିରତ ନଥିଲେ । ୧୩ । ୬ । ୨୮ ତାରିଖ ‘ସମାଜ’ର ଏହି ସ୍ତମ୍ଭରେ ଶେଷଥର ପାଇଁ ସେ ନିଜ ପ୍ରଦେଶ ଓ ଜୀବନବ୍ୟାପୀ ସାଧନା ଉଦ୍ଦେଶ୍ୟରେ ପ୍ରାଣଭରା ବ୍ୟାକୁଳତା ଜଣାଇ ଦେଇଥିଲେ । ସମ୍ଭବତଃ ଏହାହିଁ ତାଙ୍କ ଜୀବନର ଶେଷ ଲେଖା ଥିଲା । ଦୁଃଖ ଓ ବେଦନାର ମରୁଭୂମିରେ ଓଡ଼ିଆ ଜାତି ଆଉ କେବେ ମରୁଦ୍ୱୀପର ସନ୍ଧାନ ପାଇବ ଗୋପବନ୍ଧୁ କଳ୍ପନା କରିପାରୁ ନଥିଲେ । ଜାତି ଓ ମହାଜାତି—ଏ ଦୁଇଟି ଆହ୍ୱାନ ତାଙ୍କୁ ଜୀବନସାରା ବିବ୍ରତ କରୁଥିଲା । ଏହାହିଁ ଥିଲା ତାଙ୍କ କର୍ମ ଓ ସାଧନାର ଗତିପଥ । ଜୀବନସାରା ସେ ଏ ଦୁଇ ଆହ୍ୱାନକୁ ସମ୍ମାନ ଦେଇ ନିଷ୍ଠା ଓ ବିଶ୍ୱାସର ସହିତ ଲାଗିଥିଲେ । ଏହାର ମାତ୍ର ପାଞ୍ଚଦିନ ପରେ କାଳର ଭୀମ ଭ୍ରୂକୁଟୀ ତାଙ୍କୁ ହାତ ଠାରି ବାହୁଡ଼ା ଯାତ୍ରାର ଇଙ୍ଗିତ ଦେଇଥିଲା । ଆଃ, ଏ ଜାତି ପାଇଁ କେଡ଼େ ନିର୍ମମ ସେ ଇଙ୍ଗିତ ! ସଂସାରର କେହି ସେ ଇଙ୍ଗିତକୁ ପ୍ରତ୍ୟାଖ୍ୟାନ କରିପାରିନି, ସେ ବା କାହୁଁ ପାରିଥାନ୍ତେ ?

# ପ୍ରଦୀପ ଶିଖା ନଭିଗଲା

୧୭ । ୬ । ୧୯୨୮ ତାରିଖ ପ୍ରାୟ ଦିନ ପାଞ୍ଚଟା ତିରିଶ ମିନଟ୍ ବେଳକୁ ଗୋପବନ୍ଧୁ କହିଲେ—"ସମସ୍ତେ ସାବଧାନ ଥିବ—ମୋ ବେଳ ଆସିଗଲା । ଏବେ ମୁଁ ଯାଏଁ ।" କିଛି ସମୟ ନୀରବତା ପରେ ପୁଣି କହିଲେ—"ତୁମେ ସମସ୍ତେ ମୋ ଚାରିପାଖରେ ବସି ପ୍ରାର୍ଥନା କର—ମୁଁ ଟିକିଏ ଶୁଏ ।" ପ୍ରାର୍ଥନା ଓ ଗୀତାପାଠ ହେଲା । କିଛି ସମୟ ପରେ ପୁଣି କହିଲେ—"ପବନ ଉପରମୁହାଁ ହେଲାପରି ଜଣାପଡ଼ୁଛି । ସେଥିପାଇଁ ଗ୍ରୀବରେ କଷ୍ଟ ହେଉଛି ।" ନାଡ଼ିର ଗତି କ୍ରମେ ଶିଥିଳ ହୋଇ ଆସୁଥିଲା । ବାରମ୍ବାର ଇଂଜେକସନ୍ ଦିଆଗଲା, କିନ୍ତୁ କିଛି ହେଲାପରି ଜଣାଗଲାନି । ଗ୍ରୀବକୁ ନିଜ ହାତରେ ଚିପିଧରି ଗୋପବନ୍ଧୁ କହିଲେ—"ଉପରମୁହାଁ ପବନ ଗତି ବନ୍ଦହୋଇ ଆସିଲା ପରି ଜଣାଯାଉଛି ।" ତା'ର ଦୁଇ ମିନିଟ୍ ପରେ ଖୁବ୍ ଜୋର୍‌ରେ ଦୁଇଟି ହିକକା ଆସିଲା । ସବୁଦିନ ପାଇଁ ପ୍ରଦୀପ ଶିଖା ନିଭିଗଲା । ସେ ସୁନ୍ଦର ଆଖି ଯୋଡ଼ିକ ମୁଦିହୋଇଗଲା । ଆଉ ଖୋଲିଲା ନାହିଁ ।

ତାଙ୍କ ଦେହରେ ଆଗ୍ରହୀ ମହାଶୟ ହାତ ମାରି ଦେଖିଲା ବେଳକୁ ଦେହ ପ୍ରାୟ ଥଣ୍ଡା ହୋଇଗଲାଣି । ଆଗ୍ରହୀ ହରିହର ଖୁବ୍ ଜୋର୍‌ରେ ଚିତ୍କାର କରିଉଠିଲେ । ସେତେବେଳେ ସମୟ ଥିଲା ଘ ୭ । ୨୫ ମିନିଟ୍, ନେତ୍ର ଉତ୍ସବ ପୂର୍ବଦିନ । ପୁରୀରେ ଜଗନ୍ନାଥଙ୍କ ନବ ଯୌବନ ଦର୍ଶନ ପାଇଁ ହଜାର ହଜାର ଲୋକ ସେଦିନ ସନ୍ଧ୍ୟାରେ ଭିଡ଼ କରିଥିଲେ । ରଥ ଉପରେ ନେତ ବନ୍ଧା ହେଉଥିଲା । ଓଡ଼ିଶା ଓ ଓଡ଼ିଶା ବାହାରୁ ଲକ୍ଷାଧିକ ଲୋକ ରଥଯାତ୍ରା ପାଇଁ ପ୍ରସ୍ତୁତ ହେଉଥିଲେ ।

ଓଡ଼ିଆ ଜାତିର ରଥଚକ କିନ୍ତୁ ସବୁଦିନ ପାଇଁ ଅଟକିଗଲା । କେତୋଟି ଘଣ୍ଟା ମଧ୍ୟରେ ତାଙ୍କ ମୃତ୍ୟୁର ବାର୍ତ୍ତା ଚାରିଆଡ଼େ ଖେଳିଗଲା । ପୁରୀ ଜିଲ୍ଲାର ଚାରିଆଡ଼ୁ ଜନସ୍ରୋତ ସତ୍ୟବାଦୀ ଅଭିମୁଖେ ମାଡ଼ି ଆସିଲା । ଫୁଲ, ଚନ୍ଦନ, ଅଗୁରୁ, କର୍ପୂର, ଗୋଲାପ ଜଳରେ ତାଙ୍କ ମୃତ ଦେହକୁ ସୁସଜ୍ଜିତ କରି ସତ୍ୟବାଦୀର ଜନପଥରେ ଜନତା ପଟୁଆର ତାଙ୍କ ଶବାଧାରକୁ ବୋହିନେଲା । କଂଗ୍ରେସ ପତାକାରେ ତାଙ୍କ ଦେହକୁ ଆଚ୍ଛାଦିତ କରାଯାଇଥିଲା । ଶୋକାତୁର ଜନତା ଅତି ଆପଣାର ପ୍ରିୟ ମଣିଷକୁ ହରାଇ ଦୁଃଖରେ ଫାଟି ପଡ଼ୁଥିଲା । ତାଙ୍କ ପ୍ରିୟ କର୍ମକ୍ଷେତ୍ର ବକୁଳ ବନରେ ଘିଅ ଓ ଚନ୍ଦନକାଠରେ ତାଙ୍କ ଜଡ଼ ପିଣ୍ଡକୁ ଜାଳି ଦିଆଗଲା ବେଳେ ଉର୍ଦ୍ଧ୍ୱ ଆକାଶକୁ ଆରକ୍ତ କରି ଉଜ୍ଜ୍ୱଳ ଅଗ୍ନିଶିଖା ଚାରିଆଡ଼କୁ ଚରି ଯାଉଥିଲା । ଧୂମ କୁଣ୍ଡଳୀ ଅନନ୍ତ ଆକାଶର କଳାଗ୍ରୀବରେ ଖେଳି ଖେଳି ତାଙ୍କ ମର ଶରୀରକୁ ସତେ ଯେପରି ପ୍ରଣତି ଜଣାଉଥିଲା ।

# ଜୀବନର ସୂଚୀପତ୍ର

ଗୋପବନ୍ଧୁ । ପିତା ଦୈତାରି ଦାଶଙ୍କ ତୃତୀୟ ପତ୍ନୀ ସ୍ୱର୍ଣ୍ଣମୟୀ ଦେବୀଙ୍କର ଏକମାତ୍ର ସନ୍ତାନ । ଏହା ପୂର୍ବରୁ ଦୈତାରି ଦାଶଙ୍କ ପ୍ରଥମ ଦୁଇ ପତ୍ନୀଙ୍କର ଅପମୃତ୍ୟୁ ହୋଇଥାଏ; କିନ୍ତୁ ତାଙ୍କର ଦ୍ୱିତୀୟ ପତ୍ନୀଙ୍କ ଗର୍ଭରୁ ଜାତ ଗୋଟିଏ ପୁତ୍ରସନ୍ତାନ ଜୀବିତ ଥାନ୍ତି । ତାଙ୍କ ନାମ ନାରାୟଣ । ଗୋପବନ୍ଧୁ ମାତୃ ଗର୍ଭରେ ଥିବାବେଳର ଗୋଟିଏ ଘଟଣା । ମାଆ ଅତି-ମାତ୍ରାରେ ଧର୍ମପରାୟଣା । ସବୁବେଳେ ଗ୍ରାମଦେବୀଙ୍କ ପୂଜା କରୁଥାନ୍ତି । ସହଜେ ପିତା ଦୈତାରି ଦାଶ କୃଷ୍ଣଭକ୍ତ । ଭାଗବତ ପାରାୟଣରେ ତାଙ୍କର ଅଧିକାଂଶ ସମୟ ବିତୁଥିଲା; ତଥାପି ଏହି ଧର୍ମପରାୟଣ ହରିଭକ୍ତ ଦମ୍ପତିଙ୍କ ସନ୍ତାନ ଗୋପବନ୍ଧୁ ସୁଖପ୍ରସବ ଲାଭକରି ପାରିନଥିଲେ । ଦୀର୍ଘ ଦୁଇଦିନ ଗର୍ଭ କଷ୍ଟ ପାଇବା ପରେ ତାଙ୍କ ମାଆ ସମ୍ପୂର୍ଣ୍ଣ ଅଶକ୍ତ ଓ ଅବଶ ହୋଇ ପଡ଼ିଲେ । ଜ୍ଞାତି ପରିଜନମାନେ ଏହି ମୁମୂର୍ଷୁ ପ୍ରସୂତିଟିର ସମସ୍ତ ଆଶା ଛାଡ଼ି ବସିଲେ । ସତେ ଯେପରି ଏ ଘର ପ୍ରତି ଏହା କେଉଁ ଅପଦେବତାର ଅଭିଶାପ ! ଜୀବନ ଯନ୍ତ୍ରଣାର କାରୁଣ୍ୟରେ ସମଗ୍ର ପରିବାର ବିଧୁର ଓ ବିଷଣ୍ଣ । ପ୍ରସୂତିର ଆର୍ତ୍ତଚିତ୍କାର ଦୁଇ ଦିନର ବେଦନା ପରେ ନୀରବ ହୋଇ ଆସୁଥାଏ । ସମସ୍ତଙ୍କ ମୁହଁରେ ଖେଦ ଓ ଆର୍ତ୍ତିର କଳାଛାଇ ଛାଇ ରହିଥାଏ ।

ପଡ଼ିଶାଘରର ଜଣେ ଚିକିତ୍ସାଶୀଳା ବୃଦ୍ଧା ଦୁଇଦିନ ପରେ କହିଲେ, "ଏ ଘର ବଦଳେଇଲେ ସହଜରେ ସନ୍ତାନ ପ୍ରସବ ହେବ ।" ତାଙ୍କରି କଥା ରହିଲା । ପଡ଼ୋଶୀ ଦୟାନିଧି ଦାଶଙ୍କ ଘରକୁ ଅଗତ୍ୟା ପ୍ରସୂତିକୁ ନିଆଗଲା । ସେଇଠି ସତକୁ ସତ କେଉଁ ପରୀରାଜ୍ୟର ଉପକଥା ପରି ମା'ର ଅନ୍ଧକାର ଗର୍ଭରୁ କଅଁଳିଆ ଛୁଆଟିଏ ମାଟି ଓ ଆଲୁଅ ସ୍ପର୍ଶ କଲା । ସେଦିନ ଥାଏ ମହାଳୟା ଅମାବାସ୍ୟା ପର ଦ୍ୱିତୀୟା ତିଥି; ତା ୯-୧୦-୧୮୭୭ ମସିହା । ଦୁଇ ଦିନର ସଂଗ୍ରାମକ୍ଲିଷ୍ଟ ଦେହରେ ସେ ଯେଉଁ ଧୂସର ଅପରାହ୍ଣର ବିଷଣ୍ଣ ବ୍ୟଥା ତା ଜୀବନର ଜନ୍ମଜାତକ ହୋଇ ରହିଗଲା । ଦୁଃଖ ଓ କ୍ରନ୍ଦନ ହେଲା ତା ଜୀବନର ସୂଚୀପତ୍ର । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଏହି ଯୋଗଜନ୍ମା ପୁରୁଷଟି କେବଳ ଦୁଃଖର ଅଗ୍ନିଦାହରେ ନିଜ ସ୍ଥିତିର ପରୀକ୍ଷା ଦେଇଗଲା । ଏଣୁ ଦୁଃଖ କେବେ ତାକୁ ଭୟଭୀତ କରି ପାରିଲା ନାହିଁ, ଜୀବନ-ଲେଖା ମଣିଷର ଆର୍ତ୍ତିରେ ସେ ଦୁଃଖକୁ ସାମ୍ନା କରିବାକୁ କୁଣ୍ଠିତ ହେଲାନାହିଁ । ବିପର୍ଯ୍ୟୟ ତାକୁ କକ୍ଷଚ୍ୟୁତ କରିପାରିଲା ନାହିଁ । ରବୀନ୍ଦ୍ରଙ୍କ ଭାଷାରେ 'ଦୁଃଖେ ଯାଦେର ଜୀବନ ଗଡ଼ା, ତାଦେର ଆବାର ଦୁଃଖ କ'ରେ ।" ବ୍ୟଥା ଓ ପୀଡ଼ାର ବେସୁରା ରାଗିଣୀକୁ, କରୁଣ ବେହାଗକୁ ସେ ହସି ହସି ବରଣ କଲା, ଆଉ ହସି ହସି ଜୀବନ ଭାଷ୍ୟ ଫୁଟାଇଲା—"ମଣିଷର ମଣିଷତ୍ୱ ଫୁଟି ଉଠେ ଦୁଃଖରେ, ସୁଖରେ ନୁହେଁ ।"

ଖଦିପିନ୍ଧା ଏହି ବାଙ୍ଗରା ମଣିଷଟି ଜୀବନସାରା ଦରିଦ୍ର ନାରାୟଣ ସେବାରେ ଆପଣାକୁ ଉତ୍ସର୍ଗ କରିଗଲା । ବଢ଼ି, ମରୁଡ଼ି, ଦୁର୍ଭିକ୍ଷରେ ବୁଲି ବୁଲି, ଖରାରେ ତରାରେ ଅଖିଆ ଅପିଆ ଶରୀରକୁ ଢଳି ଢଳି ଶୁଖାଇ ମାଟିର ଫୁଲପରି ମାତ୍ର ବାଉନ ବର୍ଷରେ ସେ ଝଡ଼ିଗଲା । ତାଙ୍କ ଜୀବନର ଆଦର୍ଶ ଫୁଟିଉଠିଲା ତାଙ୍କରି ଭାଷାରେ —

"ମାନବ ଜୀବନ ନୁହଇ କେବଳ ବର୍ଷ, ମାସ, ଦିନ, ଦଣ୍ଡ
କର୍ମେ ଜୀଏଁ ନର, କର୍ମ ଏକା ତାର ଜୀବନର ମାନଦଣ୍ଡ ।"

ଅରଣ୍ୟର ଅଜଗର ପରି କର୍ମକଷଣର ଦଣ୍ଡ ସହି ସହି, ତ୍ୟାଗର ମହାଦୀପ ଜାଳି ସେ ନିଭିଗଲା । ଏ ଦେଶର କେତେ ବିଷଣ୍ଣ ଇତିକଥା ତା ଜୀବନର ଇତିହାସରେ ଅତି ଅଂଗଲଗ୍ନ ଭାବରେ ମିଶିଗଲା । କେତେ ଅସହାୟ ତାରି କଣ୍ଠରେ ରୂପ ପାଇଲେ, ତା'ରି ଭାଷାରେ ଆତ୍ମ ପ୍ରକାଶ କଲେ । ତାରି ସାନ୍ନିଧ୍ୟରେ ନବଚୈତନ୍ୟ ଏ ଜାତିର ଜୀବନକୁ କେତେ ଦୁର୍ଦ୍ଦିନର ଧୂମକେତୁ କବଳରୁ ମୁକ୍ତିର ଇସ୍ତାହାର ଘୋଷଣା କଲା । କେତେ ଅସମୟର ଉଦ୍‌ଗ୍ରାସକୁ ଜୀବନର ସ୍ୱାକ୍ଷର ବହନ କଲା । କେତେ ପ୍ରାଣରେ, କେତେ ହୃଦୟରେ ବାଜି ଉଠିଲା ତାରି ଆଗମନୀର ମଧୁର ସଙ୍ଗୀତ । ପୁଣି କେତେ ବିଦୀର୍ଣ୍ଣ ହୃଦୟରେ, କେତେ ଶୀର୍ଣ୍ଣ ସେତୁରେ ଶୁଣାଗଲା ତାରି ଆଶ୍ୱାସନାର ବିପୁଳ ଇଙ୍ଗିତ । ସେ କେଉଁଠି ହସି ହସି, କେଉଁଠି କାନ୍ଦି କାନ୍ଦି ଏ ଜାତିଟାକୁ ରୂପ ଦେଇଗଲା । ଗୋଲମାଧବ ପରି ଇତିହାସର ବିନିଦ୍ରିତ ଏକଦା ପ୍ରାଣବାନ୍ ଏ ଜାତିଟାକୁ ପୁଣି ଥରେ ସେ ଚେତନାର ଚ୍ୟବନରେ ବଂଚିବାର ନିଷ୍ଠା ଶୁଣାଇଲା । କେତେ ମୂକ ମୁହଁରେ ଭାଷା ଫୁଟିଲା, କେତେ ପୀଡ଼ିତର ମୁହଁରେ ହସ ଉକୁଟିଲା । ମରମ ଜଣା ନରମ ସ୍ୱରରେ କେତେ ଦୁଃଖ ଦାଉ ପ୍ରଶମିତ କରି ସେ ବଂଚିବାର ବିଶ୍ୱାସ ଦେଇଗଲା, ଜୀବନର ପଥଆରି ଥୋଇଗଲା ।

ସେ ଆଜି ସବୁରି ସ୍ମୃତିକୋଷରେ ଅତି ଆପଣାର ପ୍ରିୟ ସମ୍ପଦ । ମଣିଷ ପରି ମଣିଷଟାଏ ସେ । କେତେ ଐତିହାସିକ ପୁରୁଷ ଆଲେକ୍‌ଜାଣ୍ଡର, ସିଜର, ଅଶୋକ, ମାମୁଦ, ମହମ୍ମଦ ଘୋରୀ, ଆଉରଙ୍ଗଜେବ୍—ସମସ୍ତେ ଶିଳାରେ ଶିଳା ଘଷି ଯୁଦ୍ଧପାଇଁ ପ୍ରତିଯୁଦ୍ଧର ଡାକରାଦେଇ, ରାଜ୍ୟପାଇଁ ରକ୍ତରେ ହୋରିଖେଳି, ଧର୍ମ ନାମରେ ଲୁଣ୍ଠନ ଏବଂ ଅତ୍ୟାଚାର କରି, ମଣିଷ ଜାତି ଓ ଇତିହାସ ପାଖରେ ନିଜର ଭାଉ କଳନା କରିଗଲେ । କିନ୍ତୁ ତାଙ୍କପରି କିଏ ସେ ଲୁହରେ ଲୁହ ମିଶାଇ, ଦୁଃଖୀ ଦରିଦ୍ର ନିଃସମ୍ବଳର ଶ୍ରୁତିରେ ଶ୍ରୁତି ମିଶାଇ ପ୍ରଳୟର ଗୀତ ଗାଇ ଜାଣିନାହିଁ । ରାଜ୍ୟର ଅଧିକାରରେ, ଶକ୍ତିର ଗର୍ବରେ ସେ କେବେ ଆଟୋପରେ ଜନତା ଦୁଆରକୁ ଆସିନାହିଁ । ଆତ୍ମଜୟକାର ପାଇଁ ସେ ପଟୁଆରର ଆୟୋଜନ କରିନାହିଁ । ଏକ ବିମୁଗ୍ଧ ଶିଳ୍ପୀ ପରି ସେ ଏକାନ୍ତ ବିଜନରେ ଓଡ଼ିଆ ଜାତିକୁ ରୂପାନ୍ତରିତ କରିଯାଇଛି । ତା'ରି ନିହଣ ମୁନରେ ଓଡ଼ିଆ ଜାତିର ଅକର୍ମଶିଳା ଗର୍ଭରେ ଫୁଟିଉଠିଛି ଜୀବନର ଜୁଆର; ଆତ୍ମପରିଚୟର ଉଜ୍ଜ୍ୱଳ ସ୍ୱୀକୃତି

ତାଙ୍କ ନୀରବ ସଙ୍ଗୀତର ତାନରେ ଏ ଜାତିର ସମୁଦ୍ର ଗର୍ଭରେ କେତେ ଉଚ୍ଛଳ ଜୁଆର ଉଠୁଛି । କେତେ ପୂର୍ଣ୍ଣିମାର ଆଲୋକ ଓ ଅମାବାସ୍ୟାର କଳା ଅନ୍ଧକାରକୁ ଆପଣାର କରି ଏ ଜାତି ନିଜକୁ ଚିହ୍ନି ଶିଖିଛି । ଏ ଜାତିର ସେ ଏକ ଐତିହାସିକ ଅନୁଷ୍ଠାନ । କବି ଅନନ୍ତ ପଟ୍ଟନାୟକଙ୍କ ଭାଷାରେ —

"ଏ ଜାତି ବଢ଼ି ଦେଖିଲ ସେ ଯେ
ସ୍ୱପ୍ନଚର ବାଲୁକା ତଳୁ
ଦୁନିଆଁ ଦ୍ୱାରେ ଆଣିଛି ନିତି
ମଣିଷ ସେବା ଅଶ୍ରେ ଚଳୁ
ଏ ଜାତି ଗାଳିମାଧବ ସେ କି
ଯାଇଛି ନିଜ ଜୀବନ ଲେଖି ?
କେତେ ଏ ଜାତି ବୋଇତ ଲାଗି
ମହାଦୀପ ସେ ଅନନ୍ତ ଜଳୁ
କାହିଁ ଏ ତାର ପଦର ଛାପେ
ନିର୍ବାଣ ଯେତେ ଦୁଃଖୀ ମନୁ ।"

ତାର ବିୟୋଗରେ ଏ ଜାତି ଆଜି ଅନ୍ଧାରରେ ଅଣ୍ଡାଳି ହେଉଛି । ଆଗରେ ଆଦର୍ଶ ନେତୃତ୍ୱ ନାହିଁ । ପ୍ରାଣବାନ୍ ନିଷ୍ଠା ନାହିଁ । ଦରିଦ୍ରନାରାୟଣଙ୍କ ସେବାରେ ନିଜକୁ ଢାଳିଦେବାର ଉଦାର ବ୍ୟକ୍ତିତ୍ୱ ଆଉ ଦେଖାଯାଉ ନାହିଁ । ସେଥିପାଇଁ ଆଜି ସକଳ କଣ୍ଠରେ ଏ ଜାତିର ଦୁର୍ଗତି ଓ ଦୁଃସ୍ଥିତିକୁ ଦେଖି ସମସ୍ୱରରେ ଗୋଟିଏ କଥା ଶୁଣାଯାଉଛି — "ଗୋପବନ୍ଧୁ ଯଦି ଆଜି ଥାଆନ୍ତେ......"

ସେ ଆଲୋକ ଶିଖା କ'ଣ ଲିଭିଯାଇପାରେ......?

